**ଆନଂଦ ଚଂଦ୍ର ପହିଙ୍କ**

**ଗଳ୍ପ ପୁସ୍ତକ :**

ଧୂଳି ଝଡ଼

ଅନେକ ମୁହଁ

ଷ୍ଟାଚ୍ୟୁ

ମୁହଁସଂଜ

ଅନ୍ୟ ଅରଣ୍ୟ

ଚରିତ୍ରର ଚିତ୍କାର

ମୁଦ୍ରିତା ଲୋପାମୁଦ୍ରା

ଏବଂ ଈଶ୍ୱରଙ୍କୁ ଇ-ମେଲ୍

ଗଳ୍ପ ଆଜିର

Digitized by srujanika@gmail.com

# ଗଳ୍ପ ଆଜିର

(କ୍ଷୁଦ୍ରଗଳ୍ପ ସଂକଳନ)

ଗାଳ୍ପିକ — ଆନଂଦ ଚଂଦ୍ର ପହି
ପ୍ରଥମ ସଂସ୍କରଣ — ୨୦୧୮
ସର୍ବସ୍ୱତ୍ୱ — ଆନଂଦ ଚଂଦ୍ର ପହି
ପ୍ରକାଶିକା — ଅରୁନ୍ଧତୀ ପହି
ଜି.ଏ. ପ୍ଲଟ ନଂ:୧୯୬,ଜି.ଏ କଲୋନୀ,
ଭରତପୁର ପୋ: ଅ: ମହାଲକ୍ଷ୍ମୀ ବିହାର,
ଭୁବନେଶ୍ୱର - ୭୫୧୦୨୯
ମୋବାଇଲ୍ ଫୋନ୍ ନଂ : ୯୪୩୭୧୦୬୮୯୪
ଅକ୍ଷର ସଜ୍ଜା — ଶାରଳା ଗ୍ରାଫିକ୍ , ଭୁବନେଶ୍ୱର -୭୫୧୦୧୨
ମୁଦ୍ରଣ — ଜଗନ୍ନାଥ ପ୍ରୋସେସ୍, ଡଗରପଡ଼ା, କଟକ
ପ୍ରଚ୍ଛଦ — ଆଶିଷ କୁମାର ପହି
ମୂଲ୍ୟ — ୨୪୦ଟଙ୍କା (ଦୁଇ ଶହ ଚାଳିଶ ଟଙ୍କା ମାତ୍ର)

# GALPA AZIR

(Short story collection)

Author : Ananda Chandra Pahi
First Edition : 2018
Published by : Arundhati Pahi
G.A.Plot no;196,G.A. Colony
Bharatpur, Post:Mahalaxmivihar,
Bhubaneswar-751029
Cover Design : Ashis Kumar Pahi
Price : Rs.240/- (Two hundred fourty only)

Digitized by srujanika@gmail.com

# କଥାକାରଙ୍କ ନିଜ କଥା

କିଛି ବର୍ଷ ତଳର ଘଟଣା । ସେତେବେଳକୁ ପ୍ରଖ୍ୟାତ କଥାକାର ଗୋପିନାଥ ମହାନ୍ତି ଜୀବିତ ଥାଆନ୍ତି । ଆମେ ଭୁବନେଶ୍ୱରର କେତେ ଜଣ ସାହିତ୍ୟିକ ତାଙ୍କ ବାସଭବନକୁ ଯାଇଥିଲୁ ତାଙ୍କୁ ଏକ ସୌଜନ୍ୟମୂଳକ ସାକ୍ଷାତ କରିବା ପାଇଁ । ଆମକୁ ଦେଖି ସେ ହଠାତ୍ କହିଲେ-ଆସିଗଲେ ହତ୍ୟାକାରୀ ଦଳ ।

ଆମେ ବିସ୍ମିତ ହେଲୁ । ସେ ଆମକୁ କାହିଁକି ହତ୍ୟାକାରୀ ବୋଲି କହିଦେ ଆମେ କିଛି ବୁଝି ପାରିଲୁ ନାହିଁ । ଆମେ କିଛି ନ କହି ନିରବ ହୋଇ ଠିଆ ହେଲୁ ।

ଶ୍ରୀଯୁକ୍ତ ମହାନ୍ତି ଆମକୁ ପ୍ରଶ୍ନକଲେ-ଆପଣମାନେ ସମସ୍ତେ ଲେଖକ ନା ?

ଆମେ ନିରବ ସମ୍ମତି ଜଣାଇଲୁ । ତାଙ୍କର ପରବର୍ତ୍ତୀ ମନ୍ତବ୍ୟ ଥିଲା-ମୁଁ ଜାଣେ ଆପଣମାନେ ସମସ୍ତେ ଲେଖକ । କିନ୍ତୁ ଆପଣମାନଙ୍କ ମଧ୍ୟରୁ କାହାରି ହାତରେ ଟିପାଖାତା କିମ୍ୱା କଲମ ନଥିବ ।

ଆମେ ପ୍ରତ୍ୟେକ ପରସ୍ପରଙ୍କ ମୁହଁକୁ ଚାହିଁଲୁ । ପ୍ରକୃତରେ ଆମମାନଙ୍କ ମଧ୍ୟରୁ କାହାରି ପକେଟରେ ଟିପାଖାତା କି କଲମ ନଥିଲା । ଟିପାଖାତା ତ ଦୂରର କଥା , ପକେଟରେ କଲମ ନରଖିବା ହେଉଛି ଆଜିର ଷ୍ଟାଇଲ୍ ।

ସିଏ କହିଲେ-ଆପଣମାନେ ଚାଲୁଥିବା ବେଳେ, ଗାଡିରେ ଯାତ୍ରା କରୁଥିବା ବେଳେ କିମ୍ୱା କିଛି କାମ କରୁଥିବା ସମୟରେ ନୂତନ ଆଇଡ଼ିଆର ଫ୍ଲାସ ଆସିବ । ଆପଣମାନେ ତାକୁ କଲମ ସାହାଯ୍ୟରେ ଟିପାଖାତାରେ ଟିପି ନରଖିଲେ ସେ ଫ୍ଲାସ୍ ବା ଆଇଡ଼ିଆର ଅପମୃତ୍ୟୁ ଘଟିବ । ଆପଣଙ୍କ ଏ ପ୍ରକାର ଅସାବଧାନତା ବା ଅବହେଳା ଯୋଗୁ ଅନେକ ମୂଲ୍ୟବାନ ଆଇଡ଼ିଆର ହତ୍ୟା ହୋଇଯାଏ । ତେଣୁ ମୁଁ କହିଲି ଆପଣମାନେ ହତ୍ୟାକାରୀ ।

ସେଦିନ ଆମେ ସମସ୍ତେ ମନେ ମନେ ହସିଥିଲୁ । ତାଙ୍କୁ କିଛି ଉତ୍ତର ନଦେଇ ନିରବରେ ତାଙ୍କ ଗାଳିକୁ ହଜମ କରିଥିଲୁ । କିନ୍ତୁ ପରବର୍ତ୍ତୀ କାଳରେ ମୁଁ ତାଙ୍କ କଥାର ସତ୍ୟତା ଅନୁଭବ କରି ପାଖରେ ଟିପାଖାତା ଓ କଲମ ରଖିବାର ଅଭ୍ୟାସକୁ ଆପଣାଇ ନେଲି । ସେ ଅଭ୍ୟାସ ଅଦ୍ୟାବଧି ମୋର ଅବ୍ୟାହତ ଅଛି ।

Digitized by srujanika@gmail.com

କ୍ଷୁଦ୍ରଗଳ୍ପର ଥିମ୍‌ଗୁଡ଼ିକ ମୋ ପାଖକୁ ଫ୍ଲାସ୍ ଭାବେ ଅଚାନକ ଆସେ ଓ ମୁଁ ସେଗୁଡ଼ିକ ତତ୍‌କ୍ଷଣାତ ଟିପାଖାତାରେ ଟିପି ରଖି ପରବର୍ତ୍ତୀ ସମୟରେ ସେଇ ଥିମ୍‌କୁ ମନ ଭିତରେ ଡ଼େଭଲପ୍ କରାଏ ଓ  ତାକୁ ଭିତ୍ତିକରି ଗଳ୍ପ ଲେଖିବାକୁ ଉଦ୍ୟମ କରେ ।

ଭଲ ଥିମ୍‌ଟିଏ କେତେବେଳେ ଧାଡ଼ିଟିଏତ ଆଉ କେତେବେଳେ ପାରାଗ୍ରାଫଟିଏ ହୋଇ ମୋ ହାତରେ ଧରାଦିଏ ।

ଭଲ ଗଳ୍ପଟିଏ ଲେଖି ସାରିବା ପରେ ଆତ୍ମ ସନ୍ତୋଷରେ ମନ ପୂରିଉଠେ । ଆମ ସମାଜକୁ ମୋ ମନ କଥାରୁ କିଛି କହି ପାରିଥିବା ପରି ମନ ହାଲୁକା ଲାଗେ । ପାଠକମାନଙ୍କ ମନକୁ ଆଲୋଡ଼ିତ ଓ ଆନ୍ଦୋଳିତ କରିଥିବା କିଛି ଗଳ୍ପର ପ୍ରତିକ୍ରିୟା ପାଠକ ପାଠିକାମାନଙ୍କ ଠାରୁ ମୋ ପାଖକୁ ଆସେ । ମୋବାଇଲ ଫୋନ୍‌ର ଏତେଟା ବ୍ୟବହାର ନଥିବା ବେଳେ ପାଠକ ପାଠିକାମାନେ ଚିଠି ଲେଖି ସେମାନଙ୍କ ମତାମତ ଜଣାଉ ଥିଲେ । ଅତୀତରେ ସେମିତି ଅନେକ ଚିଠି ମୁଁ ପାଇଛି ଓ ସେ ସବୁକୁ ଗୋଟିଏ ଚିଠି ଆଲବମ୍‌ରେ ଯତ୍ନର ସହିତ ସଜାଇ ସାଇତି ରଖିଛି । ଅନେକ ତଥାକଥିତ ପୁରସ୍କାର ଅପେକ୍ଷା ପାଠକ ପାଠିକାମାନଙ୍କ ଏଇ ଚିଠି ଗୁଡ଼ିକର ମୂଲ୍ୟ ଯଥେଷ୍ଟ ବେଶି ।ଅନେକ ସମୟରେ ସେ ଚିଠି ଗୁଡ଼ିକ ମୁଁ ପଢ଼େ  । ଚିଠି ଗୁଡ଼ିକ ପ୍ରେରଣାର ଉତ୍ସ । ଏବେ କିନ୍ତୁ ପାଠକ ପାଠିକାମାନେ ସେମାନଙ୍କ ମତାମତ ଜଣାଇବା ପାଇଁ ଚିଠି ନଲେଖି ଫୋନ୍ କରୁଛନ୍ତି ଯାହକୁ ସାଇତି ରଖିବା ସମ୍ଭବ ହେଉନାହିଁ ।

ମୁଁ ଆଜି ସୁଦ୍ଧା ପ୍ରାୟ ୨୦୦ଟି କ୍ଷୁଦ୍ରଗଳ୍ପ ଲେଖି ଥିଲେବି ମୁଁ ଜଣେ ଗାଳ୍ପିକ ଭାବରେ ମୋର କୌଣସି ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରି ପାରିଛି କି ନାହିଁ ସେ କଥା ହୁଏତ ସମୟ କହିବ  । କିନ୍ତୁ ମୁଁ ମୋ ଗଳ୍ପର କିଛି ପାଠକ ସୃଷ୍ଟି କରି ପାରିଛି ଯେଉଁମାନେ ପୂଜା ପତ୍ରିକାରେ ମୋ ଗଳ୍ପ ନଦେଖିଲେ ମୋ ପଛରେ ପଡ଼ି ଯାଆନ୍ତି । ମୋତେ ତାଗିଦ୍ କରନ୍ତି ନୂଆ ଗଳ୍ପ ଲେଖିବା ପାଇଁ ।

ଗଳ୍ପ ସହିତ ମୋର ଏମିତି ଅନ୍ତରଙ୍ଗତା ଗଢ଼ି ଉଠିଛି ଯେ ଗଳ୍ପକୁ ମୁଁ ଛାଡ଼ି ପାରୁନାହିଁ କି ଗଳ୍ପ ମୋତେ ଛାଡ଼ି ପାରୁ ନାହିଁ । କିଛି ଦିନ ଗଳ୍ପ ଲେଖି ନପାରିଲେ ଛଟପଟ ଲାଗୁଛି । ଖାଇବା,ପିଇବା, ଶୋଇବା, ଟିଭି ଦେଖିବା କି ବହି ପଢ଼ିବା କିଛି ଭଲ ଲାଗୁନାହିଁ । ମୋତେ ଲାଗୁଛି ଯେମିତି ମୁଁ ମୋ କର୍ତ୍ତବ୍ୟରେ ଅବହେଳା କରୁଛି, କିଛି ଗୋଟେ ଅପରାଧ କରୁଛି । କିଛି ଦିନ ଗଳ୍ପଲେଖା ଛାଡ଼ିଦେଲେ ମନେ ହେଉଛି ଯେମିତି ମୁଁ ଗଳ୍ପ ଲେଖିବାର କଳା କାରିଗରୀ ସଂପୂର୍ଣ୍ଣ ଭୁଲି ଯାଇଛି । ପୁଣି ଥରେ ଗଳ୍ପଲେଖାର ଅ,ଆ ମୋତେ ଶିଖିବାକୁ ପଡ଼ିବ । କିନ୍ତୁ ନା, ସେମିତ କିଛି ସମସ୍ୟାରେ ମୁଁ ଆଦୌ ପଡ଼ି ନାହିଁ । ପୁଣି ହଠାତ୍ ଦିନେ

Digitized by srujanika@gmail.com

ବିଜୁଳି ମାରିବା ପରି  ଆସିଯାଏ ଗଳ୍ପର ପ୍ଲଟସଟିଏ । ଆତ୍ମତୃପ୍ତିରେ ମନ ଉଲ୍ଲସି ଉଠେ । ମନକୁ ପୁଣି ଫେରିଆସେ  ଆତ୍ମ ବିଶ୍ୱାସ । ପୁଣି ଗଳ୍ପ ଲେଖିବା ସହଜ ଓ ସାବଲୀଳ ହୋଇଯାଏ  । ପୁଣି କଲମ ଚାଲେ ଗଳ୍ପ ଗୁଳାରେ,ଆଗ ଢ଼ଙ୍ଗରେ, ଆଗ ବାଗରେ ।

**ସିଧା କମ୍ପୁଟରରେ ବସି ଗଳ୍ପ ଲେଖିବାର ଅନୁଭବ ନିଆରା । ମୁଁ ଆଦୌ କମ୍ପୁଟର ଚଳାଇବା ଜାଣି ନଥିଲି । କିନ୍ତୁ ମୋତେ ଦିନେ ଅପୂର୍ବା ସାହିତ୍ୟ ପତ୍ରିକାର ସୁସଂପାଦକ ତଥା ଗାଳ୍ପିକ ଶ୍ରୀକ୍ଷୀରୋଦ ପତି ପରାମର୍ଶ ଦେଲେ କମ୍ପୁଟରଟିଏ କିଣି ସେଥିରେ ଲେଖାଲେଖି କରନ୍ତୁ ସହଜ ହେବ । ସିଧା କମ୍ପୁଟରରେ ଗଳ୍ପ ଓ ନାଟକ ଲେଖିବେ ଏବଂ ତାକୁ ଇ-ମେଲ୍ ଯୋଗେ ଯେଉଁଠିକି ଚାହିବେ ସେଠିକି କେତେ ସେକେଣ୍ଡ ମଧ୍ୟରେ ପଠାଇ ଦେଇ ପାରିବେ ।ଇଣ୍ଟରନେଟ୍ର ସୁବିଧା ଓ ସୁଯୋଗ ଉପଯୋଗ କରି ପାରିବେ । ତାଙ୍କ ପରାମର୍ଶ ମୋ ମନକୁ ଛୁଇଁଲା ।**

**ଅବଶ୍ୟ ଏତେ ବୟସରେ ନୂଆ କଥା  କିଛି ଶଖିବା ସହଜ ନୁହଁ । କିନ୍ତୁ କମ୍ପୁଟର ଶିଖି ସେଥିରେ ସିଧା ଗଳ୍ପ ଓ ନାଟକ ଲେଖିବା ନିମନ୍ତେ ମୋର ଢ଼େର ଆଗ୍ରହ ଥିବାରୁ ମୁଁ ପ୍ରାୟ ପନ୍ଦର ଦିନ ମଧ୍ୟରେ କମ୍ପୁଟର ଶିଖିଗଲି । କମ୍ପୁଟରରେ ଶିଖିବାକୁ ତ ବହୁତ କଥା ଅଛି ।ସେ ସବୁ ଶିଖିବା ପାଇଁ ଦେଢ଼,ଦୁଇ ବର୍ଷ ଲାଗିଯିବ ।ମାତ୍ର ମୋର ଗଳ୍ପ ଓ ନାଟକ ଲେଖିବା ପାଇଁ ଯେତିକି କଳା କୌଶଳ ଦରକାର ତାହା ମୁଁ ଗୋଟେ ମାସ ଭିତରେ ଶିଖିଗଲି ।**

'ଗଳ୍ପ ଆଜିର' ମୋର ନବମ କ୍ଷୁଦ୍ରଗଳ୍ପ ସଂକଳନ । ଯା' ପୂର୍ବ ଗଳ୍ପ ସଂକଳନଟିର ନାମ ଥିଲା 'ଏବଂ ଈଶ୍ୱରଙ୍କୁ ଇ-ମେଲ୍'ଯାହା ପ୍ରକାଶିତ ହୋଇଥିଲା ୨୦୦୭ ମସିହାରେ । ଇତି ମଧ୍ୟରେ ଦୀର୍ଘ ଏଗାର ବର୍ଷ ଅତିବାହିତ ହୋଇ ଯାଇଥିଲେ ମଧ୍ୟ ଏଇ ସଂକଳନଟି ପ୍ରକାଶିତ ହୋଇ ପାରି ନଥିଲା । ଅବଶ୍ୟ ଏହାର ପ୍ରକାଶନ ନିମନ୍ତେ ଉଦ୍ୟମ ଆରମ୍ଭ ହୋଇଛି ଆଜିକୁ ଆଠ ବର୍ଷ ତଳୁ ।

ଏ ପୁସ୍ତକର ପ୍ରଚ୍ଛଦ ଅଙ୍କନ କରିଛି  ମୋ ପୁଅ ଆନ୍ତର୍ଜାତୀୟ  ଖ୍ୟାତି ସଂପନ୍ନ ଚିତ୍ରଶିଳ୍ପୀ, ଆର୍ଟ କ୍ରିଟିକ ଓ କ୍ୟୁରେଟର ଆଶିଷ କୁମାର ପହି ।  ମୋର ବଡ଼ ଝିଅ ଫେସନ୍ ଡିଜାଇନର ଓ  ଗାଳ୍ପିକା ଅଧ୍ୟାପିକା ଅନୁକମ୍ପା ପହି ଏବଂ ଗ୍ରାଫିକ ଡିଜାଇନର ଓ କବୟତ୍ରୀ ସାନଝିଅ ଆକାଶ ପହି ଏ ସଂକଳନରେ ସ୍ଥାନିତ ସମସ୍ତ ଗଳ୍ପ ପଢ଼ି  ସେମାନଙ୍କ ସୁଚିନ୍ତିତ ପରାମର୍ଶ ଦେଇଛନ୍ତି । ସେହି ଅନୁସାରେ  କେତୋଟି ଗଳ୍ପରେ ମୁଁ କିଛି ପରିବର୍ତ୍ତନ ଓ ପରିବର୍ଦ୍ଧନ କରିଛି ।

ମୋ ପୁଅ ଓ ଦୁଇ ଝିଅ ଅନୁକମ୍ପା ଆଉ ଆକାଶ ସମସ୍ତଙ୍କର ସାହିତ୍ୟ ଏବଂ କଳା ପ୍ରତି ରୁଚି ରହିଛି ।  ସେମାନେ ମୋର କେତୋଟି ପୁସ୍ତକର ପ୍ରଚ୍ଛଦ ଓ ଭିତର ଚିତ୍ର

Digitized by srujanika@gmail.com

ଅଙ୍କନ କରିଛନ୍ତି । ଏ ପୁସ୍ତକ ସହିତ ମୋର ଅନେକ ପୁସ୍ତକର ପ୍ରକାଶନା ଦାୟିତ୍ୱ ନେଇଛନ୍ତି ମୋର ଧର୍ମପତ୍ନୀ ଅରୁନ୍ଧତୀ । ତେଣୁ ମୁଁ କହେ ସାହିତ୍ୟ ଆମ ପରିବାରର କୁଟୀରଶିଳ୍ପ ।

ଏ ପୁସ୍ତକରେ ଥିବା ସମସ୍ତ ଗଳ୍ପ ସଂପୂର୍ଣ୍ଣ କାଳ୍ପନିକ । କାହା ଜୀବନରେ ଘଟିଥିବା କିଛି ଘଟଣା ବା କିଛି କଥା ଯଦି ଏପୁସ୍ତକରେ ସ୍ଥାନିତ ଗଳ୍ପର ଘଟଣା ସହିତ ମିଶିଯାଏ, ତେବେ ତାକୁ ଆକସ୍ମିକ ସଂଯୋଗ ବୋଲି ଧରିନେବାକୁ ହେବ ।

ଏହି ଗଳ୍ପ ସଂକଳନରେ ସ୍ଥାନିତ ଗଳ୍ପଗୁଡ଼ିକ ମଧ୍ୟରୁ ମୁଁ କେତୋଟି ଗଳ୍ପକୁ ବେତାର ନାଟ୍ୟରୂପ ପ୍ରଦାନ କରିଛି ଏବଂ ସେଗୁଡ଼ିକ ଆକାଶବାଣୀ,କଟକ କେନ୍ଦ୍ରରୁ ପ୍ରସାରିତ ହୋଇଛି । ପଣବନ୍ଦୀ ଶୀର୍ଷକ ମୋ କ୍ଷୁଦ୍ରଗଳ୍ପଟିକୁ ବିଶିଷ୍ଟ ନାଟ୍ୟକାର ବନ୍ଧୁ ଶ୍ରୀଯୁକ୍ତ ଦିଲେଶ୍ୱର ମହାରଣା ମଞ୍ଚନାଟ୍ୟ ରୂପ ପ୍ରଦାନ କରିଛନ୍ତି ଯାହାର ନାମ ସିଏ ରଖିଛନ୍ତି ଶେଷ ଠିକଣା । ଏହି ନାଟକଟି ଦିଲେଶ୍ୱରବାବୁଙ୍କ ବଳିଷ୍ଠ ନିର୍ଦ୍ଦେଶନାରେ ଓଡ଼ିଶାର ବିଭିନ୍ନ ମଞ୍ଚରେ ଅଭିନୀତ ହୋଇ ଅଶେଷ ଶ୍ରଦ୍ଧା ପାଉଁଛି ।

ମୋର ଆଶା ଓ ବିଶ୍ୱାସ ଏଇ 'ଗଳ୍ପ ଆଜିର' କ୍ଷୁଦ୍ରଗଳ୍ପ ସଂକଳନ ମୋର ପୂର୍ବ ଗଳ୍ପ ସଂକଳନଗୁଡ଼ିକ ପରି ପାଠକ ପାଠିକାମାନଙ୍କ ଦ୍ୱାରା ଆଦୃତ ହେବ ।

ଭୁବନେଶ୍ୱର,
ତା ୧୫-୧-୨୦୧୮ ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

Digitized by srujanika@gmail.com

# ଚୋର ସହିତ ମୁହାଁମୁହିଁ

ସୁମିତ୍ରା ସୁବ୍ରତଙ୍କ ଛାତିରେ ହାତ ଥୋଇ ତାଙ୍କୁ ହଲାଇ ଦେଲେ । ସୁବ୍ରତ ଧଡପଡ଼ ହୋଇ ବିଛଣାରେ ଉଠି ବସିଲେ । ବେଡ୍ ସୁଇଚ୍ ଟିପିଦେଲେ । ଦେଖିଲେ ସୁମିତ୍ରା ଭୟରେ ଥରୁଚନ୍ତି । ତାଙ୍କ ମୁହଁ ଡରିଲା ଡରିଲା ଦିଶୁଚି । ସୁବ୍ରତ ତାଙ୍କୁ କିଛି ପଚାରିବାକୁ ଉଦ୍ୟମ କଲାବେଳେ ସୁମିତ୍ରା ତାଙ୍କ ମୁହଁରେ ହାତଦେଇ ବାରଣ କଲେ ।

ସୁମିତ୍ରା ସୁବ୍ରତଙ୍କ କାନ ପାଖକୁ ମୁହଁନେଇ ଥରିବା ଗଳାରେ ଫିସ୍‌ଫିସ୍ ଶବ୍ଦ କରି କହିଲେ- ଚୋ...ଚୋ..ଚୋର ।

କାନ୍ଥ ଘଣ୍ଟାକୁ ଚାହିଁଲେ ସୁବ୍ରତ, ରାତି ଚାରିଟା ବାଜିଛି । ଫରଚା ହେବାକୁ ଆଉ ଘଣ୍ଟାଏ ବାକି ଅଛି । ସୁବ୍ରତ ପଚାରିଲେ- ଚୋର କାହିଁ ? ତମେ ଚୋରକୁ ଦେଖିଚ ?

ସୁମିତ୍ରା ଡରି ଡରି କହିଲେ- ମୁଁ ବାଥ୍‌ରୁମ୍ ଯିବାକୁ ନିଦରୁ ଉଠିଥିଲି । ପାଚେରି ଡେଇଁ ତିନି ଚାରିଟା ଲୋକ ଆସିବାର ଶବ୍ଦ ମୁଁ ଶୁଣିଚି ।

ସୁବ୍ରତ ଡର ଛଡ଼ାଇବା ପାଇଁ କହିଲେ- ଫୁଲ ଚୋରି କରିବାକୁ କିଏ ପଶିଥିବ । ଫୁଲ ଚୋରି ଏ ରାଜଧାନୀରେ ଗୋଟେ ସାଧାରଣ କଥା । ଅନ୍ୟ ବାଡ଼ିର ଫୁଲ ଚୋରି କରିବାଟାକୁ କେହି ଏଠି ଅପରାଧ ବୋଲି ମନେ କରନ୍ତି ନାହିଁ । ଭାବନ୍ତି ଏଇଟା ବାହାଦୁରି । କାଳି ଅନ୍ଧାର ବେଳୁ ସମସ୍ତଙ୍କ ଅଲକ୍ଷ୍ୟରେ ଠାକୁରଙ୍କ ପାଇଁ ଫୁଲ ଚୋରି କରିବା ପାପ ନୁହଁ କି ଦୋଷ ନୁହଁ । କାରଣ ସେ ସବୁର ଗ୍ରହିତା ସ୍ୱୟଂ ଠାକୁର ।

ହଠାତ୍ ତାଙ୍କ କବାଟରେ ଧଡଧଡ ଶବ୍ଦ ଶୁଭିଲା । ସୁମିତ୍ରା ସୁବ୍ରତଙ୍କୁ କୁଣ୍ଢାଇ ଧରିଲେ । ଚୋର ଚୋର କହି ଭୟରେ କାନ୍ଦିବାକୁ ଲାଗିଲେ । କାନ୍ଦଟା କିନ୍ତୁ ଉଚ୍ଚ ସ୍ୱରରେ ନଥିଲା , ଥିଲା ଚାପା,ଚାପା ।

ସୁବ୍ରତ ଉଠିଯାଇ ଫୋନ୍‌ର ରିସିଭର ଉଠାଇଲେ ପୋଲିସ୍‌କୁ ଫୋନ୍ କରିବାକୁ । ଖଣ୍ଡଗିରି ପୋଲିସ୍ ଷ୍ଟେସନ୍ ମାତ୍ର ତିନି କିଲୋମିଟର ଦୂର । କିନ୍ତୁ ଫୋନ୍‌ଟା ଯେ ସଂପୂର୍ଣ୍ଣ ଡେଡ୍ । ଚୋରମାନେ ଫୋନ୍ ଲାଇନ୍ କାଟି ଦେଇଛନ୍ତି । ମୋବାଇଲ୍ ଫୋନ୍‌ଟାକୁ ଖୋଜିଲେ । ତକିଆ ତଳେ ଥିଲା । ଖଣ୍ଡଗିରି ଥାନାକୁ ଫୋନ୍‌କଲେ । ବାରମ୍ବାର ଫୋନ୍ ରିଙ୍ଗ୍ ହେଉଛି, ଅଥଚ କେହି ଉଠାଉ ନାହାଁନ୍ତି ।

କବାଟରେ ବେଳକୁ ବେଳ ଚୋରଙ୍କ ଆଘାତ ଅଧିକରୁ ଅଧିକ ହେଲା । ସୁବ୍ରତ

ଆନଂଦ ଚଂଦ୍ର ପହି

Digitized by srujanika@gmail.com

କବାଟ ଖୋଲିବାକୁ ବାହାରିଲେ । କିନ୍ତୁ ସ୍ତ୍ରୀ ସୁମିତ୍ରା ତାଙ୍କୁ ବାଧା ଦେଲେ- କବାଟ ଖୋଲନା, ଚୋରମାନେ ଘର ଭିତରକୁ ପଶି ଆସିବେ । ବନ୍ଧୁକ କି ଭୁଜାଲି ଦେଖାଇବେ । ଖୁବ୍ ନିର୍ଦ୍ଦୟ, ନିଷ୍ଠୁର ସେମାନେ । ଚାହୁଁ ଚାହୁଁ ଜୀବନ ନେଇଯିବେ ।

ସୁବ୍ରତ ସ୍ତ୍ରୀଙ୍କୁ ବୁଝାଇଲେ- ଆମେ କବାଟ ନଖୋଲିଲେ ସେମାନେ କବାଟ ଭାଙ୍ଗି ପଶି ଆସିବେ । ଚୋରଙ୍କ ବଳ ପାଖରେ କବାଟର କେତେ ବଳ ?

ସୁମିତ୍ରାଙ୍କୁ ଆଡ଼େଇ ସୁବ୍ରତ କବାଟ ଖୋଲିଦେଲେ । ମୁହଁରେ ମୁଖା ପିନ୍ଧିଥିବା ଚାରିଟା ଲୋକ ଘର ଭିତରକୁ ପଶି ଆସିଲେ । ସେମାନଙ୍କ ଭିତରୁ ଜଣକ ହାତରେ ଥିଲା ପିସ୍ତଲ, ଜଣକ ହାତରେ ଗୋଟେ ଧାରୁଆ ଛୁରି ଓ ଅନ୍ୟ ଦୁଇଜଣଙ୍କ ହାତରେ ଥିଲା ମୋଟା ମୋଟା ଦୁଇଟା ଲୁହାଛଡ଼ ।

ଦୁଇ ଜଣ ଚୋର ସୁବ୍ରତ ଓ ସୁମିତ୍ରାଙ୍କୁ କାବୁ କରିନେଇ ସେମାନଙ୍କ ମୁହଁରେ କନାବିଣ୍ଡା ଦେଇ ଚାପି ଧରିଲେ ଏବଂ ଅନ୍ୟ ଦୁଇ ଜଣ ସେମାନଙ୍କ ଦୁଇ ହାତକୁ ପଛ ପଟରେ ଦୃଢ଼ଭାବେ ବାନ୍ଧି ଦେଲେ ।

ପିସ୍ତଲ ଧରିଥିବା ଲୋକଟା ଆଦେଶ ଦେଲା ସୁବ୍ରତ ଓ ସୁମିତ୍ରାଙ୍କ ମୁହଁରୁ କନାବିଣ୍ଡା ଖୋଲିଦେବାକୁ । ସଙ୍ଗେ ସଙ୍ଗେ ସେମାନଙ୍କ ମୁହଁରୁ କନାବିଣ୍ଡା କାଢ଼ି ନିଆଗଲା ।

ସୁମିତ୍ରା ଓ ସୁବ୍ରତ ଦୁଇଟି ବଳିପଶୁ ପରି ଭୟରେ ଥରୁଥାନ୍ତି । ପିସ୍ତଲଧାରୀ ଚୋର ରୁକ୍ଷ କଣ୍ଠରେ ସାବଧାନ କରାଇ ଦେଲା- ତୁମେ ଚିତ୍କାର କଲେ କି ଆଉ କିଛି ଚାଲାଖି କଲେ ତୁମ ଦୁହିଁଙ୍କୁ ଗୁଳିକରି ଉଡାଇ ଦେବାକୁ ମାତ୍ର ଦୁଇ ସେକେଣ୍ଡ୍ ଲାଗିବ । ଯଦି ବଞ୍ଚିବାକୁ ଇଚ୍ଛାଅଛି, ତାହେଲେ କୋଉଠି କ'ଣ ରଖିଛ କହିଦିଅ । ଚାବିକାଠି ଦେଇଦିଅ । ଆମେ ଆମ ଜିନିଷ ପାଇଲେ ଚୁପ୍‌ଚାପ୍ ଚାଲିଯିବୁ । ମନେରଖ ଧନ ଗଲେ ତୁମେ ଭବିଷ୍ୟତରେ ରୋଜଗାର କରି ପାରିବ । ଜୀବନ ଗଲେ ଆଉ ମିଳିବ ନାହିଁ । ଆମେ ଚୋର । ଧନ ଚୋରି କରିବା ଆମ ଲକ୍ଷ୍ୟ, ଜୀବନ ନେବା ନୁହେଁ । କିନ୍ତୁ କେତେକ ସ୍ଥାନରେ ଆମକୁ ଅନିଚ୍ଛା ସତ୍ତ୍ୱେ ମାରପିଟ୍ କରିବାକୁ ପଡ଼ିଥାଏ । ଏମିତିକି ବେଳେବେଳେ ବାଧ୍ୟ ହୋଇ ଛୁରି ମାରିବାକୁ କିମ୍ବା ଗୁଳି ଚଳେଇବାକୁ ପଡ଼ିଥାଏ । ହଁ, ଭଲରେ କହିଦିଅ ତମର ଟଙ୍କା ସୁନା କୋଉଠି ଅଛି ?

ସୁବ୍ରତ ଏଥର ମୁହଁ ଖୋଲିଲେ- ଆମେ ଯାହା କହିବୁ ତୁମର ହୁଏତ ସେଥିରେ ବିଶ୍ୱାସ ନହୋଇପାରେ । ତୁମେ ମୋ ତକିଆ ତଳୁ ଚାବିକାଠି ନେନ୍ଥାଟା ନେଇ ସବୁ ଆଲ୍‌ମାରି ଖୋଲି ଯାହା ନେବାର ନେଇଯାଅ । ଅଯଥାରେ ଆମକୁ ମାରଧର କରନା ।

ଆନଂଦ ଚଂଦ୍ର ପଢ଼ି

Digitized by srujanika@gmail.com

ପିସ୍ତଲଧାରୀ ଚୋର ପିସ୍ତଲଟାକୁ ଏପଟ ସେପଟ ହଲାଇ ଯାତ୍ରାପାର୍ଟିର ଖଳନାୟକ ପରି ବଡ଼ ବଡ଼ ଆଖି କାଢ଼ି କହିଲା- ତୁମର ବୁଦ୍ଧି ଅଛି ବୋଲି ମୁଁ ପ୍ରଥମରୁ ଜାଣି ପାରିଛି । ଅନ୍ୟମାନଙ୍କ ପରି ତୁମେ ଚିତ୍କାର କରି ପଡ଼ୋଶୀମାନଙ୍କୁ ଡାକିବାକୁ ଚେଷ୍ଟା କରିନା । ନଚେତ ଏତେ ବେଳକୁ ତୁମେ ଆଉ ତୁମ ସ୍ତ୍ରୀ ଦୁହେଁ ଆମଠୁ କିଛି ମାଡ ଖାଇ ସାରିଥାନ୍ତ । ପଡୋଶୀମାନେ ସମସ୍ତେ ନିଘୋଡ ନିଦରେ ଶୋଇଛନ୍ତି । ତୁମର ଚିତ୍କାର କାହାରି କାନରେ ପହଞ୍ଚିବ ନାହିଁ । କୌଣସି ପଡ଼ୋଶୀ ତୁମର ଚିତ୍କାର ଶୁଣିଲେ ବି କେହି ସାହାସ କରି ଆମର ସାମ୍ନା କରିବାକୁ ବାହାରିବେ ନାହିଁ । ତୁମେ ସେମାନଙ୍କୁ ଡାକିବା ପରି ବୋକାମି କରିନା । ତା'ଛଡ଼ା ତୁମେ ଆଉ ଗୋଟେ ବୁଦ୍ଧିମାନ କାମ ବି କରିଛ । ଆମେ କବାଟ ଭାଙ୍ଗି ପଶିବା ପୂର୍ବରୁ ତୁମେ କବାଟ ଖୋଲି ଦେଇଛ । ନଚେତ୍ ଭଙ୍ଗା କବାଟକୁ ତୁମକୁ ପୁଣି ଥରେ ତିଆରି କରିବାକୁ ପଡ଼ିଥାନ୍ତା । ଠିକ୍ ଅଛି । ଆମେ ଏ ଚାବିକାଠି ନେଇକା ନେଇ ତୁମ ଆଲ୍‌ମାରି ଖୋଲୁଛୁ । ତୁମେ ଆମ ସାଙ୍ଗରେ ଆସ । କୁହ କୋଉ ଆଲ୍‌ମାରିରେ ଟଙ୍କା ଆଉ ସୁନା ଅଛି ?

ସୁବ୍ରତ ଡରି ଡରି କହିଲେ- ମୁଁ ପ୍ରଥମରୁ କହିଛି, ତୁମେ ମୋ କଥା କିମ୍ବା ମୋ ସ୍ତ୍ରୀଙ୍କ କଥାକୁ ଆଦୌ ବିଶ୍ୱାସ କରିବ ନାହିଁ । ଏ ବେଡ୍‌ରୁମ୍‌ରେ ଥିବା ଦୁଇଟି ଆଲ୍‌ମାରି, ଡ୍ରଇଂ ରୁମ୍‌ରେ ଥିବା ଦୁଇଟି ଆଲମାରି, ଆଉ ଷ୍ଟଡିରୁମ୍‌ରେ ଥିବା ଦୁଇଟି ଆଲ୍‌ମାରି ସବୁ ତୁମ ଲୋକମାନେ ଖୋଲନ୍ତୁ । କେବଳ ଟଙ୍କା ସୁନା ନୁହେଁ, ଯାହା ଯାହା ମୂଲ୍ୟବାନ ପଦାର୍ଥ ଅଛି ସବୁ ନେଇଯିବେ ।

ପିସ୍ତଲଧାରୀ ଚୋର ପ୍ରଶ୍ନକଲା- ଏଥିରେ ତୁମର କିଛି ଚାଲାଖି ନାହିଁତ ? କିଛି ଚାଲବାଜି କରୁଥିବାର ଆମେ ଯଦି କିଛି ବି ସୁରାକ ପାଉଁ ତାହେଲେ ମୃତ୍ୟୁହିଁ ତାର ଏକମାତ୍ର ଶାସ୍ତି ।

ସୁବ୍ରତ କହିଲେ ଅସାଧୁ ବ୍ୟବସାୟୀ, ରାଜନୈତିକ ନେତା, ଇଂଜିନିୟର, କଣ୍ଟ୍ରାକ୍ଟର ଏମିତି ଅନେକ ଶ୍ରେଣୀର ଲୋକ ଅଛନ୍ତି ଯେଉଁମାନଙ୍କ ଭିତରୁ ଅଧିକାଂଶ କୋଟି କୋଟି ଟଙ୍କା ସ୍ପଷ୍ଟ ଦିନ ଆଲୁଅରେ ଲୁଟି ନିଅନ୍ତି । ସେମାନେ ଚୋରଙ୍କଠୁ ଅଧିକ କ୍ଷତିକାରକ ଓ ଭୟଙ୍କର । ତୁମ ଆଉ ତାଙ୍କ ଭିତରେ ଏତିକି ଫରକ ଯେ ତୁମେ ରାତିର ଅନ୍ଧକାରରେ ଲୁଚିଛପି ଚୋରିକର ସେମାନେ ଦିନର ଆଲୁଅରେ ଲୋକଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି ଲୁଟି ନିଅନ୍ତି । ତୁମେ ବ୍ୟକ୍ତି ବିଶେଷଙ୍କ ଧନ ଲୁଟିନିଅ, ସେମାନେ ଦେଶକୁ, ଜାତିକୁ ଲୁଟନ୍ତି ।

ଆନଂଦ ଚଂଦ୍ର ପଢ଼ି

Digitized by srujanika@gmail.com

ପିସ୍ତଲଧାରୀ ଚୋର ଚିତ୍କାର କଲା- ଭାଷଣ ଦେବା ବନ୍ଦ କର । ଆମ ପଛେ ପଛେ ଆସ୍ ।

ସୁବ୍ରତ କିଛି ଆପତ୍ତି ନ କରି ଚୋରର ପଛେ ପଛେ ଆଲ୍‌ମାରି ପାଖକୁ ଗଲେ । ଜଣେ ଚୋର ଆଲ୍‌ମାରିର ତାଲା ଖୋଲିଲା । ସେ ଆଲ୍‌ମାରିରେ ଥିବା ସମସ୍ତ ଜିନିଷ ତଳେ ଫିଙ୍ଗି ଦେଲା । ସେଥିରୁ ବାହାରିଲା ସୁବ୍ରତଙ୍କ ପ୍ୟାଣ୍ଟ, ସାର୍ଟ, ଧୋତି, ଚାଦର, ସ୍ୱିଟର, ଲୁଙ୍ଗି, ଗଞ୍ଜି, ପଶମ କମଳ, କାଶ୍ମୀର ଶାଲ୍ । ଆଲ୍‌ମାରିର ସିକ୍ରେଟ ଚାମ୍ବରରୁ ବାହାରିଲା ଗୋଟିଏ ପ୍ଲାଷ୍ଟିକ ଫାଇଲ୍ ଯେଉଁଥିରେ ଥିଲା ଟି.ଭି, ଫ୍ରିଜ, ସ୍କୁଟର, ୱାସିଙ୍ଗ ମେସିନ୍, ରେଡିଓ, ସିଲେଇ ମେସିନ୍ ଇତ୍ୟାଦିର ରସିଦ ଆଉ ୱାରେଣ୍ଟି କାର୍ଡ ।

ଦ୍ୱିତୀୟ ଆଲ୍‌ମାରି ଖୋଲା ହେଲା । ସେଥିରୁ ବାହାରିଲା ସୁମିତ୍ରାଙ୍କର କୋଡିଏ, ପଚିଶ ଖଣ୍ଡ ଶାଢ଼ି, ଶାୟା, ବ୍ଲାଉଜ୍, ପାଣିକାଚ, କମ୍ବଳ, ଶାଲ୍, କିଛି କପ୍ ,ପ୍ଲେଟ୍, କାଚଗ୍ଲାସ, ଷ୍ଟିଲ୍ ଓ ଚାଇନା କ୍ଲେର ବାସନ, ଦୁଇଟି ଭାନିଟି ବ୍ୟାଗ୍ । ସେଥିରୁ ଗୋଟିକରେ ଥିଲା ଶହେ ଟଙ୍କିଆ ନୋଟ୍ ସାତ ଖଣ୍ଡ, କିଛି ପାଞ୍ଚ ଟଙ୍କିଆ କଏନ୍ ଆଉ କିଛି ଅଚଳ ଓ ଦୁର୍ଲଭ ଭାରତୀୟ ମୁଦ୍ରା ଯଥା- କଣାପଇସା, ତମ୍ବାପଇସା, ପିତଳଦୋଣୀ, ଅଣୀ, ନୂଆ ଏକ ପଇସି, ଦୁଇ ପଇସି, ପାଞ୍ଚ ପଇସି, ଦଶ ପଇସି ଆଉ କିଛି ପୁରୁଣା କାଳିଆ କଉଡି ।

ସୁବ୍ରତ କହିଲେ- ମୁଁ ଚାକିରିରୁ ଅବସର ନେଇଚି । କେବଳ ପେନ୍‌ସନ ଉପରେ ନିର୍ଭର କରି ଚଳୁଛି । ଆଜି ମାସର ୨୫ ତାରିଖ । ଏଇ ସାତ ଶହ ଟଙ୍କା ମାସର ୨୫ ତାରିଖରେ ବାହାରିବା ମଧ୍ୟ ସମ୍ଭବ ନୁହେଁ । ଏତକ ସମ୍ଭବ ହୋଇଛି କେବଳ ମୋ ପତ୍ନୀ ସୁମିତ୍ରାଙ୍କ ଯୋଗୁଁ । ଦେହପା' ପାଇଁ ସିଏ କିଛି କିଛି ଟଙ୍କା ଘର ଖର୍ଚ୍ଚରୁ ବଞ୍ଚାଇ ସଂଚୟ କରି ଏତିକିରେ ପହଞ୍ଚିଛି ।

ସୁମିତ୍ରା ଷ୍ଟାଚ୍ୟୁଟିଏ ପରି ଠିଆ ହୋଇ ଘଟି ଯାଉଥିବା ଦୃଶ୍ୟକୁ କେବଳ ଅପଲକ ଆଖିରେ ଦେଖୁଥିଲେ । ତାଙ୍କ ଦୁଇ ଆଖି ଲୁହରେ ଭରି ଯାଇଥିଲା ।

ସୁବ୍ରତ ପୁଣି କହିଲେ- ମୁଁ ଲଜ୍ଜିତ ଯେ ତୁମମାନଙ୍କ ଆଗରେ ମୋ ଦାରିଦ୍ର୍ୟର ରୂପଟା ଖୋଲିଗଲା । କିନ୍ତୁ ମୁଁ ଯାହା ଜାଣେ ଚୋରମାନେ ଚୋରି କରିବାକୁ କୌଣସି ଲୋକଘରେ ପଶିବା ପୂର୍ବରୁ ତା'ର ଧନ ସଂପର୍କରେ ସଠିକ୍ ତଥ୍ୟ ସଂଗ୍ରହ କରିଥାନ୍ତି । ମୋର ସନ୍ଦେହ ହୁଏ ମୋ ଘରୁ ଚୋରି କରିବାର ନିଷ୍ପତ୍ତି ନେବା ପୂର୍ବରୁ ତୁମେମାନେ ସେମିତି କିଛି ଗ୍ରାଉଣ୍ଡ ୱାର୍କ କରି ନାହଁ । ଅବଶ୍ୟ ମୋ ବିଷୟରେ କିମ୍ବା ମୋର ଧନ,ସଂପତ୍ତି ବିଷୟରେ ତଥ୍ୟ ସଂଗ୍ରହ କରିବା ସେତେ ସହଜ ନୁହେଁ । କାରଣ ମୁଁ ଏଠିକୁ ନୂଆ



Digitized by srujanika@gmail.com

ଆସିଛି ।ଏଠି କାହା ସହିତ ମୁଁ କି ମୋ ପତ୍ନୀ କେହି ମିଶୁ ନା କି ବିଶେଷ କଥାବାର୍ତ୍ତା କରୁନା । ମୋ ଲେଖା, ପଢ଼ାକୁ ନେଇ ମୁଁ ବ୍ୟସ୍ତ । ସୁମିତ୍ରା ଘରକାମ, ଫୁଲବଗିଚା କାମ ଓ ସିଲେଇ କାମରେ ଲାଗିଥାନ୍ତି । ଆମ ଘରେ ଚାକର, ଚାକରାଣୀ ନାହାଁନ୍ତି । କାହାଠୁ କିଛି ତଥ୍ୟ ଜାଣିବାର ସୁବିଧା ନାହିଁ । ତେବେ ତୁମେ କୋଉ ତଥ୍ୟ ଉପରେ ଭିତ୍ତିକରି ମୋପରି ଗୋଟେ କିଛି ନଥିବା ଲୋକ ଘରେ ପଶିଲ ?

ପିସ୍ତଲଧାରୀ ଚୋର ଉତ୍‌କ୍ଷିପ୍ତ ହୋଇ କହିଲା- ସେ ସବୁ ଆମ ଟ୍ରେଡ୍ ସିକ୍ରେଟ୍ । ଆମକୁ ବୋକା ବନେଇବାକୁ ଚେଷ୍ଟା କଲେ ପରିଣାମ ଭୟଙ୍କର ହେବ । ଏଇ ପିସ୍ତଲ୍‌ରେ ଛଅଟା ଗୁଳି ଅଛି । ଦୁଇଟା ଗୁଳି ତୁମ ଦୁଇ ଜଣଙ୍କ ପାଇଁ ଯଥେଷ୍ଟ ।

ସୁବ୍ରତ ଏଥର ନିରବ ରହିଲେ । ସୁମିତ୍ରା ଆସି ତାଙ୍କ ଦେହକୁ ଆଉଜି ଠିଆ ହେଲେ । ତାଙ୍କ ଦେହ ଭୟରେ ଥରୁଥିଲା ।

ଚୋରମାନେ ଅନ୍ୟ ବଖରାରେ ଥିବା ସମସ୍ତ ଆଲ୍‌ମାରି ଖୋଲିଲେ । ସେଥିରେ ଥିଲା କେବଳ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା- ଉପନ୍ୟାସ, ଗଳ୍ପ, ନାଟକ, କବିତା, ପ୍ରବନ୍ଧ, ଭ୍ରମଣକାହାଣୀ ଓ ଶିଶୁ ସାହିତ୍ୟର ବିଭିନ୍ନ ବହି । ଅନେକ ମାସିକ, ଓ ତ୍ରୟମାସିକ ସାହିତ୍ୟ ପତ୍ରିକା ।

ପିସ୍ତଲଧାରୀ ଚୋର ବିରକ୍ତ ହେଲା- ଟଙ୍କା, ସୁନା କୋଉଠି ରଖିଛ କୁହ ? ଏ ଲୁଗାପଟା ଆଉ ବହିପତ୍ର ଆଲ୍‌ମାରି ଘାଣ୍ଟି ଆମକୁ କ'ଣ ମିଳିବ ?

ସୁବ୍ରତ ନମ୍ର କଣ୍ଠରେ ଜବାବ ଦେଲେ- ମୁଁ ଜଣେ ଲେଖକ । ମୋର ସାରା ଜୀବନ କେବଳ ସାହିତ୍ୟ ସାଧନାରେ କଟିଲା । ମୋ ଚାକିରି ଜୀବନରେ ମୁଁ ଟଙ୍କା ସୁନା ଅପେକ୍ଷା ସାହିତ୍ୟକୁ ଅଧିକ ଆଦର କରିଛି । ଏ ଷ୍ଟିଲ୍ ଆଲ୍‌ମାରି ଗୁଡ଼ିକରେ କେବଳ ନୁହଁ, ପ୍ରତି ବଖରାରେ ଥିବା ତାଢା ଉପରେ ଯେଉଁ କାଗଜ କାର୍ଟୁନ ଦେଖୁଛ ସେ ସବୁ ଗୁଡ଼ିକରେ ମଧ୍ୟ କେବଳ ସାହିତ୍ୟ ବହି ଆଉ ସାହିତ୍ୟ ପତ୍ରିକା ଭର୍ତ୍ତି । ମୋର ସମସ୍ତ ସମ୍ବଳରେ ମୁଁ କେବଳ ଓଡ଼ିଆ ସାହିତ୍ୟ ବହି ଆଉ ପତ୍ରିକା କିଣିଛି । ସେଥିପାଇଁ ଭୁବନେଶ୍ୱରରେ ନିଜର ରହିବା ପାଇଁ ଘର ଖଣ୍ଡେ ମଧ ତିଆରି କରିବାକୁ ମୁଁ ସମର୍ଥ ହୋଇନାହିଁ । ଗାଆଁରେ ମୋର ପୈତୃକ ଘର ଥିଲେ ମଧ ସାହିତ୍ୟ ସାଧନା ପାଇଁ ମୁଁ ଏଇ ସହରର ଭଡ଼ାଘରେ ପଡି ରହିଛି । ସାହିତ୍ୟ ମୋର ନିଶା । ସେଇ ନିଶାରେ ବିଭୋର ରହି ମୋ ଜୀବନର ସମସ୍ତ ସମ୍ବଳ ମୁଁ ତାରି ପଛରେ ଉଡ଼େଇ ଦେଇଛି ।

ମୁଖା ପିନ୍ଧା ଅନ୍ୟ ଚୋରମାନଙ୍କ ମଧ୍ୟରୁ ଜଣେ ଗର୍ଜନ କଲା- ନା, ଗୁରୁ ।ଏମିତି



Digitized by srujanika@gmail.com

ଭଦ୍ର ବ୍ୟବହାର କଲେ ଏ ଲୋକଠୁ କିଛି ମିଳିବ ନାହିଁ । ଏ ଲୋକ ମହା ଚାଲାଖ । ମାଡ ନ ହେଲେ ଇଏ ସତ ଉଗାଳିବ ନାହିଁ । ଯାଠି ଥାର୍ଡ ଡିଗ୍ରୀ ପ୍ରୟୋଗ କରିବାକୁ ପଡ଼ିବ ।

ଚୋରଟା ଲୁହା ଛଡଟାଏ ଉଞ୍ଚେଇ ସୁବ୍ରତ ଓ ସୁମିତ୍ରାଙ୍କ ଆଡକୁ ଚମକି ଆସିବା ବେଳେ ପିସ୍ତଲଧାରୀ ଚୋର ତାକୁ ଅଟକାଇ ଗୋଟେ କଡକୁ ନେଇ ଯାଇ ବୁଝାଇଲା- ନା, ଏ ସବୁର କିଛି ଆବଶ୍ୟକ ନାହିଁ । ସିଏ ହୁଏତ ସତ କହୁଛି- ସିଏ ଜୀବନର ସମସ୍ତ ସମ୍ବଳ ଖର୍ଚ୍ଚ କରି ବହି କିଣିଚି । ଜଣ ଜଣଙ୍କର ଏମିତି ଅଦ୍ଭୁତ ନିଶା ଥାଏ ।

ପିସ୍ତଲଧାରୀ ଚୋର ଏଥର ସୁବ୍ରତଙ୍କୁ କହିଲା- ମନେକର ମୁଁ ତୁମ କଥାକୁ ବିଶ୍ୱାସ କରିଗଲି । କିନ୍ତୁ ମୋର ସାଥୀମାନେ କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହଁନ୍ତି । ଆମ ହାତରେ ବି ଆଜି ଆଉ ଅଧିକ ସମୟ ନାହିଁ । ତମ ବିଷୟରେ ଅଧିକ ତଥ୍ୟ ସଂଗ୍ରହ କରିବା ଆମ ପକ୍ଷେ ସେମିତି କିଛି କଷ୍ଟକାମ ନୁହଁ । ତଥାପି ତୁମ ଉପରେ ବିଶ୍ୱାସ କରି ଆଜି ଆମେ ଚାଲିଯିବୁ । କିନ୍ତୁ ପରେ ଆମ ଅନୁସନ୍ଧାନରୁ ଯଦି ଜଣାପଡ଼େ ଯେ ତୁମେ ମିଛ କହିଛ, ସେଦିନ ଆମ ହାତରୁ ତୁମକୁ ସ୍ୱୟଂ ଭଗବାନ ଆସିଲେ ବି ରକ୍ଷା କରି ପାରିବେ ନାହିଁ । ହଉ ଛାଡ ସେକଥା । ତୁମ ପତ୍ନୀଙ୍କ ବେକ, ହାତ, ଓ କାନରେ ଯେତିକି ସୁନା ଗହଣା ଅଛି, ସେତକ ଦେଇଦିଅ ।

ସୁବ୍ରତଙ୍କ ମୁହଁ ଏଥର ହସ ହସ ଦିଶିଲା । ପିସ୍ତଲଧାରୀ ଚୋରକୁ ଛାଡି ଅନ୍ୟ ତିନି ଜଣ ଚୋର ପରସ୍ପରକୁ ମୁଖାର କଣାବାଟେ ଚାହିଁଲେ । ସେମାନଙ୍କର ମନେହେଲା ଏ ଲୋକଟା ସୁନ୍ଦର ନାଟକ କରି ଅଳ୍ପକେ ଖସିଗଲା ।

ପିସ୍ତଲଧାରୀ ଚୋର ଗର୍ଜନ କଲା- ଶୀଘ୍ର ସବୁ ଗହଣା ନିଜ ହାତରେ ଓହ୍ଲାଇ ଏଇଠି ଥୋଇଦିଅ । ନଚେତ୍ ଆମେ ତୁମ ଦେହରୁ ଜବରଦସ୍ତ ଉତାରି ଆଣିବୁ । ଆମ ପାଖରେ ସମୟ ଖୁବ୍ କମ୍ । ବି କୁଇକ୍ ।

ସୁବ୍ରତ ଓ ସୁମିତ୍ରା ପରସ୍ପରକୁ ଚାହିଁଲେ । ତାପରେ ଛେପ ଢୋକି ସୁବ୍ରତ କହିଲେ- ଦେଖନ୍ତୁ, ମୁଁ ଏପର୍ଯ୍ୟନ୍ତ ଯାହା କହିଛି, ସବୁ ସତ କହିଛି । ମୋତେ ଦୟାକରି ଅନୁମତି ଦେଲେ ମୁଁ ଆଉ ଗୋଟେ ସତକଥା ସ୍ୱୀକାର କରିବି ।

ପିସ୍ତଲଧାରୀ ଚୋର ଆଦେଶ ଦେବା କଣ୍ଠରେ କହିଲା- ଆଉ ବିଶେଷ ନାଟକ ନ କରି ଯାହା କହିବା କଥା ଶୀଘ୍ର କୁହ ।

ସୁବ୍ରତ କହିଲେ- ମୋ ପତ୍ନୀଙ୍କ ବେକ, ହାତ ଓ କାନରେ ଯେଉଁ ଗହଣା ଦେଖି



Digitized by srujanika@gmail.com

ଆପଣ ସୁନା ଗହଣା ବୋଲି ଧାରଣା କରୁଛନ୍ତି, ତାହା ଠିକ୍ ସୁନା ପରି ଦିଶୁଥିଲେ ବି ସୁନା ନୁହଁ । ସାଇ, ପଡିଶା, ବନ୍ଧୁ, ବାନ୍ଧବ, ସମସ୍ତଙ୍କର ଆଖି ମଧ୍ୟ ଧୋକାଖାଇ ଯାଇଛି । ସେମାନେ ବି ଏ ସବୁକୁ ଅସଲି ସୁନା ଗହଣା ବୋଲି ମନେ କରନ୍ତି । ଏ ସବୁ ଅସଲି ନା ନକଲି ସୁନାର ଗହଣା ବୋଲି ସେମାନେ ଆମକୁ କେହି ପଚାରି ନାହାଁନ୍ତି । ଏ ବିଷୟରେ ଆମେ ଏ ପର୍ଯ୍ୟନ୍ତ କାହାକୁ କିଛି କହିବା ଆବଶ୍ୟକ ପଡ଼ିନାହିଁ । ଆଜି ଏଠି ଆବଶ୍ୟକ ପଡ଼ିବାରୁ କହିବାକୁ ବାଧ୍ୟ ହେଉଛି । ଏବେ ତୁମେମାନେ ଏ ସବୁକୁ ଅସଲି ସୁନାର ଗହଣା ଭାବି ନେଇଯିବ, କିନ୍ତୁ ପରେ ନିଶ୍ଚୟ ପରୀକ୍ଷା କଲେ ଜାଣିବ ଏ ସବୁ ନକଲି ବୋଲି । ସେତେବେଳେ ତୁମେମାନେ ଆମ ଉପରେ ନିଶ୍ଚୟ ରାଗିବ । ମୁଁ ସତକଥା ସ୍ୱୀକାର କରିଦେଲି । ଏଣିକି ତୁମ ଇଚ୍ଛା ।

ଚୋର ଚାରି ଜଣ ସେମାନଙ୍କ ମୁଖା କଣା ଦେଇ ପରସ୍ପରକୁ ଚାହିଁଲେ ଓ ବିସ୍ମିତ ହେଲେ । ତାଙ୍କ ସମଗ୍ର ଚୋରି ଜୀବନରେ ଏମିତି ଗୋଟେ ଅଦ୍ଭୁତ ଲୋକ ଘରକୁ ସେମାନେ କେବେ ଚୋରି କରିବାକୁ ପଶି ନଥିଲେ ।

କାନ୍ଥ ଘଣ୍ଟାରେ ଢଙ୍ଗ୍‌ଢାଙ୍ଗ୍ ଶବ୍ଦ କରି ସକାଳ ପାଞ୍ଚଟା ବାଜିଲା । ଚୋର ଚାରିଜଣ ସକାଳ ହେବାର ସଂକେତ ପାଇ ଖପ୍‌ଖାପ୍ ପାଚେରୀ ଡେଇଁ ପଳାଇଗଲେ ।

ଉପର ଲିଖିତ କଥାଟି ଥିଲା ଏକ କ୍ଷୁଦ୍ରଗଳ୍ପ । ବିଶିଷ୍ଟ ଗାଳ୍ପିକ ସୁବ୍ରତଙ୍କୁ ବହୁବାର ଫୋନ୍ କରିବା ପରେ ସିଏ ଏଇ ଗଳ୍ପଟି ଡାକରେ ପଠାଇ ଥିଲେ । ମାସିକ ସାହିତ୍ୟ ପତ୍ରିକା 'ପ୍ରାରମ୍ଭ'ର ସଂପାଦକ ମହେନ୍ଦ୍ର ପ୍ରସାଦ ସାମଲ ଲଫାପାଟି ଖୋଲି ଗଳ୍ପଟି ପାଠକରି ସାରି ମନେ ମନେ ହସି ନିଜକୁ ନିଜେ କହିଲେ- ଇଏ ହୁଏତ ଗାଳ୍ପିକ ସୁବ୍ରତଙ୍କ ନିଜ ଜୀବନର ଗୋଟେ ଘଟଣା କିମ୍ବା ଇଏ ତାଙ୍କ କଳ୍ପନାର ଏକ କାହାଣୀ ତାହା ସଠିକ୍ ଭାବେ କହି ହେବନି । ଗଳ୍ପଟି ପଢ଼ିବା ପରେ ମନେ ହେଉଛି ଗାଳ୍ପିକ ତାଙ୍କ କଥା ଚାତୁରୀରେ ଚୋରକୁ ଚିତ୍‌କରି ଦେଇଛନ୍ତି । ଅନ୍ୟ ଦିଗରୁ ଚିନ୍ତାକଲେ ମନେହୁଏ, ଗାଳ୍ପିକଙ୍କୁ ବାରମ୍ବାର ଫୋନ୍ କରିବାରୁ ଏମିତି ଗୋଟେ ଗଳ୍ପ ଲେଖି ମୋତେ ସିଏ ଧରେଇ ଦେଇଛନ୍ତି ।

ଗଳ୍ପଟି ଯଦି ଭଲ ନ ହୋଇଥାଏ, ତଦ୍ୱାରା ପତ୍ରିକାର ବା ପତ୍ରିକା ସଂପାଦକଙ୍କର ଯେତିକି କ୍ଷତି ହୁଏ, ତାଠୁ ବେଶି କ୍ଷତି ହୁଏ ସଂପୃକ୍ତ ଗାଳ୍ପିକଙ୍କର । ଭଲ ଗଳ୍ପଟି ପ୍ରକାଶ ପାଇଲେ ଗାଳ୍ପିକଙ୍କୁ ଯେତିକି ସୁନାମ ଦିଏ, ତାଠୁ ଢେର ଅଧିକ ବଦନାମ୍ ମିଳେ ଖରାପ ଗଳ୍ପଟିଏ ପ୍ରକାଶିତ ହେଲେ । ଏକଥା ସବୁ ଗାଳ୍ପିକ ହୁଏତ ଠିକ୍ ରୂପେ ବୁଝନ୍ତି ନାହିଁ ।

ସଂପାଦକ ମହେନ୍ଦ୍ର ପ୍ରସାଦ ସାମଲ ସେ ଗଳ୍ପଟିକୁ 'ପ୍ରାରମ୍ଭ' ପତ୍ରିକାରେ ପ୍ରକାଶ



Digitized by srujanika@gmail.com

କଲେ । ଗଳ୍ପଟି ଉପରେ କିଛି ପାଠକଙ୍କଠାରୁ ମତାମତ ମିଳିଲା । ସବୁଠୁ ଉତ୍କୃଷ୍ଟ ମତାମତ ସମ୍ବଳିତ ପାଠକଙ୍କର ଚିଠିଟି ସଂପାଦକ 'ପ୍ରାରମ୍ଭ' ପତ୍ରିକାର ପରବର୍ତ୍ତୀ ସଂଖ୍ୟାରେ ଗୋଟିଏ ବକ୍ସ ଭିତରେ ପ୍ରକାଶ କଲେ । ସେ ଚିଠିଟି ଥିଲା-ମହାଶୟ !ନମସ୍କାର ! 'ପ୍ରାରମ୍ଭ'ର ଗତ ସଂଖ୍ୟାରେ ବିଶିଷ୍ଟ ଗାଳ୍ପିକ ସୁବ୍ରତ ମହାପାତ୍ରଙ୍କ ଗଳ୍ପ 'ଚୋର ସହିତ ମୁହାଁମୁହିଁ' ଥରେ ନୁହେଁ, ମୁଁ ତିନି ତିନି ଥର ପଢ଼ିଛି । ଗଳ୍ପଟି ଭଲ ହୋଇଛି ବୋଲି ଯେ ମୁଁ ଗଳ୍ପଟିକୁ ଏତେଥର ପଢ଼ିଲି, ତାହା ଠିକ୍ ନୁହେଁ । ଗଳ୍ପରେ ଥିବା ଗାଳ୍ପିକଙ୍କ ଉଦ୍ଦେଶ୍ୟକୁ ମୁଁ ଠିକ୍ ଭାବେ ଧରି ପାରିଲି ନାହିଁ ବୋଲି ଗଳ୍ପଟିକୁ ବାରମ୍ବାର ପଢ଼ିଛି । ଗଳ୍ପରେ ଗାଳ୍ପିକ କ'ଣ କହିବାକୁ ଚାହିଁଛନ୍ତି ? ସେ କହିବାକୁ ଚାହିଁଛନ୍ତି କି ସାହିତ୍ୟିକମାନେ ସର୍ବଦା ସତ କୁହନ୍ତି ? ଏପରିକି ଚୋର ଆଗରେ ମଧ୍ୟ ସତ କହି ତାର ବିଶ୍ୱାସ ଜିତି ପାରନ୍ତି ? କିନ୍ତୁ ମୁଁ ଜାଣେ ହାତୀର ଦୁଇ ପ୍ରକାର ଦାନ୍ତ ଥାଏ । ଗୋଟିଏ ପ୍ରକାର ଦାନ୍ତ ଦେଖାଇବା ପାଇଁ, ଆଉ ଗୋଟିଏ ପ୍ରକାର ଦାନ୍ତ ଖାଦ୍ୟ ଖାଇବା ପାଇଁ । ହାତୀଦାନ୍ତ ଯେଉଁ ଦୁଇଟା ବାହାରକୁ ବାହାରିଥାଏ, ତାହା କେବଳ ଅନ୍ୟମାନଙ୍କୁ ଦେଖାଇବା ପାଇଁ । ସେଥିରେ ସିଏ କିଛି ବି ଖାଇ ପାରେ ନାହିଁ । ହାତୀ ଯେଉଁ ଦାନ୍ତ ସାହାଯ୍ୟରେ ଏତେ ବଡ଼ ବଡ଼ ବରଡାଳ ଚୋବାଇ ଖାଏ, ସେ ଦାନ୍ତ ତା' ପାଟି ଭିତରେ ଲୁଚିକରିଥାଏ । ସେମିତି ସାହିତ୍ୟିକମାନଙ୍କ ମଧ୍ୟରୁ ଅଧିକାଂଶ ତାଙ୍କ ସାହିତ୍ୟରେ ହୁଏତ ସତ୍ୟ କହିଥାନ୍ତି, କିନ୍ତୁ ତାଙ୍କ ଭିତରୁ ଅନେକ ଦୈନନ୍ଦିନ ଜୀବନରେ କଞ୍ଚା ମିଛର ଆଶ୍ରୟ ନିଅନ୍ତି କାରଣ ମିଛ, ମାଛ ପରି ସ୍ୱାଦିଷ୍ଟ ।

ଗଳ୍ପରେ ବର୍ଣ୍ଣିତ ଗାଳ୍ପିକଙ୍କ ପରି ସବୁ ସାହିତ୍ୟିକ ତାଙ୍କ ଜୀବନର ସମସ୍ତ ସମ୍ବଳ ଖର୍ଚ୍ଚ କରି କେବଳ ସାହିତ୍ୟ ବହି ଓ ପତ୍ରିକା କିଣନ୍ତି- ଗଳ୍ପରେ ଯଦି ଗାଳ୍ପିକ ଏଇ କଥା କହିବାକୁ ଚାହିଁଥାନ୍ତି, ତେବେ ମୁଁ କହିବି ଏହା ସତ୍ୟର ଅପଳାପ ।

ଏ ଗଳ୍ପରେ ଗାଳ୍ପିକଙ୍କର ଆଉ ଗୋଟିଏ ଉଦ୍ଦେଶ୍ୟ ଥିବା ପରି ମୋର ମନେ ହେଉଛି । ଗାଳ୍ପିକ ଏ ଗଳ୍ପରେ କହିବାକୁ ଚାହିଁଛନ୍ତି କି ଚାଲାଖିରେ ଚୋରକୁ ଚିତ୍ କରି ଦେବାପରି ସମାଜର ସବୁ ଶ୍ରେଣୀର ଲୋକଙ୍କୁ ବୁଦ୍ଧି ଖେଳରେ ପରାସ୍ତ କରିବାର ସାମର୍ଥ୍ୟ ଲେଖକମାନଙ୍କର ଅଛି ? ଏକଥା କେତେଦୂର ସତ ତାହା କାହାକୁ ଅବିଦିତ ନୁହେଁ ।

ତେଣୁ ଏ ସଂପର୍କରେ ଗାଳ୍ପିକଙ୍କ ସ୍ପଷ୍ଟିକରଣ ଆଗାମୀ ସଂଖ୍ୟା 'ପ୍ରାରମ୍ଭ' ପତ୍ରିକାରେ ସଂପାଦକ ପ୍ରକାଶିତ କରିବାକୁ ଅନୁରୋଧ ଜଣାଇ ରହୁଛି ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ସମ୍ପର୍କ

-ନା, ମୁଁ ଆଉ ତୋ ବୋଉ କେହି ତୋ ସାଙ୍ଗରେ ଦିଲ୍ଲୀ ଯାଇ ପାରିବୁ ନାହିଁ । ମୁଁ ଗଲେ ତୋ ବୋଉ ଏଠି ଏକୁଟିଆ ଚଳି ପାରିବ ନାହିଁ, କି ତୋ ବୋଉ ଗଲେ ମୁଁ ହାତରେ ରୋଷେଇ କରି ଖାଇ ପାରିବି ନାହିଁ । ଆମେ ଦୁହେଁ ଗଲେ ଏ ଘରର ସବୁ ଜିନିଷରେ ଉଈ ଲାଗିଯିବେ । ଚୋର ପଶି ସବୁ ନେଇଯିବେ । ତୁ ଦିଲ୍ଲୀରେ ତୋ ସ୍ତ୍ରୀ ଆଉ ପୁଅକୁ ଧରି ଭଲରେ ଥାଆ । ଆମେ ଦୁହେଁ ଏଠି ଭଲରେ ଅଛୁ । ବର୍ଷରେ ଥରେ ଦୁଇ ଥର ଆସି ଆମକୁ ଦେଖି ଯାଉଥିବୁ, ସପ୍ତାହରେ ଥରେ ଫୋନ୍‌କରି ତମ ଭଲମନ୍ଦ କଥା ଜଣାଉ ଥିବୁ ଆଉ ଆମ ଦେହ ପା' କଥା ବୁଝୁଥିବୁ ।

ବୃନ୍ଦାବନ ଏତକ କହିସାରି ସ୍ତ୍ରୀ ଅପରାଜିତାଙ୍କ ମୁହଁକୁ ଚାହିଁଲେ । ଆଜିକାଲି ନାରୀମାନେ ସବୁଠି, ସବୁକଥାରେ ସ୍ୱାଧୀନତା ଓ ସ୍ୱାଭିମାନ ଖୋଜୁଛନ୍ତି । ତାଙ୍କର ଯଦି ଅନ୍ୟ କିଛି ଇଚ୍ଛା ଥାଏ, ସିଏ ବ୍ୟକ୍ତ କରି ପାରନ୍ତି ।

କିନ୍ତୁ ଅପରାଜିତା କିଛି ନ କହି ଚୁପ୍ ରହିଲେ । ସିଏ ତାଙ୍କ ସ୍ୱାମୀଙ୍କ କଥା ସହିତ ଏକମତ । ଦାମ୍ପତ୍ୟ ଜୀବନର ଆରମ୍ଭ ଦିନଠୁ ଆଜିର ଏ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ସବୁବେଳେ ଅପରାଜିତା ସ୍ୱାମୀଙ୍କ କଥାରେ କଥା ଆଉ ପାଦରେ ପାଦ ମିଳାଇ ଚାଲି ଆସିଛନ୍ତି ।

ପୁଅ ମନୋଜ କହିଲା - ବାପା ! ଆପଣ ପାଞ୍ଚବର୍ଷ ହେଲା ସରକାରୀ ଚାକିରିରୁ ଅବସର ନେଲେଣି । କିନ୍ତୁ ବୋଉର ତା' କାମରୁ ଅବସର ନାହିଁ । ଆଜି ଯାଏ ସିଏ ରୋଷେଇ କରୁଚି । ତା' ହାତରୁ ହାଣ୍ଡି ଡେକ୍‌ଚି, କରଚୁଲି ଖସିଲା ନାହିଁ । ଅନ୍ତତଃ ବାପା, ମାଆଙ୍କୁ ଷାଠିଏ ବର୍ଷ ହେଲାପରେ ସେମାନେ ପୁଅ,ବୋହୂଙ୍କୁ ସମସ୍ତ ଦାୟିତ୍ୱ ଦେଇ ନିଜେ ମୁକ୍ତ ଜୀବନ କାଟିବା କଥା । ଆମେ ସମସ୍ତେ ଗୋଟିଏ ଜାଗାରେ ଏକାଠି ରହିଲେ ଯୋଉ ପାରିବାରିକ ସୁଖ ମିଳେ ତାହା ଏମିତି ଏକୁଟିଆ ରହିଲେ ମିଳେନାହିଁ । ଆପଣ ଭୁବନେଶ୍ୱର ଘର ଆଉ ଏଠିକା ଜିନିଷର ମୋହ ଛାଡ଼ନ୍ତୁ । ଚାଲନ୍ତୁ ଦିଲ୍ଲୀରେ ଏକାଠି ରହିବା । ମିଶିକି ରହିଲେ ଆମକୁ ଆମ ବାପା, ମାଆଙ୍କ ସ୍ନେହ, ଆଶୀର୍ବାଦ, ଶୁଭେଚ୍ଛା ମିଳିବ, ଆପଣଙ୍କୁ ଆପଣଙ୍କ ପୁଅ ବୋହୂଙ୍କ ସେବା, ଆଦର, ସମ୍ମାନ ମିଳିବ, ନାତିର ଭଲ ପାଇବା ମିଳିବ ଆଉ ନାତିକୁ ତା ଜେଜେବାପା, ଜେଜିମାଆଙ୍କ କୋଳ

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ମିଳିବ ।

ବୋହୂ ମୀନାକ୍ଷୀ କହିଲା- ହଁ ବାପା ! ଆମେ ସ୍ଥିର କରିକି ଆସିଚୁ ଏଥର ଆପଣମାନଙ୍କୁ ସାଙ୍ଗରେ ନେଇକି ଯିବୁ । ଆପଣଙ୍କ ଏ ବୟସରେ ଆମେ ଆପଣମାନଙ୍କୁ ଭୁବନେଶ୍ୱରରେ ଛାଡ଼ି ଦିଲ୍ଲୀରେ ରହିବାକୁ ସତରେ ଭାରି କଷ୍ଟ ଲାଗୁଛି । ଆମେ ଆପଣମାନଙ୍କ ସେବା କରିବାର ସୁଯୋଗ ପାଇଲେ ଖୁସିହେବୁ । ଆମେ ବି ନିଃସ୍ୱାର୍ଥପର ଭାବେ ଏକଥା କହୁ ନାହୁଁ, ଏଥିରେ ଆମର ସ୍ୱାର୍ଥ ଅଛି । ଆପଣମାନଙ୍କ ସେବାକଲେ ଆମକୁ ଯେଉଁ ଆଶୀର୍ବାଦ ମିଳିବ ତାହା ଆମେ ଅନ୍ୟ କୌଣସିଠୁ ପାଇବୁ ନାହିଁ । ଯେତେ ଠାକୁର ପୂଜିଲେ କି ଯେତେ ତୀର୍ଥ ଭ୍ରମଣ କଲେ କିମ୍ବା ଯେତେ ଦାନ ଧର୍ମ କଲେ ମଧ୍ୟ ଆମେ ତାହା ଆମକୁ ମିଳିବ ନାହିଁ ।

ଅପରାଜିତା ହସି ହସି ଉତ୍ତର ଦେଲେ - ଆମ ସ୍ନେହ, ଶ୍ରଦ୍ଧା କିମ୍ବା ଆଶୀର୍ବାଦ ତମେ ଆମର ସେବାକଲେ ପାଇବ, ସେବା ନ କଲେ ମଧ୍ୟ ପାଇବ । ବାପା, ମାଆଙ୍କ ପାଖରେ ଯାହାଥାଏ ସେସବୁକୁ ଉତ୍ତରାଧିକାର ବଳରେ ପୁଅ ବୋହୂ ପାଇବାର ହକ୍‌ଦାର । ଆମେ ଏ ଜାଗା ଛାଡ଼ି ତୁମ ସାଙ୍ଗରେ ଯିବାକୁ ଆମର ଇଛାଥିଲେ ବି ଆମେ ଆଦୌ ଯାଇପାରିବୁ ନାହିଁ । ତୁମ ବାପାଙ୍କର ତିନି ଭଉଣୀ । ସେମାନଙ୍କ ସହିତ ସମ୍ପର୍କ ରଖିବାକୁ ହେଉଛି । ରଜ, ସାବିତ୍ରୀବ୍ରତ, ପ୍ରଥମାଷ୍ଟମୀ ପରି ପର୍ବରେ ତାଙ୍କ ପାଖକୁ କିଛି ପଠାଇବା ଆଉ ସେମାନଙ୍କ ପୁଅ, ଝିଅଙ୍କ ବାହାଘରକୁ ଯିବା, ଏସବୁ କାମ ଏଯାଏ ତୁମ ବାପା କରୁଚନ୍ତି । ଆମେ ଯଦି ତୁମ ସହିତ ଦିଲ୍ଲୀ ଚାଲିଯାଉ ସେସବୁ ସମ୍ପର୍କ କଟିଯିବ । ଆମେ ଅସାମାଜିକ ହୋଇଯିବୁ ଆଉ ଆମ ଗାଆଁଘର, ଗାଆଁ ଜମି ଓ ଜମିରୁ ଫସଲ ଅମଳ ଏସବୁ କିଏ ଦେଖିବ? ମଣିଷ କେବଳ ତା ପୁଅ ବୋହୂର ନୁହଁ କି ଝିଅ ଜ୍ୱାଇଁର ନୁହଁ । ସିଏ ଏମିତି ଅନେକ ସମ୍ପର୍କର ଗୋଟେ ଶକ୍ତ ଦଉଡ଼ିରେ ଛନ୍ଦି ହୋଇ ରହିଥାଏ । ସେମିତି ଛନ୍ଦି ହୋଇ ରହିବାରେ ମଣିଷ କଷ୍ଟ ନପାଇ ଆନନ୍ଦ ପାଏ ।

ମନୋଜ ଖୁବ୍ ନମ୍ର ଭାବରେ କହିଲା-ବାପା! ମୁଁ ଗୋଟେ କଥା କହିବାକୁ ଇଛା କରୁଛି, କିନ୍ତୁ ସେ କଥାଟା ଆପଣଙ୍କୁ କେମିତି ଲାଗିବ ମୁଁ ଜାଣେନା । ତେବେ ମୁଁ କିଛି କଥା କହିବାକୁ ଚାହୁଁଚି, ସେଥିପାଇଁ ମୁଁ ଆପଣଙ୍କଠୁ ଅନୁମତି ମାଗୁଚି ।

ବୃନ୍ଦାବନ ହସି ହସି କହିଲେ- ବାପାକୁ ପୁଅ କିଛି କହିବ ସେଥିପାଇଁ ଅନୁମତିର କ'ଣ ଆବଶ୍ୟକ ? ତୁ ଯାହା କହିବାକୁ ଚାହୁଁଛୁ ମନଖୋଲି କହ । ବାପା ମାଆଙ୍କ ପାଖରେ ହୃଦୟ ଖୋଲା କଥା କହିବା ପାଇଁ କୌଣସି ପୁଅ କି ଝିଅ କୁଣ୍ଠିତ ନହେବା



Digitized by srujanika@gmail.com

କଥା । କହ କ'ଣ କହିବାକୁ ଚାହୁଁଛୁ ?

ମନୋଜ ଛେପ ଢ଼ୋକି କହିଲା- ଆଜି ଆମ ପିଢ଼ି ଆଗରେ ଗୋଟେ ନୂଆ ସମସ୍ୟା ଦେଖା ଦେଇଚି । ଆମ ପିଢ଼ିର ଯୁବକମାନଙ୍କ ପାଇଁ ଆମ ରାଜ୍ୟରେ ଭଲ ଚାକିରି ମିଳୁନାହିଁ । ତେଣୁ ଆମକୁ ଦିଲ୍ଲୀ, ମୁମ୍ବେଇ, ହାଇଦ୍ରାବାଦ, ବାଙ୍ଗାଲୋର, ଚେନ୍ନାଇ ପରି ମେଟ୍ରୋସିଟିରେ ଚାକିରି କରିବାକୁ ହେଉଚି । କାହାକୁ କାହାକୁ ଦେଶଛାଡ଼ି ସୁଦୂର ଲଣ୍ଡନ, ଆମେରିକା, ଅଷ୍ଟ୍ରେଲିଆ କି ଜାପାନ ଯିବାକୁ ପଡୁଛି । ଯେତେ ଡାକିଲେ ବି ଆମ ବାପା, ମାଆମାନେ ଆମ ସହିତ ଏସବୁ ଦୂର ସହରରେ ରହିବାକୁ ଯାଉ ନାହାଁନ୍ତି । କିନ୍ତୁ ଆମ ଚାରିପାଖର ମଣିଷ, ଆମ ବାପା, ମାଆଙ୍କ ସାଙ୍ଗସାଥୀ, ବନ୍ଧୁବାନ୍ଧବ ଆଉ ଆମ ଗାଆଁ ଲୋକମାନେ ଆମ ଚରିତ୍ରକୁ କଦର୍ଯ୍ୟ ଭାବେ ଚିତ୍ରଣ କରୁଛନ୍ତି । ସେମାନେ କହୁଛନ୍ତି- ନିଜ ସ୍ତ୍ରୀ ପିଲାଙ୍କୁ ନେଇ ଦିଲ୍ଲୀ, ବମ୍ବେରେ ରହିଲା । ବୁଢ଼ା ବାପା, ମାଆ ଯିଏ ତାକୁ ଜନ୍ମଦେଇ ପାଠ ପଢ଼େଇ ମଣିଷ କରିଥିଲେ, ତାକୁ ନେଇ ସୁନେଲି ସ୍ୱପ୍ନ ଦେଖିଥିଲେ ସେମାନେ ଅରକ୍ଷ ଭାବେ ଓଡ଼ିଶାରେ ପଡ଼ିଛନ୍ତି । ଏମିତିକି ବାପା, ବୋଉଙ୍କ ଦେହ ଖରାପ ଖବର ପାଇ ତାଙ୍କ ପୁଅ ଘରେ ପହଞ୍ଚିବା ବେଳକୁ ସେମାନଙ୍କ କାଳ ହୋଇଯାଉଛି । ଆଉ ଯଦି କୋଉ ପୁଅ ପହଞ୍ଚୁଛି ସିଏ ଶେଷ ମୁହୂର୍ତ୍ତରେ ପହଞ୍ଚୁଛି । ସେତେବେଳକୁ ତା ବାପା, ବୋଉ ତାକୁ ଦେଖି ବି ଚିହ୍ନିବା ଅବସ୍ଥାରେ ନଥାନ୍ତି । ଆଉ ଯଦି ପୁଅ ଲଣ୍ଡନ ଆମେରିକା କିମ୍ୱା ଅଷ୍ଟ୍ରେଲିଆ ପରି ବିଦେଶ ମାଟିରେ ଥାଏ, ସିଏ ଖବର ପାଇ ଆସି ପହଞ୍ଚିବା ବେଳକୁ ବାପା, ବୋଉଙ୍କ ଶବଦାହ ସରି ଯାଇଥାଏ । ମୁଖାଗ୍ନି ଦେବାର ଦାୟିତ୍ୱ ତୁଲାଇବା ବି ତା' ପକ୍ଷେ ସମ୍ଭବ ହୁଏନା । ମୋର ଅନେକ ସାଙ୍ଗ ଏଇ ଦୋଷରେ ଅପରାଧୀ । ମୁଁ ଆମ ସାହିତ୍ୟର ଅନେକ ଗଳ୍ପ, ଉପନ୍ୟାସ ଓ ନାଟକ ପଢ଼ିଚି । ସେଥିରେ ଆମ ପିଢ଼ିର ମଣିଷମାନଙ୍କୁ ସ୍ୱାର୍ଥପର, ସ୍ତ୍ରୀ ବୋଲକରା ଭାବରେ ଚିତ୍ରଣ କରା ଯାଇଛି । କିନ୍ତୁ ପ୍ରକୃତ ଚିତ୍ରଟା ଆଜି ସେଇଆ ନୁହଁ । ବାପା, ବୋଉମାନେ ତାଙ୍କ ଘର, ତାଙ୍କ ସମ୍ପତ୍ତି ଆଉ ତାଙ୍କ ଗାଆଁ ଜମି, ଗାଆଁ ଘରକୁ ଛାଡ଼ି ଓଡ଼ିଶା ବାହାରେ ଥିବା ପୁଅ,ବୋହୂଙ୍କ ପାଖକୁ ଯିବାକୁ ଆଦୌ ଆଗ୍ରହୀ ନୁହନ୍ତି । ସେଠି ତାଙ୍କୁ ସାହି, ପଡ଼ିଶା, ସାଙ୍ଗ, ସାଥୀ ମିଳିବେ ନାହିଁ । ଚିହ୍ନା ମୁହଁ ମଲାଏ ମିଳିବ ନାହିଁ । ପୁଅ,ବୋହୂଙ୍କ ସଂସାରରେ ତାଙ୍କ ଶାସନ ଚାଲିବ ନାହିଁ, ସ୍ୱାଧୀନତା ରହିବ ନାହିଁ । ଦେହ ପା'ରେ ବାଧିକି ପଡ଼ିଲେ ବନ୍ଧୁ ବାନ୍ଧବଙ୍କ ମୁହଁ ଦେଖିବାର ସୁଯୋଗ ସେମାନେ ପାଇବେ ନାହିଁ, ଶେଷରେ ଗାଆଁ ମଶାଣି କି ପୁରୀ ସ୍ୱର୍ଗଦ୍ୱାରରେ ତାଙ୍କ ଜୁଇ ଜଳି ପାରିବ ନାହିଁ । ଅଜଣା, ଅଶୁଣା, ଅଚିହ୍ନା ଲୋକଙ୍କ



Digitized by srujanika@gmail.com

ମେଳରେ ତାଙ୍କ ପାଇଁ ବଞ୍ଚିବା ଯେତିକି କଷ୍ଟ ମରିବା ମଧ ସେତିକି ଯନ୍ତ୍ରଣା ଦାୟକ ।

ବୃନ୍ଦାବନ ସବୁ ଶୁଣି ସାରି ଗମ୍ଭୀର ଦିଶିଲେ ଆଉ କହିଲେ- ମନୋଜ ! ତୁ ଯାହା କହିଲୁ ଏଇଟା ସତ୍ୟ, କିନ୍ତୁ ଏକମାତ୍ର ସତ୍ୟ ନୁହଁ । ଯାର ଆଉ ଗୋଟେ ଦିଗ ଅଛି । ଆଜିର ସମୟ ଆଉ ସାମାଜିକ ଅବସ୍ଥା ଯାହା ହେଇଚି ଆଜିକୁ ପଚାଶ ବର୍ଷ ତଳେ ଏ ଅବସ୍ଥା ଆମ ଦେଶରେ ନ ଥିଲା । ସେତେବେଳେ ଗାଆଁକୁ ଆଉ କୃଷିକ୍ଷେତ୍ରକୁ କେନ୍ଦ୍ରକରି ସମସ୍ତଙ୍କ କର୍ମକ୍ଷେତ୍ର ଥିଲା । ଜେଜେବାପା, ଜେଜେମାଆ, ବାପା, ବୋଉ, ପୁଅ, ବୋହୂ, ନାତି, ନାତୁଣୀ ସମସ୍ତେ ଗୋଟିଏ ରୋଷେଇରେ ଖାଉଥିଲେ, ଗୋଟିଏ ଛାତ ତଳେ ରହୁଥିଲେ । ଏବେ ସେ ଚିତ୍ର ବଦଳି ଯାଇଛି । ତେଣୁ କେହି କାହାକୁ ଦୋଷ ଦେବା ଉଚିତ ନୁହଁ । ଏବେ ଯିଏ ଯେଉଁଠି ଅଛି, ସିଏ ସେଇଠି ଥାଇ ଅନ୍ୟମାନଙ୍କ ସହିତ କେମିତି ସୁସମ୍ପର୍କ ରଖିପାରିବ ସେ ଉପାୟ ଆମକୁ ଆବିଷ୍କାର କରିବାକୁ ପଡ଼ିବ । ତୁ ଏଥର ଦିଲ୍ଲୀ ଯା । ମୋତେ ଟିକେ ଭାବିବାକୁ ସମୟ ଦେ । ମୋର ମନେହୁଏ ଏ ଅର୍ଗଳିରୁ ମୁକୁଳିବାର ବାଟ ମୁଁ କାଢ଼ି ପାରିବି । ତୁ ଆଉ ବୋହୂ ମଧ ଚିନ୍ତାକର ତୁମେ ଯଦି କିଛି ଉପାୟ ଆବିଷ୍କାର କରିପାରିବ, ତାହେଲେ ମୋତେ ଫୋନ୍‌ରେ ଜଣାଇବ । କିଛି କଥା ଅସମ୍ଭବ ନୁହଁ, ସବୁ କଥାର ସମାଧାନ ଅଛି । କେବଳ ଆମକୁ ସେ ବାଟଟି ଖୋଜିକି ବାହାର କରିବାକୁ ହେବ । ଆନ୍ତରିକତାର ସହିତ ଖୋଜିଲେ ନିଶ୍ଚୟ ମିଳିବ ।

ସେଦିନର କଥାବାର୍ତ୍ତା ସେଇଠି ଶେଷହେଲା । ରାତିରେ ବେସର ଦିଆ ଚୂନାମାଛର ତର୍କାରି ଖାଇବା ବେଳେ ମନୋଜ ତାଙ୍କ ସ୍ତ୍ରୀ ମୀନାକ୍ଷୀଙ୍କ ପ୍ରତି ଆକ୍ଷେପ କରି କହିଲା- ତମେ ସାତ ଜନ୍ମ ତପସ୍ୟା କଲେବି ମୋ ବୋଉ ପରି ଚୂନାମାଛର ବେସର ତର୍କାରି କରିପାରିବ ନାହିଁ ।

ଅପରାଜିତା ବୋହୂ ପକ୍ଷ ନେଇ ମନୋଜର କଥାକୁ କାଟିଲେ- ଏଇ ବେସର ତର୍କାରି କରିବାରେ ସେମିତି କିଛି ବାହାଦୁରି ନାହିଁ । ଅସଲ କଥା ହେଲା ତୁ ଦିଲ୍ଲୀ ସହରରେ ଏମିତିଆ ଚୂନାମାଛ କୋଉଠୁ ପାଇବୁ ନା ଦେଶୀ ତେନ୍ତୁଳି କୋଉଠୁ ଆଣିବୁ ଯେ ସିଏ ଏ ତର୍କାରି କରିବ ?

ବୃନ୍ଦାବନ ପରିବେଶଟାକୁ ଅଧିକ ହାଲୁକା କରିବା ପାଇଁ କହିଲେ- ମୁଁ ପରା ଖାସ୍ ତୁମ ବୋଉର ହାତରନ୍ଧା ଚୂନାମାଛର ବେସର ତର୍କାରି ଖାଇବାକୁ ଏ ଭୁବନେଶ୍ୱର ଛାଡ଼ି କୁଆଡ଼େ ଯାଉନାହିଁ ।

ସମସ୍ତେ ଏକ ସମୟରେ ହୋ ହୋ ହୋଇ ହସି ଉଠିଲେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ତାପର ଦିନ ସକାଳ ନଅଟା ବେଳେ ରାଜଧାନୀ ଏକ୍ସପ୍ରେସ୍ ଟ୍ରେନ୍‌ରେ ମନୋଜ, ମୀନାକ୍ଷୀ ଆଉ ସାତବର୍ଷର ନାତି ସଂବିତ ଦିଲ୍ଲୀଗଲେ । ସେମାନଙ୍କୁ ବିଦାୟ ଦେବାପାଇଁ ଟ୍ରେନ୍ ପର୍ଯ୍ୟନ୍ତ ଯାଇଥିଲେ ବୃନ୍ଦାବନ ଓ ଅପରାଜିତା । ଟ୍ରେନ୍‌କୁ ଉଠିବା ବେଳେ ସଂବିତ ଜେଜେଙ୍କ ଉଦ୍ଦେଶ୍ୟରେ ହାତ ବଢ଼ାଇ କହିଲା-ଜେଜେବାପା। ତମେ ଜେଜେମାଙ୍କୁ ଧରି ଦିଲ୍ଲୀ ଆସିବ। ପ୍ରମିଜ୍ କର ।

ବୃନ୍ଦାବନ ସଂବିତର କୁନି ହାତ ଉପରେ ହାତ ଥୋଇ ହସି ହସି କହିଲେ- ପ୍ରମିଜ୍। ଆମେ ଖୁବ୍ ଶୀଘ୍ର ଦିଲ୍ଲୀ ଯିବୁ ।

ସେମାନଙ୍କୁ ବିଦାୟ ଦେଇ ଘରେ ପହଞ୍ଚୁ ପହଞ୍ଚୁ ଟେଲିଫୋନ୍‌ର ଲମ୍ବା ଲମ୍ବା ରିଙ୍ଗ ଶୁଭିଲା । ଏସ୍.ଟି.ଡି. କଲ୍ ନିଶ୍ଚୟ । ତରବରରେ କବାଟ ଖୋଲି ଫୋନ୍ ପାଖରେ ପହଞ୍ଚିବା ବେଳକୁ ରିଙ୍ଗ୍ ବନ୍ଦ ହୋଇଗଲା । ଅପରାଜିତା ବିରକ୍ତ ହେଲେ - ମୁଁ କହୁଚି ଗୋଟେ ମୋବାଇଲ୍ ଫୋନ୍ କିଣ, ମୋ କଥା ତୁମେ ଶୁଣୁନା । ଆମେ କୁଆଡ଼େ ଟିକେ ଗଲେ ଏମିତି ଫୋନ୍‌ଟା ବାଜି ବାଜି ଚୁପ୍ ହେଇଯାଉଥିବ । କେତେ ଟଙ୍କା ପଡ଼ିବ ମୋବାଇଲ୍ ଫୋନ୍‌ଟା ? ଆଜିକାଲି ସେ ଫୋନ୍‌ଗୁଡ଼ାକ କୁଆଡ଼େ ଭାରି ଶସ୍ତା ହେଇଗଲାଣି। ତମେ ନକିଣ ମୁଁ ମନୋଜକୁ ଫୋନ୍‌କରି କହିଲେ ସିଏ ସେଇଥିରୁ ଗୋଟେ ପଠେଇ ଦେବ।

ଅପରାଜିତାଙ୍କ କଥା ସରିନାହିଁ ଫୋନ୍‌ଟା ପୁଣି ବାଜି ଉଠିଲା । ବୃନ୍ଦାବନ ଫୋନ୍ ଉଠାଇଲେ - ହାଲୋ ! କିଏ ବନଜା ? ଆରେ ମାଆ କେମିତି ଅଛୁ ? ଜ୍ୱାଇଁଙ୍କର ସବୁ ଭଲ ତ ? ତୋ ଝିଅ ସୁଦୀପ୍ତା କେମିତି ଅଛି ? ସ୍କୁଲ ଯାଇଚି ?ହଁ, କ'ଣ କହିଲୁ ତୋ ଭାଉଜ? ଆରେ ସିଏତ ଆଜି ରାଜଧାନୀ ଏକ୍ସପ୍ରେସ୍ ଟ୍ରେନ୍‌ରେ ଦିଲ୍ଲୀ ଗଲେ । ହଁ, ତା ପୁଅ ସଂବିତ ଆସିଥିଲା । କ'ଣ କହିଲୁ? ତୋ ବୋଉକୁ ନେଇ ତୋ ପାଖକୁ ବମ୍ବେ ଯିବି? ? ଦି'ମାସ ରହିବି ? ଆରେ ତୋ ଭାଇ ଭାଉଜ ତ ଏଥର ଆସି ଜିଦ୍ ଧରି ବସିଥିଲେ ଆମ ଦୁଇଜଣଙ୍କୁ ତାଙ୍କ ସାଙ୍ଗରେ ଦିଲ୍ଲୀ ନେଇଯିବାକୁ । ଗଲିନି କାହିଁକି ସେକଥା ତୁ କ'ଣ ଜାଣିନୁ ? ଆମେ ଦି'ଜଣ ଗଲେ ଏ ଘର କାହାକୁ ଜଗେଇକି ଯିବୁ? ହାଃ, ହାଃ, ହାଃ ତୁ ଠିକ୍ କହିଚୁ ମାଆ ! ଆମେ ଘର ମାଲିକ କମ୍ ଘର ଜଗୁଆଳି ବେଶି। ମୁଁ ଯୋଉ ଦିନ ମୁନ୍ସିପାଲିଟିର ହୋଲ୍ଡିଂ ଟ୍ୟାକ୍ସ ଦିଏ, ସେଇ ଦିନଟା କେବଳ ମୁଁ ଅନୁଭବ କରେ ଯେ ମୁଁ ଏଘରର ମାଲିକ । ବର୍ଷର ଅବଶିଷ୍ଟ ତିନିଶହ ଚଉଷଠି ଦିନ ମୁଁ ଏ ଘରର ଜଗୁଆଳ । ତୁ ଜାଣିଲେ ଆଶ୍ଚର୍ଯ୍ୟ ହେବୁ , ଆମ ଘରକୁ ମାତ୍ର ପାଞ୍ଚଟା ଘରଛାଡି ଯୋଉ



Digitized by srujanika@gmail.com

ସୁଦାମ ପଟ୍ଟନାୟକଙ୍କ ଘର, ସେମାନେ ଦିନେ ସଂଧ୍ୟା ସାତଟା ବେଳେ ମନ୍ଦିରକୁ ଯାଇ ନଅଟାରେ ଘରକୁ ଫେରିବା ବେଳକୁ ତାଙ୍କ ଘର ପଛପଟ ଝରକାର ରଡ଼ କାଟି ,ଘରେ ଚୋର ପଶି ସବୁ ନେଇ ଯାଇଛି । ସେଇ ଭୟରେ ଆମେ ଘର ଛାଡି କୁଆଡେ ଯାଉନୁ । ସତରେ ମାଆ, ଏ ଜଗୁଆଳି କାମରୁ ମୁକୁଳିବାକୁ ମୁଁ ସିରିଅସିଲି ଗୋଟେ ଉପାୟ ଖୋଜୁଛି । ଉପାୟଟା ମିଳିଗଲେ ଆମେ ନିଶ୍ଚୟ ତୋ ଘରକୁ ଯିବୁ ଆଉ ତୋ ଭାଇ ଭାଉଜଙ୍କ ପାଖକୁ ଯିବୁ ।

ବୃନ୍ଦାବନ ଫୋନ୍ ରଖିଦେଲେ । ଏଣିକି ସିଏ ସବୁବେଳେ ଅନ୍ୟମନସ୍କ ରହିଲେ । ପ୍ରତି ମୁହୂର୍ତ୍ତରେ ଚିନ୍ତାକଲେ ସେଇ ଉପାୟ ବିଷୟରେ ଯାହା ଖୋଜିବାକୁ ସିଏ ପୁଅବୋହୂ ଆଉ ଝିଅକୁ କଥା ଦେଇଛନ୍ତି ।

ଦିନେ ରାତି ଦୁଇଟା ବେଳେ ବୃନ୍ଦାବନଙ୍କ ନିଦ ଭାଙ୍ଗିଗଲା । ସିଏ ନିଦରୁ ଉଠି ବିଛଣାରେ ବସିଲେ । ଅପରାଜିତାଙ୍କୁ ନିଦରୁ ଉଠାଇଲେ । ଅପରାଜିତା ଧଡ଼ପଡ଼ ହୋଇ ଉଠି ବସିଲେ ଆଉ ଡରିଲା ଡରିଲା କଣ୍ଠରେ ପ୍ରଶ୍ନକଲେ- କ'ଣ ହେଲା ? ଏତେ ରାତିରେ କାହିଁକି ନିଦରୁ ଉଠାଇଲ ? ଘରେ ଚୋର ପଶିଛି କି ?

ବୃନ୍ଦାବନ ମନାକଲେ - ନା, ଚୋର ନୁହଁ । ଆଉ ଗୋଟେ କଥା ।

-"ଏତେ ରାତିରେ କି କଥା ? ଶୋଇପଡ ସକାଳେ କହିବ । ଏଇନେ ମତେ ନିଦ ମାଡୁଛି । କିଛି ଶୁଣିବାକୁ ମୋର ଇଚ୍ଛା ନାହିଁ ।'' ଅପରାଜିତା ଶୋଇବାକୁ ଉଦ୍ୟମ କଲେ ।

- ନା, ଅପରାଜିତା ! ତମେ ଏବେ ଉଠ । ଏତେ ଦିନ ହେଲା ମୁଁ ଯୋଉ ବାଟ ଖୋଜୁଥିଲି ତାହା ପାଇ ଯାଇଛି । ତୁମେ ଶୁଣ, ତୁମର ପସନ୍ଦ ହେଉଚି ନା ନାହିଁ କୁହ ।

ଅପରାଜିତା ନିଜ ଅନିଚ୍ଛାରେ ଉଠିକି ବିଛଣାରେ ବସିଲେ । ହାଇମାରି ଭିଡି ମୋଡି ହେଲେ । କହିଲେ - କ'ଣ କହିବାର ଅଛି କୁହ ?

ବୃନ୍ଦାବନ କହିଲେ- ଚଢ଼େଇମାନେ ନିଜ ବସା ଛାଡି ଯୁଆଡେ ଇଚ୍ଛା ସିଆଡ଼େ ଉଡ଼ିଯାଆନ୍ତି, ବାହାରେ ଯେତେ ଦିନ ଇଚ୍ଛା ସେତେ ଦିନ ରହନ୍ତି । ଏମିତିକି କିଛି ଚଢେଇ ଭିନ୍ନ ଭିନ୍ନ ଋତୁରେ ଭିନ୍ନ ଭିନ୍ନ ଦେଶକୁ ଉଡି ଯାଆନ୍ତି । ସେଠି ଦୁଇ, ଚାରି ମାସ ରହି ପୁଣି ନିଜ ବସାକୁ ଫେରି ଆସନ୍ତି । ତାଙ୍କ ବସାରୁ କିଛି ଚୋରି ହୋଇଯିବା ଭୟ ନ ଥାଏ ।

ଅପରାଜିତା ହସିଲେ-ତମେ କଣ ଚଢ଼େଇ ହୋଇଯିବ ନା କ'ଣ ? ତମର



Digitized by srujanika@gmail.com

ଡ଼େଣା କାହିଁ ନା ପର କାହିଁ ?

- ନା, ମୁଁ ଚଢ଼େଇ ହେବା କଥା କହୁନାହିଁ । ଚଢ଼େଇର ଘରଟା ଗଛର ଡାଳ ପରି ଉଚ୍ଚ ସ୍ଥାନରେ ଥାଏ ବୋଲି ତା' ଘର ନିରାପଦ ଥାଏ । ସେଠି ସହଜରେ କେହି ପହଞ୍ଚି ପାରନ୍ତି ନାହିଁ କି ତା'ବସା କେହି ଭାଙ୍ଗି ପାରନ୍ତି ନାହିଁ । ସିଏ ନିର୍ଭୟରେ ଦିନ ସାରା ଏଣେ ତେଣେ ବୁଲେ । ଆମେ ଯଦି ସେମିତି ଆମ ଏଇ ଏକ ମହଲା ଘର ଉପରେ ଆଉ ଗୋଟିଏ ମହଲା ଘର କରି ଦିଅନ୍ତେ, ତଳ ମହଲା ଘରକୁ ଭଡ଼ା ଦେଇ ଆମେ ଉପର ମହଲାରେ ରହନ୍ତେ, ତାହେଲେ ଆମ ଘରୁ ଚୋରି ହେବା ଆଶଙ୍କା ରହନ୍ତା ନାହିଁ । ଆମେ ପନ୍ଦର କୋଡିଏ ଦିନ ପାଇଁ କୁଆଡେ ଗଲେ ବି ଆମ ଘର ନିରାପଦ ରୁହନ୍ତା । ଆମେ କୁଆଡେ ଗଲେ ଆମ ତଳଘରେ ଭଡାଥିବା ଲୋକ ଦାୟିତ୍ୱରେ ଆମ ଉପର ମହଲା ଘରର ଚାବିକାଠି ଦେଇ ଚାଲି ଯାଇ ପାରନ୍ତେ ।

ଅପରାଜିତା ଖୁବ୍ ଖୁସି ହୋଇଗଲେ । ପ୍ରକୃତରେ ଇଏ ଗୋଟେ ଭଲ ବାଟ । ପୁଅ ବୋହୂ କି ଝିଅ ଜ୍ୱାଇଁଙ୍କ ପାଖକୁ ଯାଇ ପନ୍ଦର କୋଡିଏ ଦିନ ରହିଲେ ବି ତଳଘରେ ଭଡ଼ାଥିବା ଲୋକ ଆମ ଉପର ଘରର ସମସ୍ତ ଦାୟିତ୍ୱ ନେବେ । କିନ୍ତୁ ଉପର ମହଲାରେ ଘର କଲେ ସାତ, ଆଠ ଲକ୍ଷ ଟଙ୍କାରୁ କମ୍ ଖର୍ଚ୍ଚ ହେବ ନାହିଁ । ଏତେ ଟଙ୍କା ଆସିବ କେଉଁଠୁ ?

ବୃନ୍ଦାବନ କିଛି ସମୟ ଭାବି କହିଲେ - ଟଙ୍କା କଥାଟା ମୁଁ ଅବଶ୍ୟ ଚିନ୍ତା କରି ନାହିଁ । ମୁଁ ଭାବୁଛି ଟଙ୍କା ପଇସା ହୁଏତ ମିଳିଯିବ । ଟଙ୍କା ମିଳିବାର ବାଟଟା ସେମିତି କୋଉଠି ଅଛି, ଆମେ ତାକୁ ଖୋଜିବାକୁ ପଡ଼ିବ ।

ଅପରାଜିତା ଟଙ୍କା ଆଣିବାର ତିନଟା ବାଟ ବତାଇଲେ । ପ୍ରଥମ ବାଟ - ଗାଆଁର ସମସ୍ତ ଜମି, ଗାଆଁ ଘର, ବାରି ବିକ୍ରି କରିଦେଲେ ଅତିକମ୍‌ରେ ପାଞ୍ଚ ଲକ୍ଷ ଟଙ୍କା ମିଳିଯିବ । ଦ୍ୱିତୀୟଟା- ଅପରାଜିତାଙ୍କ ସୁନା ଗହଣା ଯାହା ଲକର୍‌ରେ ଅଛି ତାକୁ ବିକ୍ରିକଲେ ଲକ୍ଷେ ଟଙ୍କା ହେବ । ତୃତୀୟବାଟ- ମନୋଜକୁ କହିଲେ ସିଏ ଦୁଇ, ତିନି ଲକ୍ଷ ଟଙ୍କା ଦେବ ।

ବୃନ୍ଦାବନ କହିଲେ - ନା , ଅପରାଜିତା! ଗାଆଁ ଜମି ଆମେ କିଣିନା କି ଗାଆଁ ଘର ଆମେ ତିଆରି କରିନା । ସେ ସବୁ ଆମ ପୈତୃକ ସଂପତ୍ତି । ବାପା, ଜେଜେବାପାଙ୍କ ସଂପତ୍ତି ଆମକୁ ଉତ୍ତରାଧିକାର ସୂତ୍ରରେ ମିଳିଛି । ସେ ସବୁ ବିକ୍ରି କରିଦେଲେ ଆମ ବାପା, ଜେଜେବାପାଙ୍କ ନାଆଁ ଆମ ଗାଆଁ ମାଟିରୁ ଲିଭିଯିବ । ବରଂ ମୋର ଇଚ୍ଛା ଗାଆଁ ଘରକୁ ମରାମତି କରି ତାକୁ ସୁନ୍ଦର କରିବି । ପ୍ରତିବର୍ଷ ଗାଆଁ ଦୋଳଯାତ୍ରା,କୁଆଁର ପୁନେଇଁ,



Digitized by srujanika@gmail.com

ରଜ ପର୍ବରେ ଗାଆଁକୁ ଯାଇ ଗାଆଁ ଲୋକମାନଙ୍କ ସହିତ ସଂପର୍କ ବଢ଼େଇବି ।

ଆଉ ରହିଲା ତୁମ ଗହଣା ବିକିବା କଥା । କୌଣସି ସ୍ୱାମୀ କ'ଣ ତା' ସ୍ତ୍ରୀର ଗହଣା ବିକ୍ରି କରେ ? ସେ ଗହଣା ତୁମକୁ ତୁମ ବାପା, ମାଆ ଉପହାର ଦେଇଥିଲେ । ମୁଁ ତାକୁ ବିକ୍ରି କରିବାକୁ ହକଦାର ନୁହେଁ । ସେମିତି କିଛି ବିପଦ ନ ପଡ଼ିଲେ କେହିକେବେ ନିଜ ସ୍ତ୍ରୀର ଅଳଙ୍କାର ବିକ୍ରି କରିବା କଥା ଭାବିପାରେ ନାହିଁ ।

ଆଉ ରହିଲା ପୁଅକୁ ଟଙ୍କା ମାଗିବା କଥା । ସିଏ ଛୁଆ ପିଲା ଧରି ଦିଲ୍ଲୀରେ ରହୁଛି । ତାର ରୋଜଗାର ଅନୁସାରେ ତାର ଷ୍ଟାଟସ୍ ବଢ଼ିଛି । ତାକୁ ପଚାଶ , ଷାଠିଏ ହଜାର ଟଙ୍କା ମାଗିବା ଅଲଗା କଥା, ଆମ ଘର ପାଇଁ ସାତ, ଆଠ ଲକ୍ଷ ଟଙ୍କା ଦରକାର । ସିଏ ଏତେ ଟଙ୍କା କୋଉଠୁ ଆଣିବ ? ମୁଁ ଯାହା ଜାଣେ ସିଏ ଦିଲ୍ଲୀରେ ଫ୍ଲାଟ କିଣିବା ମତଲବ୍‌ରେ ଅଛି ।

ଅପରାଜିତା ପ୍ରଶ୍ନ ପଚାରିବା ଆଖିରେ ସ୍ୱାମୀଙ୍କୁ ଚାହିଁଲେ । ସେ ଆଖି ବୃନ୍ଦାବନଙ୍କୁ ପ୍ରଶ୍ନ କରୁଥିଲା - ଆଉ ତାହେଲେ ଏତେ ଟଙ୍କା କୋଉଠୁ ଆସିବ ?

ବୃନ୍ଦାବନଙ୍କ ମୁଣ୍ଡକୁ ହଠାତ୍ ବ୍ୟାଙ୍କ ଲୋନ୍ କଥା ଜୁଟିଗଲା । ସିଏ ଖୁବ୍ ଖୁସି ହୋଇ କହିଲେ - ଉପାୟ ମିଳିଗଲା । ଆଜିକାଲି ସବୁ ବ୍ୟାଙ୍କ ବାର୍ଷିକ ସାତ, ଆଠ ପରସେଣ୍ଟ ସୁଧ ହାରରେ ଘର ତିଆରି ଲୋନ୍ ଦେଉଛନ୍ତି । ଭୁବନେଶ୍ୱର ଷ୍ଟେଟବ୍ୟାଙ୍କ ମେନ୍‌ବ୍ରାଞ୍ଚରେ ମୋ ସାଙ୍ଗର ସାନଭାଇ ସୁରେଶ ନାୟକ ଅଫିସର୍ ପୋଷ୍ଟରେ ଅଛି । ତା ସହିତ କଥାବାର୍ତ୍ତା କଲେ ସିଏ ବ୍ୟାଙ୍କ ଲୋନ୍ କରାଇ ଦେବ ।

ତା' ପରଦିନ ସକାଳ ଦଶଟା ବେଳେ ବୃନ୍ଦାବନ ଷ୍ଟେଟବ୍ୟାଙ୍କ୍‌ରେ ପହଞ୍ଚି ସୁରେଶ ନାୟକଙ୍କୁ ସାକ୍ଷାତ କଲେ । ସିଏ କହିଲେ - କିଛି ଅସୁବିଧା ନାହିଁ । ଆପଣଙ୍କ ତଳ ମହଲା ଘର ଓ ଆଉ ତାର କାଗଜ ପତ୍ର ଆମେ ଦେଖିବୁ । ଆପଣଙ୍କ ଘରର ମୂଲ୍ୟ ବର୍ତ୍ତମାନର ବଜାର ଦରରେ ଯେତେ ହେବ ତାର ଶତକଡା ଅଶିଭାଗ ଆମେ ଆପଣଙ୍କୁ ହାଉସ୍ ବିଲ୍‌ଡିଙ୍ଗ୍ ଲୋନ୍ ଭାବେ ଦେବୁ ।

ଅପରାଜିତା ସବୁ ଶୁଣିସାରି କହିଲେ - ସବୁ ଠିକ୍ ହେଲା । ଆମେ ବ୍ୟାଙ୍କରୁ ଲୋନ୍ ଆଣିବା । କିନ୍ତୁ ଲୋନ୍ ଶୁଝିବା ପାଇଁ ଟଙ୍କା କୋଉଠୁ ଆସିବ ?

ବୃନ୍ଦାବନ ଏ ପ୍ରଶ୍ନର ଉତ୍ତର ପାଇଁ ପୂର୍ବରୁ ପ୍ରସ୍ତୁତ ଥିଲେ । ହସି ହସି କହିଲେ - ଆମ ଏ ତଳ ଘରଟା ଭଡ଼ା ଦେଲେ ମାସକୁ ଅତି କମ୍‌ରେ ସାତ, ଆଠ ହଜାର ଟଙ୍କା ମିଳିବ । ମୁଁ ଭାବୁଛି ପୂରା ଉପର ମହଲଟା ତିଆରି କରିବା ଦରକାର ନାହିଁ । ଆମ



Digitized by srujanika@gmail.com

ଚଳିବା ପରି ଦି' ବଖରା ଘର, ଡାଇନିଙ୍ଗ ରୁମ୍, କିଚିନ, ପାଇଖାନା ଆଉ ଷ୍ଟୋର ଘର ହେଲେ ଯଥେଷ୍ଟ । ଏତେ ଟଙ୍କା ଲୋନ୍ ଆଣି କ'ଣ ହେବ ? ମୁଁ ମାତ୍ର ସାତ, ଆଠ ଲକ୍ଷ ଟଙ୍କା ଆଣିବି ।

ସବୁ କାଗଜପତ୍ର ବ୍ୟାଙ୍କରେ ପଇଠ କରି ଗୋଟିଏ ମାସ ଭିତରେ ବ୍ୟାଙ୍କ ଲୋନ୍ ପାଇଗଲେ ବୃନ୍ଦାବନ। ପ୍ଲାନ ମୁତାବକ ଘର ତିଆରି ଆଗେଇ ଚାଲିଲା । ଚାରି ମାସ ଭିତରେ ଘରର ଛାତ ପଡ଼ିଗଲା । ଆଉ ଦୁଇ ମାସ ଲାଗିଲା ଫିନିସିଙ୍ଗ ପାଇଁ ।

ମନୋଜ ଦିଲ୍ଲୀରେ ଥାଇ ଖବର ପାଇଲା ବାପା ଉପର ମହଲା ଘର ତିଆରି କରୁଛନ୍ତି । ଖୁସି ହୋଇ ସଙ୍ଗେ ସଙ୍ଗେ ବାପାଙ୍କୁ ଫୋନ୍ କଲା ବେଳେ ମୀନାକ୍ଷୀ ରିସିଭରଟା ତାଙ୍କ ହାତରୁ ଛଡାଇ ନେଇ ଫୋନ୍ କାଟି ଦେଇ କହିଲେ - ବାପା ଘର ତିଆରି କରିବା କଥାଟା ଆମକୁ ଜଣାଇବାକୁ ଯଦି ଚାହୁଁ ନାହାନ୍ତି, ଆମେ କାହିଁକି ତାଙ୍କୁ ସେ କଥା ପଚାରିବା ?

ମନୋଜ ଯୁକ୍ତି କଲା - ନା, ସେକଥା ନୁହଁ । ମୁଁ ତାଙ୍କୁ ପଚାରିଥାନ୍ତି ସିଏତ ମତେ କହିଥିଲେ ଭୁବନେଶ୍ୱର ଛାଡି ଆମ ପାଖରେ ଆସି ରହିବାକୁ ,ଏବେ ଭୁବନେଶ୍ୱରରେ ଆହୁରି ଘର କରିବାର ମାନେ କ'ଣ ? ଯାଦ୍ୱାରା ଭୁବନେଶ୍ୱରର ମୋହ ତାଙ୍କୁ ଅଧିକ ଦୃଢ଼ ଭାବେ ଭିଡି ଧରିବ ନା ନାହିଁ ?

ମୀନାକ୍ଷୀ ପରାମର୍ଶ ଦେଲେ - ତୁମେ ଅପେକ୍ଷା କର । ବାପା ଯେତେବେଳେ ନିଜ ତରଫରୁ ଭୁବନେଶ୍ୱରରେ ଦ୍ୱିମହଲା ଘର ତିଆରି କଥା କହିବେ, ତମେ ସେତେବେଳେ ତାଙ୍କୁ ଏ ପ୍ରଶ୍ନ ପଚାରିବ ।

ମନୋଜର ମନକୁ ଗଲା ମୀନାକ୍ଷୀର ପରାମର୍ଶ । ଘର ସଂସାର ବ୍ୟାପାରରେ ପୁରୁଷମାନଙ୍କ ଅପେକ୍ଷା ନାରୀମାନେ ଅଧିକ ବିଜ୍ଞତା, ଅଧିକ ଚତୁରତା ଆଉ ସତର୍କତା ଦେଖାନ୍ତି ।

ମନୋଜ ସେ ଦିନ ଆଉ କିଛି ନ କହି ଟିଭି ଲଗାଇ ନିଉଜ୍ ଚାନେଲ୍ ଦେଖିଲା ।

ବୃନ୍ଦାବନଙ୍କ ଘର ତିଆରି ସରିବା ପରେ ଖୁବ୍ ଭଲ ଭଡାଟିଆ ଜଣେ ମିଳିଗଲା । ଭଦ୍ରବ୍ୟକ୍ତିଙ୍କ ବୟସ ପଇଁତିରିଶି କି ଛତିଶି । ବ୍ୟାଙ୍କ୍ ଅଫିସର୍ । ପରିବାର ଖୁବ୍ ଛୋଟ । ତାଙ୍କର ସ୍ତ୍ରୀ ଆଉ ପାଞ୍ଚ ଛଅ ବର୍ଷର ପୁଅଟିଏ । ଛଅ ବର୍ଷ ପାଇଁ ବ୍ୟାଙ୍କ ସହିତ ଘରଭଡା ଆଗ୍ରିମେଣ୍ଟ ହୋଇଗଲା । ମାସିକ ଭଡା ସାତ ହଜାର ଟଙ୍କା । ପ୍ରତି ତିନି ବର୍ଷରେ ଥରେ ଘରଭଡା ଶତକଡ଼ା ୧୦ ଭାଗ ବୃଦ୍ଧି ହେବ ।

ଆନନ୍ଦ ଚନ୍ଦ୍ର ପତି

Digitized by srujanika@gmail.com

କାଗଜପତ୍ର ହୋଇଯିବାର ୮ ଦିନ ଭିତରେ ବୃନ୍ଦାବନ ତାଙ୍କ ଜିନିଷପତ୍ର ସବୁ ଲୋକ ଲଗାଇ ଉପରମହଲାକୁ ନେଇ ଆସିଲେ । ନିର୍ଦ୍ଦିଷ୍ଟ ଦିନରେ ବ୍ୟାଙ୍କ ଅଫିସର୍ ପ୍ରଦୀପବାବୁ , ତାଙ୍କ ସ୍ତ୍ରୀ ପ୍ରିୟମ୍ବଦା ଆଉ ତାଙ୍କ ପୁଅ ଟିଟନ ଆସି ତଳଘରେ ରହିଲେ । ଦୁଇ, ତିନି ଦିନ ଧରି ସେମାନେ ତାଙ୍କ ଜିନିଷପତ୍ର ସଜାସଜି କଲେ ।

ଅପରାଜିତା ଉପର ମହଲାରେ ଥାଇ ଦେଖିଲେ ତାଙ୍କ ଘରେ ଭଡା ରହିଥିବା ବ୍ୟାଙ୍କ ଅଫିସର୍ ପ୍ରଦୀପ ଦେଖିବାକୁ ତାଙ୍କ ପୁଅ ମନୋଜ ପରି । ତାଙ୍କ ପୁଅ ଟିଟନ ଠିକ ତାଙ୍କ ନିଜ ନାତି ସଂବିତ ପରି । ତା'ରି ପରି ଗୋରା, କହରା ବାଳ, ହସିଲେ ତା'ଗାଲରେ ଭଉଁରି ଖେଳି ଯାଉଛି ।

ଆଠ ଦିନ ଭିତରେ ଅପରାଜିତା ଟିଟନକୁ ଅପାଣାର କରିନେଲେ । ଧୀରେ ଧୀରେ ଟିଟନ ଅପରାଜିତାଙ୍କୁ ଜେଜେମା ଆଉ ବୃନ୍ଦାବନଙ୍କୁ ଜେଜେବାପା ଡାକିଲା । ପ୍ରତିଦିନ ସଂଧ୍ୟାରେ ଟିଟିନ, ଅପରାଜିତା ଆଉ ବୃନ୍ଦାବନଙ୍କଠୁ ମଜା ମଜା ଗପ ଆଉ ଗୀତ ଶୁଣି ଖୁସି ହେଲା । ଟିଟିନ ଜରିଆରେ ପ୍ରଦୀପ ଓ ପ୍ରିୟମ୍ବଦା ଦୁହେଁ ଅପରାଜିତା ଓ ବୃନ୍ଦାବନଙ୍କ ଆଡକୁ ନିକଟେଇ ଆସିଲେ । ଅଳ୍ପ କେଇଦିନ ଭିତରେ ଗୋଟିଏ ଅଚିହ୍ନା ସଂପର୍କର ସରୁ ସୁତାରେ ବାନ୍ଧିହୋଇ ଗଲେ ତଳ ଉପର ରହୁଥିବା ଏ ଦୁଇ ପରିବାର ।

ଦୋଳଯାତ୍ରାକୁ ଗାଆଁକୁ ଯିବାକୁ ବାହାରିଲେ ବୃନ୍ଦାବନ ଓ ଅପରାଜିତା । ଘରେ ତାଲା ପକାଇ ଚାବିକାଠିଟି ବଢାଇଦେଲେ ପ୍ରଦୀପଙ୍କୁ ଓ କହିଲେ-ଆମେ ଗାଁକୁ ଯାଉଚୁ । ଆଠ, ଦଶ ଦିନ ରହିଯାଇ ପାରୁ । ତମେ ତ ଅଛ, ଆମ ଅନୁପସ୍ଥିତିରେ ଘର ଉପରେ ନଜର ରଖିଥିବ ।

ସେଥର ପନ୍ଦର ଦିନ ଗାଆଁରେ ରହି ଫେରିଲେ ବୃନ୍ଦାବନ । ଖୁବ୍ ଖୁସି ଦିଶୁଥିଲା ତାଙ୍କ ମୁହଁ । ଗାଆଁର ଘରକୁ ମରାମତି କରି ଆସିଛନ୍ତି । ତାଙ୍କ ଗୋଡ ହାତରେ ବନ୍ଧନ ନାହିଁ । ଏଣିକି ଯୁଆଡେ ଇଚ୍ଛା ସିଆଡେ ଯିବେ । ଯେତେ ଦିନ ଇଚ୍ଛା ସେତେଦିନ ରହିବେ ।

ଅପରାଜିତା ଗାଆଁରୁ ପାଚିଲା ବରକୋଳି,ପାଚିଲା ଅମୃତଭଣ୍ଡା,କିଛି ସାରୁ,ମାଟି ଆଳୁ ଓ ବାସୁମତି ଅରୁଆ ଚାଉଳ ଆଣିଥିଲେ ।ପ୍ରିୟମ୍ବଦା ମନା କରିବା ସତ୍ତ୍ୱେ ସେଥିରୁ କିଛି ତାଙ୍କୁ ଦେଲେ ଅପରାଜିତା ।

ଗାଆଁରୁ ଫେରିବାର ପନ୍ଦର ଦିନ ପରେ ବୃନ୍ଦାବନ ତାଙ୍କ ପୁଅ ପାଖକୁ ଫୋନ୍ ଲଗାଇଲେ- ହାଲୋ ! ହଁ, ମୁଁ ବାପା କହୁଚି । ଗୋଟେ ଖୁସି ଖବର । ନାତିଟୋକା



Digitized by srujanika@gmail.com

ପାଖରେ ଅଛି ତ ? ତାକୁ କହ ମୁଁ ପ୍ରମିଜ କରିଥିଲି ତା ଜେଜେମାକୁ ନେଇ ଦିଲ୍ଲୀ ଯିବି ବୋଲି । ଏବେ ମୁଁ ପ୍ରସ୍ତୁତ । ତୁ ଯୋଉ ଦିନ ଡାକିବୁ ମୁଁ ତୋ ବୋଉକୁ ନେଇ ଦିଲ୍ଲୀ ଯିବି । ହଁ, ସବୁ ବ୍ୟବସ୍ଥା ହୋଇଯାଇଛି । କି ବ୍ୟବସ୍ଥା ? ମୁଁ କହୁଚି ଶୁଣ । ଏଇ ଘର ଦ୍ୱାର ଚୋରି ହେବାର ଭୟ ଥିଲା ତ ? ଆଉ ସେ ଭୟ ମୋଟେ ନାହିଁ । ମୁଁ ବ୍ୟାଙ୍କ ଲୋନ୍ ଆଣି ଉପରେ ଆମେ ଚଳିବା ମୁତାବକ କେଇଟା ବଖରା କରି ଦେଇଚି । ଆମେ ଏବେ ଉପର ମହଲା ଘରେ ରହୁଛୁ । ତଳ ଘରଟା ଭଡ଼ାଦେଇ ଦେଇଚି । ଆମ ତଳଘରେ ଭଡ଼ା ରହୁଥିବା ଲୋକ ଖୁବ୍ ଭଲ । ତାଙ୍କ ଦାୟିତ୍ୱରେ ଉପର ଘରର ଚାବିକାଠି ଦେଇ ମୁଁ ଏବେ ଗାଆଁକୁ ଯାଇ ପନ୍ଦର ଦିନ ରହିକି ଆସିଲି । ଏବେ ମୁଁ ଫ୍ରି । ତୁମ ପାଖକୁ ଦିଲ୍ଲୀ ଯିବି, ବନଜା ପାଖକୁ ବମ୍ବେ ଯିବି । ଓଡିଶାରେ ଯେତେ ତୀର୍ଥସ୍ଥାନ ଅଛି ସେ ସବୁ ଜାଗାକୁ ଆମେ ବୁଲିବାକୁ ଯିବୁ ।

ଏତେ ସମୟ ଧରି ବାପାଙ୍କ କଥା ଶୁଣୁଥିବା ମନୋଜ କହିଲା- ବାପା, ଆପଣ ଏତେ ସହଜରେ ଏତେ ବଡ ସମସ୍ୟାର ସମାଧନ କରି ସତରେ ଆମ ସମସ୍ତଙ୍କୁ ଚମକାଇ ଦେଲେ । ଆପଣଙ୍କ ପରି ଯେତେ ବାପା ଅବସର ପରେ ଘର ଜଗିକି ପଡି ରହିଥିଲେ , ନିକଟ ସଂପର୍କୀୟମାନଙ୍କ ପାଖକୁ ଯାଇ ପାରୁନଥିଲେ ଆପଣ ସେ ସମସ୍ତଙ୍କ ଆଇ ଓପନର ହୋଇ ପାରିଚନ୍ତି । ଆପଣ ତାହେଲେ ଏଇ ମାସ ୧୫ ତାରିଖ ଦିନ ଦିଲ୍ଲୀ ଆସନ୍ତୁ । ମୁଁ ରାଜଧାନୀ ଏକ୍ସପ୍ରେସ୍‌ରେ ଦୁଇଟା ବର୍ଥ ରିଜର୍ଭ କରି ସ୍ପିଡ ପୋଷ୍ଟରେ ଆପଣଙ୍କ ପାଖକୁ ଟ୍ରେନ୍ ଟିକେଟ୍ ପଠାଇ ଦେଉଚି । ଆପଣ ଆମ ପାଖରେ ଏ ଖରା ଚାରିମାସ ରହିବେ ।

ବୃନ୍ଦାବନ ଆପତ୍ତି ଉଠାଇଲେ- ନା, ସେ କଥା ହେଇ ପାରିବ ନାହିଁ । ଅତି ବେଶିରେ ପନ୍ଦର ଦିନରୁ ଅଧିକ ମୁଁ କୋଉଠି ରହିପାରିବ ନାହିଁ, କାରଣ ମୋତେ ପ୍ରତିବର୍ଷ ବିଭିନ୍ନ ସ୍ଥାନକୁ ଯିବାକୁ ପଡିବ ।ଏଇ ଯେମିତି ତୋ ପାଖକୁ, ବନଜା ପାଖକୁ, ସବୁ ବଡ଼ ବଡ଼ ପର୍ବରେ, ପୁଣି ଧାନ ଚାଷ ବେଳକୁ, ଧାନ ଅମଳବେଳକୁ ଗାଆଁକୁ ଆଉ ଓଡିଶାର ବିଭିନ୍ନ ତୀର୍ଥସ୍ଥାନକୁ ଆମେ ନିୟମିତ ଯିବୁ । ମୁଁ ଯା ଭିତରେ ଗୋଟେ ଫଟୋ ଉଠା କ୍ୟାମେରା କିଣିଚି । ଯୋଉଠିକି ଯିବି କିଛି କିଛି ଫଟୋ ଉଠାଇ ଆଣିବି । ତୁ ଟିକେଟ୍ ପଠା ମୁଁ ଆଉ ତୋ ବୋଉ ଦିଲ୍ଲୀ ଯିବୁ । କିନ୍ତୁ ମନେରଖିଥା ପନ୍ଦର ଦିନଠୁ ଅଧିକ ଦିନ ଆମେ ତୋ ପାଖରେ ରହିପାରିବୁ ନାହିଁ ।



ଆନଂଦ ଚଂନ୍ଦ୍ର ପହି

Digitized by srujanika@gmail.com

# ପଣବନ୍ଦୀ

ସକାଳ ଏଗାରଟା ଯାଇ ବାରଟା ବାଜିଲା ତଥାପି ସନାତନ ମର୍ଣ୍ଣିଙ୍ଗ ୱାକ୍‌ରୁ ଫେରିଲେ ନାହିଁ । ବଡ଼ବୋହୂ ଅଳକାନନ୍ଦା ଆଉ ସାନବୋହୂ ସୁନନ୍ଦା ଦୁହେଁ ବ୍ୟସ୍ତ ହେଲେ । ଅଳକା ଫୋନ୍ କରି ଜଣାଇଲେ ସ୍ୱାମୀ ସୀମାଦ୍ରୀ ଓ ଦିଅର ଶେଷାଦ୍ରୀଙ୍କୁ । ସେମାନେ ବାପାଙ୍କ ସାଙ୍ଗ, ସାଥୀ ଆଉ ବନ୍ଧୁବାନ୍ଧବଙ୍କ ଘରକୁ ଫୋନ୍‌କରି ବୁଝିନେଲେ । ସନାତନଙ୍କ ସନ୍ଧାନ କେଉଁଠି ହେଲେ ମିଳିଲା ନାହିଁ ।

ସଂଧ୍ୟା ହେଲା, ରାତି ହେଲା । ତଥାପି ସନାତନଙ୍କର କିଛି ଖବର ମିଳିଲା ନାହିଁ ।

ସୀମାଦ୍ରୀ କହିଲେ- ବାପା ଯଦି କୋଉଠି ଥାଆନ୍ତେ ତା'ହେଲେ ସିଏ ଏତେବେଳକୁ ନିଶ୍ଚୟ ଘରକୁ ଫେରି ଆସନ୍ତେଣି । ଆମେ ଆଉ ବିଳମ୍ବ ନକରି ପୋଲିସରେ ଏଫ.ଆଇ,ଆର ଦେବାଟା ଉଚିତ ହେବ ।

ସୀମାଦ୍ରୀଙ୍କ ପାଟିରୁ କଥା ନସରୁଣୁ ଲ୍ୟାଣ୍ଡଫୋନ୍‌ଟା ବାଜିଲା । ସମସ୍ତେ ଉତ୍‌କଣ୍ଠିତ ହେଲେ । ବାପାଙ୍କ ଫୋନ୍ ହୋଇଥାଇ ପାରେ । ଶେଷାଦ୍ରୀ ଉଠିଯାଇ ଫୋନ୍ ଧରିଲେ- ହ୍ୟାଲୋ ! ଆପଣ କିଏ କହୁଥିଲେ? କ'ଣ କହିଲେ, ମୁଁ କିଏ ? ମୁଁ ତାଙ୍କ ସାନପୁଅ ଶେଷାଦ୍ରୀ ଚୌଧୁରୀ । କିନ୍ତୁ ଆପଣ କିଏ? ଆପଣ କିଏ ସେକଥା ମୁଁ ଜାଣିବା ଆବଶ୍ୟକ ନାହିଁ? କ'ଣ କହିଲେ ବାପା ଆପଣଙ୍କ ପାଖରେ ଅଛନ୍ତି ? ପାଖରେ ଅଛନ୍ତି ମାନେ ? ଆପଣ ତାଙ୍କୁ କିଡନାପ୍ କରିଛନ୍ତି ? କିନ୍ତୁ କାହିଁକି? ସିଏ ଆପଣଙ୍କର କି ଅପରାଧ କରିଛନ୍ତି ? ଆରେ, ଏମିତି ହସୁଚନ୍ତି କାହିଁକି ? କଣ କହିଲେ, ଅପରାଧୀକୁ କେହି କେବେ କିଡ୍‌ନାପ କରେ ନାହିଁ? ସବୁବେଳେ ନିରିହ, ନିରପରାଧ ଲୋକମାନେ ହିଁ କିଡନାପ୍ ହୁଅନ୍ତି ?

ସୀମାଦ୍ରୀ ଉଠିଆସି ଟେଲିଫୋନ୍‌ଟା ଶେଷାଦ୍ରୀ ହାତରୁ ଛଡ଼ାଇ ନେଇ ଚିତ୍କାର କଲେ- ହ୍ୟାଲୋ । ଆମ ବାପା ଭଲ ଅଛନ୍ତି ତ ? ଦେଖ ତାଙ୍କର ଯଦି କିଛି ହୋଇଯାଏ ମୁଁ ତୁମକୁ ଆଦୌ ଛାଡିବି ନାହିଁ । ଏ ସହରର ଏସ୍.ପି ମୋର ପରିଚିତ । କ'ଣ କହିଲେ, ପୋଲିସ୍ ପର୍ଯ୍ୟନ୍ତ କଥା ଯିବା ପୂର୍ବରୁ ତମେ ମୋ ବାପାଙ୍କୁ ହତ୍ୟା କରି ରେଳଧାରଣା ଉପରେ ପକାଇ ଦେବ ? ନା, ମୁଁ ଜାଣେ କୌଣସି କିଡନାପର ପଣବନ୍ଦୀ ରଖିଥିବା ଲୋକକୁ ହତ୍ୟା କରିବାକୁ ପସନ୍ଦ କରେନା । ସିଏ ପ୍ରଥମେ ଧମକ ଦିଏ । ହଁ, ଏଇଟାକୁ

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ମୁଁ ତୁମର ସେଇ ଧମକ ଭାବେ ଧରି ନେଉଛି । ଏଥର ତୁମର ଅସଲ ଉଦ୍ଦେଶ୍ୟ ପ୍ରକାଶ କର । ପଣବନ୍ଦୀ ରଖିଥିବା ଆମ ବାପାଙ୍କୁ ତୁମେ ମୁକ୍ତିଦେବା ପାଇଁ କି ସର୍ତ୍ତ ରଖିଛ ? କେତେ ? ୧୦ଲକ୍ଷ ଟଙ୍କା ? ନା, ଅସମ୍ଭବ । ଏତେ ଗୁଡ଼େ ଟଙ୍କା ଆମେ ଦେଇ ପାରିବୁ ନାହିଁ । କ'ଣ କହିଲେ,ଆମ ବାପା ଆମକୁ ଦୁଇଟା ଇଣ୍ଡଷ୍ଟ୍ରି ଦେଇଛନ୍ତି ଆଉ  ଆମ ଦୁଇଟାଯାକ ଇଣ୍ଡଷ୍ଟ୍ରିଜର ଆନୁଆଲ୍ ଟର୍ଣ୍ଣ ଓଭର ୧୦୦ କୋଟି ଟଙ୍କା?୧୦୦ କୋଟି ଟଙ୍କାର ୱାନ ପରସେଣ୍ଟ ହେଲା ୧କୋଟି ଟଙ୍କା ।ଆଉ  ଆପଣ ମାଗୁଛନ୍ତି  ୧୦ଲକ୍ଷ ଟଙ୍କା ।

ହଠାତ୍ ଫୋନ୍‌ଟା କଟିଗଲା । କଥାଟା ଏବେ ପରିଷ୍କାର ହୋଇଗଲା ଯେ ୧୦ ଲକ୍ଷ ଟଙ୍କା ପାଇଁ ସନାତନଙ୍କୁ କିଏ କିଡନାପ୍ କରିଚି । ଯିଏ ଏ କାମ କରିଛି ସିଏ ସନାତନଙ୍କ ପରିବାର, ତାଙ୍କ ଇଣ୍ଡଷ୍ଟ୍ରି ଆଉ ଇଣ୍ଡଷ୍ଟ୍ରିର ଟର୍ଣ୍ଣଓଭର ବିଷୟରେ ଟିକ୍‌ନିକ୍ ଖବର ରଖିଛି ।

ସୀମାଦ୍ରୀ, ଶେଷାଦ୍ରୀ, ଅଳକା ଓ ସୁନନ୍ଦା ସମସ୍ତେ ଡ୍ରଇଂ ରୁମ୍‌ରେ ବସି ବାପାଙ୍କୁ ମୁକ୍ତ କରିବାର ଉପଯୁକ୍ତ ଉପାୟ କଥା ଆଲୋଚନା କଲେ ।  ସାନବୋହୂ ସୁନନ୍ଦା କହିଲା- ବାପାଙ୍କ କିଡନାପ୍ ଖବରଟା ପୋଲିସ୍‌ରେ ଜଣାଇ ପୋଲିସ୍‌ର ସାହାଯ୍ୟ ମାଗିବା ଉଚିତ ହେବ ।

ବଡ଼ବୋହୂ ଅଳକା କହିଲା- ମୁଁ ଅନେକ ହିନ୍ଦି, ଓଡ଼ିଆ ସିନେମା ଓ ସିରିଆଲ୍‌ରେ ଦେଖିଛି ଗୋଟେ ବ୍ରିଫ୍‌କେଶ୍‌ରେ ଟଙ୍କା ଭର୍ତ୍ତି କରି କିଡ଼ନାପର୍ କହିଥିବା ସ୍ଥାନରେ ରଖାଯାଏ, ଆଉ ପୋଲିସ ସିଭିଲ୍ ଡ୍ରେସ୍‌ରେ ଖଣ୍ଡେ ଦୂରରେ ଲୁଚିକି ରହନ୍ତି । କିଡନାପର୍ ବ୍ରିଫ୍‌କେଶ୍ ଧରିବା ମାତ୍ରକେ ପୋଲିସ ଲୁଚିବା ସ୍ଥାନରୁ ବାହାରି ତାକୁ ମାଡିବସି କାବୁ କରେ । ଏଠି ଆମେ ସେମିତି କିଛି କଲେ କେମିତି ହୁଅନ୍ତା ?

ସୀମାଦ୍ରୀ ପ୍ରଶ୍ନ କଲେ- କିନ୍ତୁ କିଡିନାପର୍ ଯଦି ପୋଲିସ୍ ହାତରୁ ଖସିଯାଏ, ଆଉ ରାଗିଯାଇ  ବାପାଙ୍କୁ  ହତ୍ୟାକରେ ?

ସମସ୍ତେ କିଛି ସମୟ ନିରବରେ ବସି ରହିଲେ । କିଛି ନିରାପଦ ଓ ସୁବିଧାଜନକ ଉପାୟ ପ୍ରତ୍ୟେକ ଚିନ୍ତା କରୁଥିଲେ । ଅନେକ ସମୟ ଚିନ୍ତା କଲାପରେ ବି  ସେମିତି କିଛି ଉପାୟ କାହାରି ମୁଣ୍ଡକୁ ଜୁଟୁ ନଥିଲା ।

ଦଶ ଲକ୍ଷ ଟଙ୍କା ଦେଇ କିଡନାପ୍‌ର ହାତରୁ ବାପାଙ୍କୁ ମୁକ୍ତ କରିବା କଥାଟାକୁ ସେମାନଙ୍କ ଭିତରୁ କେହି ଜଣେ ହେଲେ ଗ୍ରହଣ କରିପାରୁ ନଥିଲେ । ସେଥିପାଇଁ ସେମାନେ



Digitized by srujanika@gmail.com

ଅନ୍ୟ କିଛି ଉପାୟ କଥା ଚିନ୍ତା କରୁଥିଲେ ।

ବାପାଙ୍କୁ କିଡନାପ୍‌ର ହାତରୁ ମୁକ୍ତ ନକଲେ ସାଇ, ପଡ଼ିଶା, ବନ୍ଧୁବାନ୍ଧବ ଆଉ ଖୋଦ୍ ବାପାଙ୍କ ଦୃଷ୍ଟିରେ ସେମାନେ ଛୋଟ ହୋଇଯିବେ ବୋଲି, ସେମାନେ ବାପାଙ୍କୁ ମୁକୁଳାଇବାର ଉପାୟ ଚିନ୍ତା କରୁଛନ୍ତି । ନଚେତ୍ ପ୍ରକୃତ ପକ୍ଷେ ବାପା ଦୁଇ ପୁଅଙ୍କ ଇଣ୍ଡଷ୍ଟ୍ରି କାମରେ ଅଯଥା ହସ୍ତକ୍ଷେପ କରୁଥିବାରୁ ବାପାଙ୍କୁ ସେମାନେ ଅନ୍ତରରେ ଶ୍ରଦ୍ଧା କରୁ ନଥିଲେ । ତା'ଛଡ଼ା ବାପା ସେମାନଙ୍କ ଉପରେ ତାଙ୍କ ପୁରୁଣା ଦୃଷ୍ଟିକୋଣ ଲଦିବାକୁ ବାରମ୍ବାର ଚେଷ୍ଟା କରନ୍ତି । ନୂଆ କିଛି ଆଗ୍ରେସିଭ ପଦକ୍ଷେପ ନେବାବେଳେ ବାପା ତାଙ୍କୁ ବିରୋଧ କରନ୍ତି ।

ଦୁଇ ବୋହୂ ମଧ୍ୟ ବାପାଙ୍କ ଉପସ୍ଥିତି ଘରେ ଚାହାନ୍ତି ନାହିଁ । ବାପା ଘରେ ଥିବା ବେଳେ ସେମାନଙ୍କ ଚାଲି, ଚଳଣ, ବ୍ୟବହାର, ହସଖୁସି, ବଜାର ବୁଲା ଆଉ ସାଙ୍ଗସାଥୀ ଚର୍ଚ୍ଚାରେ ସେମାନେ ସ୍ୱଚ୍ଛନ୍ଦ କି ସ୍ୱାଧୀନ ହୋଇ ପାରନ୍ତି ନାହିଁ । ବାପା ଘରେ ବସି ଦୁଇ ବୋହୂଙ୍କ ଗତିବିଧି ପ୍ରତି ନଜର ରଖନ୍ତି । ଏସବୁ ପାଇଁ ବାପାଙ୍କ ଉପରେ ଦୁଇ ବୋହୂ ଅନ୍ତରରେ ସନ୍ତୁଷ୍ଟ ନୁହଁନ୍ତି ।

ହଠାତ୍ ଫୋନ୍‌ଟା ଆଉ ଥରେ ବାଜିଲା । ସମସ୍ତେ ସଜାଗ ହେଲେ ଏଇଟା ସେଇ କିଡ୍‌ନାପର୍‌ର ଫୋନ୍ । କିନ୍ତୁ ଫୋନ୍‌ଟା ଉଠାଇବାକୁ କେହି ସାହାସ କଲେ ନାହିଁ । ଦୁଇ ପୁଅ ପରସ୍ପରଙ୍କ ମୁହଁକୁ ଚାହିଁଲେ । ଦୁଇ ବୋହୂ ଡ୍ରଇଂରୁମ୍ ଛାଡି ନିଜ ନିଜ ବଖରାକୁ ଚାଲିଗଲେ । ଫୋନ୍‌ଟା ସେମିତି ବାଜି ବାଜି ଚୁପ୍ ହୋଇଗଲା । ଶେଷାଦ୍ରୀ ଓ ସୀମାଦ୍ରୀ ପୁଣି ନିଜ ଭାବନା ଭିତରକୁ ଫେରି ଆସିଲେ ।

ଫୋନ୍‌ଟା ମାତ୍ର ପାଞ୍ଚ ମିନିଟ୍ ଚୁପ୍ ରହି ପୁଣି ବାଜିଲା । ଏଥର ସୀମାଦ୍ରୀ ଭୟ ଆଉ ଅନିଚ୍ଛା ସତ୍ତ୍ୱେ ଫୋନ୍ ଉଠାଇଲେ । ଫୋନ୍‌ରେ କିଡନାପର୍‌ର କଠୋର କଣ୍ଠ-କଣ ସ୍ଥିରକଲ ? ଦଶ ଲକ୍ଷ ଟଙ୍କା ଦେବ ନା ମୁଁ ବାଧ୍ୟ ହେବି ତୁମ ବାପାଙ୍କୁ ହତ୍ୟା କରିବାକୁ ?

ସୀମାଦ୍ରୀ ଯୁକ୍ତି କଲେ- ଆମେ ଟଙ୍କା ଦେବୁ ନାହିଁ ବୋଲି କହିଲେ ତୁମେ କେବେବି ଖୁସି ହେବ ନାହିଁ । ଆମେ ତୁମ ସର୍ତ୍ତରେ ରାଜି ।

କିଡ଼ନାପର୍ ଠୋ ଠୋ ହସି କହିଲା- ମୁଁ ଜାଣେ ତୁମେ ନିଶ୍ଚୟ ରାଜି ହେବ । ଶହେ କୋଟି ଟଙ୍କା କମାଇଥିବା ବାପା ମାତ୍ର ଦଶ ଲକ୍ଷ ଟଙ୍କା ପାଇଁ କିଡନାପର୍ ହାତରେ ମରିବାଟାକୁ ସମାଜ ଭଲ ଦୃଷ୍ଟିରେ ଦେଖିବ ନାହିଁ । ତୁମକୁ ସମାଜ କ୍ଷମା ଦେବ ନାହିଁ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ତେଣୁ ତୁମେ ମୋ ସର୍ତ୍ତରେ ରାଜି ହେବାକୁ ବାଧ୍ୟ ।

ଶେଷାଦ୍ରୀ ହାତ ମୁଣ୍ଡ ହଲାଇ ଠାରରେ କହିଲେ- ଭାଇ, ତମେ ଏମିତି କେମିତି ରାଜି ହୋଇଗଲ ? ଦଶଲକ୍ଷ ଟଙ୍କା ଏବେ ଆମ ପାଖରେ କାହିଁ ?

ସୀମାଦ୍ରୀ ଠାରରେ ସେମିତି କହିଲେ- ସମୁଦାୟ କଥାଟା ନଶୁଣି ଏମିତି କାହିଁକି ବ୍ୟସ୍ତ ହେଉଚୁ ?

ସୀମାଦ୍ରୀ ଏଥର କିଡନାପରକୁ କହିଲେ- ଆମେ ତୁମ ସର୍ତ୍ତ ଅନୁସାରେ ଦଶ ଲକ୍ଷ ଟଙ୍କା ଦେବାକୁ ରାଜି ଅଛୁ । କିନ୍ତୁ ଆମ ପାଖରେ ଏବେ ଏତେ ଟଙ୍କା ନାହିଁ । ଆମକୁ ମାସଟେ ସମୟ ଦିଅ ।

କିଡନାପର୍ ଏଥର ଆଗ ଅପେକ୍ଷା ଆହୁରି ଜୋର୍‌ରେ ହସି କହିଲା- ତୁମେ ଭାବୁଚ ତମେ ଏକୁଟିଆ ଚାଲାଖ ? ତମର ମନେରଖିବା ଉଚିତ ପୁଲିସ ଆଉ ପ୍ରଶାସନଠୁ ଅଧିକ ଚାଲାଖ ହୋଇଥିବାରୁ ତାଙ୍କୁ ଚିତାକାଟି ଚୋର ଚୋରି କରେ, କିଡନାପର୍ କିଡ଼ନାପ କରେ । ସେଇ ନ୍ୟାୟରେ ମୁଁ ତୁମଠୁ ଅଧିକ ଚାଲାଖ । ତମେ ଭାବିଛ ଏଇ ମାସେ କାଳ ମୁଁ ତୁମ ବାପାଙ୍କୁ ଖୋଇପେଇ ଏଠି ଜଗିକି ବସିବି ଆଉ ସେଇ ସମୟ ଭିତରେ ତୁମେ ମୋ ପଛରେ ପୋଲିସ୍ ଲଗେଇ ଆରେଷ୍ଟ କରିବ ? ନା, ସେମିତି ଚାଲାଖି କରିବାକୁ ତୁମକୁ ସୁଯୋଗ ମିଳିବ ନାହିଁ । ତୁମକୁ ମୁଁ ମାତ୍ର ଗୋଟିଏ ଦିନ ସମୟ ଦେଲି । କାଲି ରାତି ବାରଟା ସୁଦ୍ଧା ଯଦି ଦଶ ଲକ୍ଷ ଟଙ୍କା ନ ମିଳିବ ତାହେଲେ ରେଳ ଲାଇନ ଉପରେ ତୁମ ବାପାଙ୍କ ଶବ ପଡ଼ିଥିବାର ଦେଖିବ ।

-ଆଚ୍ଛା, ତୁମେ ବୁଝୁନା କାହିଁକି ? ଗୋଟେ ଦିନ ଭିତରେ ଆମେ ଦଶ ଲକ୍ଷ ଟଙ୍କା କୋଉଠୁ ଆଣିବୁ ? ଜଣେ ଇଣ୍ଡଷ୍ଟ୍ରିଆଲିଷ୍ଟ କ'ଣ କେବେ ଏତେ ଟଙ୍କା ଆଇଡିଲ୍ ରଖେ ? ସିଏ ଯେତେ ଅଧିକ ରୋଜଗାର କରେ ସେତେ ଅଧିକ ଟଙ୍କା ଇଣ୍ଡଷ୍ଟ୍ରିରେ ଇନ୍‌ଭେଷ୍ଟ କରେ ।

- ତୁମେ ମୋତେ ଆଉ ବୁଦ୍ଧି ଶିଖାଇବାକୁ ଚେଷ୍ଟା କରନା । ଟଙ୍କା କୋଉଠୁ ଆସିବ ସେ କଥା ଜଣେ ଇଣ୍ଡଷ୍ଟ୍ରିଆଲିଷ୍ଟିକୁ ଭଲ ଭାବରେ ଜଣା । ତେବେ ତୁମେ ଜାଣିକି ନ ଜାଣିବାର ଅଭିନୟ କରୁଥିବାରୁ କହି ଦଉଚି ଶୁଣ । ବିଭିନ୍ନ ବ୍ୟାଙ୍କରୁ ଆଜିକାଲି ଖୁବ୍ ସହଜରେ ଅଳ୍ପ ସୁଧର ଲୋନ୍ ମିଳୁଛି । ତୁମ ପରି ଶିଳ୍ପପତିକୁ ଗୋଟିଏ ଦିନରେ ଦଶ ଲକ୍ଷ କାହିଁକି ପଚାଶ ଲକ୍ଷ ଟଙ୍କା ଲୋନ୍ ଦେବାକୁ ଅନେକ ବ୍ୟାଙ୍କ ନିଜ ନିଜ ଭିତରେ ପ୍ରତିଯୋଗିତା କରିବେ । ତମେ ଯେ କୌଣସି ଗୋଟେ ବ୍ୟାଙ୍କକୁ ଫୋନ୍ କରି ପରୀକ୍ଷା



Digitized by srujanika@gmail.com

କର ।

- ତୁମେ ତ ଶିଳ୍ପପତି ନୁହଁ , ତୁମେ କେମିତି ଜାଣିବ ଯେ ଜଣେ ଶିଳ୍ପପତି ବ୍ୟାଙ୍କରୁ ଲୋନ୍ ଆଣିବା ପୂର୍ବରୁ ପ୍ରଥମେ ଦେଖେ ଏଟଙ୍କା ସେ ଯେଉଁଠି ଇନ୍‌ଭେଷ୍ଟ କରିବ ତାକୁ ସେଥିରୁ କେତେ ଲାଭ ମିଳିବ ।

କିଡ଼ନାପର୍ ଗର୍ଜି ଉଠିଲା । ତୁମ ଲାଭ କ୍ଷତିର ହିସାବ ଶୁଣିବାକୁ ମୋର ଧୈର୍ଯ୍ୟ ନାହିଁ କି ମୋ ହାତରେ ସମୟ ନାହିଁ । ତୁମେ ତା'ହେଲେ ଏଥର ଖୋଲା ଖୋଲି କହିଦିଅ ତୁମ ବୁଢ଼ା ବାପାଙ୍କୁ ମୁକୁଳାଇବାକୁ ତମେ ଚାହୁଁନା । ତୁମଠୁ ସେତିକି କଥା ସ୍ପଷ୍ଟ ଭାବରେ ଶୁଣିଲେ ମୋ କାମ ମୁଁ କରିବି । ମୋତେ ବୋକା ବନେଇବାକୁ ଚେଷ୍ଟା କରନା ।

ସୀମାଦ୍ରୀ ଉତ୍ତର ଦେଲେ- ଏ ଦିଗରେ ତୁମେ କେତେ ବୁଦ୍ଧିମାନ ତାର ପରିଚୟ ମିଳି ସାରିଛି । ତମେ ଜଣେ ୬୫ ବର୍ଷର ବୁଢାକୁ କିଡ଼ନାପ୍ କରି ତା ପରିବର୍ତ୍ତେ ଦଶଲକ୍ଷ ଟଙ୍କା ଦାବି କରୁଛ । ତୁମେ ଜାଣ ବୁଢ଼ାଲୋକମାନେ ପରିବାରରେ କେତେ ଅଦରକାରୀ, ଅଲୋଡ଼ା ? ଏବେ ତୁମେ ନିଜେ ଚିନ୍ତା କର, ନିଜ ମନକୁ ପଚାର ଜଣେ କର୍ତ୍ତୃତ୍ୱହୀନ ବୃଦ୍ଧକୁ କିଡ଼ନାପ୍ କରି ତୁମ ଧନ୍ଦା ଦୃଷ୍ଟିରୁ ତୁମେ ପ୍ଲସ ପଏଣ୍ଟ୍‌ରେ ଅଛ ନା ମାଇନସ୍ ପଏଣ୍ଟରେ ? ଏ ବିଷୟରେ ଭଲ ଭାବରେ ଚିନ୍ତା କରିବା ପାଇଁ ମୁଁ ତୁମକୁ ଗୋଟିଏ ଘଣ୍ଟା ସମୟ ଦେଲି ।

ସୀମାଦ୍ରି ଏତକ କହି ସାରିବା ସଙ୍ଗେ ସଙ୍ଗେ ଫୋନ୍‌ର ରିସିଭରଟା ଥୋଇଦେଲେ । ଶେଷାଦ୍ରୀ ବଡ଼ଭାଇଙ୍କ କଥା କହିବାର ଦକ୍ଷତାକୁ ପ୍ରଶଂସା କଲେ । ଦୁଇ ଭାଇ ହସାହସି ହେଲେ । ବଲ୍‌ଟା ଏଥର କିଡନାପର୍ କୋର୍ଟରେ ।

ଠିକ୍ ଘଣ୍ଟାକ ପରେ ଫୋନ୍ ବାଜିଲା । ସୀମାଦ୍ରୀ ଚାହିଁଲେ ଶେଷାଦ୍ରୀ ମୁହଁକୁ । ତାଙ୍କଠୁ ଇସରା ପାଇ ଶେଷାଦ୍ରୀ ଫୋନ୍ ଉଠାଇଲେ । ସେପଟରୁ କିଡ଼ନାପର୍ କହିଲା- ଦଶ ଲକ୍ଷ ଟଙ୍କା ଯଦି ତୁମକୁ ଏତେ ବାଧୁଛି, ତା'ହେଲେ ତୁମେ ଆଠ ଲକ୍ଷ ଟଙ୍କା ଦିଅ । କାଲି ଦିନ ବାରଟାବେଳେ ମୋ ଲୋକ ଖଣ୍ଡଗିରି ଛକରେ ଅପେକ୍ଷା କରିଥିବ । ତା' ମୁଣ୍ଡରେ ଗୋଟେ ନାଲି ଟୋପିଥିବ ।

ଶେଷାଦ୍ରୀ ଫୋନ୍‌ର ରିସିଭରଟାକୁ ଗୋଟେ ହାତରେ ବନ୍ଦ କରି ବଡ଼ ଭାଇଙ୍କୁ କହିଲେ- କିଡ଼ନାପର ଆଠ ଲକ୍ଷକୁ ଖସିଲାଣି । ନିଅ ତୁମେ ଏଥର ତା ସହିତ ବାର୍ଗେନ କର । ଏଟା ନୂଆ ଆଉ ଅନଭିଜ୍ଞ କିଡ଼ନାପର୍ ପରି ମନେ ହେଉଛି । ଲକ୍ଷେ ଟଙ୍କାକୁ



Digitized by srujanika@gmail.com

ଖସିଲେ ରାଜି ହେଇଯିବ ।

ସୀମାଦ୍ରୀ ସାନଭାଇ ହାତରୁ ଫୋନ୍ ରିସିଭରଟା ନେଇ କହିଲେ-ତମେ ଏବେ ବୁଝିଲଣିତ ବୃଦ୍ଧମାନଙ୍କ ମୁଣ୍ଡଦାମ୍ ବେଶିନୁହଁ ବୋଲି ?

-ତୁମେ ବୋଧେ ଭୁଲି ଯାଉଛ ସୀମାଦ୍ରୀବାବୁ ମୁଁ ଜଣେ ବୃଦ୍ଧକୁ କିଡନାପ୍ କରିନାହିଁ, ତୁମ ବାପାଙ୍କୁ କିଡନାପ୍ କରିଛି, ଯିଏ ତୁମକୁ ପୃଥିବୀର ଆଲୋକ ଦେଖାଇଛନ୍ତି ଆଉ ଏତେ ବଡ଼ ଇଣ୍ଡଷ୍ଟ୍ରିର ମାଲିକ କରାଇଛନ୍ତି । ତୁମ ବାପା ଯଦି ମୋ ହାତରେ ସାମାନ୍ୟ କେଇ ଲକ୍ଷ ଟଙ୍କା ପାଇଁ ମୃତ୍ୟୁବରଣ କରନ୍ତି ତାହେଲେ ତୁମର ବନ୍ଧୁବାନ୍ଧବ, ସାଇ ପଡ଼ିଶା ଆଉ ତୁମ ସମାଜ ତୁମକୁ କ୍ଷମା ଦେବ ତ ?

-ତୁମ ହାତରେ ଯଦି ଆମ ବାପାଙ୍କର ହତ୍ୟାହୁଏ, ସେଥିପାଇଁ ଆମେ ନିନ୍ଦିତ ହେବୁ ନାହୁଁ, ନିନ୍ଦିତ ହେବ ତୁମେ ଆଉ ଆମ ରାଜ୍ୟର ପୋଲିସ୍ ।

- ଠିକ୍ ଅଛି ସୀମାଦ୍ରୀବାବୁ, ତୁମେ ଏଥର ତୁମ ବାପାଙ୍କ ସହିତ କଥାବାର୍ତ୍ତା ହୁଅ । ସିଏ କ'ଣ କହୁଚନ୍ତି ଶୁଣ ।

ଏଥର ଫୋନ୍‌ରେ ସନାତନଙ୍କ କାନ୍ଦ କାନ୍ଦ ସ୍ୱର ଶୁଭିଲା- ଆରେ ସୀମାଦ୍ରୀ।ମୁଁ ତୁମ ପାଇଁ କ'ଣ ନକରିଛି? କ'ଣ ନଦେଇଛି? ତୁମ ପାଇଁ ଆଠ, ଦଶ ଲକ୍ଷ ଟଙ୍କା ବଡ଼ ହେଇଗଲା? ବାପାଠି ତୁମର ଆଉ କିଛି କାମ ନାହିଁ ? ହଁ, ତମେ ଯେତେବେଳେ ପିଲାଥିଲ, ପାଠ ପଢୁଥିଲ, ରୋଜଗାରକ୍ଷମ ହୋଇ ନଥିଲ କି ବିବାହ କରି ନଥିଲ, ସେତେବେଳେ ତୁମର ବାପା ଦରକାର ଥିଲା । ଏବେ ଏ ବୁଢ଼ାବାପାଟା ତୁମର କି କାମରେ ଲାଗିବ ?

- ନା ବାପା ! ମୁଁ ତୁମକୁ ଏ ସବୁକଥା କହିନାହିଁ । ମୁଁ କିଡ଼ନାପର୍‌କୁ ଯାହା କହିଛି ସେସବୁ ସତ ବୋଲି ତୁମେ କେମିତି ଭାବି ପାରିଲ ? ତୁମ ପୁଅମାନଙ୍କ ଉପରେ ତୁମର କ'ଣ ଆସ୍ଥା କି ବିଶ୍ୱାସ ନାହିଁ ? ଗୋଟେ କିଡ଼ନାପରର ସବୁ ସର୍ତ୍ତ ମାନିଯିବା କ'ଣ ଠିକ୍ କଥା ବାପା ? ତା' ସହିତ ମୁଁ ଯାହା କଥା ହେଇଚି ସେସବୁ ମୋ ଅନ୍ତରର କଥା ନୁହଁ, ସେସବୁ ମୋର ଡିପ୍ଲୋମାଟିକ କଥା । ମୁଁ ଯଦି କିଡ଼ନାପର୍ କହିବା ସଙ୍ଗେ ସଙ୍ଗେ ଦଶ ଲକ୍ଷ ଟଙ୍କା ଦେଇଦିଏ ତାହେଲେ ସିଏ ପଇସା ପାଇଁ ଆଉ କାହା ବାପାଙ୍କୁ କିଡ଼ନାପ୍ କରିବାକୁ ଉତ୍ସାହିତ ହେବ । କିଏ ଜାଣେ ତୁମକୁ ବି ଆଉ ଥରେ ଉଠାଇ ନେଇପାରେ ।

ଆଚ୍ଛା ବାପା, ତୁମକୁ ସିଏ କିଛି ମିସ୍ ବିହେବ କରୁ ନାହିଁତ ? ଭୟକର ନାହିଁ,



Digitized by srujanika@gmail.com

ସେଠି ତୁମର ଯାହା ଯାହା ଅସୁବିଧା ହେଉଛି ମୋତେ କୁହ ।

- ନା, ମୋର କିଛି ବି କ୍ଷତି କରି ନାହାଁନ୍ତି । ଆଦୌ ମିସ୍ ବିହେବ କରିନାହାଁନ୍ତି ।

-ଖାଇବା ପିଇବା ଠିକ୍ ଭାବେ ଦେଉଛନ୍ତି ତ ?

- ସେ ସବୁ ଠିକ୍ ଭାବେ ଦେଉଛନ୍ତି, କିନ୍ତୁ ମୋର ଖାଇବାକୁ ଇଚ୍ଛା ନାହିଁ । ମତେ ଏଠି ମୋତେ ଭଲ ଲାଗୁନାହିଁ । ତୁ ମତେ ଏଠୁ ଶୀଘ୍ର ମୁକୁଳାଇ ନେ ।

-ତୁମେ ବ୍ୟସ୍ତ ହୁଅନା ବାପା ! ଠିକ୍ ଭାବେ ଖିଆପିଆ କର । କିଡନାପର୍ ତୁମକୁ ମାରିବାକୁ ସେଠିକି ନେଇନାହିଁ । ତୁମକୁ ମାରିଦେଲେ ତାକୁ ଟଙ୍କାଟିଏ ବି ମିଳିବ ନାହିଁ । ତୁମକୁ ବଞ୍ଚାଇ ରଖିଲେ ହିଁ ସିଏ ଟଙ୍କା ପାଇବ । ଫୋନ୍‌ଟା ଏଥର କିଡ଼ନାପରକୁ ଦିଅ ।

ସନାତନ ଫୋନ୍‌ଟାକୁ କିଡ଼ନାପର ହାତକୁ ବଢ଼ାଇ ଦେଲେ । ସୀମାଦ୍ରୀକୁ କିଡ଼ନାପର୍ ପ୍ରଶ୍ନ କଲା- କଣ ଡିସାଇଡ୍ କଲ ?

ସୀମାଦ୍ରୀ ଚଢ଼ାଗଳାରେ ଉତ୍ତର ଦେଲେ- ଯାହା ଜଣା ପଡୁଛି ଆମକୁ ପୋଲିସ୍‌ର ସାହାଯ୍ୟ ନେବାକୁ ପଡ଼ିବ । ଠିକ୍ ଅଛି, ତୁମେ ଯାହା କରିବା କଥା କର । ମୋତେ ଆଉ ଫୋନ୍ କରି ବିରକ୍ତି କରନା ।

କିଡ଼ନାପର୍ ହସି ହସି କହିଲା- ମତେ ତମେ ପୋଲିସ ଧମକ ଦେଉଚ ? ପୋଲିସ୍ କେତେ ଦକ୍ଷ ତମେ ଜାଣ କି ନା ମୁଁ କହି ପାରିବି ନାହିଁ । କିନ୍ତୁ ସେ କଥା ମୁଁ ଜାଣେ । କିଡନାପରକୁ ଖୋଜିବାକୁ ପୋଲିସ୍ ଗାଡିରେ ପେଟ୍ରୋଲ୍ ନାହିଁ । ପୋଲିସ୍ ହାତକୁ ପ୍ରତିଦିନ ଯେତେ କେଶ୍ ଆସୁଛି ତାକୁ ହ୍ୟାଣ୍ଡଲ କରିବା ପାଇଁ ତାଙ୍କ ପାଖରେ ଯଥେଷ୍ଟ ସଂଖ୍ୟକ ଷ୍ଟାଫ୍ କି ଅଫିସର୍ ନାହାଁନ୍ତି ।

ମୋର ଗୋଟେ କଥା ମନେରଖ, ପୋଲିସ୍ ଫେଲ୍ ମାରିଲେ ତୁମେ ମୋଠୁ ଆଉ କିଛି ସାହାଯ୍ୟ କି ସମ୍ବେଦନା ପାଇବ ନାହିଁ । କାଲିରାତି ବାରଟା ଭିତରେ ମୋ ସର୍ତ୍ତ ପୂରଣ ନ ହେଲେ ମୁଁ ତୁମ ବାପାଙ୍କୁ ହତ୍ୟା କରିବାକୁ ବାଧ୍ୟ ହେବି ।

କିଡ଼ନାପର୍ ରାଗି ଯାଇ ଫୋନ୍‌ଟା କାଟି ଦେଲା । ସୀମାଦ୍ରୀ ଓ ଶେଷାଦ୍ରୀ ଦୁହେଁ ପରସ୍ପରଙ୍କ ମୁହଁକୁ ଚାହିଁଲେ । କାହାରି ମୁହଁରେ କିଛି କଥା ନାହିଁ । ପରିଣତି କଣ ହେବ ? କିଡ଼ନାପର ଯଦି ରାଗିଯାଇ ସତରେ ବାପାଙ୍କୁ ମାରିଦିଏ, ତାହେଲେ ତାଙ୍କ ସାମାଜିକ ସ୍ଥିତି କ'ଣ ହେବ ?

ସୀମାଦ୍ରୀ ଓ ଶେଷାଦ୍ରୀ କିଡ଼ନାପର୍‌ର ପରବର୍ତ୍ତୀ ଫୋନ୍‌କୁ ଅପେକ୍ଷା କରି ବସି



Digitized by srujanika@gmail.com

ରହିଲେ । ଉଭୟଙ୍କ ମୁହଁରେ ଭୟ ଓ ଉତ୍‌କଣ୍ଠାର ଗୋଟେ ଫେଣ୍ଟାଫେଣ୍ଟି ରଙ୍ଗ ।

କିଡନାପର୍ ସନାତନଙ୍କୁ ବୁଝାଇଲା- ଦେଖନ୍ତୁ, ଆପଣ ମୋ ବାପା ବୟସର । ମୁଁ ଆପଣଙ୍କୁ ମାରିବାକୁ ଚାହୁଁନାହିଁ । କିନ୍ତୁ ଆପଣଙ୍କ ପୁଅମାନେ ମୋତେ ବାଧ୍ୟ କରୁଛନ୍ତି ସେମିତି ଗୋଟେ ଅମାନୁଷିକ କାମ କରିବା ପାଇଁ । ଆପଣ ଏତେ ଶୀଘ୍ର ଏତେ ଟଙ୍କାର ଇଣ୍ଡଷ୍ଟ୍ରି ଦୁଇଟା ଦୁଇ ପୁଅଙ୍କୁ ହସ୍ତାନ୍ତର କରିବାର ନଥିଲା । ଆପଣ ଏବେ ତାଙ୍କ ପାଖରେ ଅତ୍ୟନ୍ତ ଅଦରକାରୀ । ଆପଣଙ୍କ ସ୍ତ୍ରୀ ଥିଲେ ହୁଏତ ପୁଅମାନଙ୍କ ଉପରେ ଚାପ ପକାଇ ଆପଣଙ୍କୁ ମୁକୁଳାଇବାର ବ୍ୟବସ୍ଥା କରି ପାରିଥାନ୍ତେ । ତାଙ୍କର ପାଞ୍ଚ ବର୍ଷ ତଳେ ମୃତ୍ୟୁ ହୋଇ ଯାଇଛି । ଆପଣଙ୍କ ବୋହୂମାନେ ହୁଏତ ଆପଣଙ୍କୁ ଏଠୁ ମୁକୁଳାଇବାର ସପକ୍ଷରେ ନାହାଁନ୍ତି ।

ସନାତନ ଯୁକ୍ତି ବାଢ଼ିଲେ- ନା, ତୁମ କଥାରେ ମୁଁ ଏକମତ ନୁହଁ । ମୋ ପୁ. ମୋତେ ଫୋନ୍‌ରେ କହିଚି ସିଏ ନିଶ୍ଚୟ ମୋତେ ଏଠୁ ମୁକୁଳାଇ ନେବ । ସିଏ ତୁମକୁ ଯାହାସବୁ କହିଚି ସେଟା ତାର ଅନ୍ତରର କଥା ନୁହଁ । ସେଟା ତାର ଡିପ୍ଲୋମାଟିକ୍ କଥା । ତା'ଛଡ଼ା ତୁମେ ଯଦି ମୋତେ କିଡନାପ୍ କରି ଦଶ ଲକ୍ଷ କି ଆଠ ଲକ୍ଷ ଟଙ୍କା ପାଇଯାଅ, ତାହେଲେ ତୁମେ ଅଧିକ ଉତ୍ସାହିତ ହୋଇ ମୋ ପରି ଆଉ ଯେ କୌଣସି ପରିବାରରୁ ଆଉ ଗୋଟେ ବାପାକୁ କିଡନାପ୍ ନକରିବ, ସେକଥା କିଏ କହିବ ? । ତୁମର ଏ ବାପା କିଡନାପିଙ୍ଗ ଯୋଜନାକୁ ଉତ୍ସାହିତ କରାଯିବା ଠିକ୍ ନୁହେଁ ।

-ଆପଣଙ୍କ ପୁଅ ମୋ ସହିତ ଡିପ୍ଲୋମାଟିକ କଥାବାର୍ତ୍ତା କଲେ କି ଆପଣଙ୍କ ସହିତ ଡିପ୍ଲୋମାଟିକ୍ କଥାବାର୍ତ୍ତା କଲେ ସେ କଥାଟା ଠିକ୍ ଭାବେ ବୁଝି ହେଉନାହିଁ । ତେବେ ମୁଁ ଏତିକି ବୁଝିଲି ଆପଣଙ୍କ ପୁଅ ଖୁବ୍ ଡିପ୍ଲୋମାଟ୍ ଆଉ ସିଏ ଆମ ଉଭୟଙ୍କ ସହିତ ଡିପ୍ଲୋମାଟିକାଲି କଥାବାର୍ତ୍ତା କରିଛନ୍ତି । ମୁଁ ଆପଣଙ୍କ ପୁଅକୁ କାଲି ରାତି ୧୨ଟା ପର୍ଯ୍ୟନ୍ତ ସମୟ ଦେଇଚି । ସେହି ସମୟ ଭିତରେ ଯଦି ତାଙ୍କଠୁ କିଛି ସୂଚନା କି ସ୍ୱୀକୃତି ନ ଆସିଲା, ତେବେ ମୋ କଥା ଅନୁସାରେ ଏଇ ବନ୍ଧୁକ ସାହାଯ୍ୟରେ ଆପଣଙ୍କୁ...

କିଡନାପର୍ ବନ୍ଧୁକଟି ସନାତନଙ୍କ ମୁଣ୍ଡପାଖରେ ଲଗାଇ ରଖିଲା । ସନାତନ ଭୟଭୀତ ହୋଇ ଅନୁନୟ କଲେ- ଦେଖ, ମୋତେ ମାରିଦେଲେ ତୁମକୁ ଟଙ୍କାଟିଏ ବି ମିଳିବ ନାହିଁ । ଗୋଟେ ବୃଦ୍ଧକୁ ମାରିବାରେ ତୁମକୁ ପୌରୁଷର ପରିଚୟ ବି ମିଳିବ ନାହିଁ । ଅଯଥା ତୁମେ ଗୋଟେ ହତ୍ୟା ଅପରାଧ ମୁଣ୍ଡାଇବ । ମୋ କଥାରେ ଯଦି ତୁମେ ବିଶ୍ୱାସ କରିବ ଆଉ ମୋ କଥା ଅନୁସାରେ ତୁମେ ଯଦି କାମ କରିବ ତାହେଲେ ତୁମକୁ



Digitized by srujanika@gmail.com

ତୁମ ପଣ ଟଙ୍କା ମିଳିଯିବ ।

କିଡନାପର୍ ସନାତନଙ୍କ ମୁହଁକୁ ଚାହିଲା । ତାଙ୍କ ମୁହଁରେ ନିଜ ବାପାଙ୍କ ମୁହଁକୁ ଦେଖିପାରି ବିଚଳିତ ହେଲା । ନିଜକୁ ଯଥା ସମ୍ଭବ ନିୟନ୍ତ୍ରଣ ଭିତରେ ରଖି କହିଲା- ଆଗରୁ କହିଛି ଆପଣ ମୋ ବାପା ପରି । ଆପଣଙ୍କ କଥାକୁ ମୁଁ ନିଶ୍ଚୟ ବିଶ୍ୱାସ କରିବି । କ'ଣ କରିବାକୁ ପଡ଼ିବ କୁହନ୍ତୁ ?

ସନାତନ କହିଲେ - ମତେ ତମେ ମୁକ୍ତ କରିଦେଇ ପାରିବ ? ମୁଁ କଥା ଦେଉଛି ମୋତେ ମୁକ୍ତ କରିଦେବାର ସାତ ଆଠ ଘଣ୍ଟା ଭିତରେ ତୁମ ଟଙ୍କା ତୁମେ ପାଇଯିବ । କିନ୍ତୁ ତମକୁ ମୋର ଗୋଟିଏ ଅନୁରୋଧ ରକ୍ଷା କରିବାକୁ ହେବ, ତୁମେ ଆଉ କେବେ କୌଣସି ପରିବାରର ବୃଦ୍ଧ ପିତାକୁ ଅପହରଣ କରିବ ନାହିଁ । ସେମାନେ ତାଙ୍କ ପରିବାରରେ ଅତ୍ୟନ୍ତ ଅଦରକାରୀ ଓ ଅସହାୟ । ବୃଦ୍ଧମାନେ ତୁମ ପିତାଙ୍କ ବୟସର ଓ ପିତାପରି ।

କିଡ଼ନାପର୍ ଗମ୍ଭୀର ହୋଇ କିଛି ସମୟ ଭାବିଲା ।

ସନାତନ ପୁଣି ଥରେ କହିଲେ- ତୁମେ ଚିନ୍ତା କରନା, ମୋ ଉପରେ ବିଶ୍ୱାସ ରଖ । ମୁଁ ଯଦି ମୋ ଦୁଇ ପୁଅକୁ ଶହେ କୋଟି ଟଙ୍କାର ଦୁଇଟା ଇଣ୍ଡଷ୍ଟ୍ରି ଦେଇ ପାରିଲି ତୁମକୁ ଦଶ ଲକ୍ଷ ଟଙ୍କା ଦେଇ ନ ପାରିବି କାହିଁକି ? ଏତେ ଟଙ୍କା ମୁଁ କୋଉଠୁ ଆଣିବି ବୋଲି ତୁମ ମନରେ ହୁଏତ ସନ୍ଦେହ ଥିବ । ମୋ ଦୁଇ ପୁଅକୁ ମାଗିକି ତାଙ୍କଠୁ ଟଙ୍କା ଆଣି ମୁଁ ତୁମକୁ ଦେବି ନାହିଁ । ମୁଁ ଜାଣେ ସେମାନେ ଦେବେ ନାହିଁ । ସେମାନେ ଯଦି ଦେଇଥାନ୍ତେ, ତାହେଲେ ଆଜି ତୁମ ପାଖରୁ ମୋତେ ଏମିତି ଜୀବନ ଭିକ୍ଷା କରିବାକୁ ପଡ଼ି ନଥାନ୍ତା ।

କିଡ଼ନାପର୍ ଏଥର ବିଶ୍ୱାସର ସହିତ ସନାତନଙ୍କ ମୁହଁକୁ ଚାହିଁଲା । ସନାତନ କହିଲେ- ମୁଁ ଦଶ ବର୍ଷ ତଳେ ଷ୍ଟେଟ୍ ବ୍ୟାଙ୍କ୍‌ରେ ଦଶ ଲକ୍ଷ ଟଙ୍କା ଫିକ୍ସଡ୍ ଡିପୋଜିଟ୍ କରିଥିଲି । ସେ ଟଙ୍କାର ସୁଧ ମୂଳ ମିଶି ଏବେ ଚଉଦ, ପନ୍ଦର ଲକ୍ଷ ଟଙ୍କା ହୋଇଥିବ । ସେଇ ଟଙ୍କା ଉଠାଇ ମୁଁ ତୁମକୁ ଦଶ ଲକ୍ଷ ଟଙ୍କା ଦେଇଦେବି । ମୋ କଥାରେ ଯଦି ତୁମର ବିଶ୍ୱାସ ହେଉଛି, ତୁମେ ମୋତେ ଛାଡିଦିଅ, ଯଦି ବିଶ୍ୱାସ ନ ହେଉଛି ମତେ ହତ୍ୟାକର ।

କିଡନାପର୍ ଏଥର ବିଚଳିତ ଦିଶିଲା । ସିଏ କାନ୍ଦ କାନ୍ଦ କଣ୍ଠରେ କହିଲା- ମୁଁ ଆପଣଙ୍କୁ କହିବାକୁ ବାଧ୍ୟ ହେଉଛି ଯେ, ମୁଁ ପେଶାଦାର କିଡ଼ନାପର୍ ନୁହଁ । ମୁଁ ଜଣେ ଶିକ୍ଷିତ ବେକାର । ମୋ ବାପାଙ୍କର ଓପନହାର୍ଟ ସର୍ଜରୀ ପାଇଁ ଆଠ ଲକ୍ଷ ଟଙ୍କା ଦର୍କାର । ସେଥିପାଇଁ ମୁଁ ଆପଣଙ୍କୁ କିଡ଼ନାପ୍ କରିଥିଲି । ମତେ କ୍ଷମା କରିବେ, ଆପଣ ବର୍ତ୍ତମାନ



Digitized by srujanika@gmail.com

ମୁକ୍ତ ।

ସନାତନ କହିଲେ- ତୁମେ ଯଦି ଆରମ୍ଭରୁ ତୁମ ବାପାଙ୍କ ଅପରେସନ୍ କଥା କହିଥାନ୍ତ, ତାହେଲେ କଥା ଏତେ ପର୍ଯ୍ୟନ୍ତ ଯାଇ ନଥାନ୍ତା । ତୁମ ବାପା କୋଉ ହସ୍ପିଟାଲ୍‌ରେ ଆଡମିଟ୍ ହୋଇଛନ୍ତି ମତେ କୁହ । ତାଙ୍କ ବେଡ୍ ନମ୍ବର କୁହ ମୁଁ ନିଜେ ନେଇ ଟଙ୍କା ଦେଇ ଆସିବି ଆଉ ତୁମ ବାପାଙ୍କୁ ଦେଖି ଆସିବି ।

କିଡ଼ନାପର୍ ନିଜ ଆଖିରୁ ଲୁହ ପୋଛିସାରି ଗୋଟେ କାଗଜରେ ହସ୍ପିଟାଲ୍‌ର ନାଆଁ ଆଉ ବେଡ୍ ନମ୍ବର ଲେଖି ସନାତନଙ୍କ ହାତକୁ ବଢ଼ାଇ ଦେଲା ଓ କହିଲା- ଆପଣଙ୍କ ମହାନୁଭବତା ପାଇଁ ମୁଁ ଓ ମୋ ବାପା ଆପଣଙ୍କ ପାଖରେ କୃତଜ୍ଞ ରହିବୁ । କିନ୍ତୁ ଦଶ ଲକ୍ଷ ଟଙ୍କା ନୁହଁ, ବାପାଙ୍କ ଅପରେସନ୍ ପାଇଁ ଆଠ ଲକ୍ଷ ଟଙ୍କା ଆବଶ୍ୟକ । ବାପାଙ୍କ ଅପରେସନ୍ ଡେଟ୍ ଆଉ ଚାରି ଦିନ ଅଛି ।

ଯଥା ସମୟରେ ନିର୍ଦ୍ଦିଷ୍ଟ ହସ୍ପିଟାଲ୍‌ରେ ଆଠ ଲକ୍ଷ ଟଙ୍କା ପହଞ୍ଚାଇ ଦେବାର ପ୍ରତିଶ୍ରୁତି ଦେଇ ସନାତନ ଗୋଟିଏ ଟେମ୍ପୋରେ ସବାର ହେଲେ ।

କିଡ଼ନାପର ତା ବାପାଙ୍କ ଚିକିତ୍ସା ଦାୟିତ୍ୱରେ ଥିବା ଡାକ୍ତରଙ୍କୁ ଫୋନ୍ କରି ଜଣାଇ ଦେଲେ ଅପରେସନ୍ ପାଇଁ ଟଙ୍କାର ବ୍ୟବସ୍ଥା ହୋଇଗଲା । ଆପଣ ମୋ ବାପାଙ୍କ ଅପରେସନ୍ ପାଇଁ ଅନ୍ୟସବୁ ପ୍ରସ୍ତୁତ କରନ୍ତୁ । ଟଙ୍କା ଠିକ୍ ସମୟରେ ଆପଣଙ୍କ ପାଖରେ ପହଞ୍ଚି ଯିବ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ପ୍ରତୀକ

କଲିଙ୍ଗ୍‌ବେଲ୍ ବାଜିଲା । ପ୍ରତୀକ କ୍ଷୁଦ୍ରଗଳ୍ପ ଲେଖା ବନ୍ଦରଖି ତାଙ୍କ ଧର୍ମପତ୍ନୀ ନିଷାଙ୍କୁ କହିଲେ - ଦେଖତ କିଏ ଡାକୁଚନ୍ତି ।

ସକାଳ ରୋଷେଇ କାମରେ ବ୍ୟସ୍ତ ଥାଇ ନିଷା କହିଲେ- ମୁଁ ରୋଷେଇ କାମରେ ବ୍ୟସ୍ତ ଅଛି । ମୁଁ ଅଧାରୁ ଛାଡିକି ଗଲେ ଭଜା ପୋଡିଯିବ । ନିଜେ ଯାଇ ଦେଖ । ତମର କିଏ ଲେଖକ ବନ୍ଧୁ କି ପାଠକ କିଏ ହେଇଥିବେ, ନ ହେଲେ ସକାଳର ଏ କାର୍ଯ୍ୟବ୍ୟସ୍ତ ସମୟରେ ଆଉ କିଏ ଆସିବ ? କାହାର ଆଉ ସାଧାରଣଜ୍ଞାନର ଅଭାବ ?

ପ୍ରତୀକ ବାଧ୍ୟ ହୋଇ ଗଳ୍ପଲେଖା କାଗଜ କଲମକୁ ଟେବୁଲ ଉପରେ ରଖିଦେଇ ଡ୍ରଇଁରୁମ୍‌ର କବାଟ ଖୋଲିଲେ । ଦୁଇଜଣ ଯୁବକ ତାଙ୍କୁ ନମସ୍କାର କଲେ । ପ୍ରତୀକ ତାଙ୍କୁ ଡ୍ରଇଁରୁମ୍‌ର ସୋଫା ଉପରେ ବସାଇଲେ । ସେ ଦୁଇଜଣ ସୋଫା ଉପରେ ବସୁ ବସୁ ତାଙ୍କ ଭିତରୁ ଜଣେ ଯୁବକ ତାଙ୍କ ଦୁହିଁଙ୍କର ପରିଚୟ ଦେଲେ- ମୁଁ ଚିନ୍ମୟ, ଆଉ ସିଏ ମାନସ । ଆମେ କେନ୍ଦୁଝର ସହରରୁ ଆସିଛୁ । ଆମେ ଆପଣଙ୍କ ଗଳ୍ପର ମୁଗ୍ଧ ପାଠକ ।

ପ୍ରତି ଲେଖକର ସବୁଠୁ ଦୁର୍ବଳତମ ସ୍ଥାନ ହେଉଛି ତାର ଲେଖାର ପ୍ରଶଂସା । ଯିଏ ଲେଖକର ଲେଖାକୁ ଯେତେ ବେଶି ପ୍ରଶଂସା କରିବ ସିଏ ସଂପୃକ୍ତ ଲେଖକଙ୍କର ସେତେ ନିଜର ଓ ପ୍ରିୟ ହୋଇଯିବ । ପ୍ରଶଂସା ଯାଦୁବିଦ୍ୟାରେ ଲେଖକମାନେ ସଂପୂର୍ଣ୍ଣ ସମ୍ମୋହିତ ହୋଇ ଯାଆନ୍ତି । ଯିଏ ଯେତେ ବଡ ଲେଖକ ତାର ଏଇ ଦୁର୍ବଳତା ସେତେ ଅଧିକ ।

ପ୍ରତୀକ ଖୁସୀରେ ଖଇ ପରି ଶାଙ୍କୁଡି ଯାଇ ହସ ହସ ମୁହଁରେ ପ୍ରଶ୍ନ କଲେ- ଆପଣ ମୋର ଏ ବର୍ଷର ନୂଆଗପ ବହି ତୈଳଚିତ୍ର ପଢିଲେଣି ? ଆମ ରାଜ୍ୟର ବିଶିଷ୍ଟ ପ୍ରକାଶକ ପ୍ରତିଲିପି ଏ ବହିଟିକୁ ପ୍ରକାଶ କରିଛନ୍ତି । ତାଙ୍କର ବହି ବିତରଣ ବ୍ୟବସ୍ଥା ମାନେ ବୁକ୍ ଡିଷ୍ଟ୍ରିବୁସନ୍ ନେଟୱାର୍କ ଖୁବ୍ ଭଲ । ଓଡିଶାର ଛୋଟ,ବଡ ସବୁ ସହରରେ ତାଙ୍କ ବହି ପହଞ୍ଚେ । କେନ୍ଦୁଝର ବସ୍‌ଷ୍ଟାଣ୍ଡରେ ନିଶ୍ଚୟ ପ୍ରତିଲିପିର ବହି ମିଳୁଥିବ ।

ଯୁବକ ଦୁଇଜଣ ପରସ୍ପରଙ୍କ ମୁହଁକୁ ଚାହିଁଲେ । ପ୍ରତୀକ ସେ ଦୁଇ ଜଣଙ୍କ ମୁହଁର

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ମୁଦ୍ରାରୁ ଜାଣି ପାରିଲେ ଯେ ସେମାନେ ତୈଳଚିତ୍ର ଗଳ୍ପଗ୍ରନ୍ଥଟି ପଢ଼ିବାର ସୁଯୋଗ ପାଇ ନାହାଁନ୍ତି । ସେମାନଙ୍କ ସଂକୋଚ ଭାବକୁ କାଟିବା ପାଇଁ ପ୍ରତୀକ କହିଲେ- ଠିକ୍ ଅଛି । ପଢି ନାହାଁନ୍ତି ଯଦି, ଏଠୁ କେନ୍ଦୁଝର ଫେରିଗଲେ ପଢ଼ିକି କହିବେ କେମିତି ହୋଇଛି ।

ଯୁବକ ଦୁଇ ଜଣ ହସ ହସ ମୁହଁରେ କହିଲେ- ଆମ କେନ୍ଦୁଝର ଛୋଟ ସହରତ, ସେଠିକି ନୂଆ ବହି ଡେରିରେ ଯାଏ । ଆଜି ଆମେ ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରୁ 'ତୈଳଚିତ୍ର' ବହି କିଣିନେବୁ ।

ପ୍ରତୀକ କିଛି ନ କହି ଘର ଭିତରକୁ ପଶିଗଲେ । ଏଇ ସମୟ ଭିତରେ ଦୁଇ ଯୁବକ ଚିନ୍ମୟ ଓ ମାନସ ଦୁହିଁଙ୍କ ଭିତରେ ଆଲୋଚନା ଆରମ୍ଭ ହେଲା । ଚିନ୍ମୟ କହିଲା- ଏ ଲେଖକ ଗୁଡାକ ଏମିତି ପ୍ରଶଂସା ପାଗଳ ବୋଲି ମୁଁ ଜାଣିଥିଲେ ତାଙ୍କ ବହିରୁ ଗୋଟେ ଦୁଇଟା ପଢ଼ିକି ଓ ସେଥିରୁ କିଛି ମନେରଖିକି ଆସିଥାନ୍ତି । ସିଏ ଯଦି ତାଙ୍କର ନିର୍ଦ୍ଦିଷ୍ଟ କୌଣସି ଗପ ଉପରେ ପଚାରନ୍ତି ଆମେ ଏବେ କ'ଣ କରିବା ?

ଡ୍ରଇଁରୁମ୍‌ରେ ସଜାସଜି ହୋଇ ଦୃଷ୍ଟି ଆକର୍ଷଣକାରି ଢଙ୍ଗରେ ଥୁଆ ହୋଇଥିବା ବହି ଆଲମିରା, ମାନପତ୍ର ଓ ତାମ୍ରଫଳକ ଗୁଡିକ ଉପରେ ମାନସ ନଜର ପକାଇ ଆଣି କହିଲା- ଚିନ୍ମୟ ! ତୁ ବ୍ୟସ୍ତହୋନା । ମୁଁ ମ୍ୟାନେଜ କରିନେବି । ଲେଖକମାନେ ତାଙ୍କ ଲେଖା ବହି ଅପେକ୍ଷା ସିଏ ପାଇଥିବା ପୁରସ୍କାର, ସମ୍ମାନ ଓ ମାନପତ୍ର ଉପରେ ବେଶି ଗୁରୁତ୍ୱ ଦିଅନ୍ତି । ତୁ କେବଳ ଦେଖ ପ୍ରତୀକବାବୁ କ'ଣ କ'ଣ ପୁରସ୍କାର ପାଇଛନ୍ତି ଆଉ କ'ଣ ପାଇବାକୁ ବାକି ଅଛି ।

ଚିନ୍ମୟ ସୋଫାରୁ ଉଠିଯାଇ ତାମ୍ରଫଳକ ଗୁଡିକୁ ପଢ଼ିଲା । ସେଥିରେ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର, ବିଷୁବ ପୁରସ୍କାର ଓ ଆଉ ଦୁଇଟା ଅନ୍ୟାନ୍ୟ ସାହିତ୍ୟ ଅନୁଷ୍ଠାନ ପୁରସ୍କାର ଥିଲା । ଶାରଳା ପୁରସ୍କାର କିମ୍ବା କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ତାଙ୍କୁ ମିଳିନାହିଁ । ମିଳିଥିବା ପୁରସ୍କାର ଓ ସମ୍ମାନର ଗୋଟେ ଚିରିକୁଟି ପ୍ରସ୍ତୁତ କରି ସିଏ ମାନସ ହାତକୁ ବଢ଼ାଇ ଦେଲା ।

ମାନସ ଚିରକୁଟି ପଢ଼ିବା ସମୟରେ ପ୍ରତୀକବାବୁ ଘର ଭିତରକୁ ଫେରିଆସିଲେ । ତାଙ୍କ ପଛେ ପଛେ ଦୁଇ କପ୍ ବାମ୍ପ ଉଠା ଚା'ଧରି ଆସିଲା ତେର ଚଉଦ ବର୍ଷର ଝିଅଟିଏ । ଘରର ଚାକରାଣୀ ନିଶ୍ଚୟ । ତାର ପୋଷାକ ଓ ପରିପାଟୀରୁ ସେମିତିଆ ଧାରଣା ସୃଷ୍ଟି ହେଉଥିଲା ।

ପ୍ରତୀକବାବୁ ନିଜର ଆସନ ଗ୍ରହଣ କରୁ କରୁ ଚିନ୍ମୟ ଓ ମାନସଙ୍କୁ ଅନୁରୋଧ



Digitized by srujanika@gmail.com

କଲେ ଚା' ପିଇବାକୁ ।

ଚିନ୍ମୟ ଓ ମାନସ ଚା' ପିଉ ପିଉ ପ୍ରତୀକଙ୍କ ସହିତ ଗପ ଲମ୍ୱାଇଲେ । ମାନସ କହିଲା- ଆପଣଙ୍କ ଗଳ୍ପ ବଳିଷ୍ଠ ଓ ପ୍ରଭାବଶାଳୀ । ମୁଁ ପୂଜା ସଂଖ୍ୟା ପତ୍ରିକା ଧରିବା ମାତ୍ରେ ଆଗ ସୂଚୀପତ୍ର ଦେଖେ, ଆପଣଙ୍କ ନାଆଁ ଅଛି ନା ନାହିଁ । ଯେଉଁ ପତ୍ରିକାରେ ଆପଣଙ୍କ ଗପ ନଥାଏ ତାକୁ ମୁଁ କିଣେନା । ପତ୍ରିକାଟି ପଢିବା ବେଳେ ଆପଣଙ୍କ ଗପଟି ଆଗ ପଢେ । ଆପଣଙ୍କ ଗଳ୍ପ ଏତେ ବଳିଷ୍ଠ ଯେ ଗୋଟେ ଗପ ପଢିବା ପରେ ମୁଁ ସେଇ ଗପ ଓ ତାର ଚରିତ୍ରମାନଙ୍କୁ ନେଇ ଅତିକମ୍‌ରେ ଆଠ, ଦଶଦିନ ତା ଭିତରେ ହଜିଯାଏ । କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଉଛି ଆପଣଙ୍କୁ ଆଜି ଯାଏ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ମିଳିନାହିଁ କାହିଁକି ? ଓଡିଶାର ଅଗଣିତ ଗଳ୍ପ ପାଠକଙ୍କୁ ଆପଣଙ୍କ ପ୍ରଭାବଶାଳୀ ଗଳ୍ପ ବିଗତ ଦୁଇ ଦଶନ୍ଧି ଧରି ସମ୍ମୋହିତ କରି ରଖିଛି । ଆପଣଙ୍କର କିଛି ବହି ହିନ୍ଦୀ ଆଉ ଇଂରାଜୀ ଭାଷାରେ ଅନୁବାଦିତ ହୋଇ ଦିଲ୍ଲୀ ପ୍ରକାଶକଙ୍କ ଦ୍ୱାରା ପ୍ରକାଶ ପାଇଲେ ଜାତୀୟ ଓ ଆନ୍ତର୍ଜାତୀୟ ପୁରସ୍କାର ଆପଣଙ୍କୁ ନିଶ୍ଚୟ ମିଳନ୍ତା ।

ଚିନ୍ମୟ ଲକ୍ଷ୍ୟକଲା ମାନସର କଥାରେ ପ୍ରତୀକବାବୁଙ୍କ ମୁହଁ ଓ ଆଖି ହସ ହସ ।

ପ୍ରତୀକବାବୁ ବିନମ୍ରତା ପ୍ରକାଶ କରି କହିଲେ- ଦେଖନ୍ତୁ, ମାନସବାବୁ ! ପୁରସ୍କାର ତା' ବାଟରେ କିନ୍ତୁ ଆମେ ଆମ ବାଟରେ । ଜଣେ ଲେଖକ ତାର ସାବଲୀଳ ଗତିରେ ଲେଖି ଚାଲିବ । ଲେଖକ କଦାପି ପୁରସ୍କାରକୁ ଦୃଷ୍ଟିରେ ରଖି ସାହିତ୍ୟ ରଚନା କରେ ନାହିଁ । ଲେଖକ ଲେଖି ଚାଲେ ଓ ଅପ୍ରତ୍ୟାଶିତ ଭାବେ ତାକୁ କେବେ କେମିତି ପୁରସ୍କାର ମିଳେ ।

ଚିନ୍ମୟ ପ୍ରତୀକଙ୍କ କଥାକୁ ସମର୍ଥନ କଲା - ସେ କଥା ଅବଶ୍ୟ ଠିକ । କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଏ ଯାଏ ଆପଣଙ୍କୁ ନ ମିଳିବା ଆପଣଙ୍କର ଭୁଲ ନୁହଁ । ଏଟା ତା'ର ବିଚାରକ ମଣ୍ଡଳୀଙ୍କର ଅସାମର୍ଥ୍ୟ , ଅଯୋଗ୍ୟତା ।

ପ୍ରତୀକ ପ୍ରତିବାଦ କଲେ - ନା, ସେ ବିଜ୍ଞ ବିଚାରକ ମଣ୍ଡଳୀ ବିରୁଦ୍ଧରେ ଏମିତି ଆପତ୍ତିଜନକ କଥା କହିବା ଆମ ପକ୍ଷେ କଦାପି ଠିକ୍ ନୁହେଁ ।

- ତଥାପି ଆପଣଙ୍କ ପ୍ରତିଭା ପ୍ରତି ଏଟା ପ୍ରଚଣ୍ଡ ଅବିଚାର ନିଶ୍ଚୟ ।

ପ୍ରତୀକବାବୁଙ୍କ ଅନୁରୋଧକ୍ରମେ ସେ ଆଲୋଚନା ସେଇଠି ବନ୍ଦ କରାଗଲା । ସେ ଦୁହିଁଙ୍କର ଆସିବାର କାରଣ ଜାଣିବାକୁ ଚାହିଁଲେ ପ୍ରତୀକ ।

ଚିନ୍ମୟ ନିଜ ବେକମୂଳରେ ହାତ ବୁଲାଉ ବୁଲାଉ ବିନୟର ସହିତ କହିଲା -



Digitized by srujanika@gmail.com

ଦେଖନ୍ତୁ ସାର୍ । ଆମ ଓଡିଶାର ସବୁ ସାହିତ୍ୟ ଆସର ଏଇ ଭୁବନେଶ୍ୱର, କଟକ ଓ ରାଉରକେଲାରେ ହିଁ ସୀମିତ ରହୁଚି । ତେଣୁ ଆମ ଗାଆଁ ଗହଳିରେ କି ଛୋଟ ଛୋଟ ସହରରେ ସାହିତ୍ୟ ଆସରର ଆୟୋଜନ କରିବାକୁ ଆମେ ପ୍ରୟାସ କରୁଛୁ ।

ମାନସ କହିଲା- ଆପଣମାନଙ୍କ ପରି ବଡ଼ ବଡ଼ ସାହିତ୍ୟିକମାନଙ୍କ ଶୁଭେଚ୍ଛା, ଶ୍ରଦ୍ଧା ଓ ସହଯୋଗ ନହେଲେ ଆମ ପରି ଅର୍ବାଚୀନଙ୍କ ଉଦ୍ୟମ ସଫଳ ହେବ ନାହିଁ ।

ପ୍ରତୀକ ଜାଣିବାକୁ ଚାହିଁଲେ ତାଙ୍କର ପ୍ରକୃତ କାର୍ଯ୍ୟକ୍ରମ କ'ଣ ଓ ସିଏ ତାଙ୍କଠୁ ଏ ଦିଗରେ କି ପ୍ରକାର ସାହାଯ୍ୟ ଓ ସହଯୋଗ ଆଶା କରୁଛନ୍ତି ।

ଚିନ୍ମୟ ତାଙ୍କ କାର୍ଯ୍ୟକ୍ରମର ରୂପରେଖ ପ୍ରତୀକଙ୍କ ଆଗରେ ପ୍ରକାଶ କଲେ । ସେମାନେ କେନ୍ଦୁଝର ଟାଉନ୍‌ହଲ୍‌ରେ ଓଡିଆ ସାହିତ୍ୟର ଏକ ରାଜ୍ୟ ସ୍ତରୀୟ ତିନି ଦିନିଆ ସାହିତ୍ୟ ଆଲୋଚନାଚକ୍ର ଓ ଆସର କରିବେ । ପ୍ରତୀକବାବୁ ସେହି ସାହିତ୍ୟ ଆଲୋଚନା ଚକ୍ରରେ ଅନ୍ୟୁନ ଗୋଟିଏ ଦିନ ରହି ମୁଖ୍ୟ ଅତିଥି ଦାୟିତ୍ୱ ତୁଲାଇବାକୁ ସେମାନେ ସବିନୟ ଅନୁରୋଧ ଜଣାଇଲେ । ସେମାନେ ପ୍ରତୀକବାବୁଙ୍କ ଯିବା ଆସିବା ବସ୍ ଭଡା କିମ୍ବା ଟ୍ରେନ୍ ଭଡ଼ା ସହିତ ରହିବା ଖାଇବାର ସମସ୍ତ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ କିଛି ଉପହାର ମଧ ଦେବେ। ତାଠୁ ଅଧିକ କିଛି ଦେବାକୁ ସେମାନେ ସମର୍ଥ ନୁହନ୍ତି ବୋଲି ତାଙ୍କର ଅକ୍ଷମତା ପ୍ରକାଶ କଲେ ।

ଭୁବନେଶ୍ୱରରୁ କେନ୍ଦୁଝର ପ୍ରାୟ ଅଢେଇ ଶହ କି ତିନି ଶହ କିଲୋମିଟର ଦୂର। ଛଅ, ସାତ ଘଣ୍ଟାର ଯାତ୍ରା । ସକାଳ ସାତଟାରୁ ଟ୍ରେନ୍‌ରେ କିମ୍ବା ବସ୍‌ରେ ବସିଲେ କେନ୍ଦୁଝର ଟାଉନ୍‌ରେ ପହଞ୍ଚିବା ବେଳକୁ ହୁଏତ ଦିନ ଗୋଟାଏ କି ଦୁଇଟା ବାଜିଯିବ । ଦିନକ ପୂର୍ବରୁ ଯିବାକୁ ପଡିବ ଓ ଆସିବାକୁ ହେବ ତା'ପର ଦିନ । ସାହିତ୍ୟ ସଭାରେ ଅତିଥି ଭାବେ ଏତେ ଦୂର ଯିବାକୁ ପ୍ରତୀକ ନିଜକୁ ପ୍ରସ୍ତୁତ କରି ପାରୁ ନଥିଲେ । ଏତେ ବାଟ ଯିବେ ସେମିତି କିଛି ଦର୍ଶନୀୟ ସ୍ଥାନ ଯଦି ସେଠି ଥାଆନ୍ତା, ତାହେଲେ କଥାଟା ନିଆରା ହୁଅନ୍ତା । ଅବଶ୍ୟ କେନ୍ଦୁଝରରେ ବଡ଼ ଘାଗରା, ସାନ ଘାଗରା ପରି ଦୁଇଟି ସୁନ୍ଦର ଜଳପ୍ରପାତ ଅଛି । କିନ୍ତୁ ସେ ଦୁଇଟାର ଦୂରତ୍ୱ କେନ୍ଦୁଝର ଟାଉନ୍‌ଠାରୁ କେତେ ? ତା ଛଡା ସାହିତ୍ୟ ଆସର ସାରି ସେ ସ୍ଥାନକୁ ଯିବା ପାଇଁ ତାଙ୍କୁ ସମୟ ମିଳିବତ ?

ମାନସ ଓ ଚିନ୍ମୟ ଦୁହେଁ ପରସ୍ପରଙ୍କ ମୁହଁକୁ ଚାହିଁଲେ । ପ୍ରତୀକବାବୁ ଏତେ ଦୂର ବସ୍‌ରେ ଯିବାକୁ ପସନ୍ଦ କରୁ ନାହାଁନ୍ତି ବୋଧ ହୁଏ । ତାଙ୍କର ସ୍ପଷ୍ଟ ମତ ଜାଣିବା ପାଇଁ ଚିନ୍ମୟ କହିଲା- ସାର୍, ଆମ ଅନୁଷ୍ଠାନର ଆର୍ଥିକ ସ୍ୱଚ୍ଛଳତା ନାହିଁ, ତେଣୁ ଆମେ ଆପଣଙ୍କ



Digitized by srujanika@gmail.com

ପାଇଁ ଟ୍ୟାକ୍ସିର ବ୍ୟବସ୍ଥା କରିପାରୁ ନାହୁଁ । କିନ୍ତୁ ଅନ୍ୟସବୁ ବ୍ୟବସ୍ଥା କରିଛୁ । ସହରର ସବୁଠୁ ଭଲ ଲଜିଙ୍ଗ୍‌ରେ ରହିବା ଓ ଖାଇବା ବ୍ୟବସ୍ଥା ହୋଇଛି । ସବୁଠୁ ବଡ କଥା ଆମ ଲୋକଙ୍କ ଆତିଥ୍ୟ, ଆଦର ଓ ଆନ୍ତରିକତା ଆପଣଙ୍କୁ ପ୍ରଚୁର ଆନନ୍ଦ ଦେବ। ଆପଣଙ୍କ ଗଳ୍ପର ଅନେକ ମୁଗ୍ଧ ପାଠକ, ପାଠିକା ଆପଣଙ୍କୁ ସାକ୍ଷାତ କରିବାକୁ ଓ ଆପଣଙ୍କ ଅଟୋଗ୍ରାଫ ନେବାକୁ ଅପେକ୍ଷା କରିଛନ୍ତି । ସେ ଦିନ ସଂଧ୍ୟାରେ ଆପଣଙ୍କ ପ୍ରିୟ ପାଠକ ପାଠିକାମାନଙ୍କ ସହିତ ଗୋଟେ ଭେଟାଭେଟ୍ କାର୍ଯ୍ୟକ୍ରମର ଆୟୋଜନ ମଧ ଆପଣ ରହୁଥିବା ହୋଟେଲର ସମ୍ମିଳନୀ କକ୍ଷରେ କରାଯିବ ।

ପ୍ରତୀକବାବୁଙ୍କ ମୁହଁ ଏଥର ପ୍ରସନ୍ନ ଦିଶିଲା । ସିଏ ମୁଖ୍ୟଅତିଥି ଭାବେ କେନ୍ଦୁଝର ସାହିତ୍ୟ ଆସରରେ ଯୋଗଦେବାକୁ ସମ୍ମତି ଦେଲେ । ସାହିତ୍ୟ ସମ୍ମିଳନୀର ପୂର୍ବଦିନ ଫୋନ୍‌କରି ମନେପକାଇ ଦେବାର ପ୍ରତିଶ୍ରୁତି ଦେଇ ମାନସ ଓ ଚିନ୍ମୟ ସେ ଦିନ ବିଦାୟ ନେଇ ଚାଲିଗଲେ ।

ସେମାନେ ଫେରିଯିବା ସଙ୍ଗେ ସଙ୍ଗେ ପ୍ରବଶେ କଲେ ନିଷା । ସିଏ ଜାଣିବାକୁ ଚାହିଁଲେ କେନ୍ଦୁଝର ଗସ୍ତ ସଂପର୍କରେ । ପ୍ରତୀକ ତାଙ୍କୁ ସଂକ୍ଷେପରେ ସବୁ କହିଲେ, କିନ୍ତୁ ଟ୍ରେନ୍‌ରେ କି ବସ୍‌ରେ କେନ୍ଦୁଝର ଯିବା କଥାଟା ଗୋପନ ରଖିଲେ । ନିଷା କଥାଟା ଖୋଲ ତାଡ କଲେ- ଆଚ୍ଛା, ସାମାନ୍ୟ ଗୋଟେ ସାହିତ୍ୟ ସଭାରେ ଯୋଗଦେବାକୁ ତୁମେ କେନ୍ଦୁଝର ପରି ଦୂର ଜାଗାକୁ ଯିବାକୁ ରାଜି ହୋଇଗଲ ? ମୁଁ ଦେଖୁଛି ଲେଖକଗୁଡାକ ନିହାତି ହାଲୁକା ଲୋକ । ତମ ଗପକୁ କଣ ଟିକେ ଟେକା ଟେକି କରି କହିଦେଲେ ସେ ଟୋକା ଦିଇଟା ତମେ ସେଇଥିରେ ନୋବେଲ ପ୍ରାଇଜ ପାଇବା ପରି ପ୍ରଫୁଲ୍ଲିତ ହୋଇ ରାଜି ହୋଇଗଲ ? ଧନ୍ୟ ତମ ଗପ ଆଉ ଧନ୍ୟ ତମେ ଗାଳ୍ପିକ । କ'ଣ ସିଏ କେନ୍ଦୁଝର ଯିବାକୁ କାର୍ ପଠେଇବେ ନା ଏଠୁ ବସ୍‌ରେ କି ଟ୍ରେନ୍‌ରେ ଯିବ ?

ପ୍ରତୀକ ବିରୋଧ କଲେ - ନା, ନା, ଏତେ ଦୂର ବାଟକୁ ମୁଁ ବସ୍‌ରେ ଆଦୌ ଯିବି ନାହିଁ । ଏଠିକା ଟ୍ରାଭେଲ୍ ଏଜେନ୍ସି ସହିତ ସେମାନେ କଥାବାର୍ତ୍ତା କରିକି ଯାଇଛନ୍ତି । ଗୋଟେ ଟ୍ୟାକ୍ସି ମୋତେ ଆମ ଘରୁ କେନ୍ଦୁଝର ନେବ ଆଉ ଆଣିକି ଘରେ ଛାଡିବ ।

ତଥାପି ନିଷା ସନ୍ତୁଷ୍ଟ ହେଲେ ନାହିଁ । ତାଙ୍କ ମତ ଥିଲା ସାହିତ୍ୟ ସଭା ଏଇ ଭୁବନେଶ୍ୱର , କଟକ, ଖୋର୍ଦ୍ଧା, କି ଅତି ବେଶିରେ ପୁରୀରେ ହେଲେ ଯୋଗଦେବା କଥା । କିନ୍ତୁ କେନ୍ଦୁଝର ପରି ଦୂରକୁ ଯିବାଟା ସୁବିଧା ନୁହଁ ।

କେନ୍ଦୁଝର ସାହିତ୍ୟ ସମ୍ମିଳନୀର ଚାରିଦିନ ପୂର୍ବରୁ ଜଣେ କିଏ ଆସି ପ୍ରତୀକବାବୁ



Digitized by srujanika@gmail.com

ଘରେ ନଥିବା ବେଳେ ନିଷାଙ୍କ ହାତରେ ନିମନ୍ତ୍ରଣପତ୍ର ଦେଇ ଚାଲିଗଲା । ସାହିତ୍ୟ ସମ୍ମିଳନୀ ଆଗାମୀ ଦଶ ତାରିଖ ସଂଧ୍ୟା ୬ଟା । ପ୍ରତୀକଙ୍କୁ ସକାଳ ଆଠଟା ଭିତରେ ବାହାରିବାକୁ ପଡିବ । ନିଷାଙ୍କୁ ସିଏ କହିଛନ୍ତି କେନ୍ଦୁଝରର ସାହିତ୍ୟ ସମ୍ମିଳନୀକୁ ସିଏ କାର୍‌ରେ ଯିବେ । ମାତ୍ର ଅସଲ କଥା ହେଉଛି, ସେମାନେ କାର୍ ପଠାଇବେ ନାହିଁ । ସେଠାକୁ ପ୍ରତୀକବାବୁ ବସ୍‌ରେ ହିଁ ଯିବେ ।

ଏ ସମସ୍ୟାର ସମାଧାନ ପାଇଁ ଗୋଟିଏ ଚମତ୍କାର ଉପାୟ ପାଇଗଲେ ପ୍ରତୀକ । ସକାଳ ସାଢେ ସାତଟା ବେଳକୁ ଟ୍ୟାକ୍ସିଟିଏ ଆସି ଠିଆ ହେଲା ତାଙ୍କ ଘର ଆଗରେ । ବ୍ରିଫ୍ କେଶ୍‌ଟିଏ ଧରି ପ୍ରତୀକ ଗାଡିରେ ବସିଗଲେ । ନିଷା ଗେଟ୍ ପାଖରେ ଠିଆ ହୋଇ ପ୍ରତୀକଙ୍କ ଯାତ୍ରାର ଶୁଭ ମନାସିଲେ ।

ପ୍ରତୀକ ନିଜେ ଯୋଗାଡ କରିଥିବା ଟ୍ୟାକ୍ସିର ଭଡା ନିଜେ ପେମେଣ୍ଟ କରି ଟ୍ୟାକ୍ସିଟିକୁ କଟକଠୁ ଫେରାଇଦେଲେ ଓ କଟକ ବସ୍‌ଷ୍ଟାଣ୍ଡରୁ ସେ ଠିକ୍ ଆଠଟାରେ କେନ୍ଦୁଝର ବସ୍‌ରେ ଉଠିଲେ ।

ଚିନ୍ମୟ ଓ ମାନସ ଦୁହେଁ କାର୍‌ଟିଏ ଧରି କେନ୍ଦୁଝର ବସ୍‌ଷ୍ଟାଣ୍ଡରୁ ପ୍ରତୀକଙ୍କୁ ପାଛୋଟି ନେଲେ କେନ୍ଦୁଝର ଟାଉନହଲ ପାଖରେ ଥିବା ଜିଲ୍ଲା ଗେଷ୍ଟ ହାଉସକୁ । ପ୍ରତୀକବାବୁ ଯିବା ରାସ୍ତାରେ ସାହିତ୍ୟ ସମ୍ମିଳନୀର ପୋଷ୍ଟର ବିଭିନ୍ନ ସ୍ଥାନରେ ଲଗା ଯାଇଥିବାର ଦେଖିଲେ । ସହରକୁ ପ୍ରଥମେ ପ୍ରବେଶ କରିବା ରାସ୍ତାରେ ସାହିତ୍ୟ ସମ୍ମିଳନୀ ତରଫରୁ ସୁନ୍ଦର ତୋରଣ ନିର୍ମିତ ହୋଇଥିଲା ।

ଟାଉନ୍‌ହଲ୍‌ଟି ସାହିତ୍ୟ ସଭା ଉଦ୍ଦେଶ୍ୟରେ ଫୁଲ ଓ ରଙ୍ଗିନ କାଗଜରେ ଖୁବ୍ ସୁନ୍ଦର ଭାବରେ ସଜା ଯାଇଛି । ସାରା କେନ୍ଦୁଝର ସହର ସାହିତ୍ୟକମାନଙ୍କୁ ସ୍ୱାଗତ କରିବାକୁ ପ୍ରସ୍ତୁତ ଥିବା ପରି ପ୍ରତୀକବାବୁଙ୍କୁ ମନେହେଲା । କଟକ କିମ୍ବା ଭୁବନେଶ୍ୱରରେ ସାହିତ୍ୟକୁ ଏମିତି ସ୍ୱାଗତ କି ସମ୍ବର୍ଦ୍ଧନା ମିଳେନା, କାରଣ ସହରର ଗହଳ ଚହଳ ଭିତରେ ସାହିତ୍ୟର ସ୍ୱର ଓ ସୌରଭ ହଜିଯାଏ ।

ପ୍ରତୀକଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଗେଷ୍ଟ ହାଉସ୍‌ର କୋଠରିଟି ସୁସଜ୍ଜିତ । ପ୍ରତୀକ ଗେଷ୍ଟ ହାଉସ୍‌ରେ ପହଞ୍ଚିବା ପରେ କେନ୍ଦୁଝର ସହରର ଓ ପାଖ ଆଖର ଅନେକ ସାହିତ୍ୟିକ ଓ ସାହିତ୍ୟାନୁରାଗୀ ତାଙ୍କୁ ସାକ୍ଷାତ କଲେ । ଅଳ୍ପ କିଛି ସମୟର ବିଶ୍ରାମ ପରେ ସଂଧ୍ୟାରେ ସାହିତ୍ୟ ସଭା ଆରମ୍ଭ ହେଲା । ସଭାରେ ସଭାପତିତ୍ୱ କରିଥଲେ ଜିଲ୍ଲାପାଳ, ମୁଖ୍ୟ ଅତିଥି ଥିଲେ ପ୍ରତୀକ ଆଉ ଅତିଥି ଥିଲେ ଜଣେ ସ୍ଥାନୀୟ କବି । ଟାଉନହଲ୍



Digitized by srujanika@gmail.com

ଭରପୂର । କୌଣସି ସାହିତ୍ୟ ସଭାରେ ଏତେ ଲୋକ ହେବାକଥା କଟକ କି ଭୁବନେଶ୍ୱର ପରି ବଡ ସହରରେ ଦେଖିବାକୁ ମିଳେ ନାହିଁ ।

ସାହିତ୍ୟ ସଭା ଶେଷ ହେବା ପର୍ଯ୍ୟନ୍ତ କେହି ଜଣେ ହେଲେ ସଭା ଛାଡି ଯାଇ ନଥିଲେ । ସଭା ସରିବା ପରେ କିଛି ଲୋକ ପ୍ରତୀକଙ୍କୁ ସାକ୍ଷାତ କରି ତାଙ୍କ ଅଟୋଗ୍ରାଫ୍ ନେଲେ ଓ ଆଉ କିଛି ପାଠକ ତାଙ୍କର ବିଭିନ୍ନ ଗଳ୍ପ ଉପରେ ଆଲୋଚନା କଲେ । ପାଠକମାନଙ୍କ ଘେର କାଟି ସଭାସ୍ଥଳରୁ ବାହାରି ଆସିବାକୁ ପ୍ରତୀକଙ୍କୁ ପ୍ରାୟ ପନ୍ଦର, କୋଡିଏ ମିନିଟ୍ ଲାଗିଗଲା ।

ପ୍ରତୀକଙ୍କ ଦୃଷ୍ଟି ଅଟକି ଗଲା ଜଣେ ସୁନ୍ଦରୀ ଭଦ୍ରମହିଳାଙ୍କ ଉପରେ । ବୟସ ପଇଁଚାଳିଶ ଆରପଟେ । ଭଦ୍ରମହିଳାଙ୍କ ମୁହଁ ପ୍ରତୀକଙ୍କୁ ଚିହ୍ନା ଚିହ୍ନା ଲାଗୁଛି । କିନ୍ତୁ ସିଏ ଠିକ୍ ଭାବେ ମନେ ପକାଇ ପାରୁ ନାହାଁନ୍ତି ତାଙ୍କୁ କେଉଁଠି ଦେଖିଛନ୍ତି ।

ଭଦ୍ରମହିଳା ପ୍ରତୀକଙ୍କୁ ନମସ୍କାର କରି ପଚାରିଲେ - ପ୍ରତୀକ ! ତୁମେ ମୋତେ ଚିହ୍ନି ପାରୁନା ବୋଧ ହୁଏ ।

ପ୍ରତୀକ ଅପ୍ରସ୍ତୁତ ହୋଇ ଭଦ୍ରମହିଳାଙ୍କ ମୁହଁକୁ ଆଉ ଟିକେ ନିକଟରୁ ଦେଖିଲେ । ତଥାପି ଚିହ୍ନିବା ସମ୍ଭବ ହେଲା ନାହିଁ ।

ଭଦ୍ରମହିଳା ନିଜେ ନିଜର ପରିଚୟ ଦେଲେ- ମୁଁ କବିତା । କବିତା ନାୟକ । ରେଭେନ୍ସା କଲେଜ୍‌ରେ ମୁଁ ତୁମର କ୍ଲାସମେଟ୍ ଥିଲି ।

ପ୍ରତୀକ ଆଶ୍ଚର୍ଯ୍ୟ ହେଲେ- କଲେଜ ଛାତ୍ରୀ କବିତା, ଯାହାକୁ ସିଏ ଅନେକ ବର୍ଷ ତଳେ ଦେଖିଥିଲେ ସିଏ ,ଏବେ ଗୋଟେ କଲେଜ ପଢୁଆ ଝିଅର ମାଆ ବୟସରେ ପହଞ୍ଚିଛି । ତାର ରଙ୍ଗ, ତାର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟରେ ଏତେ ପରିବର୍ତ୍ତନ ଆସିଛି ଯେ ପ୍ରତୀକ ତାକୁ ଚିହ୍ନି ପାରିଲେ ନାହିଁ ।

ଯୁବତୀଟିଏ ଆସି ପ୍ରତୀକଙ୍କୁ ନମସ୍କାର କଲା । କବିତାର ଅବିକଳ ମୂର୍ତ୍ତିଟିଏ । କବିତା ତାର ପରିଚୟ କରାଇଦେଲେ- ଇଏ ମୋ ଝିଅ ଶାମ୍ଭକା, ପ୍ଲସ ଥ୍ରୀ ଫାଇନାଲ୍ ଇୟରରେ ପଢେ । ନିଜେ ଗଳ୍ପ ଲେଖେ ଆଉ ତୁମ ଗଳ୍ପର ଜଣେ ମୁଗ୍ଧ ପାଠିକା ।

ସେ ଦିନ ସେଇ ସଭାସ୍ଥଳରୁ ପ୍ରତୀକ କବିତାଙ୍କ ଘରକୁ ଗଲେ । ସେଠି ପ୍ରତୀକ, କବିତା ଓ ଶାମ୍ଭକା ଭିତରେ ଅନେକ ସମୟ ଧରି ଗପସପ ଚାଲିଲା । ଶାମ୍ଭକା ତାର ଗପ ଖାତା ଆଣି ପ୍ରତୀକଙ୍କ ଆଗରେ ଥୋଇଲା ।

ପ୍ରତି ଗଳ୍ପ ଉପରେ ଆଖି ପକାଇ ସାରି ପ୍ରତୀକ କହିଲେ- ଗଳ୍ପ ଅତି ଚମତ୍କାର



Digitized by srujanika@gmail.com

ହେଉଛି । ଏତେ ଅଳ୍ପ ବୟସରୁ ଏତେ ଅନୁଭବର ସ୍ୱାକ୍ଷର ତୁମ ଗଳ୍ପରେ ରହିଛି , ତାହା ହିଁ ସୂଚନା ଦିଏ ତୁମେ ସାଧନା ଆବ୍ୟାହତ ରଖିଲେ ଭବିଷ୍ୟତରେ ଜଣେ ବିଶିଷ୍ଟ କଥାଶିଳ୍ପୀ ହେବ ।

ପ୍ରଶଂସାରେ ପ୍ରସାରିତ ହୋଇଗଲା ଶାମୁକାର ମନ । ଆନନ୍ଦରେ ଉତ୍‌ଫୁଲ୍ଲିତା ଶାମୁକା କହିଲା-ଅଙ୍କଲ, ମୋର ଏ ଗଳ୍ପ ଗୁଡିକ କ'ଣ ସାଂପ୍ରତିକ ଓଡିଆ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇବା ପାଇଁ ଉପଯୁକ୍ତ ?

ପ୍ରତୀକ କିଛି ସମୟ ଚିନ୍ତା କରି କହିଲେ - ତା'ର ସତ୍ୟତା ଜାଣିବା ପାଇଁ କିଛି ଗଳ୍ପର ଫେୟାର କପି କରି ଚାରି ପାଞ୍ଚଟି ସାହିତ୍ୟ ପତ୍ରିକାକୁ ପଠାଇ ଦେଇ ଦେଖ ପ୍ରକାଶ ପାଉଛି କି ନା । ମୋର ବିଶ୍ୱାସ ନିଶ୍ଚୟ ପ୍ରକାଶ ପାଇବ ।

କବିତା ଉଠି ଠିଆହେଲେ ଓ କହିଲେ - ତୁମେ ଶାମୁକା ସହିତ ସାହିତ୍ୟ ଚର୍ଚ୍ଚା କରୁଥା ପ୍ରତୀକ, ମୁଁ ତୁମ ପାଇଁ କିଛି ଖାଇବା ଜିନିଷ ତିଆରି କରେ ।

ପ୍ରତୀକ ମନା କଲେ - ନା, ନା, ସେସବୁ କିଛି ଦରକାର ନାହିଁ । ଅନେକ ଦିନ ପରେ ସାକ୍ଷାତ ହେଇଚି । ବସ, ଗପ କରିବା । ମୁଁ ଯେଉଁ ଗେଷ୍ଟ ହାଉସ୍‌ରେ ରହୁଛି ସେଠି ମୋର ଡିନର ବ୍ୟବସ୍ଥା କରାଯାଇଛି । ତୁମେ ଆଦୌ ବ୍ୟସ୍ତ ହୁଅନା ।

କବିତା କହିଲେ - ନା, ସେକଥା ହୋଇ ପାରିବନି, ତୁମେ ମୋ ଘରକୁ ଆସି କିଛି ନ ଖାଇ ଚାଲିଯିବ, ଏଇଟା ନିହାତି ଅସୁନ୍ଦର କଥା । ତୁମେ ମୋ ଘରେ ଆଜି ଡିନର ନ କଲେ ମୋ ମନ ବହୁତ ଦୁଃଖ ହେବ । ତୁମେ ଶାମୁକା ସହିତ ଗପୁଥା ମୁଁ ଘଣ୍ଟାଏ ଭିତରେ ରୋଷେଇ ସାରିଦେବି । ତୁମେ ଡିନର କଲାବେଳେ ଆମେ ଏଇ ଡିନର ଟେବୁଲ ପାଖରେ ଗପିବା ।

ଶାମୁକା ଉଠି ଠିଆହେଲା -ମମି, ତମେ ବସି ଅଙ୍କଲ୍‌ଙ୍କ ସହିତ ଗପକର ମୁଁ ରୋଷେଇ ଦେଖୁଛି ।

କବିତାଙ୍କ ବାରଣ ନମାନି ଶାମୁକା ଚାଲିଗଲା ତଳ ମହଲାକୁ ରୋଷେଇ କରିବାକୁ ।

କିଛି ସମୟ କବିତା ଓ ପ୍ରତୀକ ଚୁପ୍‌ଚାପ୍ ବସି ରହିଲେ । ଦୁହେଁ ପଛ ଦିନର କଥା ସବୁକୁ ମନ ଭିତରେ ଓଲଟାଇ ଦେଖୁଥିଲେ ।

ପ୍ରତୀକଙ୍କ ସ୍ମୃତିରେ କବିତାଙ୍କ ଚିତ୍ର ସେତେ ସ୍ପଷ୍ଟ ନୁହେଁ । କେବଳ ଗୋଟିଏ କଲେଜ ଡ୍ରାମରେ ପ୍ରତୀକ ଓ କବିତା ହିରୋ ହିରୋଇନ୍ ଭୂମିକାରେ ଅଭିନୟ କରିଥିଲେ ।



Digitized by srujanika@gmail.com

ସେମାନଙ୍କ ମଧ୍ୟରେ ସେମିତି କିଛି ଅନ୍ତରଙ୍ଗତା ଓ ଆନ୍ତରିକତା ନଥିଲା । ପ୍ରତୀକଙ୍କ ସହିତ ହିରୋଇନ ଭୂମିକାରେ ଅଭିନୟ କରିବାକୁ ବଛାଯାଇ ଥିବା କଲେଜ କୁଇନ୍ ମାନସୀଙ୍କର ହଠାତ୍ ଅସୁସ୍ଥତା ହିଁ କବିତାଙ୍କ ଅଭିନୟ ପାଇଁ ସୁଯୋଗ ସୃଷ୍ଟି କରିଥିଲା । ଡ୍ରାମା ପରେ ପରୀକ୍ଷା ହେଲା । ତାପରେ ପ୍ରତୀକ ଓ କବିତା ଦୁହେଁ ପରସ୍ପରଙ୍କୁ ଆଉ କେବେ ଭେଟି ନାହାଁନ୍ତି ; କାରଣ ସେଇଟା ଥିଲା ସେମାନଙ୍କର କଲେଜର ଶେଷ ବର୍ଷ ।

ପ୍ରତୀକ ସେଇଦିନଠୁ ଆଉ କେବେ କବିତାର ଖବର ନେଇ ନାହାଁନ୍ତି ।

କବିତା ନିରବତା ଭାଙ୍ଗି ସରୁ ହସ ଧାରେ ମୁହଁକୁ ଆଣି କହିଲେ - ତୁମ ସ୍ମୃତିରେ ହୁଏତ ମୁଁ ନଥିବି । କିନ୍ତୁ ତୁମେ ମୋ ସ୍ମୃତିରେ ସବୁଦିନ ସେମିତି ସୁରକ୍ଷିତ । ତୁମ ପ୍ରତିଭା ସାରା ରେଭେନ୍ସା କଲେଜରେ ଚର୍ଚ୍ଚାର ବିଷୟ ଥିଲା । ତୁମେ ଭଲ ଗଳ୍ପ ଲେଖୁଥିଲ, ଭଲ କ୍ରିକେଟ ଖେଳୁଥିଲ ଆଉ ତୁମ ମଞ୍ଚ ଅଭିନୟ ଖୁବ୍ ଉଚ୍ଚକୋଟୀର ଥିଲା । ତୁମ ବେଶ, ପୋଷାକ, କଥା, ସବୁଥିରେ ସ୍ୱତନ୍ତ୍ର ଷ୍ଟାଇଲର ଷ୍ଟାମ୍ପ ଲାଗିଥିଲା । ତୁମ ସହିତ କଥାବାର୍ତ୍ତା କରିବା ଓ ପରିଚିତ ହେବା ପାଇଁ ରେଭେନ୍ସା କଲେଜରେ ଝିଅମାନଙ୍କ ମଧ୍ୟରେ ପ୍ରତିଯୋଗୀତା ଚାଲିଥିଲା । ତୁମ ସହିତ ହିରୋଇନ ଭୂମିକାରେ ଅଭିନୟ କରିବା ସୁଯୋଗ ମୋ ପାଇଁ ଖୁବ୍ ସୌଭାଗ୍ୟର କଥା ଥିଲା ।

ତୁମେ ସିନା ମତେ ଏଯାଏ ମନେ ରଖିନା, କିନ୍ତୁ ମୁଁ ତୁମକୁ ମୁହୂର୍ତ୍ତଟିଏ ଭୁଲି ପାରି ନାହିଁ । ତୁମ ସହିତ ଅଭିନୟ କରିଥିବା ଡ୍ରାମାର ଫଟୋସବୁ ମୋର ଗୋଟେ ସାଙ୍ଗ ସାହାଯ୍ୟରେ ଉଠାଇ ଆଲବମ୍ କରି ରଖିଛି । ତୁମ କଥା ମନେ ପଡିଲେ ମୁଁ ସେଇ ଆଲବମ୍‌କୁ ଦେଖେ ।

ପ୍ରତୀକ ଚାହିଁଲେ କବିତାଙ୍କୁ । କବିତା ନିଜକୁ ଆଜି ଖୁବ୍ ସଜେଇ଼ ଛନ୍ତି । ତାଙ୍କୁ ଏ ଯାଏ ଏମିତି ଭଲ ପାଉଥିବା ଜଣେ ସୁନ୍ଦରୀ ଯେ ଏ ସୁଦୂର କେନ୍ଦୁଝର ଟାଉନରେ ତାଙ୍କୁ ଅପେକ୍ଷା କରିଛନ୍ତି, ତାହା ତାଙ୍କୁ ଜଣା ନଥିଲା । କବିତା, କଲେଜ ଜୀବନରେ ଯିଏ ଗୋଟିଏ ରାତିର ମଞ୍ଚ ନାଟକରେ ନାୟିକା ଭାବେ ଆସିଥଲେ, ନାଟକ ସରିବା ପରେ ସିଏ ତାଙ୍କ ଜୀବନରୁ ଅପସରି ଯାଇଛନ୍ତି । କିନ୍ତୁ କବିତା ଯେ ସେଇ ନାଟକର ନାୟିକା ଚରିତ୍ର ଭିତରେ ଏ ପର୍ଯ୍ୟନ୍ତ ନିଜକୁ ବୁଡାଇ ରଖିଛନ୍ତି ତାହା ପ୍ରତୀକଙ୍କୁ ବିସ୍ମିତ କଲା ।

ତେବେ କବିତା ତାଙ୍କୁ ଏ ପର୍ଯ୍ୟନ୍ତ ଭୁଲି ନାହାଁନ୍ତି ବୋଲି ଜାଣିବା ପରେ ପ୍ରତୀକ



Digitized by srujanika@gmail.com

ନିଜ ଭିତରେ ଗୋଟେ ମୃଦୁ ଶିହରଣ ଅନୁଭବ କଲେ । ଯେ କୌଣସି ବୟସରେ ହେଉନା କାହିଁକି ଜଣେ ସୁନ୍ଦରୀ ଭଦ୍ରମହିଳା ତାକୁ ଭଲ ପାଉଛନ୍ତି ବୋଲି ଜାଣିବା ପରେ ପୁରୁଷଟି ନିଶ୍ଚୟ ରୋମାଞ୍ଚିତ ହେବ । ଶରୀର ଭିତରେ ଶୋଇଥିବା ସାପଟି କଡ ଲେଉଟାଇବ ।

କବିତା ନିଜ ଭ୍ୟାନିଟ୍ ବ୍ୟାଗରୁ ଛୋଟ ଫଟୋ ଆଲବମ୍‌ଟିଏ ବାହାର କରି ପ୍ରତୀକଙ୍କ ହାତକୁ ବଢାଇ ଦେଇ କହିଲେ - ଦେଖ ପ୍ରତୀକ ! ଇଏ ଆମ କଲେଜ ଡ୍ରାମାର ବିଭିନ୍ନ ଦୃଶ୍ୟର ଫଟୋଚିତ୍ର ଯେଉଁଥିରେ ଆମ ଦୁହିଁଙ୍କର ବିଭିନ୍ନ ଅନ୍ତରଙ୍ଗ ମୁହୂର୍ତ୍ତର ରୋମାଣ୍ଟିକ ପୋଜ ସବୁ ଏଯାଏ ସତେଜ ଅଛି । ତୁମେ ଖୁବ୍ ହ୍ୟାଣ୍ଡସମ୍ ଓ ଷ୍ଟାଇଲିଷ୍ଟ ଥିଲ, ଆଉ ମୁଁ ଖୁବ୍ ସ୍ଲିମ୍ ଥିଲି ।

କବିତାଙ୍କ ମୁହଁ ଖୁବ୍ ପ୍ରସନ୍ନ ଥିଲା । ପ୍ରତୀକ ଆଲବମ୍‌ର ପ୍ରତି ପୃଷ୍ଠା ଲେଉଟାଉ ଥିବା ବେଳେ କବିତାଙ୍କ ମୁହଁରେ ବିଭିନ୍ନ ଭାବ ତରଙ୍ଗ ସୃଷ୍ଟି ହେଉଥିଲା । ତାଙ୍କ ମୁହଁର ଭାବ ଭଙ୍ଗୀରୁ ଜଣା ପଡୁଥିଲା ସତେ ଯେମିତି ସିଏ ସେତେବେଳେର ସେଇ ଦୃଶ୍ୟରେ ଆଜି ଅଭିନୟ କରୁଛନ୍ତି ।

ପ୍ରତୀକ ପ୍ରଶ୍ନ କଲେ - ଆଚ୍ଛା, କବିତା ! ତୁମେ କ'ଣ ତୁମ ସ୍ୱାମୀଙ୍କୁ ଭଲ ପାଅନା ? ତୁମେ ତୁମ ସ୍ୱାମୀଙ୍କୁ ଘନିଷ୍ଠ ଭାବେ ଭଲ ପାଉଥିଲେ ମତେ ତୁମେ ଏଯାଏ ମନେ ରଖିନଥାନ୍ତ ।

କବିତା ଉତ୍ତର ନ ଦେଇ ପାଲଟା ପ୍ରଶ୍ନ କଲେ - କୌଣସି ସ୍ତ୍ରୀ କ'ଣ ତାର ସ୍ୱାମୀକୁ ଅନ୍ତରଙ୍ଗ ଭାବେ ଭଲ ପାଏ ? ଜଣେ ସ୍ୱାମୀ ତା'ର ସ୍ତ୍ରୀ ଉପରେ କେବଳ ଅଧିକାର ସାବ୍ୟସ୍ତ କରେ । କେବେ ତାର ଭଲ ପାଇବା ଦେଇ ସ୍ତ୍ରୀକୁ ନିଜର କରିବାକୁ ଚେଷ୍ଟା କରନା । ତେଣୁ ଜଣେ ସ୍ତ୍ରୀ ତା' ସ୍ୱାମୀକୁ ଭଲ ନ ପାଇ ଅଧିକାଂଶ ସ୍ଥଳରେ ଭୟ କରେ । ଆଚ୍ଛା, ତୁମେ ସତ କହିଲ ତୁମ ସ୍ତ୍ରୀ କ'ଣ ତୁମକୁ ଭଲ ପାଆନ୍ତି ନା ଭୟ କରନ୍ତି ?

ପ୍ରତୀକ ହଠାତ୍ ଗୋଟେ କଠିନ ପ୍ରଶ୍ନର ସାମାନା କଲା ପରି ଚିନ୍ତିତ ଦିଶିଲେ ।

ପ୍ରତୀକଙ୍କ ଉତ୍ତରକୁ ଅପେକ୍ଷା ନ କରି କବିତା ନିଜ ପ୍ରଶ୍ନର ଉତ୍ତର ନିଜେ ଦେଲେ- ମୁଁ ଜାଣିବାରେ ଅଧିକାଂଶ ସ୍ତ୍ରୀ ତାଙ୍କ ସ୍ୱାମୀଙ୍କୁ ଭଲ ନ ପାଇ ଭଲ ପାଇବାର ଅଭିନୟ କରନ୍ତି । ବିବାହିତ ପ୍ରତ୍ୟେକ ସ୍ତ୍ରୀଲୋକ ଜଣେ ପୁରୁଷ ସହିତ ସଂସାର ବସାନ୍ତି କିନ୍ତୁ ଭଲ ପାଆନ୍ତି ଆଉ ଜଣକୁ । ଏପରିକି ପରସ୍ପରକୁ ଭଲ ପାଇ ବିବାହ କରିଥିବା ସ୍ୱାମୀ ଓ ସ୍ତ୍ରୀ



Digitized by srujanika@gmail.com

ମଧ୍ୟରେ ବିବାହ ପରେ ଆଉ ସେ ଭଲ ପାଇବା ରହେନା । ବିବାହ ବେଦୀର ହୋମ ନିଆଁରେ ପ୍ରେମ ପୋଡି ପାଉଁଶ ପାଲଟେ । ସ୍ୱାମୀ ଆସନ ଅଳଂକୃତ କରିଥିବା ପୁରୁଷଟି ନିଜ ସ୍ତ୍ରୀକୁ ନିଜ ଅଧିକୃତ ସଂପତ୍ତି ବୋଲି ଧରିନେଇ ତା' ଉପରେ ହୁକୁମ ଜାରିକରେ । ସ୍ୱାମୀକୁ ଭଲ ପାଇବା ପରିବର୍ତ୍ତେ ସ୍ତ୍ରୀଟି ସ୍ୱାମୀକୁ ଭୟ କରିବାକୁ ବାଧ୍ୟ ହୁଏ ।

ଆଉ କେତେକ କ୍ଷେତ୍ରରେ ନାରୀଟି ବିବାହ ପରେ ତା' ସ୍ୱାମୀକୁ ଭଲ ପାଇବାକୁ ଚେଷ୍ଟାକରି ବାରମ୍ବାର ବିଫଳ ହୁଏ । କାରଣ ଭଲ ପାଇବା ଏକ ତରଫା ହୋଇପାରେନା । ସ୍ୱାମୀ ରୂପକ ପୁରୁଷ ଭିତରେ ଅହଂକାରର ଅଜଗର ଚକା ମାରି ଶୋଇ ଭିଡ଼ି ମୋଡି ହୁଏ ।

ପ୍ରତୀକ ବିସ୍ମିତ ହେଲେ । ପ୍ରତି ସ୍ତ୍ରୀ ମନରେ ତାହେଲେ ତାର ସ୍ୱାମୀ ପ୍ରତି ଏମିତି ଗୋଟେ ଅଜବ ଧାରଣା ରହିଛି । ତାହେଲେ ତ ତାଙ୍କ ପତ୍ନୀ ନିଷାଙ୍କର ତାଙ୍କ ପ୍ରତି ଏମିତି ସବୁ ଅଦ୍ଭୁତ ଧାରଣା ଥିବ ?

କବିତା ହସି ହସି ପ୍ରଶ୍ନ କଲେ - କିଛି ଗୋଟେ ଗହୀରିଆ ଚିନ୍ତାରେ ପଡିଯିବା ପରି ତୁମ ମୁହଁଟା କୁହୁଡିଆ ଦିଶୁଛି । କ'ଣ ତୁମ ପତ୍ନୀ ତୁମ ବ୍ୟତୀତ ଆଉ କାହାକୁ ଭଲ ପାଆନ୍ତି ସେ କଥା ଚିନ୍ତା କରୁଛ କି ? ସେ ଭୁଲ୍ କରନା । ସେ ସବୁ ଦୁଷ୍ଚିନ୍ତା କଲେ କେବଳ ଦୁଃଖ ମିଳିବ ।

ତେବେ ମୁଁ ତୁମକୁ ଭଲ ପାଏ ବୋଲି ଜାଣି ତୁମେ ଖୁବ୍ ଅଡୁଆରେ ପଡିଗଲ ବୋଧହୁଏ ? ଦେଖ ମୁଁ ତୁମ ପୌରୁଷ,ବ୍ୟକ୍ତିତ୍ୱ, ଷ୍ଟାଇଲ ଓ ଲେଖାକୁ ଭଲପାଏ । ମୋ ଭଲ ପାଇବାର ଶକ୍ତି ତୁମକୁ ସୁଦୂର ଭୁବନେଶ୍ୱରରୁ କେନ୍ଦୁଝରକୁ ଟାଣି ଆଣି ପାରିଲା ।

ପ୍ରତୀକ ପ୍ରଶ୍ନ କଲେ- ଆଚ୍ଛା କବିତା ! ତୁମେ ଜଣକୁ ବିବାହ କରି ଅନ୍ୟଜଣକୁ ଭଲ ପାଅ ବୋଲି ଏମିତି ପ୍ରକାଶ୍ୟରେ କହି ପାରୁଚ କେମିତି ?

କବିତା ହସି ହସି ଯୁକ୍ତି କଲେ - ଭଲ ପାଇବା ଆଉ କିଛି ନୁହେଁ, ଗୋଟେ ମାନସିକ ଅବସ୍ଥା । ଲକ୍ଷ୍ମଣରେଖା ନ ଡେଇଁବା ପର୍ଯ୍ୟନ୍ତ ସବୁ ସିତା ନିରାପଦ । ଯାହାକୁ ନାରୀଟି ବିବାହ କରେ ସିଏ ଯଦି ପ୍ରତିଦିନ ତା'ଦ୍ୱାରା ନିର୍ଯ୍ୟାତିତ ହୁଏ, ପ୍ରତି ରାତିରେ ତା'ଦ୍ୱାରା ଧର୍ଷିତା ହୁଏ, ତାହେଲେ ତାକୁ କେମିତି ଭଲ ପାଇ ପାରିବ ? ସିଏ ବାଧ୍ୟ ହେବ ଅନ୍ୟ କାହାକୁ ତା'ର ଭଲ ପାଇବା ଦେଇ ତାଠୁ ଟିକେ ଶ୍ରଦ୍ଧା ଓ ଭଲ ପାଇବା କିଣିବାକୁ । ଅନ୍ୟ କାହାକୁ ଭଲ ନ ପାଇଲେ ତା' ଭିତରୁ ଭଲ ପାଇବା ପ୍ରବୃତ୍ତିଟା ସବୁଦିନ ପାଇଁ ମରିଯିବ ଆଉ ସେଇ ସ୍ଥାନରେ ଜନ୍ମ ନେବ ଘୃଣା ଓ କର୍କଶତା । ତୁମେ ଜଣେ କୁଶଳୀ କଥାଶିଳ୍ପୀ । ତୁମେ କୁହ ମୁଁ କଣ କିଛି ଭୁଲ୍ କହିଲି ?

ପ୍ରତୀକ ନିଜ ମନ ଭିତରେ କବିତାଙ୍କ ପ୍ରଶ୍ନର ଉତ୍ତର ଖୋଜୁ ଖୋଜୁ ଅନ୍ୟମନସ୍କ



Digitized by srujanika@gmail.com

ହୋଇ ଯାଉଥିଲେ । ଏଇ ସମୟରେ ପ୍ରତୀକଙ୍କ ମୋବାଇଲ ଫୋନ୍‌ରେ ରିଙ୍ଗ୍ ହେଲା । ଫୋନ୍‌ର ସ୍କ୍ରିନ୍‌ରୁ ପଢ଼ିଲେ ନିଷାଙ୍କ ନାଆଁ । ଫୋନ୍‌ଟା ରିସିଭ କରିବେ କି ନାହିଁ ଦ୍ୱିଧାରେ ପଡ଼ିଲେ ।

କବିତା ପ୍ରଶ୍ନ କଲେ କାହା ଫୋନ୍ ଥିଲା ? ତୁମ ମିସେସଙ୍କ ଫୋନ୍ ଥିଲା ନିଶ୍ଚୟ । ମୋ ପାଖରେ ଅଛ ବୋଲି ଫୋନ୍ ରିସିଭ୍ କଲ ନାହିଁ । ନିଜ ସ୍ତ୍ରୀ ପାଖରେ ଧରା ପଡ଼ିଯିବାର ଭୟନା ? ଏମିତି ପରିସ୍ଥିତିରେ ସବୁ ପୁରୁଷ ମିଛ କହିଥାନ୍ତି । ତୁମେ ମିଛ କହିଦେଇଥାନ୍ତ ।

ପ୍ରତୀକ ନିରୁତ୍ତର ରହିଲେ । ପୁଣିଥରେ ପ୍ରତୀକଙ୍କ ମୋବାଇଲ ଫୋନ୍ ବାଜିଲା । ପ୍ରତୀକ ଫୋନ୍‌ର ସ୍କ୍ରିନକୁ ଚାହିଁଲେ । ନିଷାଙ୍କ ଫୋନ୍ ।

କବିତା ହସି ହସି କହିଲେ- ଫୋନ୍‌ଟା ଉଠାଅ ପ୍ରତୀକ । ଯଦି ମିଛ ନ କହିବ ତା ହେଲେ ସତ କଥାଟା କହିଦିଅ । ଠିକ୍ ଅଛି, ତୁମେ ଯଦି ନ କହିବ ମୋତେ ଫୋନ୍‌ଟା ଦିଅ ମୁଁ କହି ଦେବି ।

କବିତା ପ୍ରତୀକଙ୍କ ହାତରୁ ଫୋନ୍‌ଟା ନେବା ପାଇଁ ହାତ ବଢ଼ାଇବା ମାତ୍ରେ ରିଙ୍ଗ ବନ୍ଦ ହୋଇଗଲା ।କବିତା କହିଲେ- ଦୁଇ ଦୁଇ ଥର ନିଜ ପତ୍ନୀଙ୍କ ଫୋନ୍ କଲ ରିସିଭ୍ ନ କରିବା କିଛି ଭଲ କଥା ନୁହଁ । ତୁମ ପତ୍ନୀ ଚିନ୍ତାରେ ପଡ଼ିଯାଇ ଥିବେ ।

ପ୍ରତୀକ ତଥାପି ନିରୁତ୍ତର ଥିଲେ । ଏମିତି ଗୋଟେ ସମସ୍ୟାର ସମାଧାନର ବାଟ ସିଏ ନିଜ ଭିତରେ ଖୋଜୁଥିଲେ ।

ଶାମୁକା ଆସି ଡାକିଲା- ଡାଇନିଙ୍ଗ ଟେବୁଲ୍‌ଲେ ଡ଼ିନର ବଢ଼ା ସରିଛି । ଆସନ୍ତୁ ଅଙ୍କଲ, ଆସ ମମି ।

ପ୍ରତୀକ ଯନ୍ତ୍ର ଚାଳିତ ରୋବଟ୍ ପରି ଉଠି ଠିଆହେଲେ ଏବଂ ଶାମୁକା ଓ କବିତାଙ୍କୁ ଅନୁସରଣ କଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ବ୍ରତତୀ

କବାଟ ଠକ୍ ଠକ୍ ହେଲା । ବିନୟ କବାଟ ଖୋଲିଲେ । ଆଗରେ ପୋଷ୍ଟମ୍ୟାନ୍ । ବିନୟ ଚିଠି ପାଇଁ ହାତ ବଢାଇଲେ । ଆଶ୍ଚର୍ଯ୍ୟ ହେଲେ । ଚିଠି ନୁହଁ ତାଙ୍କ ନାଆଁରେ ମନିଅର୍ଡର ଆସିଛି । ମନିଅର୍ଡର କିଏ ଦେଲା, କିଛି ଭାବି ପାରିଲେ ନାହିଁ ବିନୟ ।

ପୋଷ୍ଟମ୍ୟାନ ମନିଅର୍ଡର ଫର୍ମଟି ବିନୟଙ୍କ ହାତକୁ ବଢାଇ ଦେଇ ଅନୁରୋଧ କଲା ଯଥା ସ୍ଥାନରେ ପ୍ରାପ୍ତିସ୍ୱୀକାର ସ୍ୱାକ୍ଷର କରିବାକୁ ।

ବିନୟ ପ୍ରାପ୍ତି ସ୍ୱୀକାର କରିବା ପୂର୍ବରୁ ମନିଅର୍ଡର ଫର୍ମ ତଳେ ଲେଖା ଥିବା ଚିଠିଟି ଉପରେ ଆଖି ପକାଇଲେ । ତାଙ୍କ ଝିଅ ବ୍ରତତୀ ମନିଅର୍ଡର କରି ପଠାଇଛି ପାଞ୍ଚ ହଜାର ଟଙ୍କା । ମନିଅର୍ଡର ଫର୍ମଟି ଧରି ବିନୟ ଘର ଭିତରକୁ ପଶିଗଲେ । ଡାକ ପକାଇଲେ ସ୍ତ୍ରୀ କୁସୁମଙ୍କୁ । ମନିଅର୍ଡର ଫର୍ମ ତଳେ ଲେଖାଥିବା ଚିଠିଟି ପଢି କୁସୁମଙ୍କୁ ଶୁଣାଇଲେ । ବ୍ରତତୀ ଲେଖିଛି ସିଏ ଆମ ଘରଭଡା ପାଇଁ ପାଞ୍ଚ ହଜାର ଟଙ୍କା ପଠାଇଛି ।

ବିନୟ ଓ କୁସୁମ ଦୁହେଁ ଆଶ୍ଚର୍ଯ୍ୟ ହେଲେ । ବ୍ରତତୀକୁ ତ ସେମାନେ ଘରଭଡା ଟଙ୍କା ପଠାଇବା କଥା କହି ନଥିଲେ । ସିଏ ଏମିତି ପ୍ରତିମାସରେ ଟଙ୍କା ପଠାଇବା ସୁନ୍ଦର ନୁହଁ ।

ବିନୟ କହିଲେ- ବ୍ରତତୀ ଆଠ ମାସ ହେଲା ବିବାହ କଲାଣି । ସିଏ ବିବାହ କରିବା ପରେ ତା' ଦରମା ଟଙ୍କା ଆମେ ରଖିବା ଠିକ୍ ହେବ ନାହିଁ । ମତେ ଏକଥା ଆଦୌ ଭଲ ଲାଗୁନାହିଁ ।

କୁସୁମଙ୍କର ମଧ୍ୟ ସେଇ ମତ - ତମେ ସେ ଟଙ୍କା ରଖନା, ଫେରେଇ ଦିଅ । ଝିଅ ଧନ ଖାଇବା ଠିକ୍ ନୁହଁ ।

ବାହାରେ ଠିଆ ହୋଇଥିବା ପୋଷ୍ଟମ୍ୟାନ୍ ଡାକିଲା - ବାବୁ ! ଶୀଘ୍ର ଆସନ୍ତୁ । ମୋର ଅନେକ ଚିଠି ଆଉ ମନିଅର୍ଡର ବାଣ୍ଟିବାର ଅଛି ।

ବିନୟ ଓ କୁସୁମ ଦୁହେଁ ବାହାରକୁ ଆସିଲେ । ପୋଷ୍ଟମ୍ୟାନ ପାଞ୍ଚ ହଜାର ଟଙ୍କାର ୫୦ ଖଣ୍ଡ ଶହେ ଟଙ୍କିଆ ନୋଟ୍ ବିନୟଙ୍କ ଆଡକୁ ବଢାଇଲା ।

ବିନୟ ମନା କଲେ- ତୁମେ ଆଜି ଫେରାଇ ନିଅ । ମୁଁ ଏ ଟଙ୍କା ରଖିବି କି ନାହିଁ ସ୍ଥିରକରି ପାରୁନାହିଁ ।

ଆନଂଦ ଚଂନ୍ଦ୍ର ପହି

Digitized by srujanika@gmail.com

ପୋଷ୍ଟମ୍ୟାନ ଫେରିଯିବା ବେଳେ କହିଲା-ଦେଖନ୍ତୁ ଆଜ୍ଞା, ଆମେ ସାତ ଦିନରୁ ବେଶି ଦିନ ଅଟକାଇ ପାରିବୁ ନାହିଁ । ଆପଣ ଶୀଘ୍ର ଯାଇ ଆମ ଅଫିସ୍‌ରୁ ଟଙ୍କା ଆଣିବେ । ନଚେତ୍ ଆମେ ଫେରାଇ ଦେବୁ ।

ପୋଷ୍ଟମ୍ୟାନ ଫେରିଗଲା ପରେ ସ୍ୱାମୀ, ସ୍ତ୍ରୀ ଦୁହେଁ ଚିନ୍ତାରେ ପଡ଼ିଲେ । ବ୍ରତତୀ ଅତି ସ୍ୱାଭିମାନୀ ଝିଅ । ମନିଅର୍ଡ଼ରଟା ଫେରିଗଲେ ସିଏ ନିଶ୍ଚୟ ରାଗିବ । ଅନ୍ୟ ଦିଗଟି ଚିନ୍ତା କରି ସେମାନେ ଅଧିକ ଆତଙ୍କିତ ହେଲେ । ଯଦି ବ୍ରତତୀର ଶାଶୁ ଶ୍ୱଶୁର କୌଣସି ସୂତ୍ରରୁ ଜାଣି ପାରନ୍ତି ଯେ ବ୍ରତତୀ ଦିଲ୍ଲୀରୁ ତାଙ୍କ ପାଖକୁ ଟଙ୍କା ପଠାଉଛି ତାହେଲେ କଥାଟା ଖୁବ୍ ଲଜ୍ଜାକର ହେବ । ତା ଛଡା ବ୍ରତତୀ ଏମିତି ଟଙ୍କା ପଠାଇବାଟା ଜ୍ୱାଇଁ ଜାଣନ୍ତି କି ନାହିଁ ତାହା ମଧ୍ୟ ବୁଝି ହେଉନାହିଁ । ବ୍ରତତୀ ନିଜେ ଚାକରି କରି ଟଙ୍କା ରୋଜଗାର କରୁଚି ସତ, କିନ୍ତୁ ସେ ଟଙ୍କା ସିଏ ଏମିତି ଏଠିକି ପଠାଇବା ତାର ଠିକ୍ ହେଉ ନାହିଁ ।

ସ୍ୱାମୀ ସ୍ତ୍ରୀ ଦୁହେଁ ଦୁଇ ଦିନ ଧରି ଏମିତି ଅନେକ ଚିନ୍ତା ଭିତରେ ଘାଣ୍ଟି ହେଲେ । ତୃତୀୟ ଦିନରେ କୁସୁମ ପ୍ରସ୍ତାବ ଦେଲେ - ତୁମେ ଆଗ ପୋଷ୍ଟ ଅଫିସ୍‌ରୁ ଟଙ୍କଟା ନେଇ ଆସ । ମନିଅର୍ଡର ଫେରିଗଲେ ବ୍ରତତୀ ଅପମାନିତ ହେବ । ତା ଶ୍ରଦ୍ଧା ଭାଙ୍ଗିବା ଉଚିତ ହେବ ନାହିଁ । ତାପରେ ତା' ସହିତ ଫୋନ୍‌ରେ କଥା ହୁଅ । ତାକୁ ଆମ ପରିସ୍ଥିତି ବୁଝାଅ । ଯଦି ସିଏ ନ ବୁଝେ ଆଉ ଗୋଟେ ଉପାୟ ଅଛି ।

ବିନୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ -ଆଉ କି ଉପାୟ ତମେ ଜାଣିଚ ? ଟଙ୍କା ତାକୁ ଫେରାଇବା ନାହିଁ କି ଆମେ ରଖିବା ନାହିଁ, ଯା ଭିତରେ ଆଉ କ'ଣ କିଛି ମଧ୍ୟମ ପନ୍ଥା ଅଛି ? ମୁଁ ତ କାହିଁ ସେମିତି କିଛି ବାଟ କଥା ଚିନ୍ତା କରିପାରୁନାହିଁ ।

କୁସୁମ ଟିକେ ହସି କହିଲେ - ତୁମର ହୁଏତ ମନେନାହିଁ । ଭୁବନେଶ୍ୱର ଷ୍ଟେଟ୍‌ବ୍ୟାଙ୍କରେ ବ୍ରତତୀର ଗୋଟେ ସେଭିଙ୍ଗସ୍ ପାଶ୍‌ବୁକ୍ ଅଛି । ସ୍କୁଲ ଆଉ କଲେଜ ପଢ଼ିବା ସମୟରେ ସିଏ ଯୋଉ ସ୍କଲାରସିପ୍ ପାଉଥିଲା, ସେଇ ଚେକ୍‌ସବୁ ତା' ପାଶ୍‌ବୁକ୍‌ରେ ଡିପୋଜିଟ୍ କରି ପରେ ଡ୍ର କରୁଥିଲା ।

- ସିଏତ ଛଅ, ସାତ ବର୍ଷ ତଳର ପାଶବୁକ୍ । କଲେଜ ପାଠ ପରେ ସିଏ ଇଂଜିନିୟରିଙ୍ଗ ପଢ଼ିଲା , ଏମ.ବି.ଏ କଲା, ଚାକିରି କଲା । ତମେ ଜାଣିଚ ପାଶ୍‌ବୁକ୍‌ରେ ଦୁଇ, ତିନି ବର୍ଷ ଧରି ଯଦି କିଛି ଟ୍ରାଜାକ୍‌ସନ୍ ନ ହୁଏ, ତାହା ହେଲେ ସେଟା ଅଚଳ ହୋଇଯାଏ ?

- ମୁଁ ସେକଥା ଜାଣି ନଥିଲି । ବ୍ରତତୀ ମତେ ସେ କଥା କହିଥିଲା । ତେଣୁ ସିଏ



Digitized by srujanika@gmail.com

ପ୍ରତିବର୍ଷ ସେ ପାଶ୍‌ବୁକରେ ଶହେ, ଦୁଇଶହ ଟଙ୍କା ଜମା ଦେଇ ଓ ସେଥିରୁ କିଛି ଉଠାଇ ଆଣି ତାକୁ ବଞ୍ଚାଇ ରଖିଛି । ସେ ପାଶ୍‌ବୁକ୍‌ଟି ଆଜି ପର୍ଯ୍ୟନ୍ତ ମୋ ପାଖରେ ଅଛି ।

କୁସୁମ ଆଲମାରି ଖୋଲି ବ୍ରତତୀର ପାଶ୍‌ବୁକ୍‌ଟି ବାହାର କରି ଆଣି ବିନୟଙ୍କ ହାତରେ ଦେଲେ । ସିଏ ପାଶ୍‌ବୁକଟିର ପୃଷ୍ଠା ଓଲଟାଇ ଦେଖିଲେ ଅଚଳ ହୋଇନାହିଁ । ସେଥିରେ ୩ ହଜାର ଟଙ୍କା ବାଲାନ୍ସ ଅଛି ।

କୁସୁମ କହିଲେ - ତୁମର ମନେଥିବ ବ୍ରତତୀର ପ୍ଲସଟୁ ସାଇନ୍ସ ସରିବା ପରେ ସିଏ ଚାହିଁଲା ଇଂଜିନିୟରିଙ୍ଗ୍ ପଢିବାକୁ ; କିନ୍ତୁ ତୁମେ ଖର୍ଚ୍ଚକୁ ଡରିଲ । ରାଉରକେଲାରେ ହଷ୍ଟେଲରେ ରହି ପୁଣି ଇଂଜନିୟରିଙ୍ଗ କଲେଜର ଡିଉଜ ଦେଇ ପାଠ ପଢାଇବା ଆମ ପକ୍ଷେ ସମ୍ଭବ ନୁହେଁ ବୋଲି ବ୍ରତତୀକୁ ବୁଝାଇଲ । ସିଏ ତୁମକୁ ଡରି କିଛି କହିଲା ନାହିଁ, କିନ୍ତୁ ମୋ ପାଖରେ କାନ୍ଦିଲା । ଇଂଜିନିୟରିଙ୍ଗ ପଢିବାକୁ ଜିଦ୍ କଲା । ତାର ଜୀବନର ସ୍ୱପ୍ନ ଥିଲା, ସିଏ ଟେକିନିକାଲ୍ ପାଠ ପଢି ଭବିଷ୍ୟତରେ ସ୍ୱାବଲମ୍ବୀ ହେବ । ତା' କଥା ଶୁଣି ମୋ କଥା ମୁଁ ମନେ ପକାଇ ଥିଲି । ମୋ ବାପା ମୋତେ ମାଟ୍ରିକ ପରେ ଆଉ ଅଧିକ ପାଠ ପଢାଇ ପାରି ନଥିଲେ । ମୋ ବାପା ଚାକିରି କରି ନଥିଲେ । ଚାଷ ଜମିର ଅମଳ ଉପରେ ନିର୍ଭର କରି ଚଳୁଥିଲେ । ମୋ ବଡ ଭାଇ କଟକରେ ପଢୁଥିଲା । ମୋ ବାପା ତା' ପଢା ଖର୍ଚ୍ଚ ବହୁ କଷ୍ଟରେ ଯୋଗାଉ ଥିଲେ । ସିଏ ପୁଅ । ପାଠ ପଢି ରୋଜଗାର କରିବ । କିନ୍ତୁ ମୁଁ ଝିଅ । ପାଠ ପଢି ବାହା ହେବି । ତେଣୁ ମୋ ପାଠ ପଢା ପ୍ରତି ମୋ ବାପା ଦୃଷ୍ଟି ଦେଲେ ନାହିଁ । ମୁଁ ଖୁବ୍ ଭଲ ଛାତ୍ରୀ ଥିଲି । ଭଲ ନମ୍ବର ରଖି ଫାଷ୍ଟ ଡିଭିଜନ୍‌ରେ ମାଟ୍ରିକ ପାଶ କରିଥିଲେ ମଧ୍ୟ ଉଚ୍ଚଶିକ୍ଷା ପାଇ ପାରିଲି ନାହିଁ । ସେଇ ସମୟରୁ ମୋ ଭିତରେ ଗୋଟେ ଇଚ୍ଛାଥିଲା, ମୋ ଝିଅକୁ ମୁଁ ପାଠ ପଢାଇ ଡାକ୍ତର କିମ୍ବା ଇଂଜିନିୟର କରିବି । ମୁଁ ସାରା ଜୀବନ ଅନ୍ୟର ହାତକୁ ଅପେକ୍ଷା କରି ଚଳୁଛି, କିନ୍ତୁ ମୋ ଝିଅ ଯେମିତି ସେ ଅସୁବିଧା ନ ଭୋଗେ ।

ମୁଁ ଜିଦ୍ ଧରିଲି ମୋ ଝିଅ ଇଂଜିନିୟରିଙ୍ଗ୍ ପଢିବ । ସିଏ ଜଏଣ୍ଟ୍ ଏନଟ୍ରାନ୍ସ ଦେଲା । ଆଉ ଭଲ ପୋଜିସନ୍ ମଧ୍ୟ ରଖିଲା । ମୋ ସୁନା ଗହଣା ବିକି ଧାର, ଉଧାର କରି ସିଏ ରାଉରକେଲା ଇଂଜିନିୟରିଙ୍ଗ୍ କଲେଜରେ ପଢିଲା ।

ବିନୟ ବିରକ୍ତ ହେଲେ- ତମେ ମତେ ଏସବୁ କଥା ଶୁଣାଇବାର ଉଦ୍ଦେଶ୍ୟ କଣ ? କୋଉ କଥା କହିବାକୁ ଯାଇ ତମେ କ'ଣ ସବୁ କହି ଯାଉଚ ? ବ୍ରତତୀ ପଠାଇଥିବା ମନିଅର୍ଡରର ଟଙ୍କା ଯଦି ତାକୁ ଫେରାଇଲେ ସିଏ ମନ ଦୁଃଖ କରିବ, ତେବେ



Digitized by srujanika@gmail.com

ଆଉ ସେ ଟଙ୍କାକୁ କ'ଣ କରିବା ସେକଥା କୁହ ।

- ହଁ, ମୁଁ ସେଇ କଥା କହୁଛି । ବ୍ରତତୀର ଏଇ ଯୋଉ ବ୍ୟାଙ୍କ ପାଶବୁକ୍‌ଟା ଅଛି ଏଇଥିରେ ତା' ମନିଅର୍ଡର ଟଙ୍କାକୁ ଆଣି ଡିପୋଜିଟ୍ କରିଦିଅ । ତା' ସହିତ ଏ ବିଷୟରେ କଥାବାର୍ତ୍ତା ହୁଅ । ସିଏ ଯଦି ତଥାପି ଆମ କଥା ନମାନି ପ୍ରତି ମାସରେ ଟଙ୍କା ପଠାଏ, ତାହାହେଲେ ପ୍ରତିମାସରେ ଆମେ ସେ ଟଙ୍କାକୁ ଏଇ ପାଶ୍‌ବୁକ୍‌ରେ ଜମା କରିଦେବା । ସିଏ ଏସବୁ କିଛି ଜାଣି ପାରିବ ନାହିଁ । ପରେ ଅନ୍ୟ କେତେବେଳେ ତାର ଭଲ ମୁଡ୍ ଦେଖି ତାକୁ ତା' ପାଶ୍‌ବୁକ୍‌ଟା ଦେଖାଇ ସବୁକଥା କହିଦେବା ।

ଏ ପ୍ରସ୍ତାବଟା ବିନୟଙ୍କ ମନକୁ ଶତକଡା ଶହେ ଭାଗ ପାଇଲା । ନାରୀମାନେ କେବଳ ସହନଶୀଳ ନୁହଁନ୍ତି, ସେମାନେ ବିଚକ୍ଷଣ ଡିପ୍ଲୋମାଟ ବୋଲି ବିନୟଙ୍କର ଧାରଣା ଦୃଢ ହେଲା । ଅନେକ ସମୟରେ ନାରୀମାନେ ସମସ୍ୟା ସୃଷ୍ଟି କରନ୍ତି, କିନ୍ତୁ ତାଙ୍କ ପାଖରେ ସଂପୂର୍ଣ୍ଣ ସମର୍ପଣ କରିଗଲେ ସେମାନେ ତାର ସହଜ ଓ ସୁନ୍ଦର ସମାଧାନ କରି ଦିଅନ୍ତି ।

ବିନୟ ତାପର ଦିନ ପୋଷ୍ଟଅଫିସ୍ ଯାଇ ମନିଅର୍ଡ଼ର ଟଙ୍କା ଆଣି ବ୍ରତତୀର ପାଶ୍‌ବୁକ୍‌ରେ ଜମା କରିଦେଲେ । ଏଣିକି ପ୍ରତିମାସର ଦ୍ୱିତୀୟ ସପ୍ତାହରେ ବିନୟଙ୍କ ଘରକୁ ନିୟମିତ ଭାବେ ମନିଅର୍ଡ଼ର ଆସିଲା । ବିନୟ ପ୍ରତିମାସରେ ସେ ଟଙ୍କାକୁ ବ୍ରତତୀର ପାଶବୁକ୍‌ରେ ଜମା କରିଦେଲେ । କୌଣସି କୌଣସି ମାସରେ ଆର୍ଥିକ ଅଭାବ ଏତେ ବେଶି ଅବସ କରିଛି ଯେ ବିନୟ ମନିଅର୍ଡ଼ର ଟଙ୍କାକୁ ବ୍ରତତୀର ପାଶ୍‌ବୁକ୍‌ରେ ଜମାଦେବା ପୂର୍ବରୁ ଭାବିଛନ୍ତି ଟଙ୍କାଟାକୁ କିଛିଦିନ ପାଇଁ ଖର୍ଚ୍ଚ କରିଦେଲେ କ୍ଷତି ନାହିଁ । ପାଶ୍‌ବୁକ୍‌ରେ ବିଳମ୍ବରେ ଜମାଦେଲେ ଚଳିବ । କିନ୍ତୁ ପରକ୍ଷଣରେ ଭାବନ୍ତି - ନା, ଥରେ ଏ ଟଙ୍କା ଖର୍ଚ୍ଚ ହୋଇଗଲେ ତାକୁ ଆଉ ଭରଣା କରିବା ଅସମ୍ଭବ । ଧାର, ଉଧାର କଲେ ଖର୍ଚ୍ଚକାଟ କରି ଶୁଝି ହେବ, ମାତ୍ର ବ୍ରତତୀର ପଇସା ଥରେ ଖର୍ଚ୍ଚ ହୋଇଗଲେ ତାହା ଆଉ ଭରଣା କରିବା ଅସମ୍ଭବ । ଜୀବନର ରାସ୍ତା ଏ ପର୍ଯ୍ୟନ୍ତ ସିଏ ଖୁବ୍ ନିଷ୍ଠାର ସହିତ ଚାଲିଛନ୍ତି । ଏ ବୟସରେ ପଥଚ୍ୟୁତ ହେବା ତାଙ୍କୁ ପାପ କରିବା ପରି କଷ୍ଟ ଦେବ । ସବୁ ପ୍ରଲୋଭନକୁ ଭୁଲି ସିଏ ବ୍ରତତୀର ମନିଅର୍ଡ଼ର ଟଙ୍କାକୁ ପ୍ରତିମାସରେ ତା' ପାଶ୍‌ବୁକ୍‌ରେ ଜମା ଦେଲେ ।

ବିନୟଙ୍କ ପାଖକୁ ପ୍ରତିମାସରେ ମନିଅର୍ଡ଼ର ଆସିବାଟା ପଡ଼ୋଶୀମାନଙ୍କ ଦୃଷ୍ଟି ଆକର୍ଷଣ କଲା । ଜଣେ, ଦୁଇଜଣ ପଡ଼ୋଶୀ ଉତ୍କଣ୍ଠା ଚାପି ନପାରି ପଚାରିଲେ - ମନିଅର୍ଡ଼ର କୋଉଠୁ ଆସୁଛି ? ଆପଣଙ୍କ ଝିଅ କ'ଣ ବାହାଘର ପରେ ବି ଆପଣଙ୍କ



Digitized by srujanika@gmail.com

ପାଖକୁ ତା' ଦରମା ଟଙ୍କାରୁ କିଛି ପଠଉଛି ?

ବିନୟ କ'ଣ ଉତ୍ତର ଦେବେ ଠିକ୍ ନକରି ପାରି ନିରବ ରହି କଥାଟା ନଶୁଣିବାର ଅଭିନୟ କରି ଚାଲି ଆସିଲେ । କିନ୍ତୁ ପଡ଼ୋଶୀମାନେ ସତ କଥାଟା ପୋଷ୍ଟମ୍ୟାନ୍ ଠାରୁ ଆଦାୟ କରିନେଲେ ।

ଥରେ ପୋଷ୍ଟମ୍ୟାନ୍ ମନିଅର୍ଡ଼ର ଦେଇଯିବାର ଗୋଟିଏ ଦିନ ପରେ ବିନୟଙ୍କ ସାମ୍ନା ଘରେ ରହୁଥିବା ନବଘନବାବୁ ଆସି ବିନୟଙ୍କୁ ଅନୁରୋଧ କଲେ - ମତେ ଟଙ୍କା ଦୁଇ ହଜାର ଦେଇଥାନ୍ତୁ, ମୁଁ ଚାରିଦିନ ଭିତରେ ଫେରାଇ ଦେବି । ମୋର ବ୍ୟାଙ୍କ୍ ଲୋନ୍ ସାଙ୍କ୍ସନ୍ ହେଇଚି । ଟଙ୍କା ମିଳିବାକୁ ଆଉ ଦିନେ ଦୁଇ ଦିନ ସମୟ ଲାଗିବ ।

ବିନୟ ଯେତେ ବୁଝାଇଲେ, ଏଟା ବ୍ରତତୀର ଟଙ୍କା, ସିଏ ପୋଷ୍ଟମ୍ୟାନଠୁ ପାଇବା ଦିନହିଁ ତା ପାଶ୍‌ବୁକ୍‌ରେ ଜମା କରି ଦିଅନ୍ତି, ନବଘନ ବୁଝିବାକୁ ନାରାଜ । ସିଏ ଯୁକ୍ତି କଲେ, ବ୍ରତତୀ ପାଶ୍‌ବୁକ୍‌ରେ ଯଦି ଟଙ୍କା ରଖିବା କଥା ସିଏ କ'ଣ ତା' ଚାକିରି ସ୍ଥାନରେ ଥିବା କୌଣସି ବ୍ୟାଙ୍କ୍‌ରେ ରଖି ନପାରି ଏଠିକି ଡାକ ମାହାସୁଲ ଦେଇ ଆପଣଙ୍କ ପାଖକୁ ମନିଅର୍ଡ଼ର କରୁଛି, ଆଉ ସେ ଟଙ୍କାକୁ ଆପଣ ଏଠି ତା' ନାଆଁରେ ପାଶ୍‌ବୁକ୍ ଖୋଲି ରଖୁଚନ୍ତି ? ଏଇଟା କ'ଣ ବିଶ୍ୱାସଯୋଗ୍ୟ କଥା ? ଆପଣ ଟଙ୍କା ଦେବେ ନାହିଁ ବୋଲି ସିଧା ନ କହି କଥାଟାକୁ ଝିଅ ନାଆଁରେ ଏମିତି ବୁଲଉଚନ୍ତି କାହିଁକି ?

କେବଳ ନବଘନ ନୁହଁ ବିନୟଙ୍କ ଗାଆଁରୁ ତାଙ୍କ ସାନଭାଇ ଆସି ପାଞ୍ଚ ହଜାର ଟଙ୍କା ନେବାପାଇଁ ଜିଦ୍ ଧରି ବସିଲା । ବ୍ରତତୀ ପଠାଉଥିବା ଟଙ୍କା ତାଙ୍କର ନୁହଁ ବୋଲି ବିନୟ ଯେତେ କହିଲେ ବି ସିଏ ବିଶ୍ୱାସ କଲାନାହିଁ । ରାଗିକି ସେଇଦିନ ଗାଆଁକୁ ଫେରିଗଲା ।

କିଛିଦିନ ପରେ ବ୍ରତତୀ ଆଉ ତା'ର ସ୍ୱାମୀ ସଂବିତ ଭୁବନେଶ୍ୱର ଆସିଲେ । ଉଭୟ ଏକ ସମୟରେ ଛୁଟି ଆଣିଛନ୍ତି । ବ୍ରତତୀ ତା ଶାଶୁଘରେ ପହଞ୍ଚି ବିନୟଙ୍କୁ ଫୋନ୍ କଲା । ବିନୟ ପଚାରିଲେ - ଆମ ଘରକୁ କେବେ ଆସିବୁ ମାଆ ? ତୋ ବୋଉ ତୋ ଆସିବା ବାଟକୁ ଅନେଇଁ ବସିଚି ।

ସେପଟରୁ ସମୁଦୁଣୀ ବଡ଼ପାଟିରେ ବ୍ରତତୀକୁ କହିଲେ, କହିଦେ ଆଜିତ ରାତି ହେଲାଣି କାଲିଯାଇ ବୁଲି ଆସିବୁ ।

ପରଦିନ ସକାଳ ନଅଟାବେଳେ ବ୍ରତତୀ ଓ ସଂବିତ ଆସି ବିନୟଙ୍କ ଘରେ ପହଞ୍ଚିଲେ । ମିଠା ପ୍ୟାକେଟ୍ ସହିତ ବ୍ରତତୀ ତା' ମାଆ ପାଇଁ ଗୋଟେ ସୁନ୍ଦର କାଶ୍ମୀର



Digitized by srujanika@gmail.com

ଶାଲ୍ ଆଉ ବାପାଙ୍କ ପାଇଁ ପ୍ୟାଣ୍ଟସାର୍ଟ କନା ଉପହାର ଆସିଥିଲା । କିଛି ସମୟର ଖୁସୀ ଗପ କରି ଓ କିଛି ଜଳଖିଆ ଖାଇବା ପରେ ସଂଚିତ ତାଙ୍କ ସାଙ୍ଗ ଘରକୁ ଚାଲିଗଲେ । କହିଗଲେ ମଧ୍ୟାହ୍ନ ଭୋଜନରେ ଆସି ଯୋଗଦେବେ ।

ବିନୟଙ୍କ ତଣ୍ଟିରେ କଣ୍ଟାପରି ଅଟକି ଥିବା କଥାଟା ବାହାରି ଆସିବାକୁ ବ୍ୟଗ୍ର ହେଲା । ସିଏ କୁସୁମଙ୍କୁ ଆଖିରେ ସୂଚନା ଦେଲେ ବ୍ରତତୀର ପାଶ୍‌ବୁକ୍‌ଟା କାଢ଼ିବା ପାଇଁ। ଆଲମାରି ଖୋଲି ପାଶ୍‌ବୁକ୍‌ଟା ବାହାର କଲେ କୁସୁମ । ବିନୟ ବ୍ରତତୀକୁ କହିଲେ- ତୁ ତୋର ଏଇ ପାଶ୍‌ବୁକ୍‌ଟା ଆମଘରେ ଛାଡ଼ିଯାଇଛୁ । ଏବେ ତୁ ଏଟା ନେଇଯା ।

ବ୍ରତତୀ ଖୁବ୍ ଖୁସିରେ ପାଶ୍‌ବୁକଟି ଉଠାଇ ଧରି କହିଲା- ଏଇ ପାଶ୍‌ବୁକ୍‌ରେ ମୋର ଅନେକ ସ୍ମୃତି ସାଇତା ହୋଇ ରହିଛି । ଏଇ ପାଶ୍‌ବୁକ୍‌ଟାକୁ ଦେଖିଲେ ମୋର ସ୍କୁଲ ଓ କଲେଜ ଜୀବନର ସ୍କଲାରସିପ୍ କଥା ଆଉ ପାଠପଢ଼ା କଥା ମନେପଡ଼େ । ଏଟା ଏଇଠି ବୋଉ ପାଖରେ ଥାଉ, ମୁଁ ଭୁବନେଶ୍ୱର ଆସିବା ବେଳେ ଏଥିରେ କିଛି କିଛି ଟଙ୍କା ଜମା କରିବି ଆଉ କିଛି କିଛି ଟଙ୍କା ଉଠାଇବି । ଏ ପାଶ୍‌ବୁକ୍ ମୋ ଜୀବନର ଉନ୍ନତିରେ ସାହାଯ୍ୟ କରିଛି । ଯାକୁ ମୁଁ କଦାପି ଭୁଲି ପାରିବି ନାହିଁ ।

କୁସୁମ କହିଲେ- ତୁ ପ୍ରତିମାସରେ ଯୋଉ ଟଙ୍କା ତୋ ବାପାଙ୍କ ନାଆଁରେ ମନିଅର୍ଡ଼ର କରୁଚୁ ସେଇ ସବୁ ଟଙ୍କା ତୋ ବାପା ତୋର ଏଇ ପ୍ରିୟ ପାଶ୍‌ବୁକ୍‌ରେ ଜମାକରି ଦେଇଚନ୍ତି ।

ବ୍ରତତୀ ମୁହଁର ରଙ୍ଗ ହଠାତ୍ ବଦଳି ଗଲା । ସିଏ ବିନୟଙ୍କୁ ପ୍ରଶ୍ନ କଲା - ତମେ ଏମିତି କାହିଁକି କଲ ବାପା ? ମୁଁ ଏଟଙ୍କା ତୁମକୁ ଦେଇଥିଲି । ତୁମେ ମୋତେ କାହିଁକି ଫେରାଇ ଦେଲ ? ମୁଁ କ'ଣ ବାହାଘର ପରେ ତୁମର ଏତେ ପର ହେଇଗଲି ? ମୋତେ ମୋ ଟଙ୍କା ସିଧା ନ ଫେରାଇ ଏମିତି ବଙ୍କା ବାଟରେ ଫେରାଇଲ କାହିଁକି ? ଗୋଟେ ଝିଅ କ'ଣ ତା' ବାପା ମାଆଙ୍କୁ କିଛି ଦେଇପାରିବ ନାହିଁ ?

ବିନୟ ହସି ହସି ଉତ୍ତର ଦେଲେ- ତୁ ଏମିତି ରାଗନା ମାଆ! ତୁ ଦେଇପାରିବୁ ନାହିଁ କାହିଁକି ? ହେଇତ ତୁ ମୋ ପାଇଁ ଆଉ ତୋ ବୋଉ ପାଇଁ ଆଣିଥିବା ଉପହାର ତୁ ଦେଲୁ, ଆଉ ଆମେ ସେସବୁକୁ ଖୁସୀ ମନରେ ଗ୍ରହଣ କଲୁ । କିନ୍ତୁ ତୁ ଏମିତି ପ୍ରତିମାସରେ ଟଙ୍କା ପଠାଇବାଟା ସମାଜ ଆଖିରେ ଭଲ ଦିଶୁନାହିଁ । ତୋ ବାହାଘର ପୂର୍ବରୁ ତୁ ଯେଉଁ ଟଙ୍କା ପଠାଉଥିଲୁ ମୁଁ ତାକୁ ରଖୁଥିଲି । କିନ୍ତୁ ଏଣିକି...

ବ୍ରତତୀ ଯୁକ୍ତି କଲା - ମୁଁ ଆମ ଘରର ଆର୍ଥିକ ଅବସ୍ଥା ଭଲ ଭାବରେ ଜାଣେ । ତମେ ଯେତେ ଟଙ୍କା ପେନସନ୍ ପାଉଛ ସେଥିରେ ଘରଭଡ଼ା, ଫୋନ୍ ବିଲ୍, ଇଲେକ୍ଟ୍ରି



Digitized by srujanika@gmail.com

ବିଲ୍, ଗ୍ୟାସ୍, କେବୁଲ ଟିଭି, ଖବରକାଗଜ ପଇସା ସାଙ୍ଗକୁ ବନ୍ଧୁବାନ୍ଧବ, ପର୍ବପର୍ବାଣି, ଲୁଗାପଟା, ଆଉ ଔଷଧ ଖର୍ଚ୍ଚ ଚଳାଇବା ତୁମ ପକ୍ଷେ ସମ୍ଭବ ନୁହଁ । ଏବେ ବି ତୁମର ଧାର, କରଜ ଥିବ ।

କୁସୁମ ଝିଅକୁ ବୁଝାଇବାକୁ ଯାଇ କହିଲେ- ବାପାଙ୍କ ପେନ୍‌ସନ୍ ପଇସାରେ ଆମର ଘରଖର୍ଚ୍ଚ ଚଳିଯାଉଛି । ତୁ ମୋଟେ ବ୍ୟସ୍ତ ହୋନା ।

ବ୍ରତତୀ କହିଲା- ଚଳିଯାଉଚି ମାନେ କ'ଣ ? କେବଳ ଦୁଇବେଳା ଦୁଇମୁଠା ପେଟକୁ ଖାଇଲେ କ'ଣ ସବୁ ହେଇଗଲା ? ଆମ ଘରର ଝରକା କବାଟର ସ୍କ୍ରିନ୍‌ସବୁ କେତେ ବର୍ଷ ତଳର ? ମୁଁ ହାଇସ୍କୁଲରେ ପଢ଼ିବାବେଳେ ଏସବୁ କିଣାଯାଇଥିଲା । ସ୍କ୍ରିନ୍ କନାର ରଙ୍ଗ ଉଡ଼ିଗଲାଣି । ଏସବୁ ବଦଳା ଯାଇନାହିଁ । ସୋଫାସେଟ୍ ଆଉ ଖଟ ଦୁଇଟା ଅନେକ ବର୍ଷ ତଳେ ପଲିସ୍ ହେଇଥିଲା । ସେସବୁ ତେଲ ଚିକିଟା, ମଇଳା, କୋତରା ଦିଶିଲାଣି । ସୋଫା ଉପରେ ପଡ଼ିଥିବା ଏ ଗଦି ଚେପା ନେପା ହୋଇ ବେଢ଼ଙ୍ଗିଆ ଦିଶିଲାଣି । ସୋଫା କଭର ମଧ୍ୟ ଆଦୌ ବଦଳାଯାଇ ନାହିଁ । ତା ରଙ୍ଗଛାଡ଼ି ଅସୁନ୍ଦର ଦିଶୁଚି । ଟିଭିଟା ଦଶ/ବାର ବର୍ଷ ତଳେ କିଣା ଯାଇଥିଲା । ତା'ର ପିକ୍‌ଚର ଟିଉବ୍ ଦୁର୍ବଳ ହୋଇ ଗଲାଣି ।ଏ ପୁରୁଣା ଟିଭି ଆଉ କିଏ ବ୍ରବହାର କରୁଛି ? ଏ ଟିଭିଟା ବଦଳାଯାଇ ଆଉ ଗୋଟେ ନୂଆ ଏଲ.ଇ ଡ଼ି ଟିଭି ଆଣ । ଦୁଇଟା ଯାକ ଖଟରେ ପଡ଼ିଥିବା କନ୍ଥା ବଦଳା ଯାଇ ତା' ଉପରେ କୟର ମ୍ୟାଟ୍ ପଡ଼ିବ । ଆମର ଡାଇନିଂ ଟେବୁଲ କି ଡ୍ରେସିଂ ଟେବୁଲ୍ ନାହିଁ, ସେ ଦୁଇଟା କିଣାଯିବ । ବୋଉ ହାତରେ ଲୁଗା ସଫା କରୁଚି, ଗୋଟେ ଅଟୋମେଟିକ୍ ୱାସିଂମେସିନ୍ କିଣାଯିବ । ଫ୍ରିଜ୍‌ଟାର କଲର ଛାଡ଼ି ଜଙ୍କ୍ ଲାଗିଲାଣି ରଙ୍ଗ କରିବାକୁ ପଡ଼ିବ ।

ବିନୟ ମୁହଁରେ ହସ ଫୁଟାଇବାକୁ ଚେଷ୍ଟାକରି କହିଲେ- ଏତେ ବର୍ଷ ତ ଏଇଥିରେ ଚଳିଲାଣି, ଆଉ କେତେଟା ବର୍ଷ ଚଳିଗଲେ ଯିବ । ତୁ ସେଥିପାଇଁ ମୋଟେ ବ୍ୟସ୍ତହୋନା । ନିହାତି ଜରୁରୀ କେତେଟା ଜିନିଷ ମୁଁ ଧୀରେ ଧୀରେ କିଣି ଦେବି ।

- ନା, ବାପା ! ମୁଁ ବାହାର ଲୋକ ନୁହଁ । ମୁଁ ବହୁ ଅସୁବିଧାରେ ଆମ ଘରେ ଚଳିକି ଯାଇଚି । ତମେ ଆଉ ବୋଉ ଅନେକ ଅସୁବିଧାରେ ଚଳି ମୋତେ ପାଠ ପଢ଼େଇଚ, ବାହା କରେଇଚ । ଅନ୍ୟ ଅନେକ ସ୍ତ୍ରୀ ଲୋକ ପରି ମୋ ବୋଉ ହାତରେ ସୁନାଚୁଡ଼ି ଚାରିପଟ, କାନରେ ସୁନାଫୁଲ ଦୁଇଟା, ଆଙ୍ଗୁଳିରେ ପଥରବସା ସୁନାମୁଦି ଗୋଟେ ଆଉ ବେକରେ ସୁନାହାରଟେ ପିନ୍ଧିବା କଥା । କିନ୍ତୁ କାନ ଫୁଲ ହଳକ ବ୍ୟତୀତ ତା



Digitized by srujanika@gmail.com

ଦେହରେ ଆଉ କିଛି ସୁନା ଗହଣା ନାହିଁ । ତୁମର ମଧ ଦୁଇଟା ପ୍ୟାଣ୍ଟ, ଦୁଇଟା ସାର୍ଟ ବ୍ୟତୀତ ଅଧିକ ପୋଷାକ ନାହିଁ । ଖରା, ବର୍ଷା, ଶୀତ ସବୁଦିନ ପାଇଁ ତୁମର କେବଳ ହଳେ ଚପଲ । ଏସବୁ ଦାରିଦ୍ର୍ୟର ଟିକା ପିନ୍ଧି ତୁମେମାନେ କେତେଦିନ ନିଜକୁ ଦରିଦ୍ର ବୋଲି ପରିଚୟ ଦେଉଥିବ ?

ମୁଁ ଇଂଜିନିୟରିଙ୍ଗ୍ କଲେଜରେ ପଢ଼ିବାର ପ୍ରଥମ ସପ୍ତାହରେ ଆମ କ୍ଲାସ୍ ଶିକ୍ଷକ ଆମକୁ ଲେଖିବାକୁ କହିଥିଲେ ଆମ ପିଲାଦିନର ଅବିସ୍ମରଣୀୟ ସ୍ମୃତିକଥା । ସେଦିନ ମୁଁ ଦୁଇଟି ସ୍ମୃତି କଥା ଲେଖିଥିଲି । ପ୍ରଥମ ସ୍ମୃତି କଥାରେ ଲେଖିଥିଲି - ମୁଁ ସେତେବେଳେ ଦ୍ୱିତୀୟ ଶ୍ରେଣୀର ଛାତ୍ରୀ । ଆମ ଶ୍ରେଣୀର ପ୍ରଥମ ଦୁଇଧାଡ଼ିରେ ଛାତ୍ରୀମାନେ ବସୁଥିଲେ । ପ୍ରଥମ ଧାଡ଼ିର ବେଞ୍ଚରେ ବସୁଥିଲେ ମିନା, ସୋନାଲୀ, ସୁନିତା ଆଉ ଅନିମା । ସୁନିତା ଥିଲା ଧନୀ ଘର ଝିଅ । ସିଏ ମଧ୍ୟାହ୍ନ ଭୋଜନ ସମୟରେ ଜଳଖିଆ କିଣି ଖାଇବାକୁ ବେଶ୍ କିଛି ପଇସା ଆଣୁଥିଲା । ଅନ୍ୟମାନେ କିଏ କେମିତି ଘରୁ ଡବାରେ ଆଣିଥିବା ଜଳଖିଆ ଖାଉଥିଲେ । ମୁଁ କିନ୍ତୁ ଘରୁ ଭାତ ଖାଇକି ଆସୁଥିଲି ଆଉ ଚାରିଟା ବେଳେ ଘରକୁ ଫେରି ଘରେ ଯାହା କିଛି ଖାଉଥିଲି । ମଧ୍ୟାହ୍ନରେ କିଛି କିଣିକି ଖାଇବା ପାଇଁ ମୋ ପାଖରେ ପଇସା ନଥିଲା । ଦିନେ ସୁନିତାର ଡବାରୁ ଦଶ ପଇସିଟିଏ ତଳକୁ ଗଡ଼ି ଆସିଲା । ଦଶ ପଇସିଟା ଗଡ଼ି ଗଡ଼ି ମୋ ପାଖରେ ପହଞ୍ଚିବା ବେଳେ ମୁଁ ଲୋଭ ସମ୍ଭାଳି ନ ପାରି ତା' ଉପରେ ମୋ ବାଆଁ ପାଦଟା ପକାଇ ମାଡ଼ି ବସିଲି । ସୁନିତା ବେଞ୍ଚ ତଳକୁ ଗଳିଯାଇ ଦଶ ପଇସିଟାକୁ ଖୋଜିଲା । କିନ୍ତୁ ପାଇଲା ନାହିଁ । ଶ୍ରେଣୀ ଶିକ୍ଷକଙ୍କୁ ଜଣାଇଲା । ଶ୍ରେଣୀ ଶିକ୍ଷକ ସବୁ ପିଲାଙ୍କୁ ଠିଆ ହେବାକୁ କହିଲେ ଓ ଦଶ ପଇସିଟା ଯଦି କିଏ ପାଇଥାଏ ତେବେ ଫେରାଇ ଦେବାକୁ ନିର୍ଦ୍ଦେଶ ଦେଲେ । ମୁଁ ଠିଆ ହେଲାବେଳେ ଦଶ ପଇସିଟାକୁ ବାଆଁ ପାଦରେ ମାଡ଼ି ବସିଥିଲି ଏବଂ ସମସ୍ତଙ୍କ ସହିତ ସ୍ୱର ମିଳେଇ କହିଥିଲି ମୁଁ ଦଶ ପଇସିଟି ପାଇନାହିଁ । କିଛି ସମୟ ପରେ ସୁବିଧା ଦେଖି ବାଆଁ ପାଦର ବୁଢ଼ା ଆଙ୍ଗୁଠି ଓ ବିଶି ଆଙ୍ଗୁଠି ସନ୍ଧିରେ ଚାପିଧରି ଦଶ ପଇସିଟି ହାତକୁ ଆଣି ଫ୍ରକ୍ ପକେଟ୍‌ରେ ଯତ୍ନରେ ରଖିଲି । ସ୍କୁଲରୁ ଫେରିବା ବାଟରେ ସେଇ ଦଶ ପିଇସିଟି ଦେଇ ଗୋଟିଏ ଦୋକାନରୁ ଦୁଇଟି ମୁଡ଼କି କିଣିକି ଖାଇଲି । ମୁଡ଼୍‌କି ଦୁଇଟି ଖାଇବା ବେଳେ ମୁଁ ଆଗ ପଛକୁ ବାରମ୍ବାର ଚାହୁଁଥିଲି କାଳେ ସୁନିତା ଆସୁଥିବ ।

ଆଉ ମୋର ଦ୍ୱିତୀୟ ସ୍ମୃତିରେ ମୁଁ ଲେଖିଥିଲି ମୋର କଲେଜ ପଢ଼ା ବେଳର ଗୋଟିଏ ସ୍ମୃତି କଥା । କେଶରୀ ଟକିଜ୍‌ରେ ଗୋଟେ ନୂଆ ହିନ୍ଦି ଫିଲ୍ମ ପଡ଼ିଥିଲା ।



Digitized by srujanika@gmail.com

ଫିଲ୍ମଟିର ନାଆଁ ଏବେ ମନେ ନାହିଁ । ସେତେବେଳେ ଫାଷ୍ଟକ୍ଲାସ୍ ଟିକେଟ୍‌ର ଦାମ୍ ଥିଲା ୧୫ଟଙ୍କା । ମୁଁ ଆଉ ମୋର ସାଙ୍ଗ ରୁବି ଆଡଭାନ୍ସ ଟିକେଟ୍ କାଟିବା ପାଇଁ ଯାଇ ସକାଳ ଆଠଟାରୁ ଲାଇନ୍‌ରେ ଠିଆ ହୋଇଥିଲୁ । ଟିକେଟ୍ କାଉଣ୍ଟର ଖୋଲିଲା ନଅଟା ବେଳେ । ଘଣ୍ଟାଏ କାଳ ଲାଇନ୍‌ରେ ଠିଆ ହୋଇଥିଲେ ମଧ୍ୟ ଆମ ଆଗରେ ଥିଲେ ଆଉ ୨୦ ଜଣ ଝିଅ । ଖରାଦିନର ଖରା । ଦେହରୁ ଝାଳ ବାହାରୁଥିଲା । ଟିକେଟ୍ ଦିଆ ଆରମ୍ଭ ହେଲା । ଦୀର୍ଘ ସମୟ ଅପେକ୍ଷା କରିବା ପରେ ଦେଖିଲି ମୋ ଆଗରେ ଆଉ ମାତ୍ର ଗୋଟିଏ ଝିଅ ଅଛି । ମୁଁ ଟିକେଟ୍ କାଉଣ୍ଟର ପାଖକୁ ଝୁଙ୍କି ପଡ଼ିଲି । ଆଗ ଝିଅଟିକୁ କାଉଣ୍ଟର କ୍ଲର୍କ ଟିକେଟ୍ ନ ଦେଇ ଫେରାଇ ଦେଲା । କଥାଟା ପଚାରି ବୁଝିଲି - ସେ ଝିଅଟି ବର୍ଷେ ତଳେ ସିନେମା ଦେଖିଥିଲା, ଆଉ ସିଏ ଜାଣିଥିଲା ଫାଷ୍ଟକ୍ଲାସ୍ ଟିକେଟ୍‌ର ଦାମ ୧୨ ଟଙ୍କା । କିନ୍ତୁ ଏବେ ସିନେମା ଟିକେଟ୍‌ର ଦାମ୍ ୧୫ ଟଙ୍କା । ସେ ଝିଅ ପାଖରେ ୧୨ଟଙ୍କାଠୁ ଅଧିକ ପଇସା ନ ଥିଲା । ଘଣ୍ଟାଏ କାଳ ଲାଇନ୍‌ରେ ଠିଆ ହୋଇ ଝିଅଟି ଟିକେଟ୍ ନପାଇ ଘରକୁ ଖାଲି ହାତରେ ଫେରିଯିବାଟା ତାକୁ ଖୁବ୍ ବାଧିଥିବ । ମୁଁ ଇଚ୍ଛା କରୁଥିଲି ମୋ ପାଖରେ ଆଉ ତିନି ଟଙ୍କା ଅଧିକ ଥିଲେ ମୁଁ ସେ ଝିଅଟିକୁ ନିଶ୍ଚୟ ଦେଇଥାନ୍ତି । ମୋ ସାଙ୍ଗ ରୁବିକୁ ପଚାରିଲି । ତା'ପାଖରେ ମଧ୍ୟ ୧୫ ଟଙ୍କାରୁ ଅଧିକ ପଇସା ନ ଥିଲା । ସେଦିନ ମୋର ପ୍ରଚଣ୍ଡ ରାଗ ହେଇଥିଲା ଆମ ନିମ୍ନ ମଧ୍ୟବିତ୍ତ ପରିବାରର ବାପାମାନଙ୍କ ଉପରେ । ସିନେମା ଟିକେଟ୍ ଦାମ ୧୫ ଟଙ୍କା ବୋଲି ମାପିଚୁପି ଠିକ୍ ୧୫ ଟଙ୍କା ଦେବେ । ଅଧିକା ଟଙ୍କେ, ଦି'ଟଙ୍କା ସୁବିଧା ଅସୁବିଧା ପାଇଁ ଦେବେ ନାହିଁ ।

ସେଦିନ ଇଂଜିନିୟରିଙ୍ଗ୍ କଲେଜରେ ଯେତେ ପିଲା ସ୍ମୃତିକଥା ଲେଖିଥିଲେ ମୋ ସ୍ମୃତି କଥା ସବୁଠୁ ଇଣ୍ଟରେଷ୍ଟିଙ୍ଗ୍ ହେଇଥିଲା । ତୋର ମନେଥିବ ବୋଉ ମୋର ଏମ୍.ବି.ଏ. ସରିବା ପରେ ଓ ମୁଁ ଚାକିରି ପାଇବା ପୂର୍ବରୁ ଦୁଇମାସ ଘରେ ଥିଲି । ସେଇ ସମୟରେ ଦିନେ ମୁଁ ତୋ ଆଗରେ ମୋ ଇଚ୍ଛା ପ୍ରକାଶ କରି କହିଥିଲି - ମୁଁ ଚାକିରି କଲେ, ପ୍ରଥମ ମାସର ଦରମା ଟଙ୍କା ପାଇବା ଦିନ ଏକ କିଲୋ ବାଇଗଣ ପଲେଇ ଆମ୍ବ ଓ ଗୋଟିଏ ୧୦୦ ଗ୍ରାମ୍‌ର ବଡ଼ କଲ୍‌ଗେଟ୍ ଟୁଥ୍‌ପେଷ୍ଟ କିଣିବି । ତୁ ପଚାରିଥିଲୁ, ଏସବୁ କ'ଣ କରିବୁ? ମୁଁ ତତେ ଉତ୍ତର ଦେଇଥିଲି, ତୁ ପିଲାଦିନେ ମୋ ଦାନ୍ତଘଷା ବ୍ରସ୍‌ରେ ଟିକେ ଟିକେ ପେଷ୍ଟଲଗାଇ ଦେଇ କହୁଥିଲୁ, ତୁ ନିଜେ ବ୍ରସ୍‌ରେ ପେଷ୍ଟ ନେଲେ ବେଶି ନେଇ ଯାଉଛୁ । ଗୋଟେ ପେଷ୍ଟରେ ଯେମିତି ଆମ ପରିବାରର ମାସେ ଚଳି ଯିବ ତୁ ସେମିତି କଣ୍ଟ୍ରୋଲ କରି ମୋ ବ୍ରସ୍‌ରେ ପେଷ୍ଟ ଲଗାଉ ଥିଲୁ । ସେଥିରେ ମୋ ଦାନ୍ତଘଷା କାମ



Digitized by srujanika@gmail.com

ଚଳିଯାଉଥିଲା, କିନ୍ତୁ ଅନ୍ୟମାନଙ୍କ ପରି ମୋ ପାଟିରେ ଫେଣ ହେଉ ନ ଥିଲା କି ଦାନ୍ତ ସଫା ଦିଶୁ ନଥିଲା । ଆମ୍ବ ସମୟରେ ମୁଁ ସବୁବେଳେ ଅଳିକରେ ଗୋଟିଏ ବାଇଗଣ ପଲେଇ ଆମ୍ବ ମୁଁ ଏକା ଖାଇବି । କିନ୍ତୁ ତୁ ଗୋଟିଏ ଆମ୍ବ କାଟି ବଡ଼ ଖଣ୍ଡେ ଦେଉ ବାପାଙ୍କୁ, ଆଉ ଯାହା ବଳେ ସେଥିରୁ ଅଧାରୁ ଅଧିକ ମତେ ଦେଇ ତୁ ଅଳ୍ପ ଟିକେ ଖାଉ । ସେଥିପାଇଁ ମୁଁ ଇଚ୍ଛା କରିଥିଲି ମୁଁ ଦରମା ପାଇଲେ ଗୋଟିଏ ବଡ଼ ଟୁଥପେଷ୍ଟ କିଣି ତାକୁ ଚିପି ପେଷ୍ଟସବୁ ବାହାର କରି ବାହାରେ ଫିଙ୍ଗିଦେବି । ଗୋଟେ ବଡ଼ ବାଇଗଣ ପଲେଇ ଆମ୍ବ କାଟି ସମୁଦାୟ ଆମ୍ବଟିକୁ ଏକୁଟିଆ ଖାଇବି । ମୋ ପ୍ରଥମ ଦରମା ପାଇବା ଦିନ ଠିକ୍ ସେଇଆ କରି ଆମ ଦାରିଦ୍ର୍ୟ ଉପରେ ମୁଁ ପ୍ରତିଶୋଧ ନେଇଥିଲି ।

ଏଇ ଅଭାବର ସ୍ପଷ୍ଟ ଦାଗଟା ଆମଘର, ଆମ ଆସବାବପତ୍ର ଆମ ଚାଲିଚଳନି ସବୁଠି ଲାଗି ରହିଛି । ମୁଁ ଚାହୁଁଚି ସେ ଦାଗକୁ ସଫାକରି ଲିଭାଇ ଦେବି । ମୋ ପାଶ୍‌ବୁକ୍‌ରେ ତମେ ଜମା କରିଥିବା ଟଙ୍କାକୁ ମୁଁ ଉଠାଇ ତୁମ ପାଶ୍‌ବୁକ୍‌ରେ ଜମା କରି ଦେଇଯିବି । ଏଣିକି ମୁଁ ମନିଅର୍ଡ଼ର ନ କରି ପ୍ରତି ମାସରେ ମୋ ବ୍ୟାଙ୍କ ଆକାଉଣ୍ଟରୁ ପାଞ୍ଚ ହଜାର ଟଙ୍କା ତୁମ ବ୍ୟାଙ୍କ ଆକାଉଣ୍ଟକୁ ଟ୍ରାନ୍ସଫର କରିଦେବି । ମନିଅର୍ଡ଼ର ପରି ସେଥିରେ ପଠାଇବାକୁ ଖର୍ଚ୍ଚ ପଡ଼ିବ ନାହିଁ କି ଅନ୍ୟ କିଛି ଅଡୁଆ ନାହିଁ। ମୁଁ ଟ୍ରାନ୍ସଫର କରିବାର ଦଶ ମିନିଟ୍ ଭିତରେ କମ୍ପ୍ୟୁଟର ସାହାଯ୍ୟରେ ତୁମ ଆକାଉଣ୍ଟରେ ଟଙ୍କା ଜମା ହୋଇଯିବ ।

ବିନୟ ଓ କୁସୁମ ପରସ୍ପରଙ୍କ ମୁହଁକୁ ଚାହିଁଲେ । ବ୍ରତତୀକୁ କ'ଣ କହି ବୁଝାଇବେ ସେ କଥାକୁ ନେଇ ଦୁହେଁ ଦ୍ୱନ୍ଦ୍ୱରେ ପଡ଼ିଲେ । ବିନୟ କହିଲେ- ସେସବୁ କଥା ଆମେ ବୁଝୁଛୁ ମାଆ । କିନ୍ତୁ ବିବାହିତା' ଝିଅର ରୋଜଗାର ଟଙ୍କା ଖାଇବା ଆମ ପକ୍ଷେ ସମ୍ଭବ ନୁହଁ । ଏଟା ଆମ ସଂସ୍କୃତି, ପରମ୍ପରା ଓ ସାମାଜିକ ବିଧି ବ୍ୟବସ୍ଥାର ବିରୁଦ୍ଧାଚରଣ କରୁଛି ।

- କୋଉ କଥାକୁ ତୁମେ ସାମାଜିକ ବିଧି, ସଂସ୍କୃତି ଆଉ ପରମ୍ପରା ବୋଲି କହୁଛ ବାପା ? ଏଇ ସମାଜ ଦିନେ ମନା କରୁଥିଲା ଝିଅମାନେ ଘରୁ ବାହାରି ସ୍କୁଲ, କଲେଜରେ ପାଠ ନ ପଢ଼ନ୍ତୁ । ସମାଜର ସେ ମନାକୁ ଆଜି କିଏ ମାନୁଛି ? ଏଇ ସମାଜ ଦିନେ ମନା କରୁଥିଲା ବୋହୂମାନେ କେବଳ ହାଉସ୍ ୱାଇଫ୍ ହୋଇ ଘର ସମ୍ଭାଳନ୍ତୁ, ଚାକିରି ନ କରନ୍ତୁ । ସ୍ତ୍ରୀ ଲୋକର ରୋଜଗାର ଟଙ୍କା ଗ୍ରହଣ କରିବା ଲଜ୍ଜାକର କଥା ବୋଲି ଏଇ ସମାଜର ପୁରୁଷମାନେ ଭାବୁଥିଲେ । କିନ୍ତୁ ଆଜି ଆଉ ସେକଥା ଅଛି କି ? ଏବେ ସ୍ୱାମୀ, ସ୍ତ୍ରୀ ଉଭୟେ ଚାକିରି କରୁଛନ୍ତି । ଏବେ ଆଉ କୌଣସି ଚାକିରିଆ ସ୍ତ୍ରୀର ସ୍ୱାମୀ କିମ୍ବା ଶାଶୁ



Digitized by srujanika@gmail.com

ଶ୍ୱଶୁର କହୁଛନ୍ତି କି ବୋହୂ ରୋଜଗାର ଟଙ୍କା ଗ୍ରହଣ କରିବୁ ନାହିଁ ? ଝିଅଟିଏ ବିବାହ ପରେ ସିଏ ଯଦି ଚାକିରି କଲା ଓ ତା'ର ଦରମା ଟଙ୍କାରୁ କିଛି ଟଙ୍କା ତା ବାପା, ମାଆଙ୍କୁ ଦେଲା, ତାକୁ ଗ୍ରହଣ ନ କରିବେ କାହିଁକି ? ଏଥିରେ ଦୋଷ ରହିଲା କୋଉଠି ? ତୁମେ ଯଦି ମୋ ଟଙ୍କା ଗ୍ରହଣ ନ କର ତା'ହେଲେ ପରୋକ୍ଷରେ ଆମ ନାରୀ ଜାତିର ଖୁବ୍ ବଡ଼ ଧରଣର କ୍ଷତି କରିବ ।

କୁସୁମ କହିଲେ- ନାରୀ ଜାତିର ଏହାଦ୍ୱାରା କେମିତି କ୍ଷତି ହେବ ସେକଥା ମୁଁ ଆଦୌ ବୁଝିପାରୁ ନାହିଁ ।

ବ୍ରତତୀ କହିଲା- ଆଜିକାଲି ଟେକ୍ନିକାଲ ଏଜୁକେସନ୍ ଖୁବ୍ ବ୍ୟୟ ବହୁଳ ହେଲାଣି । ଏମିତିକି ଇଂଜିନିୟରିଙ୍ଗ୍, ଡାକ୍ତରି କିମ୍ବା ଅନ୍ୟ କିଛି ଟେକ୍ନିକାଲ୍ ଶିକ୍ଷା ପାଇଁ ଜଣ ପ୍ରତି ପନ୍ଦର, କୋଡ଼ିଏ  ଲକ୍ଷ ଟଙ୍କା ଖର୍ଚ୍ଚ ପଡ଼ିଲାଣି । ଜଣେ ଲୋକର ପୁଅ, ଝିଅ ଉଭୟ ଥିଲେ ସିଏ ପୁଅକୁ ଏ ବ୍ୟୟବହୁଳ ଟେକ୍ନିକାଲ ଏଜୁକେସନ୍ ଦେବାକୁ ପସନ୍ଦ କରିବ; କାରଣ ପୁଅ ଚାକିରି କରି ବାପ, ମାଆଙ୍କୁ ପୋଷିବ । ଝିଅଟି ବାହାହୋଇ ଶାଶୁଘରକୁ ଯିବ ଓ ସେ ଯଦି ଚାକିରି କରେ ତା ରୋଜଗାର ଟଙ୍କା ତା ସ୍ୱାମୀ ବା ଶ୍ୱଶୁର ନେବେ । ତେଣୁ ଯଦି ବିବାହିତା ଝିଅଠୁ ତା' ବାପା, ମାଆ କିଛି ଗ୍ରହଣ କରିବା ସମାଜର ବିଧି ଓ  ପରମ୍ପରା ବିରୋଧୀ ବୋଲି କହି ତାଠୁ କିଛି ଗ୍ରହଣ ନ କରନ୍ତି, ତାହେଲେ କୌଣସି ବାପାମାଆ ତାଙ୍କ ଝିଅକୁ ଏ ବ୍ୟୟବହୁଳ ଟେକ୍ନିକାଲ ଏଜୁକେସନ୍ ଦେବେ ନାହିଁ । ଯା' ଦ୍ୱାରା ଝିଅମାନଙ୍କର କ୍ଷତି ହେବ ନା ନାହିଁ ? ଆମ ଲୋକ ସଂଖ୍ୟାର ଅର୍ଦ୍ଧେକ ନାରୀ । ଆମ ଲୋକ ସଂଖ୍ୟାର ଅର୍ଦ୍ଧେକ ମଣିଷ ତା'ହେଲେ ବ୍ୟୟ ବହୁଳ ଟେକ୍ନିକାଲ୍ ଏଜୁକେସନ୍‌ରୁ ବଞ୍ଚିତ ହେବେ ।

ବ୍ରତତୀ ପାଶବୁକ୍‌ଟାକୁ ଧରି କହିଲା - କ'ଣ କହୁଚ ? ମୋ ଟଙ୍କା ତମେ ଗ୍ରହଣ କରିବ ନା କରିବ ନାହିଁ ?

ବିନୟ କୁସୁମଙ୍କ ମୁହଁକୁ ଚାହିଁଲେ ।





Digitized by srujanika@gmail.com

# ପ୍ରତିଶ୍ରୁତି

- ହଁ, ରିଜରଭେସନ୍ କନଫର୍ମଡ଼ । ଖରାଦିନ ତେଣୁ ଏ.ସି. କମ୍ପାର୍ଟମେଣ୍ଟରେ ଚାରିଟା ବର୍ଥ ରିଜର୍ଭ କରିଚି । ତୁ ସସ୍ତ୍ରୀକ ରାଉରକେଲାରୁ ତୋ କାର୍‌ରେ ଆସି ଭୁବନେଶ୍ୱରରେ ପହଞ୍ଚିବୁ କାଲିରାତି ସୁଦ୍ଧା । ଟ୍ରେନ୍ ଅଛି ପହରିଦିନ ମାନେ ବୁଧବାର ସକାଳ ଦଶଟା ପନ୍ଦର ମିନିଟ୍‌ରେ । ଏ ଟ୍ରେନ୍‌ଟା ଭୁବନେଶ୍ୱରରୁ ସିଧା ଗୋଆ ଯାଉଛି । ତୁ ସେ ସବୁ ବିଷୟରେ ବ୍ୟସ୍ତହୋନା । ଗୋଆରେ ମୋର ସାଙ୍ଗ ଡିସୁଜା ଅଛି । ତାକୁ ମୁଁ କହିଚି ସିଏ ସିଇ ବିଚର ପାଖାପାଖି ଥିବା ଷ୍ଟାର ହୋଟେଲ ମୁନ୍‌ଲାଇଟ୍‌ରେ ଆମ ପାଇଁ ଦୁଇଟା ଡବଲ୍ ବେଡ଼େଡ଼ ରୁମ୍ ବୁକ୍ କରିବ । ଅନ୍ୟ ସବୁ କଥା ତୁ ଏଠିକି ଆସିଲେ ଆମେ ଆଲୋଚନା କରିବା ।

ସୁମିତ୍ରା ପ୍ରଶ୍ନ କଲେ - କିଏ ଫୋନ୍ କରିଚି ? ଗୋଆ କିଏ ଯାଉଛି ?

ଫୋନ୍‌ଟା ଥୋଇ ଦେଇ ସମର କହିଲେ- ସଂଗ୍ରାମ ଆଉ ସଲୀଳା କାଲି ରାତିରେ ଆସି ଭୁବନେଶ୍ୱରରେ ପହଞ୍ଚିବେ । ଆମେ ଦୁଇ ଦମ୍ପତି ପହରି ଦିନ ଗୋଆ ଯିବା ।

ଗୋଆ ପ୍ରୋଗ୍ରାମ କଥା ଶୁଣି ସୁମିତ୍ରା ଖୁବ୍ ଖୁସିହେଲେ । ପୁଣି ସଂଗ୍ରାମ ଓ ସଲୀଳାଙ୍କ ସହିତ ଏ ଟୁର୍ । ଖୁସିରେ ତାଙ୍କ ପାଦ ତଳେ ଲାଗିଲା ନାହିଁ । ସିଏ ଡେଇଁଲା ପରି ଚଞ୍ଚଳ ଚଞ୍ଚଳ ପଶିଗଲେ ବେଡ଼୍‌ରୁମ୍‌କୁ । ଘର ଭିତରୁ, ଆଧୁନିକ ଡିଜାଇନ୍ ହାରର ଗୋଟେ କ୍ୟାଟ୍‌ଲଗ୍ ଧରି ଫେରି ଆସିଲେ ଡ୍ରଇଂରୁମ୍‌କୁ । ସମରଙ୍କ ଆଗରେ କ୍ୟାଟ୍‌ଲଗର ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଦେଖାଇଲେ ବିଭିନ୍ନ ଡିଜାଇନ୍‌ର ସୁନାହାର । ସମର ପସନ୍ଦ କଲେ ସୁମିତ୍ରା ହାରଟା ଜୁଏଲରଠୁ ନେଇ ଆସିବେ ।

କିନ୍ତୁ ସମର କଥାଟାକୁ ସେଇ ଦିନଟା ପାଇଁ ଟାଳିଦେଲେ । କହିଲେ- ସଂଗ୍ରାମ ଆଉ ସଲୀଳା ଆସନ୍ତୁ, ଚାରିଜଣ ଯାକ ମିଶି ସିଲେକ୍ସନ୍ କରିବା ।

କଥାଟା ସୁମିତ୍ରାଙ୍କ ମନକୁ ଛୁଇଁଲା । ସେମାନେ ଆସିବା ପର୍ଯ୍ୟନ୍ତ ହାର କିଣାଟା ସ୍ଥଗିତ ରଖିବା ଉଚିତ ହେବ । ମନ ସ୍ଥିର କଲେ । ସଂଗ୍ରାମ ଓ ସଲୀଳା ଆସିବା ପରେ ସିଏ ହାରଟା କିଣିବେ ।

ତା' ପରଦିନ ସନ୍ଧ୍ୟା ସାତଟାରେ ସେମାନେ ରାଉରକେଲାରୁ ଆସି ପହଞ୍ଚିଲେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସନ୍ଧ୍ୟା ଟିଫିନ୍ ପରେ ଦୁଇ ଦମ୍ପତି କିଛି ସମୟ ଗପକଲେ । ଗପ ଭିତରକୁ ଆସିଲା ସୁମିତ୍ରାଙ୍କ ହାର କିଣା ପ୍ରସଙ୍ଗ । ସଲୀଳା ମଧ୍ୟ ଭୁବନେଶ୍ୱରରୁ ତାଙ୍କ ପାଇଁ ହାରଟିଏ କିଣିବାର ଯୋଜନା ରଖିଛନ୍ତି । କ୍ୟାଟ୍‌ଲଗ୍‌ଟା ଖେଳାଖେଳି କରି ଗୋଟିଏ ଡିଜାଇନ୍‌ର ହାର ସୁମିତ୍ରା ଓ ସଲୀଳା ଦୁହେଁ ପସନ୍ଦ କଲେ । ସେଇ ରାତିରେ ବଜାର ଯାଇ ନିର୍ଦ୍ଦିଷ୍ଟ ଜୁଏଲର ପାଖରୁ ହାର ଦୁଇଟା କିଣି ଆଣିଲେ ।

ତା' ପରଦିନ ଭୁବନେଶ୍ୱର ଷ୍ଟେସନ୍‌ରୁ ଟ୍ରେନ୍ ଚଢ଼ି ସେମାନେ ଗୋଆ ଅଭିମୁଖେ ଯାତ୍ରା କଲେ । ସୁମିତ୍ରା ଆଉ ସଲୀଳା ଦୁହେଁ ଶିକ୍ଷିତା, ଆଧୁନିକା, ସୁନ୍ଦରୀ, ଅଳ୍ପ ବୟସୀ । ସୁମିତ୍ରାଙ୍କ ବିଭାଘରକୁ ତିନି ବର୍ଷ ପୂର୍ଣ୍ଣ ହେବ ଆସନ୍ତା ଅଗଷ୍ଟ ପ୍ରଥମ ସପ୍ତାହରେ । ସଲୀଳାଙ୍କ ବିଭାଘର ଦ୍ୱିତୀୟ ବାର୍ଷିକୀ ପାଳିତ ହୋଇଯାଇଛି ଛଅ ମାସ ତଳେ । ସୁମିତ୍ରାଙ୍କ ସ୍ୱାମୀ ସମର ଆଉ ସଲୀଳାଙ୍କ ସ୍ୱାମୀ ସଂଗ୍ରାମ ଦୁହେଁ ବ୍ୟାଙ୍କ ଅଫିସର୍ । କାହାରି ପରିବାରକୁ ସନ୍ତାନ ଆସିବା ଏଯାଏ ସମ୍ଭବ ହୋଇ ନାହିଁ । ହୁଏତ ସେମାନେ ସେଥିପାଇଁ ନିଜକୁ ପ୍ରସ୍ତୁତ କରି ନାହାଁନ୍ତି । ପ୍ରଥମ ପ୍ରଥମ କେତେ ବର୍ଷ ଟଙ୍କା ସହିତ ଦେହ ଓ ମନର ଖୋଲା ହାତିଆ ଖର୍ଚ୍ଚ କରି ଜୀବନକୁ ସ୍ୱଚ୍ଛନ୍ଦରେ ଉପଭୋଗ କରିବା ସେମାନଙ୍କ ଇଚ୍ଛା ।

ଗୋଆ ରେଳଷ୍ଟେସନ୍‌କୁ ସମରଙ୍କ ବନ୍ଧୁ ଡିସୁଜା ତାଙ୍କ କାର୍ ଧରି ଆସିଥିଲେ ଏଇ ଦୁଇ ପରିବାରକୁ ରିସିଭ୍ କରିବାକୁ । ଡିସୁଜା ଖୁବ୍ ଖୁସୀ ମିଜାଜ୍‌ର ଲୋକ । ମୁହଁରେ ଫ୍ରେଞ୍ଚକଟ୍ ଦାଢ଼ି । ଡେଙ୍ଗା ମଣିଷ । ବୟସ ପଇଁତିରିଶ ଏପଟେ । ରଙ୍ଗ ଗୋରା ।

ଡିସୁଜାଙ୍କ କ୍ୱାଲିସ୍ କାର୍ ଦୁଇ ପରିବାରକୁ ଧରି ଆସି ପହଞ୍ଚିଥିଲା ହୋଟେଲ ମୁନଲାଇଟ୍‌ର ବିସ୍ତିର୍ଣ୍ଣ ପୋର୍ଟିକୋ ତଳେ । ସି ବିଚକୁ ମୁହଁକରି ଠିଆ ହୋଇଚି ଆଠ ମହଲାର ବିରାଟ ଅଟାଳିକା ହୋଟେଲ ମୁନ୍‌ଲାଇଟ୍ । ଚତୁର୍ଥ ମହଲାରେ ପାଖାପାଖି ଦୁଇଟି ଶୀତତାପ ନିୟନ୍ତ୍ରିତ ରୁମ୍‌ରେ ବ୍ୟବସ୍ଥା ହୋଇଛି ଏ ଦୁଇ ପରିବାରର ରହିବା ପାଇଁ । ସମରଙ୍କ ରୁମ୍ ନମ୍ବର ୪୩୨ ଓ ସଂଗ୍ରାମଙ୍କ ରୁମ୍ ନମ୍ବର ୪୩୩ । ମଝିରେ କେବଳ ଗୋଟିଏ କାନ୍ଥର ବ୍ୟବଧାନ ।

ସଲୀଳା ଦେଖିଲେ ରୁମ୍‌ଟି ଖୁବ୍ ସୁନ୍ଦର । ରୁମ୍ ଭିତରେ ସବୁ ସୁବିଧା ଅଛି । କପ୍‌ବୋର୍ଡ଼, ରଙ୍ଗିନ୍ ଟିଭି, ଟେଲିଫୋନ୍, ସୋଫାସେଟ୍ । କଲିଙ୍ଗ୍‌ବେଲ୍ ଚିପିଲେ ରୁମ୍‌ବଏ ଆସିଯାଉଛି । ନିଜ ଜିନିଷପତ୍ର କପ୍‌ବୋର୍ଡ଼ ଭିତରେ ସଜାଇ ରଖିଦେଇ ସୁମିତ୍ରାଙ୍କ ରୁମ୍‌ର ଡୋର୍ ନକ୍ କଲେ ସଲୀଳା । ସୁମିତ୍ରା ଭିତରେ ଥାଇ କହିଲେ – ଡୋର ଖୋଲା ଅଛି ଭିତରକୁ ଆସ ସଲୀଳା ।

ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

ସଲୀଳା ରୁମ୍ ଭିତରକୁ ପଶି ଆସି ଦେଖିଲେ, ସୁମିତ୍ରା ଗୋଟେ ଝରକା ଖୋଲି ବାହାରକୁ ଚାହିଁଛନ୍ତି । ସେଇ ଝରକା ବାଟେ ଦିଶୁଥିଲା ଉର୍ମିମାଳିନୀ ସମୁଦ୍ର ଆଉ ଓଦା ବାଲିର ବେଳାଭୂମି ଓ ବାଲିରେ ଗଡୁଥିବା ଅନେକ ଅର୍ଦ୍ଧଉଲଗ୍ନ ସେକ୍ସି ଯୁବକ, ଯୁବତୀ ।

ସଲୀଳା ଓ ସୁମିତ୍ରାଙ୍କ ମୁହଁରେ ଖୁସୀ ଖୁସୀ ଭାବ । ଦୁହେଁ ମୁହଁ ଖୋଲି କିଛି ନ କହିଲେ ବି ତାଙ୍କ ମୁହଁରୁ ଜଣାପଡୁଥିଲା ଗୋଆର ଅପରୂପ ଶୋଭା ସମ୍ପଦରେ ଦୁହେଁ ମୁଗ୍ଧ । ଏମିତିଆ ଗୋଟେ ଭ୍ରମଣ ତାଙ୍କ ସ୍ମୃତିରେ ସବୁଦିନ ବହୁମୂଲ୍ୟ ରତ୍ନଟିଏ ପରି ସାଇତା ହୋଇ ରହିବ ।

ଡିସୁଜାଠୁ ବିଦାୟ ନେଇ ଦୁଇବନ୍ଧୁ ସମର ଓ ସଂଗ୍ରାମ ହୋଟେଲର ରୁମ୍‌କୁ ଫେରିଲେ । ମଧ୍ୟାହ୍ନ ଭୋଜନ ପର୍ଯ୍ୟନ୍ତ ଦୁଇଟି ଯାକ ଦମ୍ପତି ଖୁସୀଗପ କଲେ, କିନ୍ତୁ ମଧ୍ୟାହ୍ନ ଭୋଜନ ପରେ ଟ୍ରେନ୍ ଯାତ୍ରାଜନିତ କ୍ଳାନ୍ତିରୁ ମୁକ୍ତି ପାଇଁ ନିଜ ନିଜ ରୁମ୍‌ରେ ବିଶ୍ରାମ କଲେ । ଅପରାହ୍ନରେ ଡିସୁଜା ଆସି ଡୋର୍ ନକ୍ କଲେ । ଡିସୁଜାଙ୍କ କାର୍‌ରେ ଦୁଇ ଦମ୍ପତି ସମୁଦ୍ର ବେଳାଭୂମି ପରିଭ୍ରମଣରେ ବାହାରିଲେ । ସମର ଓଦା ବାଲିରେ ପାଦଚିହ୍ନ ଆଙ୍କି ଆଙ୍କି ସମୁଦ୍ର କୂଳେ କୂଳେ ଧାଇଁଲେ । ତାଙ୍କ ପଛେ ପଛେ ସଂଗ୍ରାମ ଆଉ ଡିସୁଜା । ସୁମିତ୍ରା ଆଉ ସଲୀଳା ବାଲି ଉପରେ ଗୋଡ଼ ଲମ୍ବାଇ ବସିଯାଇ ସମୁଦ୍ର କୂଳକୁ ଚାହିଁଲେ । ଅନେକ ଦୂରରେ ସମୁଦ୍ର ଭିତରେ ଅସ୍ତସୂର୍ଯ୍ୟ ଲାଲ ପେଣ୍ଡୁଟିଏ ପରି ବୁଡ଼ି ଯାଉଥିଲେ । ତାଙ୍କଠୁ ଅଳ୍ପଦୂରରେ ବାଲିରେ ଶୋଇଥିଲେ ଅନେକ ବିଦେଶୀ ତରୁଣ, ତରୁଣୀ ।

ଆକାଶରେ ଜହ୍ନ ଉଠିବା ପର୍ଯ୍ୟନ୍ତ ସେମାନେ ବେଳାଭୂମିରେ ବୁଲିଲେ, ବସିଲେ, ଗପିଲେ, କଫି ପିଇଲେ, ଫଟୋ ଉଠାଇଲେ । ରାତି ନଅଟା ବେଳକୁ ହୋଟେଲକୁ ଫେରି ଆସିଲେ ।

ସାମାନ୍ୟ ଫ୍ରେସ୍ ହେବାପରେ ଦୁଇ ଦମ୍ପତି ଏକାଠି ହେଲେ ସମରଙ୍କ କୋଠରୀରେ । ଗୋଆ ଟୁର୍‌କୁ ଅଧିକ ସ୍ମରଣୀୟ କରିବାକୁ ଦୁଇ ଦମ୍ପତି ଦୁଇଟି ଗ୍ରୁପ୍ ହୋଇ ଅନ୍ତାକ୍ଷରୀ ଖେଳିଲେ । ସଲୀଳାଙ୍କ କଣ୍ଠସ୍ୱର ମଧୁର କିନ୍ତୁ ସୁମିତ୍ରାଙ୍କୁ ବେଶି ଗୀତ ଜଣା । ସମର ଆଉ ସଂଗ୍ରାମ ଗୀତରେ କେହି ପାରଙ୍ଗମ ନୁହଁନ୍ତି । ତେଣୁ ଅନ୍ତାକ୍ଷରୀ ଖେଳ ବେଶି ସମୟ ଚାଲିଲା ନାହିଁ । ସେଦିନର କାର୍ଯ୍ୟକ୍ରମ ଶେଷ ହେଲାବେଳକୁ ରାତି ଏଗାରଟା ବାଜି ସାରିଥିଲା । ହୋଟେଲ ବଏ ଆସି ଡୋର୍ ନକ କଲା । ଡୋର୍ ଖୋଲିଲେ ସଂଗ୍ରାମ । ଡିନର ଡିସେସ୍ ସବୁ ହୋଟେଲ ବଏ ରୁମ୍‌ରେ ଦେଇଗଲା । ସଲୀଳା ଓ ସୁମିତ୍ରା ଚାରିଟା ପ୍ଲେଟ୍ ଖାଦ୍ୟ ବାଢ଼ିଲେ । ହସ ଖୁସିରେ ରାତ୍ରି ଭୋଜନ ଶେଷ ହେଲା । ଗୋଟିଏ



Digitized by srujanika@gmail.com

ମଧୁମୟ ରୋମାଞ୍ଚକର ଦିନକୁ ଗୁଡ଼ବାଏ କରି ନିଜ ନିଜ ରୁମ୍‌ରେ ଶୋଇଲେ ଦମ୍ପତି ଦୁଇଟି ।

ସେମାନଙ୍କ ନିଦ୍ରା ଭାଙ୍ଗିଲା ତା'ପର ଦିନ ସକାଳ ଆଠଟାରେ । ନିତ୍ୟକର୍ମ ସାରି ସମର, ସଂଗ୍ରାମ, ସଲୀଳା ଓ ସୁମିତ୍ରା ବାହାରି ଗଲେ ଗୋଆର ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲି ଦେଖିବାକୁ । ହୋଟେଲ ପୋର୍ଟିକୋ ତଳେ ଡିସୁଜାଙ୍କ କାର୍ ଅପେକ୍ଷା କରିଥିଲା । ବିଭିନ୍ନ ସ୍ଥାନ ବୁଲାବୁଲି କରି ସେମାନେ ହୋଟେଲକୁ ଫେରିଲେ ଦିନ ଦୁଇଟାରେ । ଖାଇପିଇ ବିଶ୍ରାମ ନେଇ ଦୁଇ ଦମ୍ପତି ପୁଣି ଏକତ୍ର ହେଲେ ସଂଗ୍ରାମଙ୍କ କୋଠରୀରେ । ଅପରାହ୍ନର ଆସର ଆରମ୍ଭ ହେଲା କଫି ପିଆରେ ।

ଏଣୁ ତେଣୁ ଗପ କରୁ କରୁ ଗପ ଭିତରକୁ ପଶି ଆସିଲା ସମର ଓ ସଂଗ୍ରାମଙ୍କ ବନ୍ଧୁତା କଥା । ସମର ସଲୀଳା ଓ ସୁମିତ୍ରାଙ୍କୁ ଲକ୍ଷ୍ୟ କରି କହିଲେ- ତୁମେ ଆମ ଜୀବନକୁ ମାତ୍ର ଦୁଇ, ତିନିବର୍ଷ ହେଲା ଆସିଛ, ତେଣୁ ତୁମକୁ ଆମ ଦୁଇଜଣଙ୍କ ବନ୍ଧୁତା ଓ ତାର ପ୍ରଗାଢ଼ତା କଥା ଜଣାନାହିଁ । ଆମ ଦୁଇଜଣଙ୍କ ଭିତରେ ବନ୍ଧୁତା କେତେ ଅନ୍ତରଙ୍ଗ ଥିଲା ସେକଥା ଜାଣିଲେ ତୁମେ ଆଶ୍ଚର୍ଯ୍ୟ ହେବ ।

ସଂଗ୍ରାମ କଥା ମଝିରେ ପ୍ରତିବନ୍ଧକ ସୃଷ୍ଟିକରି କହିଲେ- ନା, ସେ ସବୁ କଥା ଏମାନଙ୍କୁ କହିବା ଠିକ୍ ହେବ ନାହିଁ । ଦୁଇ ଜଣ ପୁଅପିଲାଙ୍କ ବନ୍ଧୁତା ଯେତେ ଦୃଢ଼ ଆଉ ଘନିଷ୍ଠ ଥାଏ, ଦୁଇ ଜଣ ଝିଅପିଲାଙ୍କ ବନ୍ଧୁତା ସେତେ ଦୃଢ଼ କି ଘନିଷ୍ଠ ହୋଇ ପାରିବ ନାହିଁ । ସେମାନଙ୍କ ଭିତରେ ବନ୍ଧୁତାଠୁ ଶତ୍ରୁତା, ସନ୍ଦେହ ଓ ଈର୍ଷା ଅଧିକ ଥାଏ । ତେଣୁ ସେମାନଙ୍କ ଆଗରେ ବନ୍ଧୁତା ସମ୍ପର୍କରେ କହି କିଛି ଲାଭନାହିଁ ।

ସଲୀଳା ଓ ସୁମିତ୍ରା ପ୍ରତିବାଦ କଲେ - ସବୁ ଝିଅ ଈର୍ଷାପର କି ସନ୍ଦେହି ନୁହଁନ୍ତି । ଅନେକ ଝିଅ ଅଛନ୍ତି ଯେଉଁମାନଙ୍କ ଭିତରେ ବନ୍ଧୁତା ଅନେକ ଦିନ ଧରି ପ୍ରଗାଢ଼ ରହେ । ତୁମ ଦୁଇ ବନ୍ଧୁଙ୍କ ଭିତରେ କେତେ ବନ୍ଧୁତା ଥିଲା ସେକଥା ଆଗ ତୁମେ ପ୍ରକାଶ କର । ତା'ପରେ ଆମେ ମତାମତ ଦେବୁ ।

ସମର ସଂଗ୍ରାମ ମୁହଁକୁ ଚାହିଁଲେ । ସଂଗ୍ରାମ କହିଲେ ତୁ ଆଗ ଆରମ୍ଭ କର । ତୁ କିଛି କହି ସାରିବା ପରେ ଅବଶିଷ୍ଟ କଥା ମୁଁ କହିବି ।

ସମର ଆରମ୍ଭ କଲେ- ଆମ ଦୁହିଁଙ୍କର ଜନ୍ମ ଗୋଟିଏ ଗାଆଁରେ । ଗୋଟିଏ ସ୍କୁଲରେ, ଗୋଟିଏ କ୍ଲାସ୍‌ରେ ଦୁହେଁ ପଢ଼ୁଥିଲୁ । ଆମେ ଦୁଇଜଣ ଭିନ୍ନ ଭିନ୍ନ ଦୁଇଟି ପରିବାରରେ ଜନ୍ମ ହୋଇଥିଲେ ମଧ୍ୟ ଗୋଟିଏ ମାସରେ ଆମ ଦୁହିଁଙ୍କ ଜନ୍ମ । ଆମ



Digitized by srujanika@gmail.com

ଦୁହିଁଙ୍କ ବାପ, ମାଆ ଅଲଗା ହେଲେବି ଆମ ଚେହେରାରେ ଅନେକ ସାମଞ୍ଜସ୍ୟ । ଉଚ୍ଚତା ଏକା, ରଙ୍ଗ ସମାନ ଓ ମୁହଁର ଗଠନ ପ୍ରାୟ ଏକାପରି । ପାଠରେ ଆମ ଦୁଇ ଜଣଙ୍କ ଷ୍ଟାଣ୍ଡାର୍ଡ଼ ଏକା । ଆମ ଦୁହିଁଙ୍କ ଅକ୍ଷର ମଧ୍ୟ ସମାନ । ଅନେକ ସ୍କୁଲ ପରୀକ୍ଷାରେ ଆମେ ଏକା ନମ୍ବର ରଖି ଯୁଗ୍ମଭାବେ ପ୍ରଥମ ସ୍ଥାନ ଅଧିକାର କରିଛୁ । ଆମ ଦୁଇ ଜଣଙ୍କ ବନ୍ଧୁତା ଖୁବ୍ ଅନ୍ତରଙ୍ଗ ଥିଲା । ଖେଳିବା କିମ୍ବା ବୁଲିଯିବା ବେଳେ ଆମେ ଏକାଠି ଯାଉ ।

ଆମ ସାଙ୍ଗ ସାଥୀମାନଙ୍କ ମନରେ ଭ୍ରମ ସୃଷ୍ଟି କରିବା ପାଇଁ ଆମେ ଏକା ରଙ୍ଗର ପ୍ୟାଣ୍ଟ, ସାର୍ଟ ପିନ୍ଧୁ । ଚତୁର୍ଥ ଶ୍ରେଣୀରେ ପଢ଼ିବା ବେଳେ ଥରେ ଗୋଟିଏ ବ୍ୟାକରଣ ପ୍ରଶ୍ନର ଉତ୍ତର କୌଣସି ପିଲାକୁ ଆସିଲା ନାହିଁ । କିନ୍ତୁ ସଂଗ୍ରାମ ସେ ପ୍ରଶ୍ନର ଉତ୍ତର ଠିକ୍ ଦେଲା । ଶ୍ରେଣୀ ଶିକ୍ଷକ ଆମ ଶ୍ରେଣୀର ସବୁ ପିଲାଙ୍କୁ ଧାଡ଼ି କରି ଠିଆ କରାଇ ଦେଲେ ଆଉ ସଂଗ୍ରାମକୁ ନିର୍ଦ୍ଦେଶ ଦେଲେ- ତୁ ସମସ୍ତଙ୍କ କାନମୋଡ଼ି ତାଙ୍କ ଗାଲରେ ଖୁବ୍ ଜୋର୍‌ରେ ଠାଏ ଠାଏ ଦୁଇ ଦୁଇ ଚାପୁଡ଼ା ମାର । ସଂଗ୍ରାମ ଧାଡ଼ି ଆରମ୍ଭରୁ ପ୍ରତ୍ୟେକ ପିଲାଙ୍କ କାନ ମୋଡ଼ି ଚାପୁଡ଼ା ମାରି ଆସିଲା, କିନ୍ତୁ ମୋ ଗାଲରେ ଚାପୁଡ଼ା ନ ମାରି ଠିଆହେଲା । ଶିକ୍ଷକ ନିର୍ଦ୍ଦେଶ ଦେଲେ - ସମର ଗାଲରେ ଚାପୁଡ଼ା ଲଗା । କିନ୍ତୁ ସଂଗ୍ରାମ ମୋ ଗାଲରେ ଚାପୁଡ଼ା ନ ମାରି ନିଜ କାନମୋଡ଼ି ନିଜ ଗାଲରେ ଠାଏ ଠାଏ ଦୁଇଟା ଚାପୁଡ଼ା ମାରିଲା । ଶିକ୍ଷକ ପଚାରିଲେ- ତୁ ନିଜ ଗାଲକୁ କାହିଁକି ଚାପୁଡ଼ା ମାରିଲୁ ? ସଂଗ୍ରାମ ଉତ୍ତର ଦେଇଥିଲା- ମୋ ସାଙ୍ଗ ସମର ଯୋଉ ପ୍ରଶ୍ନର ଉତ୍ତର ଦେଇ ନ ପାରିଲା, ସେ ପ୍ରଶ୍ନ ଉତ୍ତର ଦେଇ ମୁଁ ଭୁଲ କରିଛି । ସେଥିପାଇଁ ନିଜ ଗାଲକୁ ଚାପୁଡ଼ା ମାରିଲି । ଶ୍ରେଣୀ ଶିକ୍ଷକ ଓ ଶ୍ରେଣୀର ସମସ୍ତ ପିଲା ସେଦିନ ଆମ ଦୁହିଁଙ୍କ ବନ୍ଧୁତା ଦେଖି ଅବାକ୍ ହୋଇଯାଇଥିଲେ ।

ବେଳେବେଳେ ଆମ ଦୁହିଁଙ୍କ ମନରେ ଆଶ୍ଚର୍ଯ୍ୟ ପ୍ରକାର ଭାବନା ସୃଷ୍ଟି ହୁଏ । ସେମିତି ଗୋଟେ କଥା ହେଉଛି, ଆମ ମ୍ୟାଟ୍ରିକ୍ ପରୀକ୍ଷା ବେଳକୁ ଆମେ ଦୁହେଁ ସ୍ଥିର କଲୁ ପରୀକ୍ଷା ଖାତାରେ ସିଏ ମୋ ରୋଲ୍ ନମ୍ବର ଲେଖିବ ଆଉ ମୁଁ ମୋ ଖାତାରେ ତା' ରୋଲ୍ ନମ୍ବର ଲେଖିବି ।

ସଲୀଳା ପ୍ରଶ୍ନ କଲେ- ଏଇଟା କେମିତି ସମ୍ଭବ ହେଲା ? ପରୀକ୍ଷା ହଲ୍‌ରେ ଥିବା ଇନ୍‌ଭିଜିଲେଟର କିଛି କହିଲେ ନାହିଁ ?

- ନା, କେହି ଆମ ରୋଲ୍ ନମ୍ବର ବଦଳ କଥା ଜାଣି ପାରିଲେ ନାହିଁ । ପରୀକ୍ଷା ସରିଲା । ଆମେ ଉତ୍କଣ୍ଠାର ସହ ପରୀକ୍ଷା ଫଳକୁ ଅପେକ୍ଷା କଲୁ । ଆମ ଦୁହିଁଙ୍କ ଘରେ ଏ ରୋଲ୍ ନମ୍ବର ବଦଳ କଥା ଜାଣି ଆମକୁ ଗାଳିଦେଲେ । କଥାଟା କିନ୍ତୁ ପ୍ରଘଟ ନ ହୋଇ



Digitized by srujanika@gmail.com

ଆମ ଦୁଇ ପରିବାର ଭିତରେ ସୀମିତ ରହିଲା । ପରୀକ୍ଷା ଫଳ ପ୍ରକାଶ ପାଇଲା । ଆମ ଦୁହିଁଙ୍କ ନମ୍ବର ସମାନ ଥିଲା । ଦୁହେଁ ଶତକଡ଼ା ୮୫ ନମ୍ବର ରଖି ହାୟର ଫାଷ୍ଟ ଡିଭିଜନ୍‌ରେ ପାଶ୍‌କଲୁ ।

ସଲୀଳା ଓ ସୁମିତ୍ରା ବିସ୍ମିତ ହୋଇ ପରସ୍ପରଙ୍କ ମୁହଁକୁ ଚାହିଁଲେ ।

ସଂଗ୍ରାମ କହିଲେ- ଏଥର ତୁ ଟିକେ ରହ ସମର । ମୁଁ କହୁଚି । ଆମେ ଦୁହେଁ ବାଣୀବିହାରରେ ପି.ଜି. କରିବା ସମୟର କଥା । ଅନକେ ସମୟରେ ସମର ଆଉ ମୁଁ ଏକା ଡ୍ରେସ୍ ପିନ୍ଧି କ୍ଲାସ୍ ଯାଉ । ପିଲା ଆଉ ଅଧ୍ୟାପକମାନେ ଆମ ଦୁହିଁଙ୍କୁ ସମାନ୍ ଡ୍ରେସ୍‌ରେ ଦେଖି ବାରି ପାରନ୍ତି ନାହିଁ କିଏ ସମର କିଏ ସଂଗ୍ରାମ । ଆମକୁ ଥରେ ଅଧେ ଦେଖିଥିବା ଲୋକ ମୋଟେ ଆମ ଦୁହିଁଙ୍କ ଭିତରେ ଥିବା ସୂକ୍ଷ୍ମ ପାର୍ଥକ୍ୟକୁ ଜାଣି ପାରନ୍ତି ନାହିଁ । ଦିନେ ଗୋଟେ ଖୁବ୍ ମଜା କଥା ହେଲା । ବାଣୀବିହାରରେ ଆମର ଫାଇନାଲ୍ ଇୟର ବେଳେ ଥରେ ମୁଁ ସନ୍ଧ୍ୟାବେଳେ ବାଣୀବିହାର ପରିସରରେ ଥିବା କୃଷ୍ଣଚୂଡ଼ା ଗଛତଳେ ସମରକୁ ଅପେକ୍ଷା କରିଥିଲି । ଝିଅଟିଏ ମୋ ଆଡ଼କୁ ଆସିଲା । ଝିଅଟି ଖୁବ୍ ସୁନ୍ଦରୀ ଆଉ ସ୍ମାର୍ଟ ଥିଲା । ମୋ ପାଖରେ ଲାଜ ଲାଜ ହୋଇ ଠିଆ ହୋଇ କହିଲା- ମୁଁ ସ୍ମିତା । ସାଇକୋଲଜିରେ ଏବର୍ଷ ଆଡ୍‌ମିସନ୍ କରିଚି ।

ମୁଁ ସ୍ମିତାକୁ ଆଶ୍ଚର୍ଯ୍ୟ ଆଖିରେ ଚାହିଁଲି । ମୁଁ ତ ଏ ଝିଅକୁ ଚିହ୍ନେନା କି ଜାଣେନା । ଇଏ ଏମିତି ମୋ ପାଖକୁ ମୁସୁଣ୍ଡେଇ ପଶିବାର ଉଦ୍ଦେଶ୍ୟ କ'ଣ ?

ସ୍ମିତା ନିଜ ତରଫରୁ ପରିଚୟ ଦେଲା - ଆମ ନେଟିଭପ୍ଲେସ୍ ଜଗତସିଂହପୁର ଟାଉନ୍‌ଠୁ ଦୁଇ କିଲୋମିଟର ଦୂର, ସାଜନପୁର ଗାଆଁ । ଆପଣ ମତେ ଚିହ୍ନି ନାହାଁନ୍ତି, କିନ୍ତୁ ମୁଁ ଆପଣଙ୍କୁ ଚିହ୍ନିଚି ।

ମୋ ଆଖି ଆଶ୍ଚର୍ଯ୍ୟରେ ବଡ଼ ବଡ଼ ହୋଇଗଲା । ଏ ଝିଅର ମୁଣ୍ଡ ଖରାପ ନା କ'ଣ ?

ସ୍ମିତା ଜାଣିଲା ମୁଁ ତାକୁ ତଥାପି ଚିହ୍ନିପାରୁ ନାହିଁ । ତେଣୁ ସିଏ ତା'ର ପରିଚୟକୁ ଆଉ ଟିକେ ବିସ୍ତାରିତ କଲା - ଆପଣ ଆମ ଗାଆଁକୁ ଗଲାବର୍ଷ ରଜକୁ ଯାଇଥିଲେ । ଆମ ଗାଆଁ ଆମ୍ବ ତୋଟାରେ ପଟାଦୋଳି ଖେଳିଥିଲେ । ଆପଣଙ୍କ ମାମୁପୁଅ ଭାଇ ମହେଶ୍ୱର ଆପଣଙ୍କ ସାଙ୍ଗରେ ଥିଲା । ଏବେ ମନେପଡ଼ିଲା ?

ମୁଁ ଏଥର ସ୍ମିତା ସହିତ ଟିକେ ମଜା କରିବା ପାଇଁ ସମ୍ମତି ସୂଚକ ଭାବେ ମୁଣ୍ଡ ହଲାଇଲି । ସ୍ମିତା ମୋ ପାଖକୁ ଆଉଟିକେ ଲାଗିଆସି ଖୁବ୍ ଅନ୍ତରଙ୍ଗ ଭାବେ ଠିଆ ହୋଇ



Digitized by srujanika@gmail.com

କହିଲା- ଆପଣଙ୍କ ମାଇଁ ମତେ କହିଥିଲେ, ଆମ ସମରକୁ ଦେଖା କରିବୁ । ସିଏ ସେଇ ବାଣୀବିହାରରେ ପଢୁଚି ।

କଥାଟା ଏବେ ମୋ ପାଖରେ ପରିଷ୍କାର ହୋଇଗଲା । ସ୍ମିତା ମୋତେ ସମର ବୋଲି ଭାବି ଏତେ ସବୁକଥା କହୁଚି । ଏଇ ସମୟରେ ହଠାତ୍ ସମର ଆସି ପହଞ୍ଚି ଯିବାରୁ ସବୁ ଗୋଳମାଳ ହୋଇଗଲା ।

ସ୍ମିତା ଦେଖିଲା ତା' ଆଗରେ ଏକା ଚେହେରାର ଦୁଇଜଣ । ଏଥିରୁ କିଏ ତାଙ୍କ ଗାଆଁ ଭଣଜା ସମର, ଆଉ କିଏ ନୁହଁ ?

ସମର କିଛି କହିବା ପୂର୍ବରୁ ମୁଁ ତାକୁ ଠାରିଲି - କିଛି କହନା । ସିଏ କିଛି ନ କହି ଚୁପ୍‌ଚାପ୍ ଠିଆ ହେଲା । ସ୍ମିତା ଅପ୍ରସ୍ତୁତ ହୋଇ ଆମକୁ ପଛକରି ଲମ୍ବ ଲମ୍ବ ପାଦ ପକାଇ ଲେଡ଼ିଜ ହଷ୍ଟେଲ ଆଡ଼କୁ ଦୌଡ଼ିଲା ।

ମୁଁ ପଛରୁ ଡାକ ପକାଇଲି - ସ୍ମିତା ! ଶୁଣ ସ୍ମିତା ! କିନ୍ତୁ ସ୍ମିତା ଆଉ ପଛକୁ ଫେରି ନ ଚାହିଁ ଏକମୁହାଁ ହୋଇ ହଷ୍ଟେଲକୁ ଦୌଡ଼ିଥିଲା । ସେଇ ଦିନଠୁ ସ୍ମିତା ଆଉ କେବେ ମତେ କି ସମରକୁ ଦେଖା କରିନାହିଁ ।

ସୁମିତ୍ରା ଆଉ ସଲୀଳା ହସି ହସି ବେଦମ । ସମର ମଜାରେ କହିଲେ- ତୁମ ଦୁହିଁଙ୍କର ସେମିତି କିଛି ଅସୁବିଧା ହେଉନାହିଁତ, ମାନେ ମତେ ଆଉ ସଂଗ୍ରାମକୁ ହଠାତ୍ ଚିହ୍ନିବାରେ କେବେ କିଛି ଅସୁବିଧା ହେଉଛି କି ? ଆଲୁଅରେ, ଅଳ୍ପ ଆଲୁଅ ଥିବାବେଳେ କି ସାମାନ୍ୟ ଅନ୍ଧାରରେ ?

ସୁମିତ୍ରା, ସଲୀଳା, ସମର ଓ ସଂଗ୍ରାମ ଚାରିଜଣଯାକ ଏକ ସମୟରେ ବଡ଼ ପାଟିରେ ହସି ଉଠିଲେ ।

ସେଦିନର ମୌଜ ମସ୍ତି ସେଇଠି ବନ୍ଦ୍‌କରି ଖାଇପିଇ ନିଜ ନିଜ ରୁମ୍‌କୁ ଶୋଇବାକୁ ଗଲେ ଦୁଇ ଦମ୍ପତି । ନିଜ ନିଜ ରୁମ୍‌କୁ ଗଲାବେଳେ ସଂଗ୍ରାମ ପ୍ରଶ୍ନକଲେ- ଆଚ୍ଛା ତୁମେ ଦୁହେଁ ନିଜ ନିଜ ହଜ୍‌ବ୍ୟାଣ୍ଡକୁ ଚିହ୍ନିକି ରୁମ୍‌କୁ ନେଉଛ ନା ସେଥିରେ ବି ଭୁଲ୍ ଭାଲ୍ ହୋଇ ଯାଇପାରେ ?

ଏଥର ପୁଣିଥରେ ଚାରିଜଣଯାକ ଖୁବ୍ ଜୋର୍‌ରେ ହସି ଉଠିଲେ । ରୁମ୍ ଭିତରେ ଦୁଇ ଦମ୍ପତି ପଶିବା ପରେ ଭିତରୁ ଡୋର ବନ୍ଦ କଲେ । ଆଲୁଅ ଲିଭାଇ ଶୋଇଗଲେ । ରାତି ଦୁଇଟା ସମୟ । ସମରଙ୍କ ସେଲ୍ ଫୋନ୍‌ରେ ଦୁଇଟା ରିଙ୍ଗ୍ ହୋଇ ବନ୍ଦ ହୋଇଗଲା । ସୁମିତ୍ରା ଫୋନ୍ ରିଙ୍ଗ୍ ଶୁଣିବି ନଶୁଣିବା ପରି ଶୋଇ ରହିଲେ । ସମର ଫୋନ୍‌ଟା ତକିଆ



Digitized by srujanika@gmail.com

ତଳୁ ଆଣି ମିସ୍‌କଲ୍‌ର ନମ୍ବର ପଢ଼ିଲେ । ପ୍ରତ୍ୟୁତ୍ତରରେ ସିଏ ଦୁଇ ଥର ରିଙ୍ଗ୍‌କରି ଫୋନ୍‌ଟା ତକିଆ ତଳେ ଥୋଇଦେଲେ । ପନ୍ଦର ମିନିଟ୍ ବିଛଣାରେ ଆଖିବୁଜି ପଡ଼ିରହିବା ପରେ ବିଛଣାରେ ଉଠି ବସିଲେ । ବେଡ୍‌ଲାଇଟ୍‌ର ଝାପ୍ସା ଆଲୁଅରେ ଦେଖିଲେ ସୁମିତ୍ରା ଆଖିବୁଜି ନିଘୋଡ଼ ନିଦରେ ଶୋଇଚନ୍ତି । ସମର ନିଃଶବ୍ଦରେ ଖଟରୁ ଓହ୍ଲାଇ ଆସିଲେ । କବାଟ ପାଖରେ ଠିଆହୋଇ ପୁଣି ଖଟକୁ ଫେରି ଚାହିଁଲେ । ସେମିତି ନିଦରେ ଶୋଇଚନ୍ତି ସୁମିତ୍ରା । ସମର କବାଟର ହୁକ୍ ଖୋଲି ବାହାରକୁ ଗଲେ ଓ ବାହାର ପଟୁ କବାଟ ଆଉଯାଇ ନେଲେ ।

ସୁମିତ୍ରା ଧୀରେ ଧୀରେ ଆଖି ଫିଟାଇ ଚାହିଁଲେ । ଦେଖିଲେ ସମର ରୁମ୍‌ରୁ ବାହାରି ଚାଲି ଯାଇଛନ୍ତି । ସିଏ ଆଖି ବୁଜିଥିଲେ ମଧ୍ୟ ଜାଣନ୍ତି ସେଲ୍‌ଫୋନ୍‌ରେ ମିସ୍‌କଲ ଆସିବା ଆଉ ସମର ମିସ୍‌କଲ କରି ତା'ର ଉତ୍ତର ଦେବା । ତକିଆ ତଳୁ ଫୋନ୍‌ଟା ଉଠାଇ ଦେଖିଲେ ପ୍ରଥମେ ସଂଗ୍ରାମଙ୍କ ସେଲ୍‌ଫୋନ୍‌ରୁ ମିସ୍‌କଲ୍ ଆସିଛି ଆଉ ସମରଙ୍କ ଫୋନ୍‌ରୁ ସଂଗ୍ରାମଙ୍କ ଫୋନ୍‌କୁ ତା'ର ଉତ୍ତର ଯାଇଛି । ସୁମିତ୍ରା କାନ ଡ଼େରିଲେ ସଂଗ୍ରାମଙ୍କ ରୁମ୍‌ର କବାଟ ହୁକ୍ ଖୋଲିବାର ଶବ୍ଦ ଶୁଭିଲା । ତା'ପରେ ସୁମିତ୍ରାଙ୍କ ରୁମ୍ ପର୍ଯ୍ୟନ୍ତ ଆସୁଥିବା ଦୁଇଟା ଚାପାଚାପା ପାଦର ଶବ୍ଦ । କ'ଣ ଘଟୁଚି ଜାଣିବାକୁ ପୁଣି ଥରେ ଖଟ ଉପରେ ପୂର୍ବ ପରି ଆଖିବୁଜି ପଡ଼ି ରହିଲେ ସୁମିତ୍ରା । ପାଦ ଶବ୍ଦ ଦୁଇଟି ତାଙ୍କ ରୁମ୍ ପାଖରେ କ୍ଷଣେ ଅଟକିଲା । ତା'ପରେ କବାଟ ଖୋଲିବାର କ୍ଷୀଣ ଶବ୍ଦ ଓ ପରେ ପରେ କବାଟ ହୁକ୍ ବନ୍ଦ କରାଯିବା ଶବ୍ଦ । ସୁମିତ୍ରା ଆଖି ବୁଜିଥିଲେ ମଧ୍ୟ ସଜାଗ ଥିଲେ । ଘର ଭିତରକୁ ପଶୁଥିବା ପାଦର ଶବ୍ଦ ନିଆରା ଛନ୍ଦର । ଏ ପାଦ ଶବ୍ଦ ସମରଙ୍କର ନୁହଁ । ପାଦଶବ୍ଦ ଦୁଇଟା ଏଥର ସୁମିତ୍ରାଙ୍କ ନିକଟତର ହେଲା । ତାଙ୍କ ନାକରେ ବାଜିଲା ଗୋଟେ ନିଆରା ଦେହର ବାସ୍ନା । ସୁମିତ୍ରାଙ୍କ ଶିରା, ପ୍ରଶିରାର ରକ୍ତ ଟକ୍‌ମକ୍ ହୋଇ ଫୁଟିବାକୁ ଆରମ୍ଭ କଲା । ସେ ଅନୁଭବ କଲେ ତାଙ୍କ ଭିତରେ ଯେମିତି ଗୋଟେ ବିସ୍ଫୋରଣର ବାରୁଦ ଏକାଠି ଠୁଳ ହେବାକୁ ଯାଉଛି । ତଥାପି ସୁମିତ୍ରା ଯଥାସାଧ୍ୟ ଉଦ୍ୟମ କରି ନିଜ ଭିତରେ ନିଜକୁ ଆୟତ୍ତରେ ରଖିଲେ ।

ପାଦ ଶବ୍ଦ ଦୁଇଟା ସୁମିତ୍ରାଙ୍କ ପର୍ଯ୍ୟନ୍ତ ବାରମ୍ବାର ଆସୁଛି ଆଉ ବାରମ୍ବାର ଫେରି ଯାଉଛି । ଶେଷରେ ପାଦଶବ୍ଦ ଦୁଇଟା କବାଟ ପର୍ଯ୍ୟନ୍ତ ଫେରିଗଲା । ପୁନଶ୍ଚ କବାଟର ହୁକ୍ ଖୋଲିବାର ଶବ୍ଦ ହେଲା । ହଠାତ୍ ବେଡ୍‌ଲାଇଟ୍ ସୁଇଚ୍ ଚିପିଦେଇ ସୁମିତ୍ରା ଚିତ୍କାର କଲେ- ସେଇଠି ଠିଆ ହୁଅନ୍ତୁ ସଂଗ୍ରାମବାବୁ ।

ଆନନ୍ଦ ଚନ୍ଦ୍ର ପଣ୍ଡି

Digitized by srujanika@gmail.com

ସୁମିତ୍ରାଙ୍କ ଚିତ୍କାର ଶୁଣି ପାଖ ରୁମ୍‌ରୁ ଚାଲିଆସିଲେ ସମର । ତାଙ୍କ ପଛେ ପଛେ ଆସିଲେ ସଲୀଳା । ସୁମିତ୍ରା ରାଗରେ ଥରୁଥିଲେ । ସଂଗ୍ରାମଙ୍କ ଦେହ ଭୟରେ ଥରୁଥିଲା । ସମର କହିଲେ- ସୁମିତ୍ରା, ତୁମେ ସଂଗ୍ରାମ ଉପରେ ଅଯଥାରେ ରାଗୁଛ । ଏଥିରେ ତା'ର କିଛି ଭୁଲ ନାହିଁ ।

ସୁମିତ୍ରା ପୁଣି ଚିତ୍କାର କଲେ - ରାତି ଦୁଇଟାରେ ଚୋର ପରି ଛପି ଛପି ଅନ୍ୟଜଣେ ଭଦ୍ରମହିଳାର ବେଡ୍‌ରୁମ୍‌ରେ ପଶିବା ଯଦି ଭୁଲ କଥା ନୁହେଁ, ତା'ହେଲେ ଭୁଲ୍ ଠିକ୍‌ର ସଂଜ୍ଞା ବଦଳାଇବାକୁ ପଡ଼ିବ ।

ସମର କହିଲେ- ଆମେ ବାଣୀବିହାରରେ ପଢ଼ିବା ବେଳେ ଆମ ଦୁଇବନ୍ଧୁଙ୍କ ଭିତରେ କଥାଥିଲା, ଆମେ ତୁମ ଦୁହିଁଙ୍କୁ ପରୀକ୍ଷା କରିବୁ । ସେଥିପାଇଁ ଆମେ ଏ ଗୋଆ ଭ୍ରମଣର ପରିକଳ୍ପନା କରି ଏହାକୁ ରୂପଦେବାକୁ ଉଦ୍ୟମ କରିଥିଲୁ । ଏଥିରେ ଏକୁଟିଆ ସଂଗ୍ରାମର କିଛି ଦୋଷ ନାହିଁ । ସଂଗ୍ରାମ ଯେମିତି ଏ ରୁମ୍‌କୁ ଆସିଥିଲା, ମୁଁ ସେମିତି....

ସଲୀଳା ତାଳି ମାରି କହିଲେ- ରଖ ତୁମର ସେ ଚାଲାଖି । ଖୁବ୍ ଗୋଟେ ପ୍ରଶଂସନୀୟ କାର୍ଯ୍ୟ କରିବାକୁ ଦୁଇବନ୍ଧୁ ସ୍ଥିର କରିଥିଲେ ନା ? ନାରୀମାନଙ୍କୁ ଆପଣମାନେ କ'ଣ ବୋଲି ଭାବନ୍ତି ? ନାରୀମାନଙ୍କ ପ୍ରତି ଆପଣମାନଙ୍କର ଏଇ ଧାରଣା ? ନାରୀର କ'ଣ ନିଜର ମନ ନାହିଁ? ଇଚ୍ଛା, ଅନିଚ୍ଛା କିଛି ନାହିଁ ? ଆପଣ କ'ଣ ଭାବୁଛନ୍ତି ଯୋତା, ଚପଲ, ଡ୍ରେସ୍, ପୋଷାକ କି ପରୀକ୍ଷା ରୋଲନମ୍ବର ବଦଳ ପରି ଆପଣ ସ୍ତ୍ରୀ ବଦଳ କରି ପାରିବେ ?

ସୁମିତ୍ରା କହିଲେ- ଝିଅଟିଏ ବିବାହପରେ ନିଜଘର ଛାଡ଼ି ସ୍ୱାମୀ ଘରକୁ ଆସେ । ଅନେକ ସମୟରେ ତା'ର ପିତୃଦତ୍ତ ନାଆଁକୁ ବଦଳାଇ ତାକୁ ଶାଶୁଘରେ ଅନ୍ୟ ଗୋଟିଏ ନାଆଁ ଦିଆଯାଏ । ତାକୁ ହୁଏତ ସିଏ ମଥାପାତି ସହି ନେଇଥାଏ । ଦଶମାସ ଗର୍ଭଧାରଣ କରି ଓ ପ୍ରସବ ବେଦନା ସହି ସନ୍ତାନ ଜନ୍ମ କରେ ଓ ସେ ସନ୍ତାନ ତା' ବାପାନାଆଁରେ ପରିଚିତ ହୁଏ । ତାକୁ ବି ନାରୀ ସହିଯାଏ । କିନ୍ତୁ ଜଣେ ପୁରୁଷ ତା' ସ୍ତ୍ରୀକୁ ହାତର ମୁଦି କି ଘଣ୍ଟା ପରି ଅନ୍ୟକୁ ଦେଇଦେବା କି ଅନ୍ୟପୁରୁଷ ସହିତ ବଦଳ କରିବା ଏ କଥା କୌଣସି ନାରୀ କଦାପି ବରଦାସ୍ତ କରି ପାରିବ ନାହିଁ ।

ସମର ଓ ସଂଗ୍ରାମ ଦୁଇ ବନ୍ଧୁ ଲଜ୍ଜାରେ ମୁହଁ ତଳକୁ କରି ଠିଆ ହୋଇଥିଲେ ।



ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

# ଉପର ମହଲାରେ ଭଡ଼ାଟିଆ

ଉପର ମହଲା ଘର କରିବାକୁ ନିର୍ମଳ ଆଦୌ ରାଜି ନଥିଲେ । କିନ୍ତୁ ଅନୁପମା ଉପର ମହଲା ଘର ତିଆରି ପାଇଁ ଜିଦ୍ ଧରିଲେ । ତାଙ୍କ ଯୁକ୍ତି ହେଲା- ତଳଘର ଅପେକ୍ଷା ଉପର ଘର ତିଆରିରେ ଅଳ୍ପ ଖର୍ଚ୍ଚ ଲାଗିବ । ଉପର ଘରେ ଫାଉଣ୍ଡେସନ୍ ଆବଶ୍ୟକ ନାହିଁ। ପ୍ଲିନ୍ଥ ପ୍ରୋଟେକ୍ସନ୍ କି ଫ୍ଲୋରିଂ ପାଇଁ ମେଟାଲିଂ କରିବାକୁ ପଡ଼ିବ ନାହିଁ । ତଳ ଘରର ଛାତ ଚାରିକଡ଼େ ଅଢ଼େଇ ଫୁଟ ଉଚ୍ଚ ପାରାପେଟ୍ ତିଆରି ହେବ । ତା' ଉପରେ ଆଉ ସାଢ଼େ ସାତ ଫୁଟ୍ ଉଚ୍ଚ କାନ୍ଥ ଉଠାଇ ଛାତ ପକାଇ ଦେଲେ ଉପର ଘର ହୋଇଯିବ । ଆଉ ରହିଲା ଫିନିସିଙ୍ଗ୍ । ଆମେ ତଳଘରେ ରହିଯାଇ ଧୀରେ ସୁସ୍ଥେ ଫିନିସିଙ୍ଗ୍ କରିବା । ଉପର ମହଲା ହୋଇଗଲେ ତଳ ମହଲା ଥଣ୍ଡା ଲାଗିବ । ଆମକୁ ଆଉ ଖରାଦିନେ ଏ.ସି. ଲଗାଇବାକୁ ପଡ଼ିବ ନାହିଁ ।

ଅନୁପମା ପୁଣି କହିଲେ- ମୋ ବାପା କହୁଥିଲେ ଘର ତିଆରି ପରେ ପ୍ରତି ଦୁଇ,ତିନି ବର୍ଷରେ ଘରର ବାହାର ଓ ଭିତର କାନ୍ଥ, କବାଟ, ଝରକା ଓ ଘରର ଫର୍ଣ୍ଣିଚର ସବୁକୁ ରଙ୍ଗ କରିବାକୁ ପଡ଼ିବ । ସେଥିପାଇଁ କିଛି କମ୍ ଖର୍ଚ୍ଚ ଲାଗିବ ନାହିଁ । ତମ ପେନ୍‌ସନ୍ ପଇସାରୁ ସେ ଖର୍ଚ୍ଚ ତୁଲାଇବା କଷ୍ଟକର ହେବ । ତେଣୁ ଉପର ମହଲାଟା ତିଆରି କରି ଭଡ଼ା ଦେଇଦେଲେ ବର୍ଷକୁ ଅତି କମ୍‌ରେ ସତୁରି ଅଶି ହଜାର ଟଙ୍କା ମିଳିବ । ସେଇ ଟଙ୍କାରେ ଘରର ମରାମତି ଆଉ ରଙ୍ଗଦିଆ କାମ ସହଜରେ ହୋଇଯିବ ।

ନିର୍ମଳ ସବୁ ଶୁଣି କଥାଟାକୁ ଟାଳିଦେବାକୁ କହିଲେ- ତମେ ଯାହା କହୁଚ ତାହା ଶତକଡ଼ା ଶହେ ସତ । କିନ୍ତୁ ଦୁଇ ମହଲା ଘର ତିଆରି ପାଇଁ ଏତେଗୁଡ଼େ ଟଙ୍କା ଆମ ହାତରେ କାହିଁ ? ମୋ ପେନ୍‌ସନ୍, ଗ୍ରାଚ୍ୟୁଇଟି ଟଙ୍କା ଯାହା ପାଇଥିଲି ସେତକ ଟଙ୍କା କ'ଣ ଦୁଇ ମହଲା ଘର ତିଆରି ପାଇଁ ଅଣ୍ଟିବ ?

ଅନୁପମା ସାହସ ଦେଲେ - ତମେ ପରା ହିସାବ କରୁଥିଲ ତଳ ଘର ତିଆରି ପାଇଁ ଟଙ୍କା ପାଇଯାଇ ଆଉ ଦୁଇଲକ୍ଷ ଟଙ୍କା ବଳିବ ? ଆମେ ତଳଘର ତିଆରିରୁ ଆଉ କିଛି ଟଙ୍କା ବଞ୍ଚାଇ ପାରିଲେ ଉପର ମହଲା ପାଇଁ ଆଉ କିଛି ଟଙ୍କା ବାହାରିବ । ମାର୍ବଲ ବଦଳରେ ଫ୍ଲୋର ଟାଇଲ୍ ପକାଇଲେ ଆଉ ଶାଗୁଆନ୍ କାଠ କବାଟ, ଝରକା ନ ଲଗାଇ

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ପିଆଶାଳ କିମ୍ବା ଅନ୍ୟ କିଛି ଶସ୍ତା କାଠ ନହେଲେ ପ୍ଲାଇ କବାଟ ଲଗାଇଲେ ସେ ବାବଦକୁ ବେଶ୍ କିଛି ପଇସା ବଞ୍ଚିଯିବ । ତା'ଛଡ଼ା ଉପର ମହଲା ତିଆରି ଆରମ୍ଭ ହେଲେ ମୁଁ ସଂବିତ୍‌କୁ କହିବି ସିଏ କିଛି ଟଙ୍କା ଦେବ ।

ରାତିରେ ଅନୁପମା ସଂବିତ୍‌କୁ ଫୋନ୍ କଲେ । ସିଏ ମଧ୍ୟ ମାଆଙ୍କ ପ୍ରସ୍ତାବକୁ ସମର୍ଥନ କଲା । ଉପର ମହଲା ତିଆରି ହେଲେ ସିଏ ଚାରି, ପାଞ୍ଚ ଲକ୍ଷ ଟଙ୍କା ଦେଇ ପାରିବ ବୋଲି ସାହସ ଦେଲା ।

ଅନୁପମା ଆଉ ପାଦେ ଆଗେଇ ଯାଇ କହିଲେ- ତଥାପି ଯଦି ଟଙ୍କା ନିଅଣ୍ଟ ହୁଏ ତା'ହେଲେ ଆମେ ବ୍ୟାଙ୍କ ଲୋନ୍ ନେବା । ଆମର ତଳ ମହଲା ଘର ତିଆରି ସରିଲେ ସେଇ ଘରଟାକୁ ବନ୍ଧା ପକାଇ ଆମେ ବ୍ୟାଙ୍କ୍ ଲୋନ୍ ନେଇ ପାରିବା । ଉପର ମହଲା ଘର ତିଆରି ସରିଲେ ସେଥିରୁ ଯେଉଁ ଘରଭଡ଼ା ମିଳିବ ସେଇ ଟଙ୍କାରୁ ବ୍ୟାଙ୍କ୍ ଲୋନ୍‌ର କିସ୍ତି ପେମେଣ୍ଟ କରିବା । ବ୍ୟାଙ୍କ୍‌ମାନେ ଏବେ ଘର ତିଆରି ଲୋନ୍ ଦେବାପାଇଁ ଚାହିଁ ବସିଛନ୍ତି ।

ନିର୍ମଳ ଦୁଇ ମହଲା ଘର ତିଆରି ପାଇଁ ବି.ଡ଼ି.ଏ.ରୁ ପ୍ଲାନ୍ ମଂଜୁର କରାଇ ଆଣିଲେ । ଯୋଜନା ଅନୁସାରେ ଘର ତିଆରି ଚାଲିଲା । ପ୍ରଥମ ମହଲା ଘର ଯଥା ସମୟରେ ତିଆରି ସରିଲା । ଶୁଭଦିନଟିଏ ଦେଖି ଗୃହ ପ୍ରବେଶ ଉତ୍ସବ ଅନୁଷ୍ଠିତ ହେଲା ।

ନିର୍ମଳ ଓ ଅନୁପମା ତଳ ମହଲାରେ ରହି ଉପର ମହଲା ଘର ତିଆରି କଲେ । ସଂବିତ୍ ତା'ର ପ୍ରତିଶ୍ରୁତି ଅନୁସାରେ ଚାରିଟି କିସ୍ତିରେ ଚାରି ଲକ୍ଷ ଟଙ୍କା ବାପାଙ୍କୁ ଦେଲା । ବ୍ୟାଙ୍କ୍ ଲୋନ୍ ଆସିଲା ପାଞ୍ଚ ଲକ୍ଷ ଟଙ୍କା । ଉପର ମହଲା ଘର ତିଆରି ସରିଲା ।

ଉପର ମହଲା ଘରର ଝରକାରେ ଲେଖା ହେଲା ଟୁ ଲେଟ୍ । ତା' ତଳକୁ ଦିଆଗଲା କଣ୍ଟାକ୍ଟ ଫୋନ୍‌ନମ୍ବର । ଅନେକ ଲୋକ ଫୋନ୍ କଲେ ଓ ଘର ଦେଖିବାକୁ ଆସିଲେ । ସବୁକଥାକୁ ବିଚାରକୁ ନେଇ ସଂଜୟଙ୍କ ପରିବାରକୁ ନିର୍ମଳ ଉପର ମହଲା ଘରଟା ଭଡ଼ାଦେଲେ । ସଂଜୟଙ୍କର ଛୋଟ ପରିବାର - ସ୍ତ୍ରୀ ଅବନ୍ତିକା ଓ ଦୁଇପୁଅ ଶ୍ରାବଣ ଓ ପ୍ରବଣ । ଦୁହେଁ ଭୁବନେଶ୍ୱରର କୌଣସି ଇଂଜିନିୟରିଂ କଲେଜ୍‌ରେ ପଢ଼ନ୍ତି ।

ପ୍ରଥମ ଦିନ ଦୁଇଟା ଟ୍ରକ୍‌ରେ ଲଦା ହୋଇ ସଂଜୟଙ୍କ ଗୃହ ଆସବାବପତ୍ର ଆସି ପହଞ୍ଚିଲା । ଅନୁପମା ଏତେ ଜିନିଷ ଦେଖି ବିରକ୍ତ ହେଲେ - ମଣିଷ ବୋଲି ଚାରିଟା, ଏତେ ଜିନିଷ କ'ଣ ? ତିନିଟା ଖଟ, ଚାରିଟା ଷ୍ଟିଲ ଆଲମାରି, ସୋଫାସେଟ୍, ଫ୍ରିଜ୍, ୱାସିଙ୍ଗ ମେସିନ୍, ଟି.ଭି., ଦୁଇଟା କମ୍ପୁଟର, ସାତ ଆଠଟା ବ୍ରିଫ୍‌କେଶ୍, ପାଞ୍ଚଟା ବଡ଼ ବଡ଼



Digitized by srujanika@gmail.com

ବାକ୍ସ, ଗୋଟେ ସ୍କୁଟର, ଦୁଇଟା ମଟର ସାଇକେଲ, ବଡ଼ ବଡ଼ କାର୍ଟୁନ୍‌ରେ ଭର୍ତ୍ତି ଅନେକ ଜିନିଷ । ଭୁବନେଶ୍ୱରରେ ନିଜର ଘର ନଥାଇ ଏତେ ଜିନିଷ କିଣିବାକୁ ଯାଙ୍କୁ କିଏ କହୁଥିଲା ? ଏ ଗ୍ରାଇଣ୍ଡର ଯୁଗରେ ଏ ଶିଳ, ଶିଳପୁଆ, ପଥର ଚକି କିଏ ଦରକାର କରୁଛି ଯେ ଇଏ ସେସବୁ ଆଣିଚନ୍ତି ।

ଜିନିଷପତ୍ର ଉପରକୁ ଟେକିକି ନେବାବେଳେ ଚାରି,ପାଞ୍ଚଟା ସ୍ଥାନରେ ଷ୍ଟିଲ ଆଲ୍‌ମାରି ବାଜି ଶିଡ଼ିଘର କାନ୍ଥରୁ ପଲସ୍ତରା ଉଠିଗଲା । ଗେଟ୍ ପାଖରୁ ଘରକୁ ଆସିଥିବା ରାସ୍ତାର ଦୁଇ ପାର୍ଶ୍ୱରେ ଥିବା ଛଅ,ସାତଟା ଫୁଲଗଛରୁ ଡାଳ ଭାଙ୍ଗିଗଲା, ଫୁଲ ଝଡ଼ିଗଲା ।

ଅନୁପମା ନିର୍ମଳଙ୍କୁ ଡାକି କହିଲେ- ଶିଡ଼ିଘର କାନ୍ଥ ଆଉ ଫୁଲଗଛର ଅବସ୍ଥା କ'ଣ ହେଇଚି ଦେଖିଲଣିଟି ? ସଂଜୟବାବୁଙ୍କୁ କୁହ, ଏମିତି ବେହୁସିଆର କାମ ଏଠି ଚଳିବ ନାହିଁ । । ଭଡ଼ା ଦେବେ ବୋଲି କ'ଣ ଇନ୍ଦ୍ର,ଚନ୍ଦ୍ର ମାନିବେ ନାହିଁ ନା କ'ଣ ?

ନିର୍ମଳ ଅନୁପମାଙ୍କୁ ବୁଝାଇଲେ - ଭଦ୍ରଲୋକଙ୍କୁ ପ୍ରଥମ ଦିନରୁ କିଛି କହିବା ସୁନ୍ଦର ହେବ ନାହିଁ । କେହି ଜାଣିଶୁଣି କାନ୍ଥ ଖୋଳେ ନାହିଁ କି ଫୁଲଗଛ ଭାଙ୍ଗେ ନାହିଁ । ଅଜାଣତରେ ଯାହା ହୋଇ ଗଲାଣି ଗଲାଣି । ତୁମେ ବ୍ୟସ୍ତ ହୁଅନା, ମୁଁ ମିସ୍ତ୍ରୀ ଡାକି କାନ୍ଥଟା ମରାମତି କରିଦେବି । ଆଠ ଦିନ ଗଲେ ଫୁଲଗଛ ପୁଣି କଅଁଳିବ ।

ସେଦିନ ଅନୁପମା ଚୁପ୍ ରହିଲେ । କିନ୍ତୁ ସେଇ ଦିନଠୁ ଆଠ ଦିନ ଯାଏ ଉପର ମହଲାରେ ଧଡ଼ଧାଡ଼, ଖଡ଼ଖାଡ଼, ଢୋଢା ଶବ୍ଦ ରାତି ବାରଟା ଯାଏ ଚାଲିଲା । ଅନୁପମା ବ୍ୟସ୍ତ ବିବ୍ରତ ହେଲେ । ନିର୍ମଳଙ୍କୁ କହିଲେ- ଭଲ ଭଡ଼ାଟିଆ ରଖିଲ । ସେମାନେ ଏମିତି ଉତ୍ପାତ କାହିଁକି ହେଉଛନ୍ତି ? ଦିନରାତି ଏତେ ଶବ୍ଦ କ'ଣ ହେଉଛି ? ଘରସାରା କଣ୍ଟା ପିଟି ଘରଟାକୁ ଅସୁନ୍ଦର ଓ ଦୁର୍ବଳ କରିଦେବେ । ତୁମେ ଯାଇ ସେମାନଙ୍କୁ ମନାକର, ସେମାନେ କାନ୍ଥରେ କଣ୍ଟା ପିଟନ୍ତୁ ନାହିଁ । ଜିନିଷପତ୍ର ଯାହା ଉଠାପକା କରୁଛନ୍ତି ଧୀରେ କରନ୍ତୁ । ସେମାନଙ୍କୁ ଘରଭଡ଼ା ଦେବାବେଳକୁ କାନ୍ଥରେ କଣ୍ଟା ପିଟିବାକୁ ବାରଣ କରିଥିଲ ତ ?

ନିର୍ମଳ ହସି ହସି କହିଲେ- ସବୁ କହିଛି, ହେଲେ ସେମାନେ କଣ୍ଟା ନପିଟିବେ କେମିତି କୁହ ? ସେମାନଙ୍କର ବିଭିନ୍ନ ୱାଲ୍ ହ୍ୟାଙ୍ଗିଙ୍ଗ ଥିବ ଯେମିତି ବାସନଷ୍ଟାଣ୍ଡ, ୱାଲକ୍ଲକ, ବିଭିନ୍ନ ଫଟୋ । ସେସବୁ କାନ୍ଥରେ ଟାଙ୍ଗିବା ପାଇଁ ମିନିମମ୍ ଯେତେଟା କଣ୍ଟା ପିଟିବାକୁ ପଡ଼ିବ ସେତିକି ତ ପିଟିବେ ? ସେମାନେ କାନ୍ଥରେ କଣ୍ଟା ପିଟିବା ବେଳେ ତୁମ ଛାତିରେ କଣ୍ଟା ପଶିବା ପରି ତମେ କାହିଁକି ବ୍ୟସ୍ତ ହେଉଚ ? ଖଟ, ଆଲମାରି, ଫ୍ରିଜ୍, ସୋଫା



Digitized by srujanika@gmail.com

ଇତ୍ୟାଦି ଏପଟ ସେପଟ ଘୁଞ୍ଚାଘୁଞ୍ଚି କଲାବେଳେ ଶବ୍ଦ ହେବାଟା ସ୍ୱାଭାବିକ । ତା'ଛଡ଼ା ଉପର ଘରେ ପତରଟେ ପଡ଼ିଲେ ତଳ ଘରକୁ ପଥର ପଡ଼ିବା ପରି ଶବ୍ଦ ଶୁଭିବ । ଆଠଦିନ ଲାଗିଲାଣି ଜିନିଷପତ୍ର ସଜଡ଼ା ସଜଡ଼ି କରିବାକୁ । ଆଉ ଅତିବଡ଼ ଦୁଇ, ତିନି ଦିନ ଲାଗିବ । ତା'ପରେ ସବୁ ନିର୍ମାଲ ହୋଇଯିବ ।

ଅବଶ୍ୟ ଦଶ, ଏଗାର ଦିନ ପରେ ଉପର ଘରୁ ଆସୁଥିବା ଅସ୍ୱାଭାବିକ ଶବ୍ଦ ବନ୍ଦ ହୋଇଗଲା । କିନ୍ତୁ ଅନ୍ୟାନ୍ୟ ସମସ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଲା । ଗାଡ଼ି ରଖିବା ପାଇଁ ସ୍ୱତନ୍ତ୍ର ଗ୍ୟାରେଜର ବ୍ୟବସ୍ଥା ନାହିଁ । ଘର ଆଗରେ ଥିବା ନଅ ଫୁଟ ଓସାର ଓ ଚଉଦ ଫୁଟ ଲମ୍ବ ବିଶିଷ୍ଟ ପୋର୍ଟିକୋ ତଳେ ନିର୍ମଳଙ୍କ ଦୁଇଟା ଗାଡ଼ି, ଗୋଟେ ପୁରୁଣା ସ୍କୁଟର ଓ ଗୋଟେ ମୋପେଡ଼ ସହିତ ସଂଜୟଙ୍କର ଗୋଟେ ସ୍କୁଟର ଓ ଦୁଇଟା ବିରାଟକାୟ ମୋଟର ସାଇକେଲ ରହିବାରେ ଅସୁବିଧା ହେଲା । ଅନେକ ସମୟରେ ଗାଡ଼ିଗୁଡ଼ିକ ଏପରି ବିଶୃଙ୍ଖଳିତ ଓ ବିପର୍ଯ୍ୟସ୍ତ ହୋଇ ରହିଲା ଯେ ଘରକୁ ଥିବା ପ୍ରବେଶ ପଥ ଅବରୁଦ୍ଧ ହେଲା । ଆବଶ୍ୟକ ବେଳେ ନିର୍ମଳଙ୍କ ଗାଡ଼ି ବାହାର କରିବାରେ ଅସୁବିଧା ହେଲା ।

ଗାଡ଼ିଗୁଡ଼ିକୁ ସଜାଡ଼ିକି ରଖିବାକୁ ଦୁଇ, ତିନିଥର ସଂଜୟଙ୍କୁ କହିଲେ ନିର୍ମଳ । କିନ୍ତୁ ଦିନେ ଦୁଇଦିନ ଗାଡ଼ିଗୁଡ଼ିକ ଏକପାଖିଆ କରି ରଖାଯିବା ପରେ ପୁଣି ଯଥାପୂର୍ବ ବିଶୃଙ୍ଖଳିତ ଭାବେ ରହିଲା । ଅନୁପମା ଦିନେ ସଂଜୟଙ୍କ ସ୍ତ୍ରୀ ଅବନ୍ତିକାଙ୍କୁ ଏକଥା ଚେତାଇ ଦେବାରୁ କଥାଟା ଅଡୁଆ ଧରିଲା । ସିଏ ଅନୁପମାଙ୍କୁ ମୁହେଁ ମୁହେଁ କହିଲେ- ନିର୍ମଳ ବାବୁଙ୍କୁ କୁହନ୍ତୁ ସିଏ ଉପର ଘର ପାଇଁ ସ୍ୱତନ୍ତ୍ର ଗ୍ୟାରେଜଟିଏ ତିଆରି କରିଦେବେ, ଆମ ଗାଡ଼ି ରହିବ ।

ନିର୍ମଳ ଅନୁପମାଙ୍କଠୁ ସବୁ ଶୁଣି ଚୁପ୍ ରହିଲେ । ସ୍ୱତନ୍ତ୍ର ଗ୍ୟାରେଜ୍ ତିଆରି କରିବା ପାଇଁ ଜାଗାର ଅଭାବ । ଘରର ସାମ୍ନା ପଟରେ ଦଶ ଏଗାର ଫୁଟ ଓସାରର ଜାଗା ଖଣ୍ଡେ ଅଛି ଯେଉଁଠି ବିଭିନ୍ନ ଫୁଲଗଛ ଲାଗିଛି । ଫୁଲଗଛ ନିର୍ମଳ ଓ ଅନୁପମା ଉଭୟଙ୍କର ଅତ୍ୟନ୍ତ ପ୍ରିୟ । ଫୁଲଗଛକୁ ଉପାଡ଼ି ସେ ଜାଗାରେ ଗ୍ୟାରେଜ୍ କରିବା କଦାପି ସମୀଚିନ ନୁହଁ । ଘର ଆଗରେ ଫୁଲ ବଗିଚାଟି ଯେତିକି ସୁନ୍ଦର ଦିଶୁଛି, ସେ ସ୍ଥାନରେ ଗ୍ୟାରେଜ ତିଆରି କଲେ ସେତିକି ଅସୁନ୍ଦର ଦିଶିବ ।

ନିର୍ମଳ ଅନୁପମାଙ୍କୁ ପ୍ରସ୍ତାବ ଦେଲେ - ଆମ ସ୍କୁଟରଟା ଏତେ ହେଭି ଯେ ତାକୁ ଚଲାଇବା ମୋ ପକ୍ଷେ ଆଉ ସମ୍ଭବ ହେଉନାହିଁ । ସ୍କୁଟରଟାକୁ ବିକ୍ରି କରିଦେଲେ ପୋର୍ଟିକୋରେ ଅବଶିଷ୍ଟ ଗାଡ଼ି ରହିବା ପାଇଁ ଅସୁବିଧା ହୁଅନ୍ତା ନାହିଁ ।



Digitized by srujanika@gmail.com

ଅନୁପମା ଆପତ୍ତି କଲେ – ନା, ଆମେ ପୋର୍ଟିକୋ ତିଆରି କରିଥିଲେ ଭବିଷ୍ୟତରେ ଆମର ମୋଟର କାର୍ କିଣାହେବ ବୋଲି । ତମେ ତ ଏଯାଏ କାର୍ କିଣିଲ ନାହିଁ, ତା ବୋଲି ଆମର କେବଳ ମୋପେଡ଼ଟିଏ ରହିବ ? ମୁଁ ତୁମ ମୋପେଡ଼ ପଛରେ ବସି ଦୋକାନ, ବଜାର, ବିବାହ ଉତ୍ସବ ପରି ସ୍ଥାନକୁ ଯିବି ? କଦାପି ନୁହଁ । ସ୍କୁଟରଟାରେ ବେଶି ତେଲ ଖର୍ଚ୍ଚ ହେଉଛି ସିନା ସ୍କୁଟରଟାତ ଆଉ କିଛି ଖରାପ ହୋଇନାହିଁ। ଦୁଇ ବର୍ଷ ତଳେ କଲରିଙ୍ଗ ହୋଇଥିଲା, ନୂଆ ପରି ଦିଶୁଛି । ଆମେ ଯୁଆଡ଼େ ଗଲେ ସେଇ ସ୍କୁଟରରେ ହିଁ ଯାଉଛେ । ସେଟା ଥାଉ । ତାଛଡ଼ା ସ୍କୁଟର ଆଜିକାଲି କିଏ କିଣୁଛି ଯେ ତୁମେ ତାକୁ ବିକିବ ?

ଏ ସମସ୍ୟାର ସମାଧାନର ବାଟ ଆଉ କିଛି ନ ପାଇ ନିର୍ମଳ ପ୍ରତିଦିନ ସବୁଗାଡ଼ିକୁ ଠେକା ଠେକି କିରି ଶୃଙ୍ଖଳିତ ଭାବେ ରଖନ୍ତି ।

ଅନେକ ସମୟରେ ସଂଜୟଙ୍କ ଦୁଇ ପୁଅ ଶ୍ରାବଣ ଓ ପ୍ରବଣ ମୋଟର ସାଇକେଲ ବାହାର କରି କୁଆଡ଼େ ଗଲେ କିମ୍ବା ମୋଟର ସାଇକେଲ୍ ଧରି ଘରକୁ ଫେରିଲେ ଗେଟ୍ ଖୋଲନ୍ତି, କିନ୍ତୁ ବନ୍ଦ କରନ୍ତି ନାହିଁ । ଅନୁପମା କିମ୍ବା ନିର୍ମଳଙ୍କ ଦୃଷ୍ଟିରେ ପଡ଼ିଲେ ସେମାନେ ଗେଟ୍ ବନ୍ଦ କରନ୍ତି; ଦୃଷ୍ଟି ନ ପଡ଼ିଲେ ସେମିତି ଖୋଲାରହେ । ଏମିତି ଗେଟ୍ ଖୋଲା ଥିବାବେଳେ ବୁଲା ଗାଈ, ଛେଳି ପଶି ଫୁଲଗଛ ଖାଇଯାଆନ୍ତି, ଗଛ ଭାଙ୍ଗି ନଷ୍ଟକରି ଦିଅନ୍ତି ।ଏ ବିଷୟରେ ଶ୍ରାବଣ ଓ ପ୍ରବଣଙ୍କୁ ସଚେତନ କଲେ ସେମାନେ ଅଯଥା ଯୁକ୍ତି କରନ୍ତି –ଆମେ ଗେଟ୍ ଖୋଲିଥିବା ଆପଣ ଦେଖିଛନ୍ତି ?ଆପଣ ନଖୋଲିଥିବେ କାହିଁକି ?

ଏ ସମସ୍ୟାର ସମଧାନ ପାଇଁ ସକାଳେ ଓ ସନ୍ଧ୍ୟାବେଳେ ନିର୍ମଳ ଗେଟ୍ ଉପରେ ନିଜେ ନଜର ରଖନ୍ତି । ସଂଜୟଙ୍କ ପୁଅ ଦୁଇ ଜଣ ଘରୁ ବାହାରକୁ ଯିବା ଓ କଲେଜରୁ ଘରକୁ ଫେରିବା ବେଳେ ନିୟମିତ ଭାବେ ନିର୍ମଳ ନିଜେ ଯାଇ ଗେଟ୍ ବନ୍ଦକଲେ ।

ଅନୁପମା ସ୍ୱାମୀଙ୍କ ଉପରେ ବିରକ୍ତ ହେଲେ- ତମେ ତାହେଲେ ଗେଟ୍ କିପର ? ସେ ଟୋକା ଦୁଇଟା କ'ଣ ଏତେ ନବାବ ଯେ ଗେଟ୍ ବନ୍ଦକରି ଯିବେ ନାହିଁ ? ଢେର୍ ହେଲା, ଏମାନଙ୍କୁ ଘର ଛାଡ଼ିବାକୁ ନୋଟିସ୍ ଦିଅ । ଆମେ ଅନ୍ୟଲୋକ ରଖିବା ।

ନିର୍ମଳ ହସି ହସି କହିଲେ- ସେମାନେ ଯଦି ଆମ ପୁଅ ହୋଇଥାନ୍ତେ ଆଉ ଯେତେ କହିଲେବି ଗେଟ୍‌ବନ୍ଦ କରୁ ନଥାନ୍ତେ ତାହେଲେ କ'ଣ ଆମେ ତାଙ୍କୁ ଘରୁ ତଡ଼ି ଦେଇଥାନ୍ତେ ? ତା'ଛଡ଼ା ସବୁ ଭଡ଼ାଟିଆ ଏକାପରି । ଯାଙ୍କୁ ବିଦାକରି ଆମେ ଆଉ ଯାହାକୁ ରଖିବା ସେମାନେ ଯେ ଏପରି ନହେବେ ତା'ର ଗ୍ୟାରେଣ୍ଟି ତୁମେ ଦେଇ



Digitized by srujanika@gmail.com

ପାରିବ ? ଭଡ଼ାଟିଆ କେବେ ଏ ଘରକୁ ନିଜର ବୋଲି ଭାବିବେ ନାହିଁ । ସେଇଥି ପାଇଁ ତ ସେମାନେ ଭଡ଼ାଟିଆ ଆଉ ତମେ ଘର ମାଲିକ ।

ଦିନେ ଅତି ଭୋରୁ କବାଟ ଠକ୍ ଠକ୍ ହେଲା । ଏତେ ସକାଳୁ କିଏ ଡାକୁଛି ? ମଶାରି ଭିତରୁ ମୁହଁ କାଢ଼ି ନିର୍ମଳ କାନ୍ଥଘଣ୍ଟାକୁ ଚାହିଁଲେ । ସକାଳ ପାଞ୍ଚଟା । ଖଟରୁ ଉଠି ଝରକା ଖୋଲିଲେ, ଏବେବି ବାହାରଟା ସମ୍ପୂର୍ଣ୍ଣ ଫରଚା ହୋଇନାହିଁ । କବାଟରେ ଠକ୍‌ଠକ୍ ଶବ୍ଦ ଅଧିକରୁ ଅଧିକ ଶୁଭିଲା । ଅନୁପମାଙ୍କ ନିଦ ଭାଙ୍ଗିଗଲା । ସିଏ ବିରକ୍ତ ହୋଇ କହିଲେ - ଦେଖ କିଏ ଡାକୁଛି ।

ନିର୍ମଳ କବାଟ ଖୋଲିଲେ । ସାମ୍ନାରେ ଠିଆ ହୋଇଛନ୍ତି ସଂଜୟ । କିଛି ଅଘଟଣ ଘଟିଥିବା ଆଶଙ୍କା କରି ନିର୍ମଳ ପଚାରିଲେ- କ'ଣ ହେଲା ସଂଜୟବାବୁ ? ଏତେ ସକାଳୁ ମୋଠି କି କାମ ?

ସଂଜୟ ମୁହଁକୁ ଗମ୍ଭୀର କରି କହିଲେ- ମୋ ବଡ଼ ପୁଅ ଆଜି ଇଣ୍ଟରଭିଉ ଦେବାକୁ ଦିଲ୍ଲୀ ଯିବ । ଟ୍ରେନ୍ ସକାଳ ସାଢ଼େ ଛଅଟାରେ । କିନ୍ତୁ ନିତ୍ୟକର୍ମ ସାରିବା ପାଇଁ ଟାଙ୍କିରେ ଆଦୌ ପାଣି ନାହିଁ । ମୋଟର ଚଳାଇଲି , ପାଣି ଉଠୁ ନାହିଁ । ଶୀଘ୍ର କିଛି ଗୋଟେ ବ୍ୟବସ୍ଥା କରନ୍ତୁ ନହେଲେ ସିଏ ଟ୍ରେନ୍ ଫେଲ୍ ହେବ ।

ଅନୁପମା କହିଲେ- ମୁଁ ସଂଜବେଳେ ମୋଟର ଚଳାଇ ଟାଙ୍କି ପୂର୍ଣ୍ଣ କରିଥିଲି । ରାତିରେ ଏତେ ପାଣି ଗଲା କୁଆଡ଼େ ?

ସଂଜୟ ଉତ୍ତର ଦେଲେ- ସେକଥା ମୁଁ କେମିତି କହିବି ମ୍ୟାଡ଼ମ ? କିନ୍ତୁ ପାଣି ନହେଲେ ପିଲାଟା କେମିତି ଦିଲ୍ଲୀ ଯିବ ? କିଛି ଗୋଟେ ଜଲ୍‌ଦି କରନ୍ତୁ ।

ନିର୍ମଳ କହିଲେ- ମୁଁ ପି.ଏଚ୍.ଡି. ମିସ୍ତ୍ରୀକୁ ଫୋନ୍ କରୁଛି । କିନ୍ତୁ ସିଏ ଯେ ଏତେ ଶୀଘ୍ର ଆସି ମୋଟର ସଜାଡ଼ି ଦେବ ଆଉ ଆପଣଙ୍କ ପୁଅ ନିତ୍ୟକର୍ମ ସାରି ଦିଲ୍ଲୀ ଯିବ, ମୋର ବିଶ୍ୱାସ ହେଉନାହିଁ । ତେବେ ମୁଁ ଯଥାଶୀଘ୍ର ମୋଟର ସଜାଡ଼ିବାକୁ ଚେଷ୍ଟା କରୁଛି ।

ସଂଜୟ ଅସନ୍ତୁଷ୍ଟ ଓ ବିରକ୍ତ ହୋଇ ଉପର ମହଲାକୁ ଲେଉଟି ଗଲେ ।

ଅନୁପମା ନିର୍ମଳଙ୍କ ଉପରେ ବିରକ୍ତ ହେଲେ- ପାଣି ବୋଲି ବୁନ୍ଦାଏ ନାହିଁ, ମୁଁ ଏଇନା କ'ଣ କେମିତି କରିବି ? ମୋର ଭଲ ଭାବେ ମନେ ଅଛି ମୁଁ ସଂଜବେଳେ ଟାଙ୍କି ଭର୍ତ୍ତି କରିଥିଲି । ସଂଜୟବାବୁଙ୍କ ପୁଅ ଦୁଇଟା ଭାରି ବେପରୁଆ, ଅସାବଧାନ । ହୁଏତ ସେମାନଙ୍କ ଭିତରୁ କିଏ ରାତିରେ ବାଥରୁମ୍ ଟ୍ୟାପ୍ ଖୋଲି ଦେଇଥିବ, ବନ୍ଦ କରିବାକୁ ଭୁଲିଯାଇଥିବ, ସବୁଦିନେ ଯେମିତି ଗେଟ୍ ବନ୍ଦ କରିବାକୁ ଭୁଲି ଯାଆନ୍ତି ।



Digitized by srujanika@gmail.com

ସେଦିନ ସକାଳଟା ସାରା ସଂଜୟ, ଅବନ୍ତିକା ଓ ତାଙ୍କ ସାନପୁଅ ଶୁଣାଇ ଶୁଣାଇ ନିର୍ମଳ ଓ ଅନୁପମାଙ୍କୁ ଅନେକ କଥା କହିଲେ ଯାହାର ସାରମର୍ମ ହେଲା- ପ୍ରତିମାସରେ କେବଳ ଘରଭଡା ନେଇ ଜାଣନ୍ତି । ସୁବିଧା, ଅସୁବିଧା ବୁଝିବା କିମ୍ବା ତାର ପ୍ରତିକାର କରିବା ଜାଣନ୍ତି ନାହିଁ । ଦୁଇ ଦୁଇଟା ପରିବାର ଚଳିବାକୁ କେବଳ ଗୋଟିଏ ପାଣି ଟାଙ୍କି । ଇଲେକ୍ଟ୍ରି କଟିଗଲେ କି ମୋଟର ଖରାପ ହେଲେ କିଛି ହେଲେ ବିକଳ୍ପ ବ୍ୟବସ୍ଥା ନାହିଁ । ସରକାରୀ ସପ୍ଲାଇ ପାଣି ଯଦି ନିଆ ଯାଇଥାନ୍ତା ତା ହେଲେ ମୋଟର ଖରାପ ଥିବାବେଳେ ସପ୍ଲାଇ ପାଣି ମିଳିପାରନ୍ତା ।

ନିର୍ମଳ ପି.ଏଚ.ଡି. ମିସ୍ତ୍ରୀକୁ ଡାକି ମୋଟର ସଜାଡ଼ିବା ବେଳକୁ ସକାଳ ନଅଟା ବାଜି ସାରିଥିଲା । ସଂଜୟଙ୍କ ବଡ଼ ପୁଅ ଅଗାଧୁଆ ରେଳଷ୍ଟେସନକୁ ଚାଲିଗଲା । ହୁଏତ ସିଏ ଟ୍ରେନ୍‌ରେ ତାର ନିତ୍ୟକର୍ମ ସାରିଥିବ ।

ସେ ଦିନ ଠିକ୍ ରାତି ନଅଟା ବେଳେ ଉପର ମହଲାରେ କଣ ଗୋଟେ ଶବ୍ଦ ହେଲା । ସତେ ଯେମିତି ଚଟାଣକୁ କିଏ ଗୋଟେ ବଡ଼ ଲୁହାଛଡରେ ରାମ୍ପୁଛି । ଅନୁପମା ରୋଷେଇ ଘରୁ ବାହାରି ଆସି ଦେଖିଲେ ନିର୍ମଳ ଟି.ଭି. ଦେଖୁଛନ୍ତି । ଅନୁପମା ହଠାତ୍ ଟି.ଭି. ବନ୍ଦ କରି ଦେଇ ନିର୍ମଳଙ୍କୁ କହିଲେ- ତୁମେ କିଛି ଶୁଣି ପାରୁଛ ?

ନିର୍ମଳ କିଛି ସମୟ କାନ ଡେରିବା ପରେ କହିଲେ -ହଁ , ଶବ୍ଦଟା ଉପର ଘରୁ ଆସୁଛି । କିଏ କ'ଣ ଗୋଟେ ରାମ୍ପୁଛି ।

ଅନୁପମା ବିରକ୍ତ ହୋଇ କହିଲେ- ମୁଁ ଜାଣେ ଏସବୁ ସେଇ ସଂଜୟବାବୁଙ୍କ ସାନପୁଅର କାମ । ସକାଳ ସାରା ସିଏ ଆମକୁ ଏଣୁ ତେଣୁ ବକୁଥିଲା । ତମେ ମତେ ମନାକଲ ବୋଲି ମୁଁ କିଛି କହିଲି ନାହିଁ । ଏବେ ସିଏ ଆମ ଘର ଉପରେ ପ୍ରତିଶୋଧ ନେଉଛି । ମୋର ମନେ ହେଉଛି ସିଏ ବେଡରୁମ୍‌ର ଚଟାଣରେ ପଡିଥିବା ଫ୍ଲୋରଟାଇଲ ଗୁଡାକୁ ରାମ୍ପି ଖଣ୍ଡିଆ ଖାବରା କରୁଛି ।

ଅନୁପମା ଓ ନିର୍ମଳ ଦୁହେଁ ଉପର ମହଲାକୁ ଯାଇ କବାଟ ଠକ୍ ଠକ୍ କଲେ । ତଥାପି ସେ ଶବ୍ଦ ବନ୍ଦ ହେଉନାହିଁ । କବାଟ ଖୋଲି ସଂଜୟ ବାହାରିଲେ । କଥା କ'ଣ ବୋଲି ପଚାରିଲେ । ନିର୍ମଳଙ୍କ ଅଭିଯୋଗ ଶୁଣି ସଂଜୟ ହସିଲେ ଓ ଗୋଟେ କ୍ଷୀର ଡେକିଚିରୁ କୋରୁଅ କୋରି ତାଙ୍କ ସାନ ପୁଅ ଖାଉଥିବା କଥା ତାଙ୍କୁ କହିଲେ ଓ ସେ ଡେକିଚ୍‌ଟା ଆଣି ଦେଖାଇଲେ ।

ଅନୁପମା ଓ ନିର୍ମଳ ଲଜ୍ଜିତ ହୋଇ ତଳ ମହଲାକୁ ଫେରି ଆସିଲେ । କିନ୍ତୁ ଏ



Digitized by srujanika@gmail.com

ଘଟଣାର ପନ୍ଦର ଦିନ ପରେ ଆଉ ଗୋଟିଏ ଘଟଣା ଘଟିଲା । ଅପରାହ୍ଣ ତିନିଟା ବେଳେ ଡାକ ପିଅନ ସଂଜୟଙ୍କ ନାମରେ ଆସିଥିବା ଗୋଟିଏ ଚିଠି ଅନୁପମାକୁ ଦେଇ କହିଲା - ମାଆ , ଏଟା ଗୋଟେ ଜରୁରୀ ଚିଠି । ଉପର ଘରର କଲିଂବେଲ୍ ମାରି ମାରି କେହି ଶୁଣିଲେ ନାହିଁ । ଆପଣ ଆଜି ତାଙ୍କୁ ଏ ଚିଠିଟା ଦେଇ ଦେବେ ।

ଘଣ୍ଟାଏ ପରେ ଅବନ୍ତିକା କବାଟ ଖୋଲିଲେ । ଅନୁପମା ଚିଠିଟା ଧରି ଉପରକୁ ଗଲେ । ଚିଠିଟା ଦୁଆର ପାଖରେ ଅବନ୍ତିକାଙ୍କ ହାତକୁ ବଢାଇ ଦେଇ ଚାଲି ଆସିବାକୁ ଭାବିଥିଲେ; କିନ୍ତୁ ଦୁଆର ପାଖକୁ ଯାଇ ଦେଖିଲେ କବାଟ ଖୋଲା, ହେଲେ ଅବନ୍ତିକା ଦେଖାଯାଉ ନାହାଁନ୍ତି । ଅନୁପମା କବାଟ ଠକ୍ ଠକ୍ କଲେ । ରୋଷେଇ ଘରେ ଥାଇ ଅବନ୍ତିକା କହିଲେ - ଭିତରକୁ ଆସ, ମୁଁ ବାସନ ମାଜୁଛି ।

ଅନୁପମା ଚିଠିଟିକୁ ଧରି ଘର ଭିତରକୁ ପଶିଗଲେ । ଅଣ୍ଟାରେ ଶାଢି ଗୁଡ଼ାଇ ବାସନ ମଜା ପାଖରୁ ଉଠି ଆସିଲେ ଅବନ୍ତିକା । ଅନୁପମା ତାଙ୍କ ହାତକୁ ଚିଠିଟା ବଢାଇ ଦେଇ କହିଲେ -ଡାକବାଲା ଦେଇଗଲା ।ଏଇଟା ତୁମ ବାବୁଙ୍କର କ'ଣ ଜରୁରୀ ଚିଠି ।

ଅବନ୍ତିକା ଚିଠିଟି ନେଇ କିଛି କହିବା ପୂର୍ବରୁ ଅନୁପମା ଘରର ଚାରିଆଡେ ଦୃଷ୍ଟି ବୁଲାଇଆଣି ତଳକୁ ଓହ୍ଲାଇ ଆସିଲେ । ସେଇ ଅଳ୍ପ ସମୟ ଭିତରେ ଅନୁପମା ତାଙ୍କ ଉପର ମହଲା ଘରର ଅବସ୍ଥା ଦେଖି ଖୁବ୍ ମର୍ମାହତ ହେଲେ । ଡ୍ରଇଁ ରୁମ୍ ଆଉ ଡାଇନିଙ୍ଗ ରୁମ୍ ଉଭୟର ଚଟାଣରେ ପଡିଥିବା ଫ୍ଲୋରଟାଇଲ ସବୁ ଟେବୁଲ, ଚୌକି, ସୋଫାସେଟ୍ ଇତ୍ୟାଦି ଘୋଷରା ଘୋଷରି ହୋଇଥିବା ଯୋଗୁ ସ୍କ୍ରାଚ ହୋଇ ଯାଇଛି । କାନ୍ଥ ସାରା କଣ୍ଟା ପିଟା ହୋଇ ଖଣ୍ଡିଆ ଖାବରା ହୋଇଛି । ସୋଫା ଚେୟାର ପାଖ କାନ୍ଥ ତେଲ ଚିକିଟା ।

ଅନୁପମା ରାତିରେ ନିର୍ମଳଙ୍କୁ କହିଲେ - ଉପର ଘର ତ ଭଡ଼ା ଦେଇଦେଲ, ଦେଖିଲଣି ବର୍ଷକ ଭିତରେ ଘରର ଅବସ୍ଥା କ'ଣ ହେଲାଣି ?

ନିର୍ମଳ ଖାମ୍ ଖିଆଲ ଭାବରେ ପଚାରିଲେ - କ'ଣ ହେଇଚି ? ଅନୁପମା ଯାହା ସବୁ ଦେଖିଥିଲେ ଟିକ୍ ନିଖି ଭାବେ ବର୍ଣ୍ଣନା କରିସାରି କହିଲେ- ଦୁଇ ମିନିଟ କେବଳ ମୁଁ ଡାଇନିଙ୍ଗ ରୁମ୍‌ରେ ଠିଆ ହୋଇଥିଲି । ସେଇ ସମୟ ଭିତରେ ମୋ ନଜରରେ ଏତିକି ପଡିଚି । ଘରସାରା ବୁଲିକି ଦେଖିଲେ ଆଉ କ'ଣ ସବୁ ହୋଇଥିବ କିଏ କହିବ ? ଢେର ହୋଇଗଲା । ତାଙ୍କୁ କୁହ ସିଏ ଘର ଛାଡନ୍ତୁ । ଆମ ଘର ଭଡା ନ ଲାଗୁ । ବ୍ୟାଙ୍କ ଲୋନ୍‌ର କିସ୍ତିଟା ସଂବିତ୍ ଦେଇଦବ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ନିର୍ମଳ ପରିହାସ କରି କହିଲେ - ଏଥର ଠିକ୍ ଦେଖିଛ ନା ଆରଥର ପରି ସିଏ ଆମକୁ ଶୁଣି ବୋକା ବନାଇବେ ?

ଅନୁପମା ଜୋର୍ ଦେଇ କହିଲେ ସେ ତାଙ୍କ ନିଜ ଆଖିକୁ ଅବିଶ୍ୱାସ କରିପାରିବେ ନାହିଁ । ଯଦି ତାଙ୍କ କଥାକୁ ଅବିଶ୍ୱାସ ହେଉଥାଏ ନିର୍ମଳ ନିଜେ ଯାଇ ଘର ଭିତରେ ବୁଲି ଦେଖି ପାରନ୍ତି ।

ନିର୍ମଳ କହିଲେ- ଠିକ୍ ଅଛି । ତମେ ଯଦି କହୁଚ ତାଙ୍କୁ ଘରୁ କାଢିଦେବା । ମୁଁ ଏଇ ସଙ୍ଗେ ସଙ୍ଗେ ଯାଇ ତାଙ୍କୁ ଘର ଛାଡିବା ନୋଟିସ୍ ଦେଇ ଆସୁଛି ।

ନିର୍ମଳ ଉପର ମହଲାକୁ ଯାଇ କବାଟ ଠକ୍ ଠକ୍ କଲେ । ଅନେକ ସମୟ ପରେ ସଂଜୟ କବାଟ ଖୋଲି ଠିଆ ହେଲେ । ଦୁଆର ବାହାରେ ଠିଆ ହୋଇଛନ୍ତି ନିର୍ମଳ । ନିଜ ଘର ଭିତରକୁ ପ୍ରବେଶାଧିକାର ତାଙ୍କର ନାହିଁ । ସିଏ ଅପେକ୍ଷା କରିଛନ୍ତି ସଂଜୟ ତାଙ୍କ ତରଫରୁ ଡାକିଲେ ସିଏ ଭିତରକୁ ଯିବେ । କିନ୍ତୁ ସଂଜୟଙ୍କ ଆଖିରେ ପ୍ରଶ୍ନୀଳ ଚାହାଁଣି- ରାତିଟାରେ ମୋଠି କି କାମ ଅଛି ?

ନିର୍ମଳ ଅଧିକ ସମୟ ଚୁପ୍‌ହୋଇ ଠିଆ ନ ହୋଇ କହିଲେ - ଉପର ମହଲା ଘରର ଫ୍ଲୋର୍ ଟାଇଲ ସବୁ ସ୍କ୍ରାଚ୍ ହୋଇ ଗଲାଣି, କାନ୍ଥରେ ଅନେକ ଖଣ୍ଡିଆ ଖାବରା ଆଉ ବିଭିନ୍ନ ଦାଗ । ମୁଁ ଘରଟା ମରାମତି କରି ରଙ୍ଗଦେବି । ଆଜି ମାସର ପନ୍ଦର ତାରିଖ । ଆପଣ ଆସନ୍ତା ମାସ ୩୦ ତାରିଖ ଭିତରେ ଅନ୍ୟଠି ଘର ଠିକ୍ କରି ନିଅନ୍ତୁ ।

ଏତକ ଏକା ନିଃଶ୍ୱାସରେ କହିଦେଇ ନିର୍ମଳ ତଳକୁ ଓହ୍ଲାଇ ଆସିଲେ । ସଂଜୟ ଉପର ମହଲାର କବାଟ ଧଡ଼ଧାଡ଼ ବନ୍ଦ୍ କରିଦେଲେ । ଅନୁପମା ତଳେ ଠିଆ ହୋଇ ଏସବୁ ଦୃଶ୍ୟ ଦେଖୁଥିଲେ । ସିଏ ନିର୍ମଳଙ୍କୁ ପଚାରିଲେ - ସଂଜୟବାବୁ ତୁମକୁ କ'ଣ କହିଲେ ? ଆସନ୍ତା ମାସରେ ଘର ଛାଡି ଦେବେ ତ ?

ନିର୍ମଳ କହିଲେ - ତମେ ତଳେ ଠିଆ ହୋଇ ସବୁ ଦେଖୁଥିଲ, ସବୁ ଶୁଣୁଥିଲ । ମୁଁ ଆଉ ଅଧିକା କ'ଣ କହିବି ? ସେ କିଛି ନ କହି ମୋ ମୁହଁ ଉପରେ କବାଟ ଦୁଇ ଫାଳ ଧଡ଼ ଧାଡ଼ ବନ୍ଦ କରିଦେଲେ ।

ସେ ମାସ ଥିଲା ଅଗଷ୍ଟ ମାସ । ଅଗଷ୍ଟ ମାସ ସରି ସେପ୍ଟେମ୍ବର ମାସ ପ୍ରଥମ ସପ୍ତାହ ଡେ଼ଇଁଲା । ଅଗଷ୍ଟ ମାସର ଘର ଭଡ଼ା ଦେଲେ ନାହିଁ ସଂଜୟ । ନିର୍ମଳ ଓ ଅନୁପମା ନିଷ୍ଚିତ ହେଲେ ଯେ ସଂଜୟ ସେପ୍ଟେମ୍ବର ୩୦ ତାରିଖ କିମ୍ବା ଅକ୍ଟୋବର ପ୍ରଥମ ସପ୍ତାହ ସୁଦ୍ଧା ଘର ଛାଡିଦେବେ । ଦୁଇ ମାସର ଘରଭଡ଼ା ତାଙ୍କର ସିକ୍ୟୁରିଟ୍ ଡିପୋଜିଟ ଥିଲା ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଅଗଷ୍ଟ ମାସ ଓ ସେପ୍ଟେମ୍ବର ମାସ ଘର ଭଡା ନ ଦେଲେ ସିକ୍ୟୁରିଟି ଡିପୋଜିଟ୍‌ରୁ ଆଡ୍‌ଜଷ୍ଟ ହୋଇଯିବ ।

ଅନୁପମା କହିଲେ - ଏମିତିଆ ଲୋକଙ୍କୁ ଆମେ ଆଉ କଦାପି ଘରଭଡ଼ା ଦେବା ନାହିଁ । ଲୋକର ସ୍ୱଭାବ,ଚରିତ୍ର ଆଉ ଅତୀତ ଇତିହାସ ଜାଣିବା ପରେ ଯାହାକୁ ରଖିବା ।

ସେପ୍ଟେମ୍ବର ପଚିଶ ତାରିଖ ହେଲା, ତଥାପି ସଂଜୟ ଘର ଛାଡିବାର କିଛି ହେଲେ ସୂଚନା ଜଣା ପଡିଲା ନାହିଁ । ବରଂ ସେପ୍ଟେମ୍ବର ୨୨ ତାରିଖ ଦିନ ସଂଜୟ ନିଜ ବଡ଼ ପୁଅର ଜନ୍ମଦିନ ଉପଲକ୍ଷ୍ୟେ ଗୋଟିଏ ଛୋଟ ଧରଣର ଫଙ୍କସନ୍‌ର ଆୟୋଜନ କଲେ ଯେଉଁଥିରେ ତାଙ୍କ ପୁଅର ପଚାଶ ଷାଠିଏ ସାଙ୍ଗ ଯୋଗ ଦେଇଥିଲେ । ରାତି ବାରଟା ଯାଏ ଖିଆପିଆ ହସଖୁସି ଚାଲିଲା ।

ସେପ୍ଟମ୍ବର ୨୭ ତାରିଖ ଦିନ ଅର୍ଥାତ୍ ସେଇ ଫଙ୍କସନ୍‌ର ପରଦିନ ସକାଳୁ ସଂଜୟ ତାଙ୍କ ସ୍କୁଟର ଷ୍ଟାର୍ଟ କଲାବେଳେ ନିର୍ମଳ ତାଙ୍କୁ ପଚାରିଲେ - କେତେ ତାରିଖରେ ଘର ଛାଡୁଛନ୍ତି ?

ସଂଜୟ ରୁକ୍ଷ ଭାବରେ ଉତ୍ତର ଦେଲେ - କିଏ କହିଲା ଆପଣଙ୍କୁ ଘର ଛାଡିବା କଥା ?

ନିର୍ମଳ କହିଲେ- କିଏ ଆଉ କହିବ ? ମୁଁ ଗଲା ମାସ ପନ୍ଦର ତାରିଖ ଦିନ କହିଥିଲି ଘର ଛାଡିବାକୁ । ଆପଣ ଗଲା ମାସର ଘରଭଡାଟା ଦେଲେ ନାହିଁ । ଏ ମାସର ଘର ଭଡା ମଧ୍ୟ ଦେବା ଦରକାର ନାହିଁ । ତାହା ଆପଣଙ୍କ ସିକ୍ୟୁରିଟି ଟଙ୍କାରୁ ଆଡ଼ଜଷ୍ଟ ହୋଇଯିବ । ଆପଣ ଏଇ ମାସ ଶେଷରେ ମାନେ ସେପ୍ଟେମ୍ବର ୩୦ ତାରିଖ ଦିନ ଘର ଛାଡି ଦେବେ ।

ସଂଜୟ କହିଲେ - ଆପଣ ନିଜେ ନିଜେ ଅନେକ କଥା କଳ୍ପନା କରି ଯାଉଛନ୍ତି । ମୁଁ ଘର ଛାଡିବି ନାହିଁ ।

ଘର ଯଦି ଛାଡିବେ ନାହିଁ ତେବେ ଗଲା ମାସର ଘରଭଡା ଦେଲେ ନାହିଁ କାହିଁକି ?

- ମୁଁ ଏଣିକି ଆଉ ଘରଭଡ଼ା ଦେବି ନାହିଁ ।

- ତା'ମାନେ ଆପଣ ଘରଭଡା ଦେବେ ନାହିଁ କି ଘର ଛାଡିବେ ନାହିଁ ? ଆପଣ ତାହେଲେ ମୋ ଘରେ ଜୋର ଜବରଦସ୍ତ ରହିବେ ? ନିର୍ମଳଙ୍କ କଣ୍ଠସ୍ୱର କଠୋର ଶୁଭିଲା ।

ସଂଜୟ ଓଲଟା ପ୍ରଶ୍ନ କଲେ - ଏ ଘରଟା ଆପଣଙ୍କର ବୋଲି କିଛି ପ୍ରମାଣ କି



Digitized by srujanika@gmail.com

ଡକୁମେଣ୍ଟ ଅଛି ?

ନିର୍ମଳ ରାଗି ଯାଇ ଚିତ୍କାର କଲେ - କ'ଣ କହିଲେ ଏ ଘରର ଡକୁମେଣ୍ଟ ମୁଁ ଆପଣଙ୍କୁ ଦେଖାଇବି ? ଘର ଭଡ଼ାରେ ନେଲାବେଳେ ଆପଣ ଏ ସର୍ତ୍ତ ରଖି ନଥଲେ ?

ସଂଜୟ ଆଉ କିଛି ନ କହି ସ୍କୁଟର ଧରି ବଜାର ଆଡେ ଚାଲିଗଲେ ।

ନିର୍ମଳ କଲୋନୀର କିଛି ଭଦ୍ରଲୋକଙ୍କୁ ଏ କଥା କହିଲେ । ସେମାନେ ସଂଧ୍ୟାରେ ଯାଇ ସଂଜୟଙ୍କୁ ଘର ଛାଡିବା କଥା କହିଲେ । କିନ୍ତୁ ସଂଜୟ କାହାରି କଥାକୁ ଖାତିର ନକରି ଓଲଟି ଜବାବ ଦେଲେ - ଆପଣମାନେ କିଏ ? ଏଟା ନିର୍ମଳବାବୁ ଓ ମୋ ଭିତର କଥା ।

ଭଦ୍ରଲୋକମାନେ ନିର୍ମଳଙ୍କୁ ପରାମର୍ଶ ଦେଲେ ପୋଲିସ୍ ଷ୍ଟେସନରେ ସେ ଭଡ଼ାଟିଆ ବିରୁଦ୍ଧରେ ଏଫ.ଆଇ.ଆର. ଦେବା ପାଇଁ ।

ଅନୁପମା ଗର୍ଜନ କଲେ - ତମେ ଆଜି ଯାଇ ଥାନାରେ କେଶ୍ ଦିଅ । ଥାନାବାଲା ପାଞ୍ଚଶହ କି ହଜାରେ ଟଙ୍କା ନିଅନ୍ତୁ ବରଂ ଏମାନଙ୍କୁ ଏଠୁ ବିଦା କରନ୍ତୁ ।

ନିର୍ମଳ ସ୍ତ୍ରୀଙ୍କୁ ବୁଝାଇଲେ - ଆଜି ନୁହଁ ଆଉ ତିନି ଦିନ ଯାଉ । ସେମାନେ ଦେଇଥିବା ସିକ୍ୟୁରିଟି ଟଙ୍କା ଏଇ ମାସ ଶେଷରେ ଆଡ୍‌ଜଷ୍ଟ ହୋଇଯିବ ।

ଅନୁପମା ଯୁକ୍ତି କଲେ - ସେମାନେ ତ ଘର ଛାଡିବେ ନାହିଁ ବୋଲି ତୁମକୁ ଆଉ କାଲୋନୀର ଭଦ୍ରଲୋକମାନଙ୍କୁ ରୋକ୍‌ଠୋକ୍ ମନାକଲେ , ତମେ କେମିତି ଭାବୁଛ ସେମାନେ ତିରିଶ ତାରିଖ ପରେ ଘର ଛାଡି ଦେବେ ବୋଲି ?

ସେମାନେ ଘର ଛାଡିବେ ନାହିଁ ବୋଲି ମୁଁ ଭଲ ଭାବରେ ଜାଣେ । ତଥାପି ଆମେ ୩୦ ତାରିଖ ପୂର୍ବରୁ ଥାନାକୁ ଯାଇ ପାରିବା ନାହିଁ । ଥାନା ବାଲା ୩୦ ତାରିଖ ପୂର୍ବରୁ ଏତଲା ଗ୍ରହଣ କରିବେ ନାହିଁ ।

ନିର୍ମଳ ଓ ଅନୁପମା ୩୦ ତାରିଖକୁ ଅପେକ୍ଷା କରି ରହିଲେ । ଫୋନ୍ ଯୋଗେ ଏକଥା ସଂବିତକୁ ଜଣାଇଲେ । ସିଏ ରାଗିଯାଇ କହିଲା ତାର ସାଙ୍ଗ ନବୀନର ବାପା ଭୁବନେଶ୍ୱର ଏସ୍.ପି. । ସିଏ ଫୋନ୍ କରି ତାଙ୍କ କାନରେ ଏକଥାଟା ପକାଇ ଦେଲେ ସେ ଲୋକ ଘରଛାଡିବାକୁ ବାଟ ପାଇବ ନାହିଁ । ତେବେ ଥାନାରେ ଏତେଲା ଦିଆ ସରିବା ପରେ ସିଏ ଏସ୍.ପିଙ୍କୁ ଏକଥା କହିବ ।

ସେପ୍ଟେମ୍ବର ୩୦ ତାରିଖ କଟିଗଲା । ନିର୍ମଳ ଜାଣନ୍ତି ସଂଜୟ ଘରଛାଡିବାର ଉଦ୍ୟମ କରିବେ ନାହିଁ । ଅକ୍ଟୋବର ପହିଲା ଦିନ ସକାଳୁ ଅନୁପମା ଶୀଘ୍ର ନିଦରୁ ଉଠି



Digitized by srujanika@gmail.com

ନିର୍ମଳଙ୍କୁ ଉଠାଇଲେ । ନିର୍ମଳ ଧଡ଼ପଡ଼ ହୋଇ ବିଛଣା ଛାଡି ନିତ୍ୟକାମ ସାରି ଚା ପିଆ ଓ ଖବର କାଗଜ ପଢା ସାରିଦେଲେ । କାଗଜ ଖଣ୍ଡେ ଧରି ଏତେଲା ଲେଖି ବସିଲେ । କିଛି ବାଟ ଲେଖିବା ପରେ ଘର ଛାଡିବାର କାରଣ ପାଖରେ ଅଟକି ଗଲେ ।

ଅନୁପମା କହିଲେ- ଲେଖିଦିଅ ଯେ ସେମାନେ ଭଲ ଲୋକ ନୁହଁନ୍ତି ।

- ଏଇଟା କ'ଣ ଗୋଟେ କାରଣ ଯେଉଁଥି ପାଇଁ ଆମେ ତାଙ୍କୁ ଘରୁ ବାହାର କରିଦେବା ?

-ଆଉ ତା ହେଲେ ? ହଁ , ଲେଖ ଯେ ସେମାନେ ଘରର ଯତ୍ନ ନେଉ ନାହାଁନ୍ତି ।

- ସେମାନେ କଣ ଘରର ଯତ୍ନ ନେବା ପାଇଁ ବାଧ୍ୟ ? ସେମାନେ ତମ ଘରେ ରହିବାକୁ ଆସିଛନ୍ତି ନା ଘରର ଯତ୍ନ ନେବାକୁ ଆସିଛନ୍ତି ?

ଅନୁପମା କିଛି ସମୟ ଚିନ୍ତା କରି କହିଲେ - ଲେଖ, ସେମାନେ ଦୁଇମାସ ହେ.. ଘରଭଡା ଦେଉ ନାହାଁନ୍ତି । ତାଙ୍କ ସିକ୍ୟୁରିଟି ଟଙ୍କା ଆଡ଼ଜଷ୍ଟ ହୋଇ ଗଲାଣି । ସେମାନେ କହୁଛନ୍ତି ଆମେ ଆଉ ଘରଭଡା ଦେବୁ ନାହିଁ କି ଘର ଛାଡିବୁ ନାହିଁ ।

-ସେ କଥା ଠିକ୍ ଯେ ହେଲେ ଏ ପର୍ଯ୍ୟନ୍ତତ ତାଙ୍କ ଉପରେ କିଛି ବାକି ନାହିଁ । ଏ ମାସ ଶେଷରେ ମାନେ ଅକ୍ଟୋବର ଶେଷରେ ଗୋଟେ ମାସର ଘରଭଡା ତାଙ୍କ ଉପରେ ଡିଉ ହେବ ।

ଏଇ ସମୟରେ ଆଗ ପଛ ହୋଇ ଦୁଇଟା ଟ୍ରକ୍ ନିର୍ମଳଙ୍କ ଘର ଆଗରେ ଠିଆ ହେଲା । ଟ୍ରକ୍‌ରୁ ଖପ୍‌ଖାପ୍ ହୋଇ ଛଅ ଜଣ ଲୋକ ତଳକୁ ଡେଇଁପଡି ତାଙ୍କ ଘର ଆଡକୁ ମାଡି ଆସିଲେ । ଦୁଇ ଘଣ୍ଟା ଭିତରେ ଉପର ଘରୁ ଖଟ, ଆଲମାରି, ଫ୍ରିଜ୍, ସୋଫାସେଟ୍, ୱାସିଙ୍ଗ ମେସିନ୍ ଇତ୍ୟାଦି ସବୁ ଜିନିଷ ଆଣି ଟ୍ରକ୍‌ରେ ଲୋଡ୍‌କଲେ ।

ନିର୍ମଳ ଓ ଅନୁପମା ଦୁହେଁ ଆଶ୍ଚର୍ଯ୍ୟ ହେଲେ । ଘର ଛାଡିବାକୁ ନାହିଁ କରୁଥିବା ଲୋକ ପୁଣି ଘର ଛାଡୁଛି କେମିତି ? ସେମାନେ ଭାବିଲେ ସଂବିତ୍ ବୋଧହୁଏ ତା' ସାଙ୍ଗର ବାପା ଯିଏ ଏସ୍.ପି. ଅଛନ୍ତି ତାଙ୍କୁ ଫୋନ୍‌କରି କହି ଦେଇଛି, ଆଉ ତାଙ୍କ ପ୍ରେସର ଯୋଗୁ ଏମାନେ ଘର ଛାଡିବାକୁ ବାଧ୍ୟ ହେଉଛନ୍ତି ।

ନିର୍ମଳ ସଙ୍ଗେ ସଙ୍ଗେ ସଂବିତକୁ ଫୋନ୍ କଲେ । ସିଏ ମନା କଲା ଏ ଯାଏ ସିଏ ତା' ସାଙ୍ଗକୁ କି ତା' ବାପାଙ୍କୁ କିଛି କହିନାହିଁ । ଥାନାରେ ଏତଲା ଦିଆଯିବା ପରେ ସିଏ କହିବ ।

କବାଟ ଠକ୍ ଠକ୍ ହେଲା ? କବାଟ ଖୋଲିଲେ ଅନୁପମା । ତାଙ୍କ ଆଗରେ



Digitized by srujanika@gmail.com

ସଂଜୟଙ୍କ ସମଗ୍ର ପରିବାର ଠିଆ ହୋଇଥିଲା । ସଂଜୟ ନିର୍ମଳଙ୍କ ହାତକୁ ଉପର ଘରର ଚାବିକାଠି ବଢାଇ ଦେଇ କହିଲେ - ଆଜି ଆମେ ଘର ଛାଡି ଯାଉଛୁ । ଆପଣଙ୍କ ଘରଟା ଓଳାଇ ସଫା କରି ଦେଇଛୁ । ଘରର ସବୁ ଜିନିଷ ଠିକ୍ ଅଛି କି ନାହିଁ, ଟିକେ ଦେଖି ନିଅନ୍ତୁ, ଆମେ ଯିବୁ ।

ନିର୍ମଳ ଓ ଅନୁପମା ବିସ୍ମିତ ହୋଇ ପରସ୍ପରଙ୍କ ମୁହଁକୁ ଚାହିଁଲେ । କିଛି ସମୟ ପରେ ଛେପ ଢୋକି ନିର୍ମଳ ପଚାରିଲେ - ଆପଣ ତ ମନା କରୁଥିଲେ ଘର ଛାଡିବାକୁ । ପୁଣି କ'ଣ ହେଲା ? କେମିତି ଘର ଛାଡିବା ନିଷ୍ପତ୍ତି ନେଲେ ?

ସଂଜୟ ଉତ୍ତର ଦେଲେ - ଘରମାଲିକ ତଳଘରେ ଥିଲେ ଉପରଘରେ ଭଡାଟିଆ ରହିବା, କିମ୍ବା ଘରମାଲିକ ଉପରଘରେ ଥିଲେ ତଳଘରେ ଭଡାଟିଆ ରହିବା ଏତେ ଅସୁବିଧାଜନକ ବୋଲି ମୁଁ ଆଗରୁ ଜାଣି ନଥିଲି । ସାମାନ୍ୟ ସାମାନ୍ୟ କଥାକୁ ନେଇ ଆମ ଭିତରେ ସମସ୍ୟା ସୃଷ୍ଟି ହୋଇଛି । ଆମେ ଜାଣିଛୁ ତଳେ ଗାଡି ରଖିବାଠୁ ଆରମ୍ଭ କରି ଗେଟ୍ ଖୋଲିବା, ବନ୍ଦ କରିବା, ଉପରଘରେ କିଛି ଶବ୍ଦହେବା, କାନ୍ଥରେ କଣ୍ଟା ପିଟିବା, ଇତ୍ୟାଦିକୁ ନେଇ ଆପଣମାନେ ଅସନ୍ତୁଷ୍ଟ । କିନ୍ତୁ ଆମେ ସେ ବିଷୟରେ ଯଥେଷ୍ଟ ସଚେତନ ଥାଇ ମଧ୍ୟ ଆବଶ୍ୟକତା ଦୃଷ୍ଟିରୁ ବା କେବେ କେମିତି ଅଜାଣତରେ କିଛି କିଛି ଅସୁବିଧା ହୋଇଛି । ଆପଣ ସେଥିପାଇଁ ଅସନ୍ତୋଷ ପ୍ରକାଶ କରିଛନ୍ତି । ଆପଣମାନେ ପ୍ରତ୍ୟେକ କଥାରେ ଆମକୁ କହିବାଟା ମଧ୍ୟ ମୋତେ, ମୋ ସ୍ତ୍ରୀଙ୍କୁ ଓ ମୋର ପୁଅ ଦୁହିଁଙ୍କୁ କମ୍ ଆଘାତ ଦେଇନାହିଁ । ଅନେକ ସମୟରେ ଆମେ ଭାବିଛୁ ଏ ଘରକୁ ଆସିବା ଆମର ମସ୍ତବଡ ଭୁଲ ହୋଇଛି ।

ନିର୍ମଳ ପଚାରିଲେ - ଏବେ କ'ଣ ଆପଣ ନିଜ ଘରକୁ ସିଫ୍ଟ କରୁଛନ୍ତି ?

ସଂଜୟ ହସି ହସି କହିଲେ - ଭୁବନେଶ୍ୱରରେ ମୋର ନିଜର ଘର ଥିଲେ ମୁଁ ଭଡାଘରକୁ କାହିଁକି ଆସିଥାନ୍ତି ? ମୁଁ ଏବେ ଯେଉଁ ଭଡାଘର ଠିକ୍ କରିଛି, ସେଟା ଦୁଇମହଲା ନୁହଁ, ଏକ ମହଲା । ସେଠି ଘରମାଲିକ ରହୁନାହାଁନ୍ତି । ସେ ଘରେ କେବଳ ଆମ ପରିବାର ରହିବ ।

ସଂଜୟ ଓ ତାଙ୍କ ପରିବାର ସ୍କୁଟର ଓ ମଟର ସାଇକେଲ୍‌ରେ ଆଗେ ଆଗେ ଚାଲିଲେ । ଜିନିଷ ବୋଝେଇ ଟ୍ରକ୍ ଦୁଇଟା ତାଙ୍କୁ ଅନୁସରଣ କଲା ।



ଆନନ୍ଦ ଚନ୍ଦ୍ର ପତ୍ରି

Digitized by srujanika@gmail.com

# ହଜିଯାଇଥିବା ପୋଷାକୁକୁର

ଜିଲ୍ଲାପାଳ ଲାଲ ମୋହନ ଜାଜୋଡିଆଙ୍କ ପୋଷା ବିଲାତି କୁକୁର ଟମି ଦୁଇ ଦିନ ହେଲା ହଜିଯାଇଛି । ତାଙ୍କ ବଙ୍ଗଳାରେ ମୁକରିର ଥିବା ଆଠ ଜଣ ପିଅନ, ମାଳି, ଦରଓ୍ବାନ୍, ସମସ୍ତେ ସାରା ସହରାଟାକୁ ତନତନ କରି ଖୋଜି ଚାଲିଛନ୍ତି । କୁକରଟାର କିଛି ହେଲେ ସନ୍ଧାନ ମିଳୁନାହିଁ ।

ମିସେସ୍ ଜାଜୋଡିଆ ନୋଟିସ୍ ଦେଇଛନ୍ତି ଟମିକୁ ନ ପାଇବା ପର୍ଯ୍ୟନ୍ତ ସିଏ ପିଅନ, ମାଳି ଓ ଦରଓ୍ବାନଙ୍କ ମୁଖ ଦର୍ଶନ କରିବେ ନାହିଁ । ସେମାନଙ୍କ ଅବହେଳା, ବେପରଓ୍ବା, ଅସତର୍କତା ଯୋଗୁ ଟମି ହଜିଯାଇଛି ।

ମିସେସ୍ ଜାଜୋଡିଆ ବିରକ୍ତ ହୋଇ ଘରେ ସବୁ ଜିନିଷ ଏଣେ ତେଣେ ପିଙ୍ଗାପିଙ୍ଗି କରୁଛନ୍ତି । ଜାଜୋଡିଆଙ୍କୁ ଗାଳି ଦେଉଛନ୍ତି - କି ଜିଲ୍ଲାପାଳ ହେଇଚ ତମେ ? ମୋ ଟମି ହଜିଗଲା ତମ ଲୋକ ତାକୁ ଖୋଜି ଆଣି ପାରୁ ନାହାଁନ୍ତି । ତମେ ଏ ଜିଲ୍ଲାଟାକୁ କେମିତି ଶାସନ କରିବ, କେମିତି ସୁରକ୍ଷା ଦେବ ? କି ଶାସନ ଚାଲିଛି ଏଠି ?

ତମେ ଅପାରଗ, ଅକ୍ଷମ, ଅସମର୍ଥ, ଅପଦାର୍ଥ ଅଫିସର୍ । ତମ ଅଧୀନରେ ଥିବା ଏ ଜିଲ୍ଲାପୋଲିସ୍ ଚୋରକୁ ଧରିବ କେମିତି ?

ଜିଲ୍ଲାପାଳ ପତ୍ନୀଙ୍କ ରୋଷରୁ ରକ୍ଷା ପାଇବା ପାଇଁ ସବୁବେଳେ ଅଫିସ୍, ସଭା, ସମ୍ମିଳନୀ, କିମ୍ୱା ଗସ୍ତରେ ସମୟ କଟାଉଛନ୍ତି । ତାଙ୍କ ଅଧସ୍ତନ ଅଫିସର୍ ଓ ଅଫିସ୍ କର୍ମଚାରୀଙ୍କ ଉପରେ ବିରକ୍ତ ହେଉଛନ୍ତି । ସାମାନ୍ୟ ଦୋଷରେ କାହାଠୁ କୈଫିୟତ୍ ତଲବ କରୁଛନ୍ତି ତ ଆଉ କାହାକୁ ଚାକିରିରୁ ନିଲମ୍ବନ କରୁଛନ୍ତି ।

ଜିଲ୍ଲାପାଳ ଏମିତି କ୍ଷୁବ୍ଧ ହେବାର କାରଣ ଯେ ମିସେସ୍ ଜାଜୋଡିଆଙ୍କ କୁକୁର ଟମି ନିରୁଦ୍ଦିଷ୍ଟ ହେବା ଏକଥା ବୁଝିବାକୁ ଅଧସ୍ତନ ଅଫିସର୍ ଓ ଷ୍ଟାଫମାନଙ୍କୁ ବାକି ରହିଲା ନାହିଁ । ସେମାନେ ଗୋଟିଏ ଗୁପ୍ତ ବୈଠକରେ ମିଳିତ ହୋଇ ଆଲୋଚନା କଲେ ଓ ସେ ବୈଠକରେ ନିମ୍ନଲିଖିତ ନିଷ୍ପତ୍ତି ସର୍ବସମ୍ମତିକ୍ରମେ ନିଆଗଲା ।

୧. କୁକୁରର ଗୋଟିଏ କ୍ଲୋଜ ଫଟୋ ସହିତ ଖବର କାଗଜରେ ବିଜ୍ଞାପନ ଦିଆଯିବ ଏବଂ ସେଥିରେ ଅନୁରୋଧ କରାଯିବ ଟମିର ସନ୍ଧାନ ପାଇ ଆମକୁ ଜଣାଇଲେ,



Digitized by srujanika@gmail.com

ଜଣାଇଥିବା ଲୋକଙ୍କୁ ପାଞ୍ଚ ହଜାର ଟଙ୍କା ପୁରସ୍କାର ଦିଆଯିବ ।

୨. ଆକାଶବାଣୀ ଓ ଦୂରଦର୍ଶନରେ ମଧ୍ୟ କୁକୁରର ହଜିବା ବିଷୟରେ ବିଜ୍ଞାପନ ଦିଆଯିବ । ସେମାନେ ଦିନ ଓ ରାତିର ପ୍ରାଇମ ଟାଇମ୍‌ରେ ଏ ସଂପର୍କୀୟ ବିଜ୍ଞାପନ ଦେବେ ।

୩. କୁକୁର ହଜିବା ସଂପର୍କରେ ପୋଲିସ୍ ଥାନାରେ ଗୋଟିଏ ଏଫ. ଆଇ. ଆର୍ ଦିଆଯିବ । ଅବଶ୍ୟ ଜିଲ୍ଲାପାଳ ଏସ୍.ପିଙ୍କୁ ଏ ସଂପର୍କରେ ଫୋନ୍‌ରେ ଜଣାଇଛନ୍ତି, କିନ୍ତୁ ଲିଖିତ ଏଫ.ଆଇ.ଆର ଦିଆଯିବା ଏକାନ୍ତ ଆବଶ୍ୟକ ।

୪. ଅଫିସ୍‌ର ସବୁ କର୍ମଚାରୀ ନିଜ ନିଜର ଦୁଇ ଚକିଆ ଯାନରେ କଟକ ସହର ଓ ତାର ଆଖପାଖ କୋଡିଏ କିଲୋମିଟର ବ୍ୟାସାର୍ଦ୍ଧ ମଧ୍ୟରେ ଥିବା ଗାଆଁ ଗୁଡିକରେ ମଧ୍ୟ କୁକୁରକୁ ଖୋଜିବେ । ଯିଏ କୁକୁରର ସନ୍ଧାନ ଦେଇପାରିବ ତାକୁ ପରବର୍ତ୍ତୀ ପଦକୁ ପଦୋନ୍ନତି ଦିଆଯିବା ସହିତ ଏକହଜାର ଟଙ୍କା ପୁରସ୍କାର ଦିଆଯିବ ।

ପ୍ରଥମ କଥା ହେଲା ଟମିର ଗୋଟିଏ ଫଟୋ ଦରକାର । ଟମିର ଫଟୋରୁ ଗୋଟିଏ ଗୋଟିଏ କପି ପୋଲିସ୍‌ବାଲାଙ୍କୁ, ପେପର, ବେତାର ଓ ଦୂରଦର୍ଶନକୁ ଦେବାକୁ ପଡିବ । ଫଟୋ ନହେଲେ ପୋଲିସ୍‌ବାଲା କୁକୁରକୁ ଖୋଜିବେ କେମିତି ନା ପେପର, ବେତାର ଓ ଦୂରଦର୍ଶନରେ ବିଜ୍ଞାପନ ଦିଆଯିବ କେମିତି ?

ଉପଜିଲ୍ଲାପାଳ ମିଷ୍ଟର ମହାନ୍ତି ନିଜେ ଦାୟିତ୍ୱ ନେଇ ଜିଲ୍ଲାପାଳଙ୍କୁ ଭେଟି ତାଙ୍କଠୁ ଟମିର ଫଟୋ ଆଣି ତାର ଅନ୍ୟୁନ ଡଜନେ କପି କଲେ ଏବଂ ପୋଲିସ୍ ଏଫ.ଆଇ.ଆର ଏବଂ ପେପର, ରେଡିଓ ଓ ଦୂରଦର୍ଶନ ବିଜ୍ଞାପନ ପାଇଁ ଯୋଗାଇ ଦେଲେ ।

ଜିଲ୍ଲାପାଳଙ୍କ ଅଫିସ୍‌ର ପ୍ରାୟ ସବୁ କର୍ମଚାରୀ କୁକୁର ଖୋଜା କାମରେ ନିଯୁକ୍ତ ରହିଲେ । ଜିଲ୍ଲାପାଳଙ୍କ ବ୍ୟକ୍ତିଗତ ସହାୟକ, ଡ୍ରାଇଭର, ପିଅନ ବ୍ୟତୀତ ଅନ୍ୟ ସମସ୍ତେ ଅଫିସ୍‌ରେ ଅନୁପସ୍ଥିତି । ତାଙ୍କ ବ୍ୟକ୍ତିଗତ ସହାୟକ ଜିଲ୍ଲାପାଳଙ୍କୁ ଜଣାଇଦେଲେ ଯେ ସବୁ କର୍ମଚାରୀ ଟମିକୁ ଖୋଜିବାକୁ ଯାଇଛନ୍ତି । ଜିଲ୍ଲାପାଳ କିଛି ନ କହି ଚୁପ୍ ରହିଲେ ।

ଟମି ହଜିବାର ତୃତୀୟ ଦିନରେ ମିସେସ୍ ଢାଙ୍କୋଡିଆ ବହୁଲୋକଙ୍କ ଅନୁରୋଧକ୍ରମେ ଖାଦ୍ୟ ଗ୍ରହଣ କଲେ ସତ ମାତ୍ର ସିଏ ସବୁବେଳେ ଉଦାସିନ ରହିଲେ । କାହା ସହିତ କିଛି କଥାବାର୍ତ୍ତା ନ କରି ଦିନ ରାତି ଶୋଇ ରହିଲେ । ମନେ ହେଲା ଏମିତି ଅବସ୍ଥା ବେଶିଦିନ ରହିଲେ ସିଏ ମାନସିକ ଭାରସାମ୍ୟ ହରାଇ ପାରନ୍ତି ।

ଜିଲ୍ଲାପାଳଙ୍କ ଅଫିସ୍‌ର ସମସ୍ତ କର୍ମଚାରୀ ଆଠ ଦିନ ଅଫିସ କାମ ଛାଡି ଏଣେ



Digitized by srujanika@gmail.com

ତେଣେ କୁକୁର ଟମିକୁ ଖୋଜିଲେ, କିନ୍ତୁ କୁକୁରର ସନ୍ଧାନ ପାଇଲେ ନାହିଁ । ତେଣୁ ଏବେ ଆଉ କେହି କୁକୁର ନ ଖୋଜି କୁକୁର ଖୋଜିବାର ବାହାନା କରି ଅଫିସ୍‌ରୁ ଅନୁପସ୍ଥିତ ରହିଲେ ।

ପ୍ରାୟ ପ୍ରତ୍ୟେକ ଦୈନିକ ଖବରକାଗଜ, ବେତାରକେନ୍ଦ୍ର ଓ ଦୂରଦର୍ଶନରେ ଟମିର ନିଖୋଜ ସଂବାଦ ଦୁଇ, ତିନି ଥର ପ୍ରକାଶ ପାଇଲା । କିନ୍ତୁ ଫଳ କିଛି ହେଲା ନାହିଁ ।

ମିସେସ୍ ଢାଙ୍ଗୋଡିଆ ଅର୍ଥାତ୍ ଜିଲ୍ଲାପାଳଙ୍କ ପତ୍ନୀଙ୍କ ଅବସ୍ଥା ଦିନକୁ ଦିନ ଅଧିକରୁ ଅଧିକ ଖରାପ ଆଡକୁ ଗତିକଲା । ସିଏ ଏବେ ଏକଦମ୍ ଚିଡ୍‌ଚିଡା ହୋଇ ଯାଇଛନ୍ତି । ଡାକ୍ତର ପରାମର୍ଶ ଦେଇଛନ୍ତି ତାଙ୍କୁ ଖୁସି ରଖିବାକୁ ହେବ । ତାଙ୍କର ଟେନ୍‌ସନ୍ ବଢିଲେ ମାନସିକ ବିକୃତିର ଆଶଙ୍କା ଅଛି ।

ଡାକ୍ତରଙ୍କ ପରାମର୍ଶ ଅନୁସାରେ ମିସେସ୍ ଢାଙ୍ଗୋଡିଆଙ୍କୁ ଟେନସନ୍ ମୁକ୍ତ କରାଯିବାକୁ ରାତିରେ ବିଦେଶୀ ୱାଇନ୍ ଦିଆଗଲା ଯେମିତି ସିଏ ଗୋଟେ ହାଲୁକା ସ୍ୱପ୍ନ ଭିତରେ ବିଭୋର ରହିବେ ।

ଅଫିସ୍‌ରେ ଜିଲ୍ଲାପାଳ ହିଂସ୍ର ବାଘ ପରି ସବୁବେଳେ ଗର୍ଜନ କଲେ । କର୍ମଚାରୀମାନେ ତାଙ୍କ ସାମନାକୁ ଯିବାକୁ ଭୟ କଲେ । କର୍ମଚାରୀଙ୍କର ସାମାନ୍ୟ ସାମାନ୍ୟ ଭୁଲ୍ ଦେଖିଲେ ସେ ତହସିଲ୍‌ଦାର ବିଡିଓ, ଉପ ଜିଲ୍ଲାପାଳ, ଏପରିକି ଅତିରିକ୍ତ ଜିଲ୍ଲାପାଳଙ୍କ ଉପରକୁ ଖୁବ୍ ବିରକ୍ତ ହେଲେ ଓ ଅଶ୍ରାବ୍ୟ ଭାଷାରେ ଗାଳିଗୁଳଜ କରି ଫାଇଲ ଫିଙ୍ଗିଲେ । ଜିଲ୍ଲାର ସାଧାରଣ ପ୍ରଶାସନ ଓ କଲ୍ୟାଣକର କାମ ଏକ ପ୍ରକାର ବନ୍ଦ ରହିଲା ।

ଦିନେ ଜଣେ କର୍ମଚାରୀ ଅତିରିକ୍ତ ଜିଲ୍ଲାପାଳଙ୍କୁ ଖବର ଦେଲେ ଯେ ଅଫିସଠୁ ପ୍ରାୟ କୋଡିଏ କିଲୋମିଟର ଦୂରରେ ଥିବା ଅସନପୁର ଗାଁରେ ଜଣେ ସାଧୁ ଅଛନ୍ତି । ସିଏ କହି ପାରିବେ କୁକୁର କୁଆଡ଼େ ଯାଇଛି ଏବଂ କୋଉଠି ଅଛି । ତେବେ ନିଜେ ଜିଲ୍ଲାପାଳଙ୍କୁ ସେଠିକି ଯିବାକୁ ହେବ ।

ଏମିତି ଗୋଟେ ପ୍ରସ୍ତାବ ଜିଲ୍ଲାପାଳଙ୍କୁ କିଏ ଦେବ ? ଜିଲ୍ଲାପାଳ ଯେମିତି ଉତ୍ତେଜିତ ହୋଇ ଅଛନ୍ତି, ଯିଏ ଏକଥା ତାଙ୍କୁ କହିବ ତାର ଅବସ୍ଥା ସାଂଘାତିକ ହେବ । ହୁଏତ ଜିଲ୍ଲାପାଳ ତାଙ୍କୁ ଗାଳିଦେଇ ପାରନ୍ତି, ରାଗରେ ତା ଉପରକୁ ହାତ ଉଠାଇ ପାରନ୍ତି ଅଥବା ତାଙ୍କୁ ଚାକିରିରୁ ନିଲମ୍ବନ କରି ଦେଇ ପାରନ୍ତି ।

ସମସ୍ତେ ଅତିରିକ୍ତ ଜିଲ୍ଲାପାଳଙ୍କୁ ଅନୁରୋଧ କଲେ- ସାର୍, ଆପଣ ନ କହିଲେ ଆଉ କେହି ଏ ପ୍ରସ୍ତାବ ଜିଲ୍ଲାପାଳଙ୍କୁ ଦେବାକୁ ସାହାସ କରିବେ ନାହିଁ । ଯଦି ଏଇ



Digitized by srujanika@gmail.com

ବାଟରେ କୁକୁରର ସନ୍ଧାନ ମିଳିଯାଏ, ତାହେଲେ ସବୁ ସମସ୍ୟାର ସହଜ ସମାଧାନ ସମ୍ଭବ ହେବ ।

ସାମାନ୍ୟ ଗୋଟେ ନିଖୋଜ କୁକୁର ଯେ ଏତେ ବଡ ଜିଲ୍ଲା ପ୍ରଶାସନରେ ଏତେ ଦୂର ଅବନତି ଆଣିପାରେ ସେ କଥା ଭାବି ସମସ୍ତେ ବ୍ୟସ୍ତ, ବିବ୍ରତ ହେଲେ । ତେଣୁ ଅତିରିକ୍ତ ଜିଲ୍ଲାପାଳ ଗୋଟେ ରିସ୍କ ନେବାକୁ ଅଣ୍ଟା ଭିଡିଲେ । ଜିଲ୍ଲାପାଳ ରାଗିଲେ ରାଗନ୍ତୁ, ଗାଳିଦେଲେ ଦିଅନ୍ତୁ, ତଥାପି ସିଏ ଏହି ପଦକ୍ଷେପଟି ନେବେ ।

ଅତିରିକ୍ତ ଜିଲ୍ଲାପାଳ ଗଲେ ଜିଲ୍ଲାପାଳଙ୍କ ଅଫିସ୍ ପ୍ରକୋଷ୍ଠକୁ । ସାହସ ସଂଚୟ କରି ସମୁଦାୟ ପ୍ରସ୍ତାବଟି ଜିଲ୍ଲାପାଳଙ୍କ ସାମାନାରେ ଥୋଇ ଦେଇ ଆଖିବୁଜି ବସିଗଲେ । ଯାହା ଆସୁଚି ଆସୁ ,ତାକୁ ସିଏ ମୁଣ୍ଡ ପାତି ସହିନେବେ ।

କିନ୍ତୁ ଜିଲ୍ଲାପାଳ ଏ ପ୍ରସ୍ତାବକୁ ଆଗ୍ରହ ସହ ଗ୍ରହଣ କରିନେଲେ । ଜିଲ୍ଲାପାଳଙ୍କ କର୍ମଚାରୀମାନେ ସାଧୁଙ୍କ ପାଖକୁ ଯାଇ ତାଙ୍କ ସହିତ ପରାମର୍ଶ କରି ଯଜ୍ଞ ପାଇଁ ଆବଶ୍ୟକ ସମସ୍ତ ସାମଗ୍ରୀ ପହଞ୍ଚାଇ ଦେଲେ ।

ଯଜ୍ଞ ହେବାକୁ ନିର୍ଦ୍ଦିଷ୍ଟ ହୋଇଥିବା ଦିନ ଜିଲ୍ଲାପାଳଙ୍କ କାର୍ ପଛେ ପଛେ ଆଉ ତିନୋଟି ଜିପ୍‌ରେ ଚାଲିଲେ ଅତିରିକ୍ତ ଜିଲ୍ଲାପାଳ, ଉପ ଜିଲ୍ଲାପାଳ, ତହସିଲଦାର୍, ବିଡିଓ ଓ କେତେକ କର୍ମଚାରୀ । ଅସନପୁର ସହରଠୁ ବେଶି ଦୂର ନ ହେଲେ ବି ରାସ୍ତାଟା ଖୁବ୍ ଖରାପ । ଖାଲ, ଢିପ, ପାଣି, କାଦୁଅ ଡେଇଁ ଜିଲ୍ଲା ପ୍ରଶାସନର ଗାଡି ଚାଲିଛି । କୋଡିଏ କିଲୋମିଟର ରାସ୍ତାକୁ ଅତିକ୍ରମ କରିବାକୁ ଅଧ ଘଣ୍ଟାଏ ବି ଲାଗିବା କଥା ନୁହଁ, କିନ୍ତୁ ଲାଗିଲା ପ୍ରାୟ ଦେଢଘଣ୍ଟା । କାରଣ ରାସ୍ତାର କାଦୁଅ ଗାଡିର ଚକକୁ ବାନ୍ଧି ପକାଇଲା । କେତେକ ସ୍ଥାନରେ ଗାଡି ଚକରୁ ଚିକିଟା କାଦୁଅ ଛଡାଇବାକୁ ପଡିଲା ।

ଅସନପୁର ଗାଆଁ ଏ ମୁଣ୍ଡରେ ଠିଆ ହେଲା ସବୁ ଗାଡି କିନ୍ତୁ ଗାଆଁ ଆର ପାଖରେ ସାଧୁଙ୍କ ଆଶ୍ରମ । ଗାଆଁଠୁ ଗୋଟେ କିଲୋମିଟର ଦୂରରେ । ଗାଆଁ ମଝି ଦାଣ୍ଡରେ ଗାଡି ଯାଇ ପାରିବ କି ନାହିଁ ବୋଲି ଜିଲ୍ଲାପାଳଙ୍କ ଡ୍ରାଇଭର ସେ ଗାଆଁର ଜଣେ ଲୋକକୁ ପଚାରି ବୁଝିଲା । ସେ ଲୋକଟି ଗ୍ରିନ୍ ସିଗ୍‌ନାଲ୍ ଦେଲା - ହଁ, ଗାଡି ଅକ୍ଳେଶରେ ଯାଇ ପାରିବ ।

ଜିଲ୍ଲାପାଳଙ୍କ ଗାଡି ଗାଆଁ ଦାଣ୍ଡେ ଦାଣ୍ଡେ ଚାଲିଲା । ତା' ପଛେ ପଛେ ଆଉ ଦୁଇଟା ଜିପ୍ । ଗାଆଁର ଠିକ ମଝାମଝି ସ୍ଥାନରେ ଜିଲ୍ଲାପାଳଙ୍କ କାର ଅଟକିଲା । ଗାଆଁ ଦାଣ୍ଡ ଏଣିକି ଅଣଓସାରିଆ । ରାସ୍ତାର ଦୁଇପାଖରେ ମାଙ୍କଡା ପଥର ଧାଡି କରି ରଖା



Digitized by srujanika@gmail.com

ଯାଇଛି । କେବଳ ଶଗଡଟିଏ ଗଲା ପରି ସରୁ ରାସ୍ତା ଅଛି । କାର୍ କିମ୍ବା ଜିପ୍ ଆଗକୁ ଯିବା ସମ୍ଭବ ନୁହଁ ।

ଜଣେ କିଏ ପ୍ରସ୍ତାବ ଦେଲା - ନାଁ , ଏଣିକି ଆଉ ଗାଡି ଯାଇ ପାରିବ ନାହିଁ । ଏଇଠି ଗାଡି ଥାଉ ଆମେ ସମସ୍ତେ ଚାଲି, ଚାଲି ଆଶ୍ରମକୁ ଯିବା । ସାଧୁଙ୍କ ଆଶ୍ରମ ଏଠୁ ବେଶି ଦୂର ନୁହଁ ।

ଜିଲ୍ଲାପାଳ ବିରକ୍ତ ହେଲେ - ଗାଆଁ ମଝି ରାସ୍ତାରେ ଗାଡିଗୁଡାକ ରଖିଦେଇ ଗଲେ ଆମେ ଫେରିବା ପର୍ଯ୍ୟନ୍ତ ଏ ରାସ୍ତାଟା ବନ୍ଦ ହୋଇଯିବ । ତେଣୁ ଗାଡି ଗୁଡାକ ପଛେଇ ପଛେଇ ଗାଆଁ ବାହାରକୁ ନିଅ ।

କିନ୍ତୁ ଡ୍ରାଇଭର କହିଲା- ଏତେବାଟ ଗାଡିକୁ ପଛେଇ ପଛେଇ ନେବା କାଠିକର ପାଠ । କାରଣ ଗାଆଁ ଦାଣ୍ଡଟା ସିଧା ନୁହଁ , ଅଙ୍କା ବଙ୍କା । ବରଂ ରାସ୍ତା କଡରେ ଧାଡି ହୋଇ ଥୁଆ ହୋଇଥିବା ମାଙ୍କଡା ପଥରଗୁଡାକୁ ଆଉ ଟିକେ ରାସ୍ତାକଡକୁ ଘୁଞ୍ଚାଇ ଦେଲେ ଗାଡି ସବୁ ସହଜରେ ଚାଲିଯିବ ।

ଖରାବେଳ । ଗାଆଁର ପୁରୁଷମାନେ ବିଭିନ୍ନ କାମକୁ ଯାଇଛନ୍ତି । ଗାଆଁରେ ଅଛନ୍ତି କେବଳ ସ୍ତ୍ରୀ ଲୋକ,ପିଲା ଓ ବୁଢାବୁଢୀ । ସେମାନେ ପିଣ୍ଡା ଉପରୁ ଝରକା ଫାଙ୍କରୁ ଏ ଦୃଶ୍ୟ ଦେଖୁଥିଲେ । କେହି କିଛି କହୁ ନଥିଲେ ।

ପ୍ରଥମେ ଗାଡିରୁ ଓହ୍ଲାଇଲେ ଜିଲ୍ଲାପାଳ ଅଫିସ୍‌ର ଚାରି ଜଣ କର୍ମଚାରୀ । ସେମାନଙ୍କ ମଧ୍ୟରୁ ଦୁଇ ଜଣ ବୟସ୍କ ଓ ଆଉ ଦୁଇ ଜଣ ମଧ୍ୟବୟସ୍କ । ସେମାନେ ସାର୍ଟ, ପ୍ୟାଣ୍ଟ ଟେକି ମାଙ୍କଡା ପଥର ଉଠାଇ ରାସ୍ତାକଡକୁ ଡେରିବା କାମରେ ଲାଗିଗଲେ । କିନ୍ତୁ ଗାଆଁ ଦାଣ୍ଡରେ ଥିବା ସବୁ ପଥରକୁ ଉଠାଇବା ସେମାନଙ୍କ ସାମର୍ଥ୍ୟ ବାହାରେ ।

ଜିଲ୍ଲାପାଳ ହାତଘଣ୍ଟାକୁ ଚାହିଁଲେ । ଯଜ୍ଞ ପାଇଁ ନିର୍ଦ୍ଧାରିତ ମାହେନ୍ଦ୍ର ବେଳା ଆଉ ମାତ୍ର ଅଧଘଣ୍ଟାଏ ବାକି ଅଛି । ତହସିଲଦାର, ବିଡିଓ ଓ ଉପ ଜିଲ୍ଲାପାଳ ବୁଝିଗଲେ ଯେ ସେମାନଙ୍କୁ ମଧ ଏଇ ପଥର ଉଠାଇବା କାମରେ ହାତ ଲଗାଇବାକୁ ପଡିବ । ସେମାନଙ୍କ ସହିତ ଡ୍ରାଇଭର ମଧ ପଥର ଉଠାଇବା କାମରେ ଲାଗିଗଲେ । ପନ୍ଦର ମିନିଟ ଭିତରେ ରାସ୍ତାରୁ ପଥର ସବୁ ହଟିଗଲା । ସମସ୍ତେ ଝାଡିଝୁଡି ହୋଇ ଗାଡିରେ ବସିଲେ । ନିର୍ଦ୍ଦିଷ୍ଟ ସମୟର ଦୁଇ ମିନିଟ ପୂର୍ବରୁ ଜିଲ୍ଲାପାଳ ଓ ଅନ୍ୟ ସମସ୍ତେ ସାଧୁଙ୍କ ଆଶ୍ରମରେ ପହଞ୍ଚି ଗଲେ । ।

ଯଜ୍ଞରେ କର୍ତ୍ତା ହୋଇ ବସିବା ଆଗରୁ ଜିଲ୍ଲାପାଳ ମଠା ଧୋତି ପିନ୍ଧିଲେ ଓ କାନ୍ଧରେ



Digitized by srujanika@gmail.com

ମଠା ଚାଦର ପକାଇଲେ । ତାଙ୍କ ମଥାରେ ଚନ୍ଦନ ଓ ସିନ୍ଦୁର ବିନ୍ଦୁ ଦିଆଗଲା । ସାଧୁ ମନ୍ତ୍ର ପାଠକଲେ । ଯଜ୍ଞ କୁଣ୍ଡରେ ଘୃତାହୁତି ଦିଆଗଲା ।

ଯେତେ କର୍ମଚାରୀ ଓ ଅଫିସର୍ ଯାଇଥିଲେ ସମସ୍ତେ ଉତ୍‌କଣ୍ଠିତ ହୋଇ ଜିଲ୍ଲାପାଳଙ୍କୁ ଓ ସାଧୁଙ୍କୁ ଚାହିଁଥାନ୍ତି । ପୋଡା ଘିଅର ବାସ୍ନାରେ ଆଶ୍ରମ ଓ ତାର ଆଖପାଖ ମହକି ଗଲା ।

ସାଧୁ ପଚାରିଲେ- ହଜିଯାଇଥିବା କୁକୁରର ନାମ କ'ଣ ?

ଜିଲ୍ଲାପାଳ କହିଲେ - ଟମି ।

ସାଧୁ ପୁଣି ପ୍ରଶ୍ନ କଲେ - ଟମି ଭୁକିବା ଆପଣ ଶୁଣିଛନ୍ତି ?

ଜିଲ୍ଲାପାଳ ମନେ ପକାଇବାକୁ ଚେଷ୍ଟା କଲେ । ନାଁ, ସିଏ ଟମିର ଭୁକିବା ଶବ୍ଦ ଶୁଣି ନାହାଁନ୍ତି । ତାଙ୍କୁ ଦେଖିଲେ ଟମି ଲାଞ୍ଜ ହଲାଏ, ଭୁକେ ନାହିଁ । ଜିଲ୍ଲାପାଳ ଚାହିଁଲେ ତାଙ୍କ ଡ୍ରାଇଭର ଆଡେ ।

ଡ୍ରାଇଭର କହିଲା - ମୁଁ ଟମିର ଭୁକିବା ଶବ୍ଦ ଶୁଣିଛି ।

ସାଧୁ କହିଲେ - ତୁମେ ଟମିର ଭୁକିବା ଶବ୍ଦକୁ ଅନୁକରଣ କରି ଭୁକ ।

ଡ୍ରାଇଭର ଅପ୍ରସ୍ତୁତ ଅନୁଭବ କଲା । କୁକୁର ଭୁକିବା ପରି ସିଏ କେମିତି ଭୁକିବ ? ସିଏ ତ କୁକୁର ନୁହଁ, ଡ୍ରାଇଭର ।

ଜିଲ୍ଲାପାଳ ଆଦେଶ ଦେଲେ - ତୁମେ ଯଦି ତାର ଭୁକିବା ଶବ୍ଦ ଶୁଣିଛ, ତେବେ ଭୁକ । ଏଥିରେ ଲଜ୍ଜା କରିବାର କ'ଣ ଅଛି ?

ଡ୍ରାଇଭର ଅନନ୍ୟୋପାୟ ହୋଇ କୁକୁର ପରି ଭୁକିବାକୁ ଲାଗିଲା ।

ଉପସ୍ଥିତ ସମସ୍ତ ଅଫିସର୍ ଓ କର୍ମଚାରୀଙ୍କୁ ସାଧୁ ଆଦେଶ ଦେଲେ - ଆପଣମାନେ ସମସ୍ତେ ଏକ ସ୍ୱରରେ ଟମିର ସ୍ୱରକୁ ଅନୁକରଣ କରି ଭୁକନ୍ତୁ । ଯେତେ ଅଧିକ ସଂଖ୍ୟାରେ ଲୋକ ଟମିର ସ୍ୱରକୁ ଅନୁକରଣ କରି ଭୁକିବେ ଟମି ଯାଇଥିବା ବାଟ ମୋତେ ସେତେ ସ୍ପଷ୍ଟ ଦିଶିବ ।

ସମସ୍ତେ ଜିଲ୍ଲାପାଳଙ୍କୁ ଖୁସି କରିବା ପାଇଁ ସାଧୁଙ୍କ କହିବା ସଙ୍ଗେ ସଙ୍ଗେ କୁକୁର ପରି ଭୋ ଭୋ ହୋଇ ଭୁକି ଚାଲିଲେ । ସାଧୁ ତାଙ୍କ ହାତରେ ସଙ୍କେତ ଦେଲେ ଆହୁରି ଜୋରରେ, ଆହୁରି ଜୋର୍‌ରେ ଭୁକିବା ପାଇଁ । ଏମିତି ପ୍ରାୟ ପନ୍ଦର କୋଡିଏ ମିନିଟ୍ ଭୁକିବା ଭିତରେ ରାସ୍ତାରେ ଯାତାୟତ କରୁଥିବା ଅନେକ ଲୋକ ରୁଣ୍ଡ ହୋଇ ଏ ଅପୂର୍ବ ଦୃଶ୍ୟକୁ ଉପଭୋଗ କଲେ ।

ସେ ଅଞ୍ଚଳର ଅନେକ ବୁଲା କୁକୁର ସେ ସ୍ଥାନରେ ଏକାଠି ହୋଇ ଅନ୍ୟମାନଙ୍କ



Digitized by srujanika@gmail.com

ସହିତ ସ୍ୱର ମିଳାଇ ଭୁକିବାକୁ ଲାଗିଲେ । ସାଧୁ ଏଥର ଆଦେଶ ଦେଲେ - ଭୁକିବା ବନ୍ଦ କର ।

ସମସ୍ତେ ଭୁକିବା ବନ୍ଦ କଲେ । ଏକତ୍ର ହୋଇ ଭୁକୁଥିବା କୁକୁରମାନଙ୍କୁ ଟେକା,ପଥର ଫିଙ୍ଗି ସେ ସ୍ଥାନରୁ ଘଉଡାଇ ଦେଲେ ।

ସାଧୁ ଆଖିବୁଜି କିଛି ସମୟ ଧ୍ୟାନସ୍ଥ ହେବା ପରେ ଆଖି ଖୋଲି କହିଲେ - ଏବେ ସବୁକଥା ପରିଷ୍କାର ହୋଇଗଲା । ଟମିକୁ କିଛି ଔଷଧ ଶୁଙ୍ଘାଇ ଅଚେତ କଲାପରେ ତାକୁ ଗୋଟେ ଗାଡିରେ ପକାଇ ନିଆ ଯାଇଛି । କିନ୍ତୁ ବେଶି ଦୂର ନିଆଯାଇ ନାହିଁ । ସିଏ ଏଇ କଟକ ଟାଉନ୍ ଭିତରେ ଅଛି ।

ଜିଲ୍ଲାପାଳ ଉତ୍ସାହିତ ହୋଇ ପ୍ରଶ୍ନ କଲେ- ଟମିକୁ କିଏ ନେଇଚି ଓ ତାକୁ ନେଇ କୋଉଠି ରଖିଛି ?

ସାଧୁ ସ୍ମିତ ହସି କହିଲେ - ଦେଖନ୍ତୁ, କିଏ ନେଇଚି ତା ନାଆଁ କହିବା ମୋ ପକ୍ଷେ ସମ୍ଭବ ନୁହଁ । କୋଉ ଦିଗକୁ ନିଆ ଯାଇଛି ଓ କେତେଦୂର ନିଆ ଯାଇଛି , ତାହା ଅବଶ୍ୟ କହିହେବ । ଏଣିକି ଆପଣ ଲୋକ ଲଗାଇ ଖୋଜିବେ । ପାଠ କହୁଛି, ଆପଣଙ୍କ କୁକୁର ଅବଶ୍ୟ ମିଳିବ ।

ସାଧୁ ଖଣ୍ଡେ ଚକ୍‌ଖଡି ଧରି ତଳେ ବିଭିନ୍ନ ଗାର କାଟିବା ପରେ ଜିଲ୍ଲାପାଳଙ୍କ ହାତକୁ ଚକ୍‌ଖଡି ଖଣ୍ଡକ ବଢାଇ ଦେଇ କହିଲେ - ତଳେ ଏତେ ଗୁଡେ ଗାର ଟଣା ଯାଇଛି । ଆପଣ ସ୍ୱଇଚ୍ଛାରେ କୌଣସି ଗୋଟିଏ ଗାର ଉପରେ ଏ ଖଡିଟା ଥୁଅନ୍ତୁ ।

ଜିଲ୍ଲାପାଳ ଚକ୍‌ଖଡି ଖଣ୍ଡକ ସାଧୁଙ୍କ ହାତରୁ ଗ୍ରହଣ କଲେ ଓ ମୁଣ୍ଡରେ ଛୁଆଇଁ ସାରି ଦୁଇ ହାତରେ ଖଡିଟିକୁ ଏପଟ ସେପଟ କରି ଗୋଟିଏ ଗାର ଉପରେ ଥୋଇଦେଲେ ।

ସାଧୁ ତତ୍‌କ୍ଷଣାତ୍ କହିଲେ - ଆପଣଙ୍କ ବାସସ୍ଥାନରୁ ଉତ୍ତର ଦିଗକୁ ଗୋଟିଏ କିଲୋମିଟର ଦୂରରେ ଗୋଟିଏ ଏକ ତାଲା କୋଠାଘରେ ଆପଣଙ୍କ କୁକୁର ଟମି ବନ୍ଧନରେ ପଡିଛି । ଆପଣ ଲୋକ ପଠାଇ ତାକୁ ସେଠୁ ଉଦ୍ଧାର କରନ୍ତୁ । ଦେଖନ୍ତୁ ଆପଣ ଯଦି ଆଜିଠୁ ଆଠ ଦିନ ଭିତରେ ଟମିକୁ ବନ୍ଧନମୁକ୍ତ ନ କରନ୍ତି ତାହେଲେ ସିଏ ପାଗଳ ହୋଇଯିବାର ଆଶଙ୍କା ଅଛି ।

ଜିଲ୍ଲାପାଳ ସେଦିନ ସାଧୁଙ୍କୁ ଉପଯୁକ୍ତ ଉପହାର ଦେଇ ସଦଳେ ବଳେ ସହରକୁ ଫେରି ଆସିଲେ । ଆର,ଆଇ ଓ ଅମିନମାନଙ୍କୁ ଧରି ତହସିଲ୍‌ଦାର ମାପଚୁପ୍ କରି ଜିଲ୍ଲାପାଳଙ୍କ ବଙ୍ଗଳାଠୁ ଉତ୍ତର ଦିଗ ନିର୍ଣ୍ଣୟ କଲେ ଏବଂ ଏକ କିଲୋମିଟର କେତେ



Digitized by srujanika@gmail.com

ଦୂରରେ ପଡୁଛି ତାହା ମଧ ଚିହ୍ନିତ କଲେ ।

ଏଥର ଦଳ ଦଳ ହୋଇ ଚାରି ଦଳ କର୍ମଚାରୀ ଜିଲ୍ଲାପାଳଙ୍କ ବଙ୍ଗଳାର ଉତ୍ତର ଦିଗରେ ଥିବା ପ୍ରତ୍ୟେକ ଘରକୁ ଯାଇ ତଲାସ୍ କଲେ । କିଛି ଲୋକ ଏପରି ତଲାସିର ବିରୋଧ କଲେ । ସେମାନଙ୍କ ପ୍ରତିରୋଧକୁ ପ୍ରତିହିତ କରିବା ପାଇଁ ପ୍ରତି ଦଳରେ ଜଣେ ଜଣେ ପୋଲିସ ଅଫିସରଙ୍କୁ ସାମିଲ୍ କରାଗଲା । ପାଞ୍ଚ ଛଅ ଦିନ ଅକ୍ଳାନ୍ତ ପରିଶ୍ରମ ହେଲା, କିନ୍ତୁ କିଛି ଫଳ ମିଳିଲା ନାହିଁ । ଟମିର ସନ୍ଧାନ ମିଳିଲା ନାହିଁ ।

ଏମିତି ଖୋଜିବା ଭିତରେ ସେମାନେ ଟମି ପରି ଅନେକ କୁକୁରକୁ ଦେଖିଲେ, କିନ୍ତୁ ତା ଭିତରୁ ଟମି କିଏ ତାହା ଚିହ୍ନିବା ତାଙ୍କ ପକ୍ଷେ ସମ୍ଭବ ହେଲା ନାହିଁ । ଟମିର ଫଟୋର ସାହାଯ୍ୟ ନିଆଗଲା, ତଥାପି କିଛି ଲାଭ ହେଲା ନାହିଁ । ସେଇ ଭେରାଇଟିର ସବୁ ବିଲାତି କୁକୁରଙ୍କ ଦେହ ଓ ମୁହଁରେ ଲମ୍ବା ଲମ୍ବା ଧଳା ବାଳ , ଆଖି ଗୋଲ ଗୋଲ ଏବଂ କାନ ନଡକା । ଗୋଟେ କୁକୁରଠୁ ଅନ୍ୟ ଗୋଟେ କୁକୁରକୁ ନିଆରା କରିବା ସମ୍ଭବ ନୁହେଁ । ସବୁ ବିଲାତି କୁକୁରଙ୍କ ମୁହଁ ଏକା ପରି ।

କୁକୁର ଖୋଜୁଥିବା ଚାରି ଜଣଯାକ କର୍ମଚାରୀ ଅସମର୍ଥ ହୋଇ ଫେରି ଆସିଲେ । ଜିଲ୍ଲାପାଳ ବାରମ୍ବାର କୁକୁର ଖୋଜା ଦଳର ଅଗ୍ରଗତି କଥା ଅତିରିକ୍ତ ଜିଲ୍ଲାପାଳଙ୍କୁ ପଚାରି ପଚାରି ନୟାନ୍ତ କଲେଣି । ଅତିରିକ୍ତ ଜିଲ୍ଲାପାଳ ସାନ୍ତ୍ୱନା ଦେଇ ଚାଲିଛନ୍ତି ଧୈର୍ଯ୍ୟ ଧରନ୍ତୁ ସାର୍, ଟମି ନିଶ୍ଚୟ ମିଳିବ । ସାଧୁଙ୍କର ଖୁବ୍ ସୁନାମ ଅଛି । ତାଙ୍କ କଥା କେବେ ବିଫଳ ହେବନାହିଁ ।

ଜିଲ୍ଲାପାଳଙ୍କ ମିସେସଙ୍କୁ ଚିକିତ୍ସା କରୁଥିବା ଡାକ୍ତର ଅଫିସ୍‌କୁ ଆସି ଜିଲ୍ଲାପାଳଙ୍କୁ ସାକ୍ଷାତ କରି କହିଲେ - ମ୍ୟାଡାମ୍‌ଙ୍କର ଏମିତି ମାନସିକ ସ୍ଥିତି ଆଉ ସପ୍ତାହଟାଏ ରହିଲେ ସିଏ ପାଗଳ ହୋଇ ଯିବାର ଆଶଙ୍କା ରହିଛି । ତୁରନ୍ତ ଟମିକୁ ଖୋଜିବାର ବ୍ୟବସ୍ଥା କରନ୍ତୁ ।

କୁକୁର ଖୋଜୁଥିବା ଚାରି ଦଳଙ୍କୁ ଏକାଠି ବସାଇ ତାଙ୍କ କାର୍ଯ୍ୟର ସମୀକ୍ଷା କରି ସାରି ଉପ ଜିଲ୍ଲାପାଳ ଶ୍ରୀମହାନ୍ତି କହିଲେ - ଏମିତି ଖୋଜିବାରେ କିଛି ଫଳ ମିଳିବ ନାହିଁ । ଆମେ ଆଉ ଟମିକୁ ଏ ସହରରେ ନଖୋଜି ଏ ସମସ୍ୟାର ସମାଧାନର ବାଟ ଆମ ମୁଣ୍ଡ ଭିତରେ ଖୋଜିବା । ହୁଏତ ସମାଧାନର ବାଟ ମିଳି ଯାଇପାରେ ।

ଉପ ଜିଲ୍ଲାପାଳଙ୍କ କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ - ସମାଧାନର ବାଟ ମୁଣ୍ଡ ଭିତରେ ଖୋଜିବା ଅର୍ଥ କଣ ?

ଆନନ୍ଦ ଚନ୍ଦ୍ର ପତି

Digitized by srujanika@gmail.com

ଶ୍ରୀମହାନ୍ତି ପୁନଶ୍ଚ କଥାଟାକୁ ସହଜ ବାଟରେ ବୁଝାଇବାକୁ ଚେଷ୍ଟା କଲେ - ଦେଖ, କୁକୁର ନ ମିଳିବା ଦୁଃଖରେ ଯଦି ମାଡ୍ୟାମଙ୍କ ମସ୍ତିଷ୍କ ବିକୃତି ଘଟେ ତା ହେଲେ ମହା ଅନର୍ଥ ଘଟିବ । ତା' ପୂର୍ବରୁ ବୁଦ୍ଧି ଖଟାଇ ଆମକୁ କିଛି ଗୋଟେ କରିବାକୁ ହେବ ।

ସମସ୍ତେ ଉପ ଜିଲ୍ଲାପାଳ ଶ୍ରୀମହାନ୍ତିଙ୍କ ମୁହଁକୁ ଚାହିଁଲେ । ଏତେ ବଡ ବିପଦ ଭିତରେ ଶ୍ରୀମହାନ୍ତିଙ୍କ ମୁହଁ ଉଦ୍‌ବିଗ୍ନ ନ ଦିଶି ଉଜ୍ଜଳ ଦିଶୁଛି ।

ଶ୍ରୀମହାନ୍ତି କହିଲେ - କଥାଟା ଆମ ସମସ୍ତଙ୍କୁ ଏକାନ୍ତ ଗୋପନ ରଖିବାକୁ ହେବ । କଥାଟା ପ୍ରଘଟ ହେଲେ ଆମ ସମସ୍ତଙ୍କର ଚାକିରି ଯିବ ।

ଉପସ୍ଥିତ ଚାରି ଦଳ ଯାକ କର୍ମଚାରୀ ଚୁପ୍‌ଚାପ, ଗମ୍ଭୀର । ଶ୍ରୀମହାନ୍ତି ସମାଧାନର ସୂତ୍ର ଖୋଲିଲେ - ଆମେ ସମସ୍ତେ ଜାଣିଛେ ଯେ ନିର୍ଦ୍ଦିଷ୍ଟ ଭେରାଇଟିର ସବୁ ବିଲାତି କୁକୁର ଦେଖିବାକୁ ପ୍ରାୟ ଏକାପରି । କେବଳ ସେମାନଙ୍କ ଆକାର ଓଜନ ଓ ରଙ୍ଗରେ ଯାହା କିଛି ଫରକ ଥାଏ । ତେଣୁ ଆମେ ମ୍ୟାଡାମ୍‌ଙ୍କ ଟମି ଯେଉଁ ଭେରାଇଟିର ଯେତିକି ସାଇଜର, ଯେଉଁ ରଙ୍ଗର ସେମିତିଆ ଗୋଟେ କୁକୁର ମ୍ୟାଡାମ୍‌ଙ୍କୁ ଧରାଇ ଦେଲେ ଆମ ଦାୟିତ୍ୱ ଶେଷ ।

ଜଣେ କିଏ ପ୍ରଶ୍ନ କଲା - ସେ କୁକୁର କ'ଣ ଟମି ପରି ମ୍ୟାଡାମ୍‌ଙ୍କ କଥା ମାନିବ ? ସିଏ ଯଦି ମ୍ୟାଡାମ୍‌ଙ୍କୁ କାମୁଡି ଗୋଡାଏ ?

ଶ୍ରୀମହାନ୍ତି ହସି ହସି କହିଲେ - ସେ ଦାୟିତ୍ୱ ଆପଣମାନେ ମୋ ଉପରେ ଛାଡି ଦିଅନ୍ତୁ । ମୁଁ ତାର ଉପାୟ ଚିନ୍ତା କରି ରଖିଛି । ମ୍ୟାଡାମ୍‌ଙ୍କୁ ବୁଝାଇ ଦେବାକୁ ହେବ ଯେ ପନ୍ଦର ଦିନ କାଳ କୁକୁରଟି ବାହାରେ ବୁଲି, ନଖାଇ, ନପିଇ ଏମିତି ଚିଡଚିଡା ଓ କାମୁଡା ପ୍ରକୃତିର ହୋଇ ଯାଇଛି । ତାକୁ କିଛି ଦିନ ବାନ୍ଧିରଖି ଭଲ ଭଲ ଖାଦ୍ୟ ଖାଇବାକୁ ଦେଲେ ଓ ଗୋଟେ ଟ୍ରେନର୍ ରଖି ତାକୁ ତାଲିମ୍ ଦେଲେ ସବୁ ଠିକ୍ ହୋଇଯିବ ।

ଉପ ଜିଲ୍ଲାପାଳଙ୍କ ବୁଦ୍ଧିକୁ ସମସ୍ତେ ତାରିଫ କଲେ । କୌଣସିଠାରୁ ଗୋଟିଏ ବିଲାତି କୁକୁର କିଣି ଆଣିବା ପାଇଁ ଜଣେ କର୍ମଚାରୀଙ୍କୁ ଟଙ୍କା ଦିଆଯାଇ ପଠାଗଲା । କର୍ମଚାରୀ ଜଣକ ଟମି ପରି ଦିଶୁଥିବା ଓ ଟମି ସାଇଜର ଧଳା ବିଲାତି କୁକୁର ଖୋଜିବାକୁ ବେଶି ସମୟ ନେଲେ ନାହିଁ । ଦୁଇ ଦିନ ଭିତରେ ଅବିକଳ ଟମି ପରି ବିଲାତି କକୁରଟିଏ ଲୁହାଚେନ୍‌ରେ ବାନ୍ଧି ଆଣିଲେ । ଅବଶ୍ୟ ସେ କର୍ମଚାରୀ କୁକୁରଟିକୁ ନିଜେ ଆୟତ କରିବାକୁ ଅସମର୍ଥ ହେବାରୁ ସେ କୁକୁର ମାଲିକକୁ ସାଙ୍ଗରେ ଆଣିଥିଲେ ।

ଉପ ଜିଲ୍ଲାପାଳ ଶ୍ରୀମହାନ୍ତି କୁକୁରକୁ ଦେଖି ଖୁବ୍ ଖୁସି ହେଲେ । ତା ସାଙ୍ଗରେ



Digitized by srujanika@gmail.com

ଆସିଥିବା କୁକୁର ମାଲିକକୁ ନିଭୃତ ସ୍ଥାନକୁ ଡାକି ନେଇ କହିଲେ - ଦେଖ, ତୁମେ କହିବ, ଏ କୁକୁର ବୁଲିବୁଲି ଆସି ମୋ ଘରେ ପହଞ୍ଚି ଥିଲା । ମୋ ପଅକୁ କାମୁଡିବାକୁ ଗୋଡାଇଲା । ମୁଁ ତାକୁ ଅଖା ପକାଇ ମାଡି ବସି ବହୁ କଷ୍ଟରେ ଲୁହା କଡିରେ ବାନ୍ଧିଥିଲି ।

ଏତକ ନିର୍ଭୁଲ ଭାବେ ଜିଲ୍ଲାପାଳ ଓ ତାଙ୍କ ମିସେସ୍‌ଙ୍କ ଆଗରେ କହିବା ପାଇଁ ସେ ଲୋକକୁ ଉପ ଜିଲ୍ଲାପାଳ ହଜାରେ ଟଙ୍କା ଲାଞ୍ଚ ଦେଲେ ।

ଉପ ଜିଲ୍ଲାପାଳ ଜିଲ୍ଲାପାଳଙ୍କୁ ଖବର ଦେଲେ - ସାର୍ ଆପଣଙ୍କ ଟମି ମିଳିଗଲା ।

ଜିଲ୍ଲାପାଳ ଖୁବ୍ ଖୁସିହୋଇ ଉପ ଜିଲ୍ଲାପାଳଙ୍କ ସାଙ୍ଗରେ ଅଫିସ୍ ବାହାରକୁ ଆସି ଟମିକୁ ଦେଖିବାକୁ ଗଲେ । ଗୋଟିଏ ଲୁହା କଡିରେ ବନ୍ଧା ହୋଇଥିବା କୁକୁରଟାର ମୁହଁ କାନ୍ଦୁରା ଦିଶୁଥିଲା । ଜିଲ୍ଲାପାଳ କହିଲେ - ଏଇଟା ଆମ ଟମି ? ଏଟା ଏମିତି କଣ ଦିଶୁଛି ? ତାକୁ ବାନ୍ଧିଛ କାହିଁକି ? ଫିଟାଇ ଦିଅ । ସିଏ କାହାର କିଛି କ୍ଷତି କରିବ ନାହିଁ ।

ଉପ ଜିଲ୍ଲାପାଳ କହିଲେ - ନାଇଁ ସାର୍, ଟମି ଏତେ ଦିନ ହେଲା ବାହାରେ ଏଣେ ତେଣେ ବୁଲୁଥିଲାତ, ସେଥିପାଇଁ ଏମିତି ଦିଶୁଛି । ବୁଲା କୁକୁରଙ୍କ ସାଙ୍ଗରେ ମିଶିଛି, କାଳେ କାମୁଡା କାମୁଡି କରିବ ସେଥିପାଇଁ ତାକୁ ବନ୍ଧା ଯାଇଛି । ଏ ଯେଉଁ ଲୋକ ଟମିକୁ ଆଜି ଧରିଲା ତାକୁ ପଚାରନ୍ତୁ ସାର୍ । ସିଏ ମଣିଷକୁ କାମୁଡି ଗୋଡଉଛି ।

ଜିଲ୍ଲାପାଳ ସେ ଲୋକକୁ ପଚାରି ସବୁକଥା ବୁଝିଲେ । କୁକୁରଟିକୁ ତାଙ୍କୁ ଫେରସ୍ତ ଦେଇଥିବାରୁ ତାକୁ ଦୁଇ ହଜାର ଟଙ୍କା ପୁରସ୍କାର ଦେଲେ ।

ଗୋଟେ ଜିପ୍‌ରେ କୁକୁରକୁ ଧରି ସେ ଲୋକ ଜିଲ୍ଲାପାଳଙ୍କ ରେସିଡେନ୍‌ସକୁ ଚାଲିଲା । ଜିଲ୍ଲାପାଳ ଫୋନ୍ କରି ମିସେସ୍‌ଙ୍କୁ ସୁସମ୍ବାଦଟା ଜଣାଇ ଦେଲେ ।

ଆଗ ଜିପ୍‌ରେ ଟମି ଓ ପଛ କାର୍‌ରେ ଜିଲ୍ଲାପାଳ ଶ୍ରୀଜାଜୋଡିଆ ଓ ଉପ ଜିଲ୍ଲାପାଳ ଶ୍ରୀମହାନ୍ତି । ଦଶ ମିନିଟ୍ ପରେ ଜିଲ୍ଲପାଳଙ୍କ ଘର ଆଗରେ ଦୁଇଟା ଯାକ ଗାଡି ଅଟକିଲା । ଗେଟ୍ ଖୋଲି ବାହାରକୁ ବାହାରି ଆସିଲେ ଶ୍ରୀମତୀ ଜାଜୋଡିଆ । ମୋ ଟମି କାହିଁ ବୋଲି କହି କାର୍‌ର ଡୋର ଖୋଲି ପକାଇଲେ ।

ଜିଲ୍ଲାପାଳ କହିଲେ - ଟମି ମିଳିଛି, କିନ୍ତୁ ସିଏ ଏବେ ଆଉ ଆମ ଟମି ହୋଇ ନାହିଁ । ବାହାରରେ ବୁଲି ଚିଡଚିଡା ଓ କାମୁଡା ହୋଇଯାଇଛି । ଡାକ୍ତର ଦେଖାଇ ତାର ଚିକିତ୍ସା କରିବାକୁ ହେବ । କିଛି ଦିନ ସ୍ନେହ ଓ ଆଦରରେ ତାଲିମ୍ ଦେଲେ ସବୁ ଠିକ୍ ହୋଇଯିବ ।

ଜିପ୍‌ରୁ ଓହ୍ଲାଇଲା ଟମି । ମିସେସ୍ ଜାଜୋଡିଆ ଚିତ୍କାର କଲେ - ନା, ନା ।

ଆନନ୍ଦ ଚନ୍ଦ୍ର ପଣ୍ଡି

Digitized by srujanika@gmail.com

ତମେ ମତେ ଯେତେ କହିଲେ ବି ମୁଁ କଦାପି ବିଶ୍ୱାସ କରିବି ନାହିଁ । ଏଟା କେବେ ଆମ ଟମି ନୁହଁ । ମୋ ଟମିକୁ ମୁଁ ଲକ୍ଷେ କୁକୁରଙ୍କ ଭିତରୁ ଚିହ୍ନି ଦେବି । ଏଟା ଅନ୍ୟ କାହା କୁକୁର । ତୁମର ସବୁଲୋକ ଅପଦାର୍ଥ, ଅପାରଗ, ଅକାଳ କୁଷ୍ମାଣ୍ଡ । ସେମାନେ ତାଙ୍କର ବିଫଳତାକୁ ଲୁଚାଇବା ପାଇଁ ତୁମକୁ ବୋକା ବନାଇ ପାରନ୍ତି କିନ୍ତୁ ମୋତେ ନୁହଁ ।

ଜିଲ୍ଲାପାଳ ତାଙ୍କ ମିସେସଙ୍କୁ ବୁଝାଇଲେ - ଅଖିଆ, ଅପିଆ ପାଗଳ ପରି ପନ୍ଦର ଦିନ ଏଣେ ତେଣେ ବୁଲିଲେ ଆମ ଟମି କ'ଣ ଯେ କୌଣସି କୁକୁରର ଚେହେରା, ବଦଳିଯିବ । ତମେ ଭଲ ଭାବରେ ଦେଖ ଆମ ଟମିର ରଙ୍ଗ ଏଇମିତି ଧଳା ଥିଲା । ଉଚ୍ଚତା ଠିକ୍ ଯାର ଉଚ୍ଚତା ସହ ସମାନ । ଆଉ ତାର ଲମ୍ବ ପ୍ରାୟ ଏତିକି ଥିଲା । ତା ଦେହର ବାଳଗୁଡାକ ସାଇଜ ଥିଲା ଓ ସାବୁନରେ ଧୁଆ ହୋଇ ଚକ୍ ଚକ୍ କରୁଥିଲା । ମୁହଁ ଉପର ବାଳ ସାଇଜ କରି କଟାଯାଇଥିଲା । କିନ୍ତୁ ଏଇ ପନ୍ଦର ଦିନର ଅଯତ୍ନ ତା' ଚେହେରାରେ ଅନେକ ପରିବର୍ତ୍ତନ ନିଶ୍ଚୟ ଆଣିଛି । ତାଛଡା ସାଧୁ ଯାହା କହିଥିଲେ ସବୁ ଅକ୍ଷରେ ଅକ୍ଷରେ ସତ ହୋଇଛି । ଆମ ରେସିଡେନ୍ସଠୁ ଉତ୍ତର ଦିଗରେ ଗୋଟେ କିଲୋମିଟର ଦୂରରେ ଟମିକୁ ବନ୍ଧନରେ ରଖା ଯାଇଥିଲା । ତମେ ବ୍ୟସ୍ତ ହୁଅନା, ସିଏ ଆମ ପାଖରେ ଆମ ଯତ୍ନରେ ପନ୍ଦର ଦିନ ରହିଗଲେ ପୁଣି ଆଗ ଭଳି ଆମ କଥା ମାନିବ ।

ମିସେସ୍ ଡାଳୋଡିଆ ତଥାପି ଏ କୁକୁରକୁ ନିଜର ଟମି ଭାବରେ ଗ୍ରହଣ କରିବାକୁ ନାରାଜ । ସେ ଯୁକ୍ତି କଲେ - ଏଇ ପନ୍ଦର ଦିନ ଭିତରେ ସବୁ ବଦଳି ଯାଇପାରେ କିନ୍ତୁ ତା' ମୁହଁ ଏତେ ଅଲଗା କେବେ ଦିଶିବ ନାହିଁ । ତମେ ଯାହା କହିଲେ ବି, ମୁଁ ଯାକୁ ମୋ ଟମି ଭାବେ ଗ୍ରହଣ କରି ପାରିବି ନାହିଁ । ମୁଁ ମୋ ଟମିର ମୁହଁ ସହିତ ପରିଚିତ । ଏଟା ମୋ ଟମି ନୁହଁ ।

ଜିଲ୍ଲାପାଳ ବିରକ୍ତ ହେଲେ - କୁକୁରର ଗୋଟେ ମୁହଁ ମିଶିବ କଣ ? ସବୁ କୁକୁରଙ୍କ ମୁହଁ ଗୋଳିଆ । ପ୍ରତି ମଣିଷ ମୁହଁ ସିନା ଅନ୍ୟଠୁ ସ୍ୱତନ୍ତ୍ର, କିନ୍ତୁ ସବୁ କୁକୁରଙ୍କ ମୁହଁ ଏକାପରି । ପୁଣି ଏ ବିଲାତି କୁକୁରମାନଙ୍କ ମୁହଁର ପଚସ୍ତରୀ ଭାଗ ତାଙ୍କ ଲୁମ୍ ଘୋଡାଇ ପକାଇଥାଏ । ତୁମେ ଯାକୁ ଟମି ବୋଲି ଗ୍ରହଣ ନ କରିବା ତୁମ ମନର ଭ୍ରମ ପନ୍ଦର ଦିନ ଏ କୁକୁର ତମ ଘରେ ରହୁ ତମେ ଯାକୁ ତମ ଟମି ଭାବେ ଗ୍ରହଣ କରିବ ।

ଜିଲ୍ଲାପାଳଙ୍କ ରେସିଡେନ୍ସରେ କାମ କରୁଥିବା ଦରୱାନ, ପିଅନ, ପୂଜାରୀ, ମାଳି ସମସ୍ତେ ମିସେସ ଢାଳୋଡିଆଙ୍କୁ ବୁଝାଇଲେ - ମ୍ୟାଡାମ୍ ! ଏଇଟା ଆମ ଟମି । ଆପଣ



Digitized by srujanika@gmail.com

ବ୍ୟସ୍ତ ହୁଅନ୍ତୁ ନାହିଁ । ଇଏ ଏଠି ଆଠ ଦଶ ଦିନ ରହିଗଲେ ତାର ଆଗ ରଙ୍ଗ,ଢଙ୍ଗ, ଚେହେରା ଫେରି ପାଇବ ।

ମିସେସ୍ ଜାଜୋଡିଆଙ୍କ ବିରୋଧସତ୍ତ୍ୱେ ସେଇ କୁକରଟାକୁ ତାଙ୍କ ଟମି ସ୍ଥାନରେ ସ୍ଥାପନ କରିଦିଆ ଗଲା । କୁକୁରର ଯତ୍ନ ନେବାକୁ ଜଣେ କୁକୁର ବିଶେଷଜ୍ଞଙ୍କୁ ନିଯୁକ୍ତି ଦିଆଗଲା ।

ସାଧୁଙ୍କ କଥା ସତ୍ୟ ହୋଇଥିବାରୁ ଜିଲ୍ଲାପାଳଙ୍କ ତରଫରୁ ତାଙ୍କ ଆଶ୍ରମ ପାଇଁ ଦୁଇ ଏକର ଜମି ଦିଆଗଲା । ଗୋଟିଏ ସ୍ଥାୟୀ ଓ ସୁନ୍ଦର ମନ୍ଦିର ନିର୍ମାଣ ପାଇଁ ଜିଲ୍ଲାପାଳ ନିଜ ପକେଟ୍‌ରୁ ଦଶ ହଜାର ଟଙ୍କା ଦାନ କଲେ । ଜିଲ୍ଲାପାଳଙ୍କୁ ଖୁସି କରିବା ପାଇଁ ଜିଲ୍ଲାର ସମସ୍ତ ବଡ଼ ବଡ଼ କଣ୍ଟ୍ରାକ୍ଟର ମିଶି ସାଧୁଙ୍କ ମନ୍ଦିର ନିର୍ମାଣରେ ଲାଗି ପଡ଼ିଲେ ।

ଗୋଟିଏ ମାସର ତାଲିମ୍ ପାଇବା ପରେ କୁକୁରଟି ପୋଷା ମାନିଗଲା । ମିସେସ୍ ଜାଜୋଡିଆ ତାକୁ ଟମି ବୋଲି ଡାକିବା ମାତ୍ରେ ସିଏ ଚାଲି ଆସି ଗୋଡ ଚାଟିଲା ଓ କୋଳରେ ବସିଲା । ମିସେସ୍ ଜାଜୋଡିଆଙ୍କ ମୁହଁ ଏଥର ପ୍ରସନ୍ନ ଦିଶିଲା । ସିଏ ଟମିକୁ କୋଳକୁ ଉଠାଇ ନେଇ ଗେଲକଲେ । କୋଳରେ ଧରି ତାକୁ ଆଉଁଶିଲେ । ତା ମୁହଁକୁ ବାରମ୍ବାର ଚାହିଁ ମନକୁ ମନ କହିଲେ - ଏଇଟାତ ମୋ ଟମି ।

କୁକୁରଟିକୁ ମିସେସ୍ ଜାଜୋଡ଼ିଆ ନିଜ ହାତରେ ଗାଧେଇ ଦେଲେ ନିଜ ହାତରେ ଖୋଇ ଦେଲେ ଓ କାଖରେ କୋଳରେ ଧରିଲେ । ଏଣିକି ସିଏ ସାବଧାନ ରହିଲେ ଟମିକୁ ଯେମିତି ଆଉ ଥରେ କିଏ ନେଇ ନ ଯାଏ ।ତାଙ୍କ ରେସିଡେନ୍ସରେ ଥିବା ଦରଓ୍ୱାନ, ପିଅନ, ମାଳି ଓ ପୂଜାରୀଙ୍କୁ ସାବଧାନ କରାଇ ଦେଲେ- ଏଥର ଯଦି ମୋ ଟମିକୁ କିଏ ନିଏ, ତାହେଲେ ମୁଁ ତମ ସମସ୍ତଙ୍କ ଚାକିରି ନେଇଯିବି ।

ଦିନେ କିନ୍ତୁ ଗୋଟେ ଅଘଟଣ ଘଟିଲା । ସେ ଦିନ ସମୟ ଅପରାହ୍ନ ଚାରିଟା । ମିସେସ୍ ଜାଜୋଡିଆ ବଗିଚାର ବେଞ୍ଚରେ ବସି କୁକରଟିକୁ କୋଳରେ ଧରି ଗେଲ କରୁଥିଲେ । ହଠାତ୍ ଆଉ ଗୋଟେ ବିଲାତି କୁକୁର ଦରଓ୍ୱାନର ବାରଣ ନ ମାନି ଗେଟ୍ ଉପରେ ଡେଇଁ ବଗିଚା ଭିତରେ ପଶିଲା ଓ ମିସେସ୍ ଜାଜୋଡ଼ିଆଙ୍କ କୋଳରେ ବସିଥିବା କୁକୁର ଉପରକୁ ଡେଇଁ ପଡିଲା ।

ମିସେସ୍ ଜାଜୋଡ଼ିଆ ଭୟରେ ଚିତ୍କାର କରି ଘର ଭିତରକୁ ଧାଇଁଲେ ଓ ତାଙ୍କ ପଛେ ପଛେ ତାଙ୍କ ପୋଷା କୁକୁର ରକ୍ତାକ୍ତ ଅବସ୍ଥାରେ ପ୍ରାଣ ବିକଳରେ ଘର ଭିତରକୁ ପଶିଗଲା । ବାହାରୁ ଆସିଥିବା କୁକୁରଟା ଭୟଙ୍କର ଭାବେ ଭୁକି ଭୁକି ପୋଷା କୁକୁର



Digitized by srujanika@gmail.com

ଲୁଚିଥିବା ଘରର କବାଟ ଓ ଝରକା ଉପରକୁ ବାରମ୍ବାର ଡେଇଁଲା ଓ ତା' ଗୋଡ ନଖରେ ବାରମ୍ବାର ବିଦାରିଲା । ସେ କୁକୁରର ବେକ ଓ ଦେହର ଲୋମ ଠିଆ ଠିଆ ।

ଭୟଭୀତା ମିସେସ୍ ଢାଢୋଡିଆ ଭୟରେ ଘର ଭିତରେ ପଶି କବାଟ ବନ୍ଦ କରିଦେଲେ । ଦରଓ୍ବାନ, ପିଅନ, ମାଳି ଓ ପୂଜାରୀ ବାଡି ଧରି ସେ କୁକୁରକୁ ଘଉଡାଇବାକୁ ଚେଷ୍ଟା କରି ବିଫଳ ହେଲେ । ସେ କୁକୁର ବିଜୁଳି ବେଗରେ ଏଠୁ ସେଠିକୁ ଧାଉଁଥାଏ, ବାଘ ପରି ଡେଉଁଥାଏ ଓ ଲୋକମାନଙ୍କୁ କାମୁଡି ଗୋଡାଉଥାଏ । ସମସ୍ତେ ଡରିଗଲେ । କୁକୁରଟା ହୁଏ ତ ପାଗଳ ହୋଇ ଯାଇଛି ।

ମିସେସ୍ ଢାଢୋଡ଼ିଆ ଜିଲ୍ଲାପାଳଙ୍କୁ ଫୋନ୍ କରି ସବୁକଥା ଜଣାଇ ଅନୁରୋଧ କଲେ- ଶୀଘ୍ର ମ୍ୟୁନିସ୍‌ପାଲିଟିକୁ ଖବର ଦିଅ । ସେମାନେ ଲୋକ ପଠାଇ ଏ ପାଗଳ କୁକୁରକୁ କାବୁ କରନ୍ତୁ । ନହେଲେ ସିଏ ଆମ ଘରର କବାଟ ଝରକା ଭାଙ୍ଗି ମୋତେ ଆଉ ଟମିକୁ ମାରି ପକାଇବ ।

ଜିଲ୍ଲାପାଳଙ୍କ ଫୋନ୍ ପାଇବାର ପନ୍ଦର ମିନିଟ ଭିତରେ ମ୍ୟୁନିସ୍‌ପାଲିଟିର ପଲଟଣ ଆସି କୁକରକୁ ଚାରିପାଖରୁ ବେଢି ଗଲେ । ସେମାନେ କୁକୁରକୁ କାବୁ କରିବାକୁ ସାଙ୍ଗରେ ଆଣିଥିଲେ କିଛି ଅଖା, ଗୋଟେ ନାଇଲନ ଜାଲ ଆଉ କିଛି ଫାଶ ।

କୁକୁରଟା ମ୍ୟୁନିସ୍‌ପାଲିଟିର ଲୋକଙ୍କ ସହିତ ଅଧଘଣ୍ଟାଏ କାଳ ଘମାଘୋଟ ଲଢେଇ କଲା । ସେମାନେ ବହୁ କଷ୍ଟରେ କୁକୁର ଉପରେ ଜାଲ ପକାଇ ତାକୁ ଜାଲରେ ଛନ୍ଦିଲେ । କିନ୍ତୁ ସିଏ ଦାନ୍ତ ଓ ନଖରେ ଜାଲକୁ ଛିଣ୍ଡାଇ ଖସିଯିବାକୁ ଉଦ୍ୟମ କଲାବେଳେ ଦୁଇ, ତିନିଟା ବ୍ରଜ ପାହାର ତା' ମୁଣ୍ଡରେ ବସିଲା । ଖୁବ୍ ବିକଟ ଚିତ୍କାର କରି କୁକୁରଟା ଜିଭ କାମୁଡି ଦେଲା ।

ଜିଲ୍ଲାପାଳ ଘରେ ପହଞ୍ଚି ଦେଖିଲେ ମ୍ୟୁନିସ୍‌ପାଲିଟି ଲୋକମାନେ ମୃତ କୁକୁରକୁ ବେଢି ଯାଇଛନ୍ତି । ତାଙ୍କ ଟିମ୍ ଲିଡର ବାଡିରେ କୁକୁରକୁ ଖେଞ୍ଚି ପରୀକ୍ଷା କରୁଛି କୁକୁରଟା ସଂପୂର୍ଣ୍ଣ ମରିଯାଇଛି ନା ମରମର ହେଉଛି ।

ଜିଲ୍ଲାପାଳ ମ୍ୟୁନିସିପାଲିଟି ଲୋକମାନଙ୍କୁ ଧନ୍ୟବାଦ ଦେଇ ନିଜ ରେସିଡେନ୍ସର କଲିଙ୍ଗ୍‌ବେଲ ମାରି ମିସେସ୍‌କୁ ଡାକିଲେ । ମିସେସ୍ ଢାଢୋଡିଆ ତାଙ୍କ ସ୍ୱାମୀଙ୍କ ଛାତିରେ ମୁଣ୍ଡ ରଖି କାନ୍ଦିଉଠିଲେ । ତାଙ୍କ ଦେହ ଭୟରେ ଥରୁଥିଲା ।

ଜିଲ୍ଲାପାଳ ଅଭୟ ଦେଲେ - ଆଉ ଭୟ କରିବାରେ କିଛି ନାହିଁ । ପାଗଳ କୁକୁରଟାକୁ ମ୍ୟୁନିସ୍‌ପାଲିଟିର ଲୋକମାନେ ମାରି ଦେଇଛନ୍ତି । ତୁମର ସବୁ ଠିକ୍ ଅଛି



Digitized by srujanika@gmail.com

ତ ?

ମିସେସ୍ ଜାଡୋଡ଼ିଆ କାନ୍ଦ କାନ୍ଦ କଣ୍ଠରେ କହିଲେ - କୁକର ଏମିତି ବାଘ ପରି ଭୟଙ୍କର ଆଉ ହିଂସ୍ର ହୋଇପାରେ ବୋଲି ମୋର ଆଦୌ ଧାରଣା ନଥିଲା । ମୋର ଅବଶ୍ୟ କିଛି ହୋଇନାହିଁ, କିନ୍ତୁ ଟମି ମୁହଁକୁ ସେ କୁକୁରଟା ରାମ୍ପି ରକ୍ତାକ କରି ଦେଇଛି । ତା ଆଖି ଦୁଇଟା ବଞ୍ଚିଯାଇଛି ମାତ୍ର ମୁହଁଟା ଖଣ୍ଡିଆ ହୋଇ ଯାଇଛି । ତାକୁ ଶୀଘ୍ର ଡାକ୍ତର ଦେଖାଇବାକୁ ପଡ଼ିବ ।

ଜିଲ୍ଲାପାଳ ସଙ୍ଗେ ସଙ୍ଗେ ପଶୁଡାକ୍ତରଙ୍କୁ ଫୋନ୍ କଲେ ଆଉ କହିଲେ - ଡାର୍ଲିଙ୍ଗ୍, ତୁମେ ବ୍ୟସ୍ତ ହୁଅନା । ଏଇ ପନ୍ଦର ମିନିଟ ଭିତରେ ଡାକ୍ତର ଆସି ପହଞ୍ଚି ଯିବେ ।

ଜିଲ୍ଲାପାଳ ତାଙ୍କ ପୋଷାକୁକୁରକୁ ଚାହିଁଲେ । ସିଏ ଭୟରେ ନିଜ ଦେହ ଭିତରେ ମୁହଁ ଲୁଚାଇ କବାଟ କୋଣରେ ଶୋଇଛି ।

ମଣିଷଠୁ ପଶୁ ପର୍ଯ୍ୟନ୍ତ ସମସ୍ତଙ୍କୁ ଭୟ କାବୁଷ୍ଟ କରେ ।

ଗୋଟେ ଟ୍ରଲିରେ ଲଦି ମ୍ୟୁନିସିପାଲିଟି ଲୋକମାନେ ମୃତ କୁକୁରଟାକୁ ନେବାବେଳେ ଗେଟ୍ ପାଖରେ ଠିଆ ହୋଇଥିବା ଦରୱାନ ପାଟିରୁ ହଠାତ୍ ବାହାରି ପଡ଼ିଲା - ଏଇ ଯୋଉ କୁକୁରଟାକୁ ମାରି ଦିଆଗଲା ଏଇଟାତ ସାହେବଙ୍କ ହଜି ଯାଇଥିବା କୁକୁର ଟମି ।

ତା' ପାଖରେ ଠିଆ ହୋଇଥିବା ପିଅନ ଦରୱାନର ପାଟିକୁ ହାତରେ ମାଡି ବସି ତାକୁ ଚୁପ୍ କରାଇ କହିଲା - ଚୁପ୍ ବେ । ସାହେବ କି ମ୍ୟାଡାମ୍ ଏକଥା ଜାଣିଲେ ଆମ ସମସ୍ତଙ୍କର ଚାକିରି ଚାଲିଯିବ ।



ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

# ନିଜ ନିର୍ବାସନ

ଅବନୀ ସରକାରୀ ଚାକରିରୁ ଅବସର ନେବା ଦିନ ଫେୟାରୱେଲ ସଭାରେ ତାଙ୍କ ସହକର୍ମୀ ଅମ୍ବୁଜ କହିଲେ-ବ୍ରାହ୍ମଣ ଓ ପକ୍ଷୀମାନେ ଦୁଇଥର ଜନ୍ମ ନିଅନ୍ତି ବୋଲି ତାଙ୍କୁ ଦ୍ୱିଜ କୁହାଯାଏ । ବ୍ରାହ୍ମଣମାନେ ମାଆ ପେଟରୁ ଥରେ ଜନ୍ମ ନିଅନ୍ତି ଏବଂ ବ୍ରତୋପନୟନ ବେଳେ ଆଉ ଥରେ ଜନ୍ମ ନିଅନ୍ତି । ପକ୍ଷୀମାନେ ଅଣ୍ଡା ହୋଇ ମାଆ ପେଟରୁ ଥରେ ଜନ୍ମ ନିଅନ୍ତି ଏବଂ ଅଣ୍ଡା ଫାଟିବା ପରେ ଆଉ ଥରେ ଜନ୍ମ ହୋଇ ପୃଥିବୀର ଆଲୋକ ଦେଖନ୍ତି । ସରକାରୀ କର୍ମଚାରୀମାନଙ୍କର ଦୁଇ ଥର ଜନ୍ମ ନହେ. ମଧ ଦୁଇଥର ମୃତ୍ୟୁ ହୁଏ । ଚାକିରିରୁ ଅବସର ନେବା ଦିନ ଗୋଟିଏ ମୃତ୍ୟୁ ଏବଂ ଶେଷ ନିଃଶ୍ୱାସ ତ୍ୟାଗ କରିବା ଦିନ ଆଉ ଗୋଟିଏ ମୃତ୍ୟୁ ହୁଏ ।

ଅବନୀଙ୍କ ମନକୁ ଚାଉଁ କରି ଛୁଇଁଥିଲା ଏଇ ମୃତ୍ୟୁ କଥାଟା । ସେ ସେଦିନ ପ୍ରଥମ କରି ତାଙ୍କ ମୃତ୍ୟୁ ବିଷୟରେ ସଚେତନ ହେଲେ । ସରକାରୀ ଭାବେ ତାଙ୍କୁ ୬୦ ବର୍ଷ ପୂରିଗଲା, କିନ୍ତୁ ପ୍ରକୃତ ବୟସ ତାଙ୍କର ଆଉ ଦୁଇବର୍ଷ ଅଧିକ । ସ୍କୁଲରେ ନାଆଁ ଲେଖାଇବା ବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଜାତକ ଦେଖନ୍ତି ନାହିଁ ବୋଲି ନିୟମ ଥିବାରୁ ପ୍ରଧାନ ଶିକ୍ଷକ ଅବନୀଙ୍କୁ ୬ ବର୍ଷ ହୋଇଛି ବୋଲି ଧରିନେଇ ତାଙ୍କ ଜନ୍ମ ତାରିଖଟା ସ୍କୁଲର ନାମଲେଖା ରେଜିଷ୍ଟରରେ ଯାହା ଲେଖିଥିଲେ ତାହା ତାଙ୍କ ପ୍ରକୃତ ଜନ୍ମ ତାରିଖ ଠାରୁ ଦୁଇବର୍ଷ କମ୍ ଥିଲା । ତେଣୁ ଅବନୀଙ୍କୁ ପ୍ରକୃତରେ ୬୨ ବର୍ଷ ପୂରିଗଲା ।

ଅବନୀଙ୍କର ଗୋଟିଏ ମୃତ୍ୟୁ ହୋଇଗଲା । ଏବେ ସିଏ ଦ୍ୱିତୀୟ ମୃତ୍ୟୁକୁ ଅପେକ୍ଷା କରିବେ ଯାହା ଆସିବାକୁ ଆଉ ବେଶି ବିଳମ୍ବ ନାହିଁ । ସରକାରୀ ଚାକିରି ଥିଲା । ଅବନୀ ଅଫିସ୍ ଯାଉଥିଲେ । କାମ ଭିତରେ ସମୟ ଜଣା ପଡୁ ନଥିଲା କି ବୟସ ଜଣା ପଡୁ ନଥିଲା । ଅବସର ପରେ ସମୟ କାଟିବା ହୁଏତ କଷ୍ଟକର ହେବ । ସେଥିପାଇଁ ଅଧିକାଂଶ ସରକାରୀ କର୍ମଚାରୀ ଅବସର ଗ୍ରହଣ କରିବାର ପାଞ୍ଚ, ସାତ ବର୍ଷ ଭିତରେ ମରି ଯାଆନ୍ତି ।

ଫେୟାରୱେଲ ସଭା ସରିବା ପରେ ଏମିତି ଗୋଟେ ମୃତ୍ୟୁ ଚେତନା ଅବନୀଙ୍କ ଛାତି ଭିତର ଦେଇ ମନ ଭିତରେ ପଶିଗଲା । ଫେୟାରୱେଲ ନେଇ ଆସିବା ପରେ ସିଏ

ଆନନ୍ଦ ଚନ୍ଦ୍ର ପତି

Digitized by srujanika@gmail.com

ଘରେ ଚୁପ୍‌ଚାପ୍ ବସି ରହିଲେ । ତାଙ୍କ ମୁହଁ ଶୁଖି ଯାଇଥିଲା । କାହାରିକୁ କିଛି ନ କହି ରାତି ଆଠଟା ବେଳୁ ଚାଦର ଘୋଡାଇ ହୋଇ ଶୋଇ ରହିଲେ । ପତ୍ନୀ ସୁଜାତା. ପୁଅ ସୁତନୁ ଓ ସୁବ୍ରତ ଭାବିଲେ ଚାକିରି ସରିଯିବା ଦୁଃଖରେ ସେ ଭାଙ୍ଗି ପଡିଛନ୍ତି ।

ସୁଜାତା ଅବନୀଙ୍କ ପାଦ ପାଖରେ ବସି ତାଙ୍କୁ ଆଶ୍ୱାସନା ଦେବା କଣ୍ଠରେ କହିଲେ -ମନ ଦୁଃଖ କ'ଣ ପାଇଁ ? ପଇଁତିରିଶି ବର୍ଷ ଚାକିରି କଲ । ଭୁବନେଶ୍ୱରରେ ଘର ତିଆରି କରିଚ, ଦୁଇ ପୁଅଙ୍କୁ ଆଉ ଝିଅକୁ ପାଠ ପଢେଇଚ । ସେମାନଙ୍କର ବିଭାଘର କରିଚ। ପୁଅ ଦୁଇ ଜଣଯାକ ତାଙ୍କ ଯୋଗ୍ୟତା ଅନୁସାରେ ଭୁବନେଶ୍ୱରରେ ଚାକିରି କରୁଛନ୍ତି । ତୁମକୁ ନିୟମିତ ପେନ୍‌ସନ୍ ମିଳିବ । ପେନ୍‌ସନ୍ ଟଙ୍କାତ ଆମ ଦୁଇ ଜଣଙ୍କ ଚଳିବା ପାଇଁ ଆଉ ଦେହ ପା' ଖର୍ଚ୍ଚ ପାଇଁ ଯଥେଷ୍ଟ ହେବ । ଆଉ ମନ ଦୁଃଖ କରିବାର କଣ ଅଛି ? ଜୀବନ ସାରା ଖଟିବା କ'ଣ ଭଲ ? ଏବେ ସରକାରୀ କାମରୁ ଛୁଟି ମିଳିଲା, ଘରେ ବିଶ୍ରାମ ନେବ। ଆରାମ କରିବ । ଖୁସି ହେବା କଥା । ମନ ଦୁଃଖର ପ୍ରଶ୍ନ କୁଆଡୁ ଆସୁଛି ? କାହିଁକି ମୁହଁଟାକୁ କୁହୁଡିଆ ଆଉ କାନ୍ଦୁରା କରିଚ ?

ସୁଜାତାଙ୍କୁ କ'ଣ କହି ବୁଝାଇବେ ଅବନୀ ? ସିଏ କେମିତି କହିବେ ତାଙ୍କର ଦୁଃଖ କ'ଣ ? ମୃତ୍ୟୁ ଭୟ କଥା କହିଲେ ସୁଜତା ହୁଏତ ତାଙ୍କୁ ପରିହାସ କରିବେ । ସୁସ୍ଥ ମଣିଷ ମନଟା ଯେ ଏତେ ଅସୁସ୍ଥ ହୋଇପାରେ ତାହା ଜଣେ ଆଉ ଜଣେ ମଣିଷକୁ ବୁଝାଇବା ସମ୍ଭବ ନୁହଁ । ଅବନୀ ସୁଜତାଙ୍କ ଏତେ ପ୍ରଶ୍ନର କିଛି ଉତ୍ତର ନ ଦେଇ ଚୁପ୍‌ଚାପ୍ ଶୋଇ ରହିଲେ ।

ସୁଜାତା ଏଥର ଅବନୀଙ୍କ ମୁହଁ ଉପରୁ ଚାଦର କାଢି ଦେଇ ପଚାରିଲେ - ଅଫିସ୍‌ରେ କିଛି ଅସୁବିଧା ହେଇଛି କି ? ଶେଷ ବେଳକୁ ତୁମ ନାଆଁରେ କିଛି......

ସୁଜାତାଙ୍କ କଥା ନ ସରୁଣୁ ଅବନୀ କଥା ଛଡାଇ ବିରକ୍ତ ହୋଇ କହିଲେ - ଆମ୍ବ ଗଛରେ କଇରା କିମ୍ବା ଲେମ୍ବୁ ଗଛରେ ବରକୋଳି କେବେ ଫଳେ କି ? ତୁମେ ଯାହା ଭାବୁଛ ସେମିତି କିଛି ହୋଇନି । ମୁଁ ମୋ ଚାକିରି ଜୀବନରେ ଯେମିତି ଦକ୍ଷ ଥିଲି , ସେମିତି ସଚ୍ଚୋଟ ଥିଲି । ଚାକିରି ସମୟଟା ମୋର ଖୁବ୍ ଭଲରେ କଟିଛି । ମୋର ଚରିତ୍ର ପଞ୍ଜିକା ସବୁବେଳେ ଉଜ୍ଜଳ । ଆଜି ଆଗତୁରା ମୋର ପ୍ରୋଭିଜନାଲ୍ ପେନ୍‌ସନ୍, ଅନ୍‌ୟୁଟିଲାଇଜଡ୍ ଲିଭ୍ ସାଙ୍କସନ୍ ଓ କମ୍ୟୁଟେସନ୍ ଅଫ ପେନ୍‌ସନ୍ ଅର୍ଡର ଫେୟାରୱେଲ ସଭାରେ ମୋତେ ଦିଆଗଲା ।

ସୁବ୍ରତ ଓ ସୁତନୁ ପଚାରିଲେ - ବାପା ! ଆଉ ତା ହେଲେ ତୁମ ମନ କାହିଁକି



Digitized by srujanika@gmail.com

ଭଲ ନାହିଁ ? ଚୁପ୍‌ଚାପ୍ କାହିଁକି ଶୋଇଚ ?

ଦୁଇ ବୋହୂ ମୁହଁ ଶୁଖାଇ ଠିଆହେଲେ । ଶ୍ୱଶୁରଙ୍କ ଅଜଣା ଦୁଃଖ ପ୍ରତି ସମବେଦନା ଜଣାଇବା ପାଇଁ ବଡବୋହୂ କହିଲା - ବାପା ! ଆପଣ ସବୁଦିନେ ଅଫିସରୁ ଫେରିବା ପରେ ଆଗ ମୋ ହାତରୁ ଚା' ପିଅନ୍ତି । ଆଜି ମୁଁ ଚା' ତିଆରି କରି ଆପଣଙ୍କୁ ଖୋଜିଖୋଜି ପାଇଲି ନାହିଁ । ଆପଣଙ୍କର କ'ଣ ହେଇଚି ନକହିଲେ ଆମେ ଜାଣିବୁ କେମିତି ?

ତଥାପି ଅବନୀ ନିରବ । ସୁଜାତା ଏଥର ଟିକେ ଚଢା ଗଳାରେ ପଚାରିଲେ - କିଛି ତ ହୋଇନାଇଁ ତା ହେଲେ ଏମିତି ଚୁପ୍‌ଚାପ୍ ଶୋଇଚ କାହିଁକି ? ଉଠ, ଗୋଡହାତ ଧୋଇହୁଅ । ଚା' ଜଳିଖିଆ ଖାଅ । ଟି.ଭି. ସିରିଆଲ୍ ଦେଖ ।

ଏଥର ଅବନୀ ମୁହଁ ଖୋଲିଲେ - ତମେ ସମସ୍ତେ ଯାଅ । ନିଜ ନିଜ କାþ କର । ମତେ ଘଣ୍ଟେ ଦି ଘଣ୍ଟା ପାଇଁ ଏକୁଟିଆ ରହିବାକୁ ଛାଡି ଦିଅ ।

ସୁଜତା, ସୁବ୍ରତ୍ର, ସୁତନୁ ଓ ଦୁଇ ବୋହୂ ପରସ୍ପରଙ୍କ ମୁହଁକୁ ଚାହିଁ କ'ଣ ଠରାଠରି ହେଲେ ଏବଂ ଜଣକ ପରେ ଜଣେ ସେ ବଖରା ଛାଡି ଡ୍ରଇଁରୁମ୍‌ରେ ଥିବା ଟିଭି ପାଖକୁ ଫେରି ଆସିଲେ ।

ରୋଷେଇ ସରିବା ପରେ ଯିଏ ଯେତେ ଡାକିଲେ ମଧ୍ୟ ଅବନୀ ବିଛଣାରୁ ଉଠିଲେ ନାହିଁକି ଖାଇଲେ ନାହିଁ । ବହୁତ ରାଣ ନିୟମ ପକାଇ ସାନବୋହୂ କ୍ଷୀରଗ୍ଲାସଟିଏ ତାଙ୍କୁ ପିଆଇ ପାରିଲା । ସକାଳେ ସୁଜାତା ଦେଖିଲେ ଅବନୀଙ୍କ ବିଛଣା ଖାଲି ପଡିଚି । ସେ ଅତି ଭୋରରୁ ବିଛଣାରୁ ଉଠି କୁଆଡେ ଚାଲି ଯାଇଛନ୍ତି । ସମସ୍ତେ ଆଶ୍ଚର୍ଯ୍ୟ ହେଲେ, ପ୍ରତିଦିନ ସକାଳ ସାତଟାରେ ନିଦରୁ ଉଠୁଥିବା ମଣିଷ ଆଜି ରାତି ନପାହୁଣୁ ବିଛଣା ଛାଡି କୁଆଡେ ଚାଲି ଯାଇଛନ୍ତି ।

ସୁଜତା ବ୍ୟସ୍ତ ହୋଇ ଦୁଇ ପୁଅଙ୍କୁ ଡାକି ଅବନୀଙ୍କ ନିଖୋଜ ହେବା ସମ୍ବାଦ ଦେଲେ । ବଡ ପୁଅ ସୁତନୁ କହିଲା - ଅନେକ ରିଟାୟାର୍ଡ ଲୋକ ରାତି ପାହାନ୍ତାରୁ ଉଠି ମର୍ଣ୍ଣିଙ୍ଗ ୱାର୍କରେ ଯାଉଛନ୍ତି । ବାପା ହୁଏତ ସେମାନଙ୍କ ସାଙ୍ଗରେ ଯାଇଥିବେ । ଅବସର କାଳୀନ ସମୟ କାଟିବାର ଇଏ ସବୁଠୁ ଭଲ ଉପାୟ । ସକାଳୁ ଘଣ୍ଟେ ଦୁଇ ଘଣ୍ଟା ସାଙ୍ଗ ସାଥୀଙ୍କ ସହିତ ଆଳପ ଆଲୋଚନା , ହସଖୁସି କରି ମୁକ୍ତ ପବନରେ ବୁଲି ଆସିଲେ ସ୍ୱାସ୍ଥ୍ୟ ଭଲ ରହିବ, ମନ ଖୁସି ରହିବ ।

କିନ୍ତୁ ଦିନ ଆଠଟା ବାଜିଲା ତଥାପି ଅବନୀ ଫେରିଲେ ନାହିଁ । ତାଙ୍କ ପରିବାର



Digitized by srujanika@gmail.com

ଲୋକଙ୍କର ଚିନ୍ତା ବଢିଲା । ମର୍ଣ୍ଣିଙ୍ଗ ଓ୍ୱାର୍କରେ ଯିବା ଲୋକ ଦୁଇ ଘଣ୍ଟାରୁ ଅଧିକ ସମୟ ନେବେ ନାହିଁ । ଅବନୀ ଭୋର ୫ଟାରୁ ଗଲେଣି, ସକାଳ ଆଠଟା ପର୍ଯ୍ୟନ୍ତ ମର୍ଣ୍ଣିଙ୍ଗ ଓ୍ୱାର୍କରେ ଅଟକି ଯିବା ସମ୍ଭବ ନୁହଁ ।

ସୁଜାତା କହିଲେ – ମୋର କାହିଁକି ସନ୍ଦେହ ହେଉଛି କାଲି ତାଙ୍କ ଅଫିସ୍‌ରେ କିଛି ଅଘଟଣ ଘଟିଛି । ସେଥିପାଇଁ ଅଫିସରୁ ଫେରି ସିଏ ଚୁପ୍ ଚାପ୍ ରହିଲେ । ରାତିରେ କିଛି ଖାଇଲେ ନାହିଁ । ଭୋରୁ ଭୋରୁ ଘରଛାଡି କୁଆଡେ ଚାଲି ଯାଇଛନ୍ତି । ଯେତେ ପଚାରିଲେ ବି ସିଏ ସିନା କିଛି କହିଲେ ନାହିଁ କିନ୍ତୁ କାଲି ତାଙ୍କ ଅଫିସ୍‌ରେ କିଛି ହୋଇଚି ନିଶ୍ଚୟ । ଏଇ ପାଖରେ କୋଉଠି ତୁମ ବାପାଙ୍କ ଅଫିସ୍‌ର ରାମବାବୁ ରହୁଛନ୍ତି । ତାଙ୍କୁ ଯାଇଟିକେ ପଚାରି ଆସ ।

ସୁତନୁ ଓ ସୁବ୍ରତ ପରସ୍ପରଙ୍କ ମୁହଁକୁ ଚାହିଁଲେ । ସେମାନଙ୍କ ମଧ୍ୟରୁ କେହି ରାମବାବୁଙ୍କୁ ଚିହ୍ନନ୍ତି ନାହିଁ କି ତାଙ୍କ ଘର ଦେଖି ନାହାଁନ୍ତି । ବଡବୋହୂ ଅବନୀଙ୍କ ଟେଲିଫୋନ ଡାଇରୀ ଖୋଜି ରାମବାବୁଙ୍କ ଘର ଫୋନ୍ ନମ୍ବର ପାଇଗଲେ । ସୁତନୁ ରାମବାବୁଙ୍କ ଘରକୁ ଫୋନ୍ ସଂଯୋଗ କଲେ – ହ୍ୟାଲୋ ! ମଉସା ନମସ୍କାର । ମୁଁ ଅବନୀ ଶଙ୍କର ମିଶ୍ରଙ୍କର ବଡ ପୁଅ ସୁତନୁ କହୁଚି । କାଲି ଆପଣଙ୍କ ଅଫିସ୍‌ରେ ବାପାଙ୍କୁ ନେଇ କିଛି ଅଘଟଣ ଘଟିଥିଲାକି ? କଣ କହିଲେ ? କିଛି ଘଟିନାହିଁ । ଭଲରେ ଭଲରେ ତାଙ୍କୁ ଫେୟାରଓ୍ୱେଲ ଦିଆଗଲା । ନାଇଁ ମଉସା କଥା କ'ଣ କି , ବାପା କାଲି ଅଫିସରୁ ଫେରିବା ପରେ ଚୁପ୍‌ଚାପ୍ ରହିଲେ । କାହା ସହିତ କିଛି କଥାବାର୍ତ୍ତା ହେଲେ ନାହିଁ । ରାତିରେ କିଛି ଖାଇଲେ ନାହିଁ । ଆଜି ପାହାନ୍ତାରୁ ଉଠି କୁଆଡେ ଚାଲିଯାଇଛନ୍ତି । ଏଯାଏ ଫେରି ନାହାଁନ୍ତି । ନା, କୋଉଠି ପାଉନୁ ।

ଫୋନ୍ ରଖିଦେଲେ ସୁତନୁ । ପରିବାରର ସମସ୍ତ ଲୋକ ବ୍ୟସ୍ତ ବିବ୍ରତ । କାହାକୁ କିଛି ନ କହି ଏତେ ସକାଳୁ କୁଆଡେ ଚାଲିଯିବା ସୁସ୍ଥ ମସ୍ତିଷ୍କର କାମ ନୁହଁ । ମଣିଷର ମନ ବିଚିତ୍ର ।

ଡ୍ରଇଁରୁମ୍‌ରେ ଚିନ୍ତାଗ୍ରସ୍ତ ହୋଇ ବସିଲେ ସୁଜାତା, ସୁତନୁ ଆଉ ସୁବ୍ରତ । ଯା' ପର ପଦକ୍ଷେପ କ'ଣ ବୋଲି ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ । କାହାରି ମୁହଁରୁ କିଛି କଥା ବାହାରିଲା ନାହିଁ । କିନ୍ତୁ ପ୍ରତ୍ୟେକ ଭାବୁଥିଲେ ପୋଲିସ୍‌କୁ ଇନଫର୍ମ କରିବା ହୁଏତ ଯା' ପର ପଦକ୍ଷେପ । ତଥାପି ଆଉ ଚାରି ପାଞ୍ଚ ଘଣ୍ଟା ଅପେକ୍ଷା କରା ଯାଇପାରେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ହଠାତ୍ ଘର ଭିତରକୁ ପଶି ଆସିଲେ ଅବନୀ । ତାଙ୍କ ମୁହଁ ପୂର୍ବ ଅପେକ୍ଷା ଅଧିକ ଶୁଖିଲା ଦିଶୁଥିଲା । ଅଧିକ ବିବ୍ରତ ଦିଶୁଥିଲେ ସିଏ । ତାଙ୍କ ମୁହଁ ସାରା ଚିନ୍ତାର ଅନାବନା ଅନେକ ଗାର । ମୁହଁଟା ରଫ୍‌ଖାତା ପରି ବେଆଡା ଦିଶୁଥିଲା । ଗୋଟେ ରାତି ଭିତରେ ଅବନୀଙ୍କ ମନରେ ଅନେକ ଓଲଟ ପାଲଟ ।

ସୁଜାତା ପ୍ରଶ୍ନ କଲେ - ଏତେ ସକାଳୁ କାହାକୁ କିଛି ନ କହି ଏତେବେଳ ଯାଏ କୁଆଡେ ଯାଇଥିଲ ?

ଅବନୀ କିଛି ଉତ୍ତର ନଦେଇ  କେବଳ ସୁଜାତା ଓ ତାଙ୍କ ଦୁଇ ପୁଅଙ୍କ ମୁହଁକୁ ଥରେ ଚାହିଁ ଦୃଷ୍ଟି ଫେରାଇ ନେଲେ । ସେ କାହାକୁ କିଛି କହିବାକୁ  ଇଚ୍ଛା ପ୍ରକାଶ କରୁ ନାହାଁନ୍ତି । ତାଙ୍କ ମୁହଁ ଗମ୍ଭୀର ।

ସୁଜାତା ପୁଣି ପ୍ରଶ୍ନ କଲେ – ତୁମର  ଇଏକି ପାଗଳାମି ଏ ବୁଢା ବୟସରେ ବାହାରୁଛି ? କାଲି ଅଫିସ୍‌ରୁ ଫେରିବା ପରଠୁ କିଛି ଖାଇନା, କିଛି କହୁନା । ପୁଣି ରାତି ପାହାନ୍ତାରୁ ଚୋରଙ୍କ ପରି କୁଆଡେ  ଚାଲିଗଲ ? କୁଆଡେ ଯାଇଥିଲ ପଚାରିଲେ  କିଛି କହୁନା । ଏସବୁ କଣ ହେଉଚି ? ଆମକୁ ଏମିତି ଲୋକହସା କାହିଁକି କରୁଚ ?

ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ବାଥରୁମ୍ ଭିତରେ ପଶିଲେ ଅବନୀ । ଅଧଘଣ୍ଟାଏ ଭିତରେ ନିତ୍ୟକର୍ମ ସାରି ଗାଧେଇ ପାଧୋଇ  ପ୍ରସ୍ତୁତ ହୋଇ ଡାଇନିଙ୍ଗ ଟେବୁଲ ପାଖରେ ବସି ବଡବୋହୂକୁ ଡାକିଲେ - ଅନୀତା ! ଜଳଖିଆ ଆଣ, ଖୁବ୍ ଭୋକ ହେଲାଣି ।

ବଡ ବୋହୂ ଜଳଖିଆ ଆଣିଦେଲା । ଅବନୀ ଜଳଖିଆ ଖାଇ ପାଣି ପିଇଲେ । ତା ପରେ ଚା' ପିଇ ଡ୍ରଇଁରୁମ୍‌କୁ ଉଠିଗଲେ । ପ୍ରତିଦିନ ପରି ଦୈନିକ ଖବର କାଗଜ ପଢାରେ ମନଦେଲେ ।

ଘଟଣାଟା ସ୍ୱାଭାବିକ ହୋଇଗଲା ବୋଲି ପରିବାରର ସମସ୍ତଙ୍କ ମନରେ ଧାରଣା ସୃଷ୍ଟି ହେଲା । ସେ ଦିନର ମଧ୍ୟାହ୍ନ ଭୋଜନ, ରାତ୍ରି ଭୋଜନ ଖାଇଲେ । କେବଳ କାହା ସହିତ ବିଶେଷ କଥାବାର୍ତ୍ତା କଲେ ନାହିଁ । ସବୁ କଥାର ଉତ୍ତର କେବଳ ହଁ, ନାହିଁରେ  । ସମସ୍ତେ ଧରିନେଲେ ହୁଏତ ଅବସର ଜୀବନକୁ ସିଏ ସହଜରେ ଗ୍ରହଣ କରିପାରୁ ନାହାଁନ୍ତି । ରାତି ଏଗାରଟାରେ ସ୍ୱଭାବିକ ଭାବେ ଅବନୀ ନିଦରେ ଶୋଇଲେ ।

କିନ୍ତୁ ସୁଜାତା ଦେଖିଲେ ତା ପରଦିନ ପୁଣି ରାତି ପାହାନ୍ତାରୁ ଶେଯ ଛାଡି  କୁଆଡେ ଚାଲି ଯାଇଛନ୍ତି ଅବନୀ । ଆଜି କେହି ସେତେ ବ୍ୟସ୍ତ ନୁହଁନ୍ତି, କେବଳ ସମସ୍ତେ ଚିନ୍ତିତ । ସକାଳୁ ସକାଳୁ ଏମିତି କୁଆଡେ ଯାଉଛନ୍ତି ସିଏ ?

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସୁଜାତାଙ୍କ ମନରେ ସନ୍ଦେହ । ସ୍ୱାମୀ ତାଙ୍କର କୌଣସି ସନ୍ନ୍ୟାସୀ ଆଶ୍ରମକୁ ଯାଉଛନ୍ତି କି ? ବୃଦ୍ଧ ବୟସରେ ଅନେକଙ୍କ ମନ ଧର୍ମ ଆଡକୁ ଢଳେ । କିଛି ଲୋକଙ୍କ ମନରେ ଈଶ୍ୱର ବିଶ୍ୱାସର ତୋଫାନ ଉଠେ । ସେଇ ତୋଫାନ ଘରସଂସାର ଭିତରୁ ତାଙ୍କୁ ଉଡାଇ ନିଏ । ସୁଜାତା ଦୁଇ ପୁଅଙ୍କୁ ପାଖକୁ ଡାକି କହିଲେ- ଆଜିବି ତୁମ ବାପା ଭୋରୁ କୁଆଡେ ଚାଲି ଯାଇଛନ୍ତି । ମୋର ସନ୍ଦେହ ହେଉଛି ସିଏ କୋଉ ସନ୍ନ୍ୟାସୀଙ୍କ ଆଶ୍ରମକୁ ଯାଉଛନ୍ତି । ତୁମେ ପାଖ ଆଖ ଆଶ୍ରମମାନଙ୍କରେ ଟିକେ ସନ୍ଧାନ ନିଅ ।

ଭୁବନେଶ୍ୱର ଓ ତାର ପାଖ ଆଖରେ ଆଜିକାଲି ଅନେକ ମଠ, ଆଶ୍ରମ , ମନ୍ଦିର । ଭୁବନେଶ୍ୱର ଭିତରେ ଥିବା ଓ ଭୁବନେଶ୍ୱରଠୁ ଅଳ୍ପ ଦୂରରେ ଥିବା ସମସ୍ତ ସନ୍ନ୍ୟାସୀ ଆଶ୍ରମ ଖୋଜିବା ଭିତରେ ଖଣ୍ଡଗିରିର ଗୋଟିଏ ଆଶ୍ରମରେ ଅବନୀଙ୍କୁ ଆବିଷ୍କାର କଲା ତାଙ୍କ ବଡପୁଅ ସୁତନୁ । ଅନେକ ଲୋକଙ୍କ ଭିତରେ ଲୁଚିକି ବସିଲା ଆଉ ତା ବାପାଙ୍କ କାର୍ଯ୍ୟକଳାପ ଲକ୍ଷ୍ୟ କଲା ।

ଅବନୀ ସନ୍ନ୍ୟାସୀଙ୍କୁ ପଚାରିଲେ - ବାବା ! ମଣିଷ ମୃତ୍ୟୁ ପରେ କୁଆଡେ ଯାଏ ? ମୁଁ ଜାଣେ ମଣିଷର ଶରୀର ପଞ୍ଚଭୂତରୁ ସୃଷ୍ଟି । ମୃତ୍ୟୁ ପରେ କ'ଣ ତାର ଶରୀର ସେଇ ପଞ୍ଚଭୂତକୁ ଫେରିଯାଏ ? ଆତ୍ମାର ଗତି କୁଆଡକୁ ହୁଏ ? ଆମ ପୁରାଣ ଶାସ୍ତ୍ରରେ ବର୍ଣ୍ଣନା କରା ଯାଇଛି ଯେ ଆତ୍ମାର ବିନାଶ ନାହିଁ । ଆତ୍ମା କେବଳ ଶରୀର ବଦଳ କରେ । ମଣିଷର ଆତ୍ମା କ'ଣ କେବଳ ମଣିଷ ଶରୀର ଗ୍ରହଣ କରେ ନା ପଶୁ, ପକ୍ଷୀ, କୀଟ, ପତଙ୍ଗ ଶରୀର ମଧ୍ୟ ଗ୍ରହଣ କରିପାରେ ?

ସନ୍ନ୍ୟାସୀ ସାମାନ୍ୟ ହସି ଉତ୍ତର ଦେଲେ - ଇଏ ଅତି ଗହନ କଥା । ଯାର ଉତ୍ତର ମୋ ପାଖରେ ନାହିଁ କି ପୃଥିବୀର କାହାରି ପାଖରେ ନାହିଁ । ଯିଏ ଯେତେବେଳେ ଏ ବିଷୟରେ କିଛି କହିଛି କେବଳ ପୁରାଣ ଶାସ୍ତ୍ର, ଗୀତା, ଇତ୍ୟାଦିର ତଥ୍ୟକୁ ଭିତ୍ତି କରି କହିଛି । ତୁମର ଏ ପ୍ରଶ୍ନ ଉପରେ କିଛି ଚିନ୍ତାଶୀଳ ଲୋକ ତାଙ୍କ ଉତ୍ତର ବିଭିନ୍ନ ବହିରେ ଛାଡି ଯାଇଛନ୍ତି । ତୁମେ ସେସବୁ ବହି ବିଭିନ୍ନ ପାଠାଗାରରୁ ସଂଗ୍ରହ କରି ପଢିପାର । କିନ୍ତୁ ଏ ବିଷୟରେ ମୋର ଏକମାତ୍ର ଉତ୍ତର ହେଉଛି ମଣିଷ ନିଜେ ମୃତ୍ୟୁବରଣ ନ କଲେ ମୃତ୍ୟୁ ପରର ଘଟଣା ଜାଣିବା ସମ୍ଭବ ନୁହେଁ । ତେଣୁ ଜୀବିତାବସ୍ଥାରେ ସେ ସବୁ ଜାଣିବାକୁ କୌତୁହଳ ପ୍ରକାଶ କରିବା ବୁଦ୍ଧିମାନର କାମ ନୁହଁ । ମୃତ୍ୟୁ ଏପଟରେ ଥିବା ଜୀବନକୁ ଭଲ ଭାବେ ଜାଣିବାକୁ, ଜୀବନକୁ ଭଲଭାବେ ପଢିବାକୁ ଉଦ୍ୟମ କର । ସେଇଥିରେ ମଣିଷର ମଙ୍ଗଳ । ମୃତ୍ୟୁ ସେପଟ କଥା ଏବେ ଭାବିବା ବନ୍ଦ୍ କର ।

ଆନଂଦ ଚଂନ୍ଦ୍ର ପହି

Digitized by srujanika@gmail.com

ଏମିତି ଭାବନା ଭୟଙ୍କର ।

ସୁତନୁ ବାପାଙ୍କ ଅଗୋଚରରେ ସେ ସ୍ଥାନକୁ ଯାଇଥିଲା । ତାଙ୍କ ଅଗୋଚରରେ ସେ ସ୍ଥାନ ଛାଡି ଘରକୁ ଫେରି ଆସି ଘରେ ସମସ୍ତଙ୍କୁ ସବୁକଥା କହିଲା । ସଂପୂର୍ଣ୍ଣ କଥାଟା ଜାଣିବା ପରେ ସମସ୍ତେ ବିସ୍ମିତ ହେଲେ । ମାତ୍ର ବାଆଷଠି ବର୍ଷ ବୟସରେ ଅବନୀଙ୍କୁ ମୃତ୍ୟୁଚେତନା ଏତେ ବିବଶ କଲା କାହିଁକି ? ହୃଦଘାତ କି କର୍କଟ ପରି ରୋଗରେ ତ ସିଏ ଆକ୍ରାନ୍ତ ନୁହଁନ୍ତି । ଏପରିକି ମଧୁମେହ, ରକ୍ତଚାପ କିମ୍ବା ଗ୍ୟାଷ୍ଟ୍ରିକ ରୋଗ ବି ତାଙ୍କର ନାହିଁ । ଝିଅ ବାହାଘର, ପୁଅ ଚାକିରି କିମ୍ବା ଋଣଭାର ତାଙ୍କ ଉପରେ ମଧ ନାହିଁ । ତାଙ୍କ ପରି ଜଣେ ସଫଳ ଓ ସୁଖୀ ମଣିଷର ମୁଣ୍ଡରେ ଏ ଅଦ୍ଭୁତ ଧାରଣା ପଶିଲା କାହିଁକି ?

ଘରେ ଏମିତି ଆଲୋଚନା ଚାଲିଥିବା ଭିତରେ ଘରକୁ ଫେରିଲେ ଅବନୀ । ସୁଜାତା ତାଙ୍କୁ ଏ ପ୍ରଶ୍ନ ପଚାରିଲେ । ଅବନୀ ଉତ୍ତର ଦେଲେ – ତୁମେ ସେ କଥା ଜାଣିବା କିଛି ଆବଶ୍ୟକ ନାହିଁ ।

ସୁଜାତା ଗର୍ଜି ଉଠିଲେ – ତୁମ ମୁଣ୍ଡରେ ମୃତ୍ୟୁ ଚେତନାର ଭୂତ କିଏ ପୂରାଇଲା ? ଆମ ଘର ସାମାନାରେ ରହୁଥିବା କାଳିବାବୁଙ୍କୁ କେତେ ବୟସ ହେଲାଣି ତୁମେ ଜାଣିଚ ? ତାଙ୍କୁ ୮୨ ବର୍ଷ ଟପିଲାଣି । ସିଏ ଅନେକ ବର୍ଷ ହେଲା ଚାକିରିରୁ ଅବସର ନେଲେଣି । ତଥାପି ସେ ଖୁବ୍ ସୁସ୍ଥ ଅଛନ୍ତି । ନିଜ କାମ ନିଜେ କରୁଛନ୍ତି । ସିଏ ପ୍ରତିମାସରେ ନିଜେ ଟ୍ରେଜେରୀ ଯାଇ ଧାଡିରେ ଠିଆ ହୋଇ ତାଙ୍କ ପେନସନ୍ ଟଙ୍କା ଆଣୁଛନ୍ତି । ତମେ ତ ଚାକିରିରୁ ଅବସର ନେବା ମାତ୍ର ଦୁଇ ଦିନ ହେଇଚି । ତୁମକୁ ମୃତ୍ୟୁ ଭୟ ଏତେ ଘାରୁଛି କାହିକିଁ ? ଖଣ୍ଡଗିରି ଆଶ୍ରମର ବାବା କିମ୍ବା ଏ ପୃଥିବୀର କୌଣସି ସାଧୁ, ସନ୍ନ୍ୟାସୀ ମୃତ୍ୟୁପର ଜୀବନ ବିଷୟରେ କିଛି କହି ପାରିବେ ନାହିଁ । ଜୀବନକୁ ଭଲ ପାଅ । ମୃତ୍ୟୁ କଥା ଭୁଲିଯାଅ । ସେ ନେଇ ଏବେଠୁ ଘାରିହେଲେ ଜୀବନର ଅବଶିଷ୍ଟ ଦିନଗୁଡାକୁ ବି ତୁମେ ଉପଭୋଗ କରି ପାରିବ ନାହିଁ ।

ଅବନୀ କିଛି ଉତ୍ତର ନ ଦେଇ ନିଜ ବଖରାକୁ ପଶିଗଲେ । ଅବଶ୍ୟ ତାପର ଦିନଠୁ ସକାଳୁ ଉଠି ଆଉ କୁଆଡେ ଗଲେ ନାହିଁ । କିନ୍ତୁ ଘରେ ବସି ଅନେକ ସମୟରେ ମୃତ୍ୟୁ ସଂପର୍କୀୟ ବହି ସବୁ ପଢିଲେ । ଏମିତି ବିଭିନ୍ନ ବହି ପଢିବା ଭିତରେ ସିଏ ଜାଣିବାକୁ ପାଇଲେ ମଣିଷ ପାଇଁ ତାର ମୃତ୍ୟୁପରର ଜୀବନ ଏକ ରହସ୍ୟ ହୋଇ ରହିଛି । ସେ ରହସ୍ୟକୁ କେହି ଏ ପର୍ଯ୍ୟନ୍ତ ଭେଦ କରିବାକୁ ସମର୍ଥ ହୋଇ ନାହାଁନ୍ତି । କିନ୍ତୁ ସେ ରହସ୍ୟ ଭେଦ କରିବା ପାଇଁ ମଣିଷ ଏବେ ବି ଉଦ୍ୟମ ଜାରି ରଖିଛି ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଦିନେ ଡାଇନିଙ୍ଗ ଟେବୁଲ୍‌ରେ ଅବନୀ ତାଙ୍କ ପରିବାର ସହିତ ଖାଇ ବସିଥିବା ବେଳେ ତାଙ୍କ ସାନ ପୁଅ ସୁବ୍ରତ କହିଲା - ବାପା ! ଆମ ପରିବାର ପାଇଁ ବିଶେଷତଃ ମୋ ପାଇଁ ଆଉ ଭାଇ ପାଇଁ ତୁମେ ଅନେକ ତ୍ୟାଗ କରିଚ । ତୁମେ ତୁମ ଜୀବନକାଳ ଭିତରେ ନିଜେ ଦାରିଦ୍ର୍ୟ ସହିତ ଲଢ଼ି ପାଠ ପଢ଼ିଛ । ଚାକିରି କରିଛ, ଆମକୁ ପାଠ ପଢ଼ାଇଚ, ଆମ ଚାକରି ପାଇବାରେ ସାହାଯ୍ୟ କରିଚ, ଭୁବନେଶ୍ୱରରେ ଘର ତୋଳିଚ । ଆମେ ତୁମ ପ୍ରତି ଖୁବ୍ କୃତଜ୍ଞ । ତୁମ ପରି ଜଣେ ସଫଳ ମଣିଷ ମୃତ୍ୟୁ ଭୟରେ ଆକ୍ରାନ୍ତ ହେବା ଆଦୌ ଠିକ୍ ନୁହଁ । ତୁମର ପାରିପାର୍ଶ୍ୱିକ ପରିସ୍ଥିତି କହେ ତୁମେ କେବଳ ସୁଖ ଭୋଗରେ ବର୍ତ୍ତମାନ ବିଭୋର ହେବା କଥା ।

ସୁଜାତା ଅଭିଯୋଗ କଲେ - ଆଜିକାଲି ତୁମେ ସବୁବେଳେ ଚୁପ୍‌ଚାପ୍ ରହୁଛ । ଦିନ ରାତି ମୃତ୍ୟୁ ଚେତନା ସଂପର୍କୀୟ ବହି ପଢ଼ୁଛ । ମୋର ଆଶଙ୍କା ହେଉଛି ତୁମେ ଦିନେ ଏ ଘର ସଂସାର , ପୁଅ ବୋହୂ, ସ୍ତ୍ରୀ, ଓ ପ୍ରିୟ ପରିଜନଙ୍କୁ ଛାଡି ସନ୍ନ୍ୟାସୀ ହୋଇଯିବ ।

ଅବନୀ ପରିବେଶକୁ ହାଲୁକା କରିବାକୁ ବଡ ପାଟିରେ ହସୁ ହସୁ କହିଲେ - ନା, ତମେ ସବୁ ଯାହା ଭାବୁଛ ସେମିତି କିଛି ନୁହଁ । ତେବେ କିଛି ପଢ଼ିବା, କିଛି ଜାଣିବା ଖରାପ କାମ ନୁହଁ । ଏ ଅବସର ଜୀବନର ସମୟ କାଟିବାର ଇଏ ଗୋଟେ ବାଟ । ଅବଶ୍ୟ ମୁଁ ମାନୁଚି ସମୟ ବିତାଇବାର ଆହୁରି ଅନେକ ବାଟ ଅଛି, ଏଇ ଯେମିତି ବଗିଚା କାମ କରିବା, ମର୍ଣ୍ଣିଙ୍ଗ ୱାକ କରିବା, ଯୋଗ ଆଉ ପ୍ରାଣାୟମ କରିବା ଇତ୍ୟାଦି । ମୁଁ ସେ ସବୁ ନିଶ୍ଚୟ କରିବି । ଏବେ ପଢ଼ାପଢ଼ି ଆରମ୍ଭ କରିଛି, ସେ ସବୁ ସରିଗଲେ ଆଉ ଯାହା କରିବି । ମୁଁ ପାଗଳ କି ସନ୍ନ୍ୟାସୀ ହୋଇଯିବି ବୋଲି ତୁମ ମନରେ ଯେଉଁ ଆଶଙ୍କା ଦେଖା ଦେଇଚି ସେଥିରେ ସାମାନ୍ୟତମ ସତ୍ୟତା ନାହିଁ । ତୁମେ ସବୁ ନିଶ୍ଚିନ୍ତ ରୁହ, ମୁଁ ଠିକ୍ ଅଛି ।

ଅବନୀଙ୍କ ଏକଥା ଶୁଣି ତାଙ୍କ ପରିବାର ଲୋକମାନେ ଆଶ୍ୱସ୍ତ ହେଲେ । ସେମାନଙ୍କ ଧାରଣା ହେଲା ଅବନୀ ଏଥର ସ୍ୱଭାବିକ ହେଲେଣି । ମୃତ୍ୟୁ ଚେତନାର ଫାଶରୁ ନିଜ ମନକୁ ମୁକୁଳାଇ ମୁକ୍ତ ହୋଇ ଗଲେଣି ।

ଦିନେ ଅବନୀଙ୍କ ଝିଅ ସୁସ୍ମିତା ତା' ଶାଶୁଘରୁ ଫୋନ୍ କରି ଜଣାଇଲା ତା' ଶ୍ୱଶୁରଙ୍କ ଦେହ ଖୁବ୍ ଅସୁସ୍ଥ । ସିଏ ସମୁଦିଙ୍କୁ ଦେଖିବାକୁ ଇଚ୍ଛା କରୁଛନ୍ତି ।

ଏ ଖବର ସମସ୍ତଙ୍କୁ କିଛିଟା ଦୁଃଖ ଦେଲା ସତ, କିନ୍ତୁ ପରକ୍ଷଣରେ ଅବନୀଙ୍କ ପରିବାର ଲୋକମାନେ ଭାବିଲେ ଇଏ ଗୋଟେ ଭଲ ସୁଯୋଗ । ସମୁଦିଙ୍କୁ ଦେଖିବା



Digitized by srujanika@gmail.com

ସହିତ ଅବନୀଙ୍କ ମନ ପରିବର୍ତ୍ତନ ହୋଇଯିବ । ସୁସ୍ମିତାଙ୍କୁ କହି ଅବନୀଙ୍କୁ ସେଠି କିଛି ଦିନ ଅଟକାଇ ଦେଲେ ସମ୍ଭୁଦି, ସମ୍ଭୁଦୁଣୀ, ନାତି, ନାତୁଣୀ ଆଉ ନୂଆ ଜାଗା ରହଣି ଓ ବନ୍ଧୁଙ୍କର ଆଦର ସ୍ନେହ ପାଇ ତାଙ୍କ ମନରୁ ମୃତ୍ୟୁ ଚେତନା ପୋଛି ହୋଇଯିବ ।

ସୁସ୍ମିତା ଶାଶୁଘର ବାରିପଦା । କିଛି ଫଳ ଓ କିଛି ମିଠା ଧରି ସକାଳ ବାରିପଦା ବସ୍‌ରେ ଚଢ଼ିଲେ ଅବନୀ । ତାଙ୍କୁ ସି. ଆର.ପି. ଛକରେ ବସ୍‌ରେ ବସାଇ ଦେବାକୁ ଯାଇଥିଲା ସୁତନୁ । ସୁସ୍ମିତା ଘରେ ପହଞ୍ଚି ଘରକୁ ଫୋନ୍ କରି ଜଣାଇବାକୁ ସୁତନୁ ବାପାଙ୍କୁ ବାରମ୍ବାର କହିଥିଲା ।

କଟକ ଛାଡ଼ିବା ପରେ ବାରିପଦା ବସ୍‌ଟା ଯାତ୍ରୀରେ ପରିପୂର୍ଣ୍ଣ ହୋଇଗଲା । ବସ୍‌ରେ ବସିଛନ୍ତି ଯେତିକି ଠିଆ ହୋଇଥିବା ଯାତ୍ରୀଙ୍କ ସଂଖ୍ୟା ତା' ପାଖାପାଖି । ତଥାପି ବାଟ ପାସେଞ୍ଜର ନେବା ପାଇଁ ଅନ୍ୟ ବସ୍ ସହିତ ଏ ବସ୍‌ଟି ପ୍ରତିଯୋଗିତା ଓ ଦ୍ରୁତଗତି ଜାରି ରଖିଛି । ସାମନା ବସ୍‌ଟାକୁ ଓଭରଟେକ୍ କରିବାକୁ ଦୁଇ ତିନି ଥର ଚେଷ୍ଟା କରି ଅବନୀ ବସିଥିବା ବସ୍‌ଟି ବିଫଳ ହୋଇଥିଲା । ଆଗ ବସ୍‌ଟି ତାକୁ ଓଭର ଟେକ୍ କରିବାର ସୁଯୋଗ ନ ଦେବା ପାଇଁ ପଛ ବସ୍‌କୁ ବାଟ ଓଗାଳି ଓଗାଳି ଚାଲିଛି । ଏମିତି ଗୋଡିଆ ଗୋଡି ହୋଇ ପ୍ରାୟ ୨୦ କିଲୋମିଟର ବାଟ ଯିବା ପରେ ଠିକ୍ ଚଣ୍ଡିଖୋଲ ପରେ ପରେ ସାମାନ୍ୟ ସୁବିଧା ପାଇ ଅବନୀ ବସିଥିବା ବାରିପଦା ବସ୍‌ଟା ଓଭର ଟେକ୍ କରିବାକୁ ଉଦ୍ୟମ କଲାବେଳେ ଆଗ ବସ୍‌ଟା ଡାହାଣ ପାଖକୁ ମଡେଇ ମଡେଇ ଚଲେଇଲା । । ହଠାତ୍ ବସ୍ ଦୁଇଟାର ବଡି ଘଷିହୋଇ ପ୍ରକାଣ୍ଡ ଶବ୍ଦ କରି ରାସ୍ତାର ଦୁଇ ପଟକୁ ଓଲଟି ପଡ଼ିଲା । ଯାତ୍ରୀମାନଙ୍କ ଆର୍ତ୍ତ ଚିତ୍କାରରେ ସ୍ଥାନଟା କମ୍ପିଗଲା ।

କିଛି ସମୟ ପରେ ଝରକା ବାଟ ଦେଇ ବସ୍‌ରୁ ବାହାରି ଆସିଲେ ଅବନୀ । ସିଏ ଅଦ୍ଭୁତ ଭାବେ ରକ୍ଷା ପାଇ ଯାଇଛନ୍ତି । ତାଙ୍କ ଦେହଟା ଭୟରେ ଥରୁଚି । ଦେହ, ହାତ, ଗୋଡ, ସବୁକୁ ଆଉଁଶି ଆଣିଲେ । ଦେହରେ କେଉଁଠି ହେଲେ ଆଞ୍ଚୁଡା ଦାଗଟେ ବି ଲାଗି ନାହିଁ; କିନ୍ତୁ ଦୁଇଟାଯାକ ବସ୍‌ରୁ ପ୍ରାୟ ଚାଳିଶ, ପଚାଶ ପୁରୁଷ, ସ୍ତ୍ରୀ, ପିଲା ମୃତ ଆଉ ପଚାଶ ଷାଠିଏ ଆହତ ।

ଏତିକି ବେଳେ ଅବନୀଙ୍କ ମୁଣ୍ଡରେ ଗୋଟେ ବୁଦ୍ଧି ପଶିଲା । ମୃତ୍ୟୁ ସଂପର୍କୀୟ ସେ ଅନେକ ବହି ପଢ଼ିଛନ୍ତି । ମୃତ୍ୟୁପର ଜୀବନ ବିଷୟରେ ସେମିତି କିଛି ସ୍ପଷ୍ଟ ଧାରଣା ସେ ପାଇ ନାହାଁନ୍ତି । କିନ୍ତୁ ଏଇଠି ତାଙ୍କୁ ଗୋଟେ ସୁଯୋଗ ମିଳିଛି, ସିଏ ଇଚ୍ଛା କଲେ ନିଜେ ବଞ୍ଚି ଥାଉଁ ଥାଉଁ ନିଜକୁ ମୃତ ଘୋଷଣା କରିହେବ । ତାଙ୍କ ମୃତ୍ୟୁ ପରେ ତାଙ୍କ



Digitized by srujanika@gmail.com

ସ୍ତ୍ରୀଙ୍କର ବିଧବା ବେଶ କ'ଣ ହେବ, ସ୍ତ୍ରୀ, ପୁଅ, ବୋହୂ ଓ ଝିଅ ତାଙ୍କ ମୃତ୍ୟୁ ପରେ କେତେ ଦୁଃଖିତ ଏବଂ ତାଙ୍କ ମୃତ୍ୟୁ ପରେ ତାଙ୍କ ଘରର, ପରିବାରର ତାଙ୍କ ପ୍ରତି ମନୋଭାବ କ'ଣ ସିଏ ଜାଣି ପାରିବେ, ନିଜ ଆଖିରେ ଦେଖି ପାରିବେ । ତାଙ୍କ ମୃତ୍ୟୁପରର ତାଙ୍କ ପାରିବାରିକ ଜୀବନର ଗୋଟେ ଦୃଶ୍ୟ ଦେଖିବାର ବିରଳ ଅନୁଭବ ସିଏ ପାଇବେ ।

ତାଙ୍କ ବସ୍‌ରେ ଦୁର୍ଘଟଣାରେ ମରିଥିବା ମଣିଷମାନଙ୍କୁ ଲକ୍ଷ୍ୟ କଲେ ଅବନୀ । ତାଙ୍କ ବୟସର ଜଣେ ଲୋକ ଯାହାର ଦେହର ରଙ୍ଗ ତାଙ୍କ ପରି ଗୋରା ଓ ପ୍ୟାଣ୍ଟ ସାର୍ଟର ରଙ୍ଗ ତାଙ୍କ ପ୍ୟାଣ୍ଟ ସାର୍ଟର ରଙ୍ଗ ସହିତ ସମାନ । ମୁହଁଟା ମାଡ ହୋଇ ଛେଚରା ହୋଇ ଯାଇଛି । ସେଇ ଲୋକଟାର ଶବକୁ ଅବନୀ ନିଜ ଶବ ବୋଲି ସାବ୍ୟସ୍ତ କରିବା ପାଇଁ ତା' ପ୍ୟାଣ୍ଟ ପ୍ୟାକେଟ୍‌ରେ ଥିବା ମନିପର୍ଶ କାଢ଼ି ଆଣି ନିଜ ମନିପର୍ଶଟା ତା' ପ୍ୟାକେଟ୍‌ରେ ଥୋଇ ଦେଲେ । ନିଜର ଅଫିସିଆଲ୍ ପରିଚୟ ପତ୍ରକୁ ସେଇ ପର୍ଶ ଭିତରେ ଠିକ୍ ଜାଗାରେ ଅଛି ନା ନାହିଁ ପରୀକ୍ଷା କରିନେଲେ । ଷ୍ଟେଟ୍ ବ୍ୟାଙ୍କର ଏ.ଟି.ଏମ୍ କାର୍ଡଟା ଯତ୍ନର ସହିତ ନିଜ ପାଖରେ ରଖିଲେ । ବ୍ୟାଙ୍କରେ ଥିବା ପାଞ୍ଚ ଲକ୍ଷ ପଚାଶ ହଜାର ଟଙ୍କା ତାଙ୍କ ଅଜ୍ଞାତବାସ ସମୟରେ କାମରେ ଲାଗିବ । ଏଥର ନିଜ ହାତ ଘଣ୍ଟାଟା ଶବ ହାତରେ ବାନ୍ଧି ଦେଲେ ଓ ନିଜର ଚାଳିଶା ଚଷମାଟା ଶବ ପକେଟରେ ରଖିଦେଲେ ଅବନୀ । ଏତକ କାମ ସେ ଅତି ସତର୍କତାର ସହିତ କଲେ, ଯେପରି ତାଙ୍କର ଏକାମ କାହାରି ଦୃଷ୍ଟିରେ ନ ପଡେ ।

ଧୀରେ ଧୀରେ ସେ ସ୍ଥାନରେ ଲୋକ ଗହଳି ବଢ଼ିଲା । ପୋଲିସ୍ ଗାଡି ଆଉ ଆମ୍ବୁଲାନ୍ସ ଆସିଲା । ଲୋକ ଗହଳି ଜମିବା ପୂର୍ବରୁ ଅବନୀ ସେ ସ୍ଥାନ ଛାଡି କଟକ ବସ୍ ଧରି କଟକ ଫେରି ଆସିଲେ ଏବଂ କଟକ ରେଲଷ୍ଟେସନରୁ କଲିକତା ଟ୍ରେନ୍‌ରେ ବସିଗଲେ ।

ଅବନୀ ତା ପର ଦିନ କଲିକତାରେ ପହଞ୍ଚି ନାଆଁ ବଦଳାଇ ଗୋଟିଏ ଲଜିଙ୍ଗ୍‌ରେ ରହିଲେ । ଗାଧୁଆ ପାଧୁଆ ସାରି ଓଡିଆ ଖବର କାଗଜ ଖଣ୍ଡେ ଆଣି ତା ଉପରେ ଆଖି ବୁଲାଇଲେ । ବଡ଼ ବଡ଼ ଅକ୍ଷରରେ ପ୍ରଥମ ପୃଷ୍ଠାରେ ସଂବାଦ ପ୍ରକାଶ ପାଇଛି – "ମର୍ମନ୍ତୁଦ ବସ୍ ଦୁର୍ଘଟଣା" । ଚଣ୍ଡିଖୋଲ ପାଖରେ ଦୁଇଟି ବସ୍ ପରସ୍ପର ସହିତ ଧକ୍କା କରି ରାସ୍ତାର ଦୁଇପଟକୁ ଓଲଟି ପଡିଛନ୍ତି । ଦୁର୍ଘଟଣାରେ ମୃତ୍ୟୁ ସଂଖ୍ୟା ଚଉରାଳିଶ ଓ ଆହତ ଯାତ୍ରୀଙ୍କ ସଂଖ୍ୟା ପଞ୍ଚାବନ । କଟକ ବଡ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ଆହତ ଯାତ୍ରୀମାନଙ୍କ ମଧ୍ୟରେ ଅଧିକାଂଶଙ୍କ ଅବସ୍ଥା ସଂକଟାପନ୍ନ । ଘଟଣା ସ୍ଥଳରେ ମୃତ



Digitized by srujanika@gmail.com

ଚଉରାଳିଶ ଜଣଙ୍କ ଶବକୁ ବ୍ୟବଚ୍ଛେଦ ପରେ ତାଙ୍କ ଆତ୍ମୀୟ ସ୍ୱଜନଙ୍କୁ ଅର୍ପଣ କରା ଯାଇଛି ।

ଅବନୀ ମନେ ମନେ ଭାବିଲେ ତାଙ୍କ ଶବ ନେବାକୁ ତାଙ୍କ ଦୁଇ ପୁଅ ଓ ସୁଜାତା ଆସିଥିବେ । ତାଙ୍କ ଶବଦାହ ହୁଏତ ଏବେ ସରି ଯାଇଥିବ କିମ୍ବା ଏବେ ଶବଦାହ ପାଇଁ ବ୍ୟବସ୍ଥା କରା ଯାଉଥିବ । ତାଙ୍କ ପରିବାର ଲୋକମାନେ ବିଶେଷ କରି ତାଙ୍କ ସ୍ତ୍ରୀ ସୁଜାତା ଅନେକ କାନ୍ଦିଥିବେ । ସିନ୍ଦୂରହୀନ ତାଙ୍କ କପାଳ ଓ ସିନ୍ଥି ଆଉ ଚୁଡ଼ିହୀନ ହାତ ଖୁବ୍ ଅସୁନ୍ଦର ଦିଶୁଥିବ । ଧଳା ଶାଢ଼ି ପିନ୍ଧି ସୁଜାତା ଖୁବ୍ ନିରମାଖୀ ଦିଶୁଥିବେ ।

ନିଜ ଏକାଦଶାହ ଦିନ ଆସି ସେ ଅନନ୍ୟ ଦୃଶ୍ୟଟି ଦେଖିବାକୁ ତାଙ୍କର ପ୍ରବଳ ଇଚ୍ଛା ଥିଲେ ବି ଅବନୀ ସେଥିରୁ ନିଜକୁ ନିବୃତ୍ତ ରଖିଲେ । ତାଙ୍କ ଘରେ ବର୍ତ୍ତମାନ ବନ୍ଧୁ, ବାନ୍ଧବ, ସଂପର୍କୀୟ ଓ ସାଇ, ପଡିଶାଙ୍କ ଭିଡ ଲାଗିଥିବ । ଏ ସମୟରେ ଘରକୁ ଛଦ୍ମବେଶରେ ଯିବା ମଧ ନିରାପଦ ଆଦୌ ନୁହଁ । ଛଦ୍ମବେଶ ଯେତେ ନିଚ୍ଛକ ହେଲେ ବି ନିଜ ସ୍ତ୍ରୀ, ପୁଅ , ଝିଅ, ବୋହୂଙ୍କ ପରି ନିକଟ ସଂପର୍କୀୟମାନଙ୍କ ଆଖିକୁ ତାହା ଧୋକା ଦେବାକୁ କେବେହେଲେ ସମର୍ଥ ହେବ ନାହିଁ ।

ତେବେ ଅବନୀ ବେଶିଦିନ ନିଜକୁ ଓ ନିଜ ଇଚ୍ଛାକୁ ନିଜ ନିୟନ୍ତ୍ରଣରେ ରଖି ପାରିଲେ ନାହିଁ । ତାଙ୍କ ମୃତ୍ୟୁର ଚାରିମାସ ପରେ ସେ ରାତି ଦଶଟାରେ ଭୁବନେଶ୍ୱର ରେଳଷ୍ଟେସନରେ ଓହ୍ଲାଇ ଚାରିକଡକୁ ଚାହିଁଲେ । ଅବନୀ ପାଖ ଆଖରେ ଚିହ୍ନା ଜଣା କାହାକୁ ଆବିଷ୍କାର ନ କରି ଆଶ୍ୱସ୍ତ ହେଲେ । ତେବେ ଅବନୀ ଇଚ୍ଛା କରି ଚାରିମାସ ହେଲା ମୁଣ୍ଡବାଳ କି ମୁହଁର ନିଶ, ଦାଢି କିଛି କାଟି ନାହାଁନ୍ତି । ପ୍ୟାଣ୍ଟ ସାର୍ଟ ପରିବର୍ତ୍ତେ ପରିଧାନ କରିଛନ୍ତି ଗେରୁଆ ଧୋତି ଓ ପଞ୍ଜାବୀ । ଦିଶୁଛନ୍ତି ଜଣେ ସିଦ୍ଧ ସନ୍ନ୍ୟାସୀ ପରି ।

ଭୁବନେଶ୍ୱର ରେଳଷ୍ଟେସନ ଡେଇଁ ଅବନୀ ସହର ଭିତରେ ପ୍ରବଶେ କଲେ । ତାଙ୍କୁ କେହି ଏ ବେଶରେ ଚିହ୍ନି ପାରୁଛନ୍ତି କି ନାହିଁ ତାହା ପରୀକ୍ଷା କରିବାକୁ ଯାଇ ମାଷ୍ଟର କ୍ୟାଣ୍ଟିନ୍ ଛକରେ ଥିବା ପାନ ଦୋକାନ ଆଗରେ ଠିଆ ହୋଇ ଚାରି କଡକୁ ଚାହିଁଲେ । ଧୀରେ ଧୀରେ ଦୋକାନ ଆଡକୁ ଆଗେଇଲେ । ଦୋକାନୀଠୁ ଗୋଟେ ସିଗାରେଟ ପ୍ୟାକେଟ୍ କିଣିଲେ । ଦୋକାନୀଟା ସିଗାରେଟ୍ ପ୍ୟାକେଟ୍ ଦେଇ ପଇସା ରଖିବା ଭିତରେ ତାଙ୍କ ମୁହଁକୁ ବାରମ୍ବାର ଚାହୁଁଥିଲା ।

ଜଣେ ସନ୍ନ୍ୟାସୀର ସିଗାରେଟ କିଣିବା ଦୋକାନୀକୁ ଅସ୍ୱଭାବିକ ଲାଗିଲା ନା ସେଇ ସନ୍ନ୍ୟାସୀର ବେଶ ଭିତରୁ ସିଏ ଅବନୀଙ୍କୁ ଆବିଷ୍କାର କରିବାର ଉଦ୍ୟମ କରୁଥିଲା ,



Digitized by srujanika@gmail.com

ଏକଥା ଠିକ୍ ରୂପେ ବୁଝି ପାରିବା ଅବନୀଙ୍କ ପକ୍ଷେ ସମ୍ଭବ ନଥିଲା । ସେ ଦୋକାନ ଛାଡି ଶୀଘ୍ର ପଳାଇ ଆସିଲେ ଅବନୀ ।

ରାତି ସାଢେ ଏଗାର । ତିଥି କୃଷ୍ଣପକ୍ଷ ନବମୀ । ରାସ୍ତା ଆଲୁଅକୁ ଛାଡି ଅନ୍ୟ ସବୁ ପାଖ ପଡିଶାଘରର ଆଲୁଅ ଲିଭିଛି । ଝରକା କବାଟ ବନ୍ଦ୍ ଅଛି । ସମସ୍ତେ ନିଦ ଯାଇଛନ୍ତି । କେବଳ ଅବନୀଙ୍କ ଡ୍ରଇଁରୁମ୍‌ର ଝରକା ଖୋଲାଅଛି । ତା ଭିତରେ ଆଲୁଅ ଜଳୁଛି । ଝରକାଠୁ କିଛି ଦୂରରେ ଠିଆ ହୋଇ ଝରକା ଭିତର ଦେଇ ଘର ଭିତରର ଦୃଶ୍ୟ ଦେଖିଲେ ଅବନୀ । ସୁଜାତା ଧଳା ଶାଢି ପିନ୍ଧି ବିଶ୍ରୀ ଦିଶୁଚନ୍ତି । ତାଙ୍କ ମୁହଁ ଶୁଖିଯାଇଛି । ଗାଲରେ ହାତ ଦେଇ ସୋଫା ଚେୟାରରେ ବସିଛନ୍ତି । ଦୁଇ ପୁଅ ଓ ଦୁଇ ବୋହୂ ଏଠି ସେଠି ଠିଆ ହୋଇଛନ୍ତି । କାହାରି ମୁହଁରେ କଥା ନାହିଁ ।

କିଛି ସମୟ ପରେ ବଡ଼ପୁଅ ସୁତନୁ କହିଲା- ବାପା ଥିଲାବେଳେ ଯାହା ଯେମିତି ଚାଲିଥିଲା ଆଉ ସେମିତି ଚାଲି ପାରିବ ନାହିଁ । ତୁ ଆଉ ବାପା ମନ ଦୁଃଖ କରିବ ବୋଲି ଆମେ କିଛି କହୁ ନଥିଲୁ । ଏମିତି ଏକାଠି ରହିବା ମୋ ପକ୍ଷେ ଆଉ ସମ୍ଭବ ନୁହଁ। ଏମିତି ଏକାଠି ରହିବାରେ ସ୍ୱାଧୀନତା କି ସ୍ୱଚ୍ଛନ୍ଦତା ରହେ ନାହିଁ । ଆମ ପରି ପୂର୍ଣ୍ଣ ବୟସର ମଣିଷମାନଙ୍କୁ ଆମ ଇଚ୍ଛା ବିରୁଦ୍ଧରେ ଏମିତି ଗୋଟେ ଅପ୍ରଶସ୍ତ କୁମ୍ଭ ଭିତରେ ମାଡିମୁଡି , ଚାକିଚୁକି ଭର୍ତ୍ତି କଲେ ଆମର ମାନସିକ, ଚାରିତ୍ରିକ, ଶାରୀରିକ କିମ୍ବା ଆର୍ଥିକ କୌଣସି କ୍ଷେତ୍ରରେ ବିକାଶ ଘଟିବ ନାହିଁ । ଆମେ ଅର୍ଥାତ୍ ମୁଁ ଆଉ ସୁବ୍ରତ ଅଲଗା ଅଲଗା ରହିବାକୁ ଚାହୁଁ ।

ସୁବ୍ରତ ମଧ୍ୟ ବଡଭାଇର କଥାକୁ ସମର୍ଥନ କରି କହିଲା – ହଁ, ବୋଉ ! ତୁ ଜାଣିଚୁ ଗଛଗୁଡିକୁ ଚାରା ସ୍ଥାନରେ ବେଶିଦିନ ରଖିଲେ ସେମାନେ ପର୍ଯ୍ୟାପ୍ତ ଜଳ, ବାୟୁ କି ଆଲୋକ ତ ପାଆନ୍ତି ନାହିଁ, ସେମାନେ ଠିଆ ହୋଇଥିବା ଭୂମି ତାଙ୍କ ଅବସ୍ଥାନ ପାଇଁ ଅକୁଳାନ ହୁଏ । ଯଥା ଶୀଘ୍ର ଚାରାମାନଙ୍କୁ ପରସ୍ପରଠାରୁ ନିରାପଦ ଦୂରତାକୁ ଉଠାଇ ନ ନେଲେ ସେମାନେ ପୂର୍ଣ୍ଣତା ପାଇବେ ନାହିଁ କି ସ୍ୱାଭାବିକ ଭାବେ ବଢିବାର ସୁବିଧା ସୁଯୋଗ ପାଇବେ ନାହିଁ ।

ସୁଜାତା ମୁହଁ ଉଠାଇ ଦୁଇ ପୁଅ ଓ ଦୁଇ ବୋହୂଙ୍କ ମୁହଁକୁ ଚାହିଁଲେ । ସମସ୍ତଙ୍କ ମୁହଁରେ ବନ୍ଧନମୁକ୍ତ ହେବାର ଉତ୍ସୁକତା । ସୁଜାତା ବହୁକଷ୍ଟରେ ମୁହଁ ଖୋଲିଲେ – ଏ କଥାଟା ତୁମ ବାପା ଥିଲାବେଳେ ତୁମେମାନେ କହି ପାରିଥାନ୍ତ । ସିଏ ଚାଲିଯିବା ପରେ ମୋର କିଛି କରିବାର କ୍ଷମତା ନଥିବା କଥା ତୁମେ ଜାଣିଚ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଏତିକି କହି ସୁଜାତା ଚୁପ୍ ରହିଲେ । ତାଙ୍କ ଭିତରେ ଅସୁମାରି ଦୁଃଖ, ଅଭିମାନର ହଇଚଇ ସୃଷ୍ଟି ହୋଇଥିବା ତାଙ୍କ ମୁହଁର ମୁଦ୍ରାରୁ ବାରି ହୋଇ ପଡୁଥିଲା । ସେ ଅନେକ କିଛି କହିବାକୁ ଚାହୁଁଥିଲେ ମଧ୍ୟ କିଛି କହିବାକୁ ସମର୍ଥ ହେଲେ ନାହିଁ ।

ସୁତନୁ କହିଲା- ବାପା ଖୁବ୍ ପଜେସିଭ ଥିଲେ । ସିଏ ତାଙ୍କ ଘର ଓ ଘରର ଟିଭି, ଆଲମାରି , ଫ୍ରିଜ, ସୋଫାସେଟ୍, ଖଟ ଓ ଅନ୍ୟାନ୍ୟ ପଦାର୍ଥ ପରି ତାଙ୍କ ସ୍ତ୍ରୀ, ପୁଅ, ଝିଅ ଓ ବୋହୂମାନଙ୍କ ଉପରେ ନିଜର କର୍ତ୍ତୃତ୍ୱ ଜାହିର କରୁଥିଲେ । ସେ ଭାବୁଥିଲେ ଏସବୁକୁ ସେ ଅର୍ଜିଛନ୍ତି ଅବା ସୃଜିଛନ୍ତି । ଏସବୁରେ ତାଙ୍କର ଅଖଣ୍ଡ ଅଧିକାର ଆଉ କର୍ତ୍ତୃତ ଆଜୀବନ ଜାରି ରହିବ । କେହି ତାଙ୍କ ହାତ ମୁଠାରୁ କେବେ ଯେମିତି ଖସି ନ ଯାଆନ୍ତି । ସମସ୍ତଙ୍କୁ ସବୁମନ୍ତେ ସେ ଜାବୁଡି ଧରିଥିଲେ । ବିଭିନ୍ନ ଅଠାବୋଳି ତାଙ୍କର ସେ ବନ୍ଧନକୁ ସାରା ଜୀବନ ସୁଦୃଢ଼ କରୁଥିଲେ । କିନ୍ତୁ ଆଉ ନୁହଁ । ଢେର ହୋଇଗଲା । ଆମେ ସେ ବନ୍ଧନ ଭିତରେ ଥାଇ ଅଣନିଃଶ୍ୱାସୀ ହୋଇ ଗଲୁଣି । ଆମେ ଆମର ସ୍ୱତନ୍ତ୍ରତା, ସ୍ୱଚ୍ଛନ୍ଦତା ଆଉ ସ୍ୱାଧୀନତା ଚାହୁଁ ।

ଝରକା ସେପଟେ ଠିଆ ହୋଇଥିବା ଅବନୀଙ୍କ ଛାତି ଭିତର କମ୍ପି ଉଠିଲା । ତାଙ୍କ ପରିବାର ପ୍ରତି ଥିବା ତାଙ୍କର ଏତେ ଦିନର ଧାରଣା ବଦଳି ବଦଳି ଯାଉଛି । ଏତେ ବର୍ଷର ସାଂସାରିକ ଜୀବନରେ ଏମିତି ଗୋଟେ ଅପ୍ରିତିକର ସତ୍ୟର ସେ ସାମନା କରି ନ ଥିଲେ । ବାପାର ଅଧିକାର ଯେ ତାର ସନ୍ତାନମାନଙ୍କର ସ୍ୱାଧୀନତା, ସ୍ୱଚ୍ଛନ୍ଦତା କ୍ଷୁର୍ଣ୍ଣକରେ ଏକଥା ସେ ଏବେ ଜାଣିଲେ । ମଣିଷର ସ୍ୱାଧୀନତା, ସ୍ୱଚ୍ଛନ୍ଦତା ଯେ ତା ବାପାଙ୍କ ସ୍ନେହ, ଶ୍ରଦ୍ଧା, ଆଶୀର୍ବାଦ ଓ ଅଧିକାରଠୁ ବଡ଼ ଏମିତି ଗୋଟେ ସତ୍ୟକୁ କୌଣସି ଜୀବିତ ବାପା ହୁଏତ କେବେ ବି ଅନୁଭବ କରିବାର ଅବକାଶ ପାଇବ ନାହିଁ ।

ନିଜ ଛାତିର କମ୍ପନକୁ ଯଥା ସମ୍ଭବ ଛାତି ଭିତରେ ମାଡିବସି ପରବର୍ତ୍ତୀ ଦୃଶ୍ୟକୁ ଅପେକ୍ଷା କଲେ ଅବନୀ ।

ସୁବ୍ରତ ପ୍ରସ୍ତାବ ଦେଲା- ଏ ଘର ଆମ ପାଇଁ ବାପା ତିଆରି କରିଥିଲେ । ସେ ହୁଏତ ଆଶା କରିଥିଲେ ଆମେ ସାରା ଜୀବନ ବାପାଙ୍କ ତିଆରି ଘରେ ଏକାଠି ରହିବୁ । କିନ୍ତୁ ଆମ ସୁବିଧା ଦୃଷ୍ଟିରୁ ଏଠି ଦୁଇ ଭାଇ ଭିତରୁ ଯିଏ ହେଲେ ଜଣେ ରହିବ । ଆଉ ଜଣେ ଅନ୍ୟଠି ଜାଗା କିଣି ଘର କରି ରହିବା ଆମର ଇଚ୍ଛା । ଭାଇ ବାପାଙ୍କର ବଡ ପୁଅ । ସିଏ ଏ ଘରେ ତାଙ୍କ ଛୁଆ ପିଲା ଧରି ରୁହନ୍ତୁ । ମୁଁ ଅନ୍ୟଠି ଘର କରିବି । ଏ ବିଷୟ ଆମେ ଦୁଇ ଭାଇ ବସି ସ୍ଥିର କରିଛୁ । ବାପାଙ୍କ ବସ୍ ଦୁର୍ଘଟଣାରୁ ମିଳିଥିବା ଦୁଇ ଲକ୍ଷ



Digitized by srujanika@gmail.com

ଟଙ୍କା, ପେନ୍‌ସନ୍, ଗ୍ରାଚ୍ୟୁଇଟି, କମ୍ୟୁଟେସନ ଅଫ ପେନସନ୍ ଆଉ ଜି.ପି.ଏଫ୍ ବାବଦକୁ ଯାହା ମିଳିବ ମୁଁ ସେତକ ନେଇ ନୂଆଘର ତିଆରି କରିବି ।

ଅବନୀଙ୍କ ଛାତି ଭିତର ପବନ ଟହଲିଗଲା । ଏତେ ବର୍ଷ ଚାକିରି କରି ସିଏ ଯେଉଁ ପେନ୍‌ସନ୍ ଗ୍ରାଚ୍ୟୁଇଟି ଇତ୍ୟାଦି ଅର୍ଜିଥିଲେ ଏବଂ ତାଙ୍କ ମିଛ ମୃତ୍ୟୁ ବାବଦକୁ ତାଙ୍କ ପରିବାରକୁ ଯେଉଁ ଟଙ୍କା ମିଳିବ ତାକୁ ଏମାନେ ଏମିତି ଖର୍ଚ୍ଚ କରିଦେବେ । ଗୋଟେ ଘର ଅଛି ଯେଉଁଥିରେ ଦୁଇ ଭାଇ ସ୍ୱଚ୍ଛନ୍ଦରେ ଚଳି ପାରିବାର ସିଏ ସମସ୍ତ ସୁବିଧା, ବ୍ୟବସ୍ଥା କରିଦେଇ ଯାଇଛନ୍ତି । ତଥାପି ଆଉ ଗୋଟେ ଘର କରି ଅଯଥା ଖର୍ଚ୍ଚ କରିବେ ।

ସୁଜାତାଙ୍କ ଉତ୍ତରକୁ ଅପେକ୍ଷା କଲେ ଅବନୀ । ସୁଜାତା କଦାପି ଏସବୁ ଏମିତି ବରବାଦ ହେବାକୁ ଦେବେ ନାହିଁ । ସେ ଜାଣନ୍ତି ତାଙ୍କ ସ୍ୱାମୀ ଥିଲେ ଏସବୁ କଦାପି କରାଇ ଦେଇ ନଥାନ୍ତେ ।

ସୁଜାତା ପ୍ରଥମେ ବଡପୁଅ ସୁତନୁ ମୁହଁକୁ ଚାହିଁଲେ ।

ସୁତନୁ କହିଲା - ବାପା ନାହାଁନ୍ତି, ତେଣୁ ତୋର ମତାମତ ଦରକାର । କାରଣ ଏସବୁ ଟଙ୍କା ସରକାରରୁ ପାଇବାକୁ ହକଦାର ତୁ । ତୁ ବାପାଙ୍କ ପ୍ରଥମ ଉତ୍ତରାଧିକାରୀ ।

ସୁଜାତା କିଛି ସମୟ ନିରବ ରହିଲେ । ହୁଏତ ପୁଅମାନଙ୍କ ବିରୁଦ୍ଧରେ ଠିଆ ହେବା ପାଇଁ ଶକ୍ତି ସଂଚୟ କଲେ । କ୍ରୋଧ ଆଉ ଅଭିମାନରେ ତାଙ୍କ ନାକ ପୁଡା ଫୁଲି ଫୁଲି ଉଠିଲା ।

ଅବନୀ ଆଶଙ୍କା କଲେ ହୁଏ ତ ସୁଜତା ସୁତନୁର ଗାଲରେ ଗୋଟେ ଶକ୍ତ ଚାପୁଡା ଦେଇ କହିବେ - ନା, ମୁଁ ଏମିତି ହେବାକୁ ଦେବି ନାହିଁ । ତୁମ ବାପାଙ୍କ ଇଛା ଥିଲା ତୁମେ ଦୁହେଁ ସବୁଦିନେ ଏଇ ଘରେ ସାଙ୍ଗ ହୋଇ ରହିବ । ବାପାଙ୍କର ଗୋଟିଏ ତୈଳଚିତ୍ର ଡ୍ରଇଂରୁମ୍‌ରେ ଟାଙ୍ଗି ପ୍ରତିଦିନ ସେଥିରେ ଫୁଲଚନ୍ଦନ ଦେଇ ପୂଜା କରିବ । ତାଙ୍କୁ କୃତଜ୍ଞତା ଜଣାଇବ ଆଉ ତାଙ୍କ ଆଦର୍ଶରେ ନିଜକୁ ଗଢ଼ିବ ।

କିନ୍ତୁ, ନା, ସୁଜାତା ସେମିତି କିଛି କଲେ ନାହିଁ । ବରଂ ଆଖିରୁ ଲୁହ ପୋଛି ଖୁବ୍ ଅସହାୟ ଭାବେ କହିଲେ - ତୁମ ଦୁଇ ଜଣଙ୍କ ଇଛା ଯାହା ମୁଁ ତାକୁ ବିରୋଧ କରିବି ନାହିଁ । ଜୀବନରେ ମୁଁ ନିଜେ କେବେ କୌଣସି ନିଷ୍ପତ୍ତି ନେଇ ନାହିଁ । ତୁମ ବାପା ଘରକଥା ଆଉ ବାହାରକଥା ସବୁଥିର ନିଷ୍ପତ୍ତି ନେଉଥିଲେ । ସିଏ ନାହାଁନ୍ତି । ତୁମ ଦୁଇ ଭାଇଙ୍କୁ ଯାହା ସୁବିଧା ହେଉଛି, ଯେଉଁଥିରେ ତୁମେ ଦୁଇ ଭାଇ ଏକମତ, ସେଇଆ କର । ମତେ ଯୋଉଠି କହିବ ମୁଁ ଦସ୍ତଖତ କରିଦେବି ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଝରକା ବାହାରେ ଠିଆ ହୋଇଥିବା ଅବନୀଙ୍କୁ ଲାଗିଲା ସତେ ଯେମିତି ତାଙ୍କ ଛାତିର ପିଞ୍ଜରା ହାଡକୁ କିଏ ଶକ୍ତ ଲୁହା ହାତୁଡିରେ ଢୋଢୋ ପିଟି ଚାଲିଛି । ସେ ଭାରସାମ୍ୟ ହରାଇ ଠିଆ ହୋଇଥିବା ସ୍ଥାନରେ କଟାଗଛ ପରି ପଡିଗଲେ ।

ବାହାରେ କ'ଣ ଗୋଟେ ଶବ୍ଦ ହେଲା ବୋଲି ଦୁଇ ଭାଇ ହଠାତ୍ କବାଟ ଖୋଲି ବାହାରକୁ ବାହାରି ଆସିଲେ । ସେମାନେ ଦେଖିଲେ ଗୋଟେ ମଣିଷ ଅନ୍ଧାରରେ ଧାଇଁ ଧାଇଁ ପଳାଇ ଯାଉଛି । ଘରୁ ଟର୍ଚ୍ଚ ଆଣି ଖୋଜାଖୋଜି କଲେ, କିନ୍ତୁ କାହାରିକୁ ପାଇଲେ ନାହିଁ ।

ଅବନୀ ସେଇ ଅନ୍ଧାରରେ ଧାଇଁ ଧାଇଁ ଆସି ଭୁବନେଶ୍ୱର ରେଳଷ୍ଟେସନ ପାଖରେ ଠିଆ ହେଲେ । ମୃତ୍ୟୁପର ଜୀବନର ଦୃଶ୍ୟ ଏତେ ଭୟଙ୍କର ! ଏଇଥିପାଇଁ ମଣିଷର ମୃତ୍ୟୁ ପରେ ତା' ପରିବାରର ଚିତ୍ର ଦେଖିବାର ସୁଯୋଗ ତାକୁ ଦିଆଯାଏ ନାହିଁ । ନିଜେ ବଞ୍ଚି ଥାଉ ଥାଉ ନିଜକୁ ମୃତ ବୋଲି ଘୋଷଣା କରାଇ ସିଏ ମହାବିପଦରେ ପଡିଯାଇଛନ୍ତି । ଏବେ ନିଜେ ଇଚ୍ଛା କଲେ ମଧ ତାଙ୍କ ଘରକୁ ଆଉ ଫେରି ଯାଇ ପାରିବେ ନାହିଁ , କାରଣ ତାଙ୍କ ଦୁଇ ପୁଅ ଏଥିରେ କଦାପି ଖୁସି ହେବେନାହିଁ। ଅବନୀ ନିଜ ଗୋଡ଼ରେ ନିଜେ କୁରାଢ଼ୀ ମାରିଛନ୍ତି। ଅନ୍ୟକୁ ଦୋଷଦେଇ ଲାଭ ନାହିଁ। ଟ୍ରେନ୍‌ରେ କଲିକତା ଫେରି ଅଜ୍ଞାତବାସରେ ଅବଶିଷ୍ଟ ଜୀବନ କଟାଇଦେବା ବ୍ୟତୀତ ତାଙ୍କ ପାଖରେ ଅନ୍ୟ କିଛି ବିକଳ୍ପ ନାହିଁ ।

କଲିକତାକୁ ଟ୍ରେନ୍ ଟିକେଟ କାଟିବା ପାଇଁ ପକେଟ୍‌ରେ ହାତ ମାରିଲେ । ପର୍ଶରେ ମାତ୍ର ଦୁଇଟି ଦଶ ଟଙ୍କିଆ ନୋଟ । ତାଙ୍କର ଏବେ ଏକମାତ୍ର ସମ୍ବଳ ତାଙ୍କ ବ୍ୟାଙ୍କ ଆକାଉଣ୍ଟରେ ଥିବା ପାଞ୍ଚ ଲକ୍ଷ ପଚାଶ ହଜାର ଟଙ୍କା ।

ଏ.ଟି.ଏମ କାର୍ଡଟି ପର୍ଶରୁ ବାହାର କରି ଷ୍ଟେସନ ବଜାରରେ ଥିବା ଷ୍ଟେଟବ୍ୟାଙ୍କ ଏ.ଟି.ଏମ କାଉଣ୍ଟରକୁ ଗଲେ ଅବନୀ । ଏ.ଟି.ଏମ କାର୍ଡ ଇନସର୍ଟ କରି ହଜାରେ ଟଙ୍କା ଉଠାଇବାକୁ ଚେଷ୍ଟା କଲେ । ଥରେ, ଦୁଇଥର, ତିନିଥର ଏ.ଟି.ଏମ୍ କାର୍ଡକୁ ଏ.ଟି.ଏମ୍ ମେସିନ୍ ରିଜେକ୍ଟ କରିଦେଲା ।

ଅବନୀଙ୍କ ଛାତି ଦୋହଲିଗଲା । ତାଙ୍କ ମୁହଁ ଓ ଦେହରୁ ଝାଳ ବିନ୍ଦୁ ବିନ୍ଦୁ ବାହାରିଲା । ତାଙ୍କ ପୁଅମାନେ ହୁଏତ ବ୍ୟାଙ୍କକୁ ତାଙ୍କ ମୃତ୍ୟୁ ଖବର ଜଣାଇ ତାଙ୍କ ଏ.ଟି.ଏମ୍ କାର୍ଡଟିକୁ ରଦ୍ଦ କରି ଦେଇଛନ୍ତି । ଅବନୀଙ୍କ ମୁଣ୍ଡ ଗୋଳମାଳ ହୋଇଗଲା। ଅବଶିଷ୍ଟ ଜୀବନ ସିଏ କେମିତି ବଞ୍ଚିବେ ? ତାଙ୍କୁ ଚାରିଆଡ଼ ଅନ୍ଧାର ଦିଶିଲା।



ଆନଂଦ ଚଂଦ୍ର ପଢ଼ି

Digitized by srujanika@gmail.com

# ଶିଳାମୂର୍ତ୍ତି

ଦେବେନ୍ଦ୍ର ଡ୍ରଇଂରୁମ୍‌ରେ ପଶୁ ପଶୁ ଦେଖିଲେ ତାଙ୍କ ସ୍ତ୍ରୀ ସୁପ୍ରିୟା ପାଞ୍ଚଶହ ଟଙ୍କିଆ ନୋଟ୍ କେତେ ଖଣ୍ଡ ସୋଫା ଚେୟାରରେ ବସିଥିବା ମଧ୍ୟ ବୟସର ଲୋକଟି ହାତକୁ ବଢାଇ ଦେଲେ । ଲୋକଟି ହସ ହସ ମୁହଁରେ ନୋଟ୍‌ତକ ପକେଟ୍‌ରେ ପୂରାଇ ସୁପ୍ରିୟାଙ୍କୁ ନମସ୍କାରଟିଏ ପକାଇ ଲୁନା ଷ୍ଟାର୍ଟକରି ଚାଲିଗଲା । ଏ ଲୋକ କିଏ ଓ ସୁପ୍ରିୟା କାହିଁକି ୟା'କୁ ଏତେଗୁଡେ ଟଙ୍କା ଦେଲେ ତାହା ଦେବେନ୍ଦ୍ର ଜାଣି ପାରିଲେ ନାହିଁ । ସୁପ୍ରିୟାଙ୍କୁ ଏକଥା ଏତେ ହଠାତ୍ ପଚାରିବା ହୁଏତ ଠିକ୍ ହେବ ନାହିଁ । ସୁପ୍ରିୟା ନିଜ ତରଫରୁ ନ କହିବା ପର୍ଯ୍ୟନ୍ତ ଦେବେନ୍ଦ୍ର ପଚାରିବେ ନାହିଁ ବୋଲି ସ୍ଥିର କଲେ ଓ ନିଜ ଉତ୍‌କଣ୍ଠାକୁ ନିଜ ଭିତରେ ଚାପି ରଖିଲେ ।

ଦେବେନ୍ଦ୍ର ଅଭିନୟ କଲେ ଯେମିତି ସିଏ ଲୋକଟିକୁ ଦେଖିଛନ୍ତି, କିନ୍ତୁ ସିଏ ଟଙ୍କା ନେବା କିମ୍ବା ସୁପ୍ରିୟା ତାକୁ ଟଙ୍କା ଦେବା ଏସବୁ କିଛି ଦେଖି ନାହାଁନ୍ତି । ବୟସ ବଢିଲେ ସ୍ତ୍ରୀଲୋକମାନେ ନିଜ ସ୍ୱାମୀ ପାଖରେ ମଧ୍ୟ ନିଜର ମାନ, ସମ୍ମାନ ଓ ସ୍ୱାଭିମାନର ହିସାବ ଖୋଜନ୍ତି । ତେଣୁ ତାଙ୍କ ମୁଡ୍ ଦେଖି ସୁପ୍ରିୟାଙ୍କୁ ଏକଥା ପଚରା ଯାଇପାରେ ଭାବି ଦେବେନ୍ଦ୍ର ଚୁପ୍ ରହିଲେ ।

ସେ ଲୋକ ଖାଇଥିବା ଚା'ବିସ୍କୁଟର ଅଇଁଠା କପ୍‌ପ୍ଲେଟ ଉଠାଇ ନେଇ ହାତ ଧୋଇହୋଇ ସୁପ୍ରିୟା ଫେରି ଆସିଲେ ଡ୍ରଇଂରୁମ୍‌କୁ । ଦେବେନ୍ଦ୍ର ଚୁପ୍‌ଚାପ୍ ବସିଛନ୍ତି । ସୁପ୍ରିୟା ଭାବିଲେ ସିଏ ତାଙ୍କ ଉପରେ ରାଗିଚନ୍ତି ବୋଧହୁଏ ।

ଟିପୟ ଉପରେ ଥୁଆ ହୋଇଥିବା ଲଫାପାଟି ଖୋଲି ତା ଭିତରୁ ଗୋଟିଏ ସୁନ୍ଦରୀ ଝିଅର ଫଟୋ ବାହାର କରି ସୁପ୍ରିୟା ସ୍ୱାମୀଙ୍କ ହାତକୁ ବଢାଇ ଦେଇ କହିଲେ - ଦେଖିଲ, ଏ ଝିଅଟି ତୁମର ପସନ୍ଦ ହେଉଛି ନା ନାହିଁ ?

ଦେବେନ୍ଦ୍ର ଥଟା କଲେ - ମୁଁ କଣ ଏ ବୁଢା ବୟସରେ ଆଉ ଥରେ ବାହାହେବି ନା କ'ଣ ? ତମେ ଜାଣିଚ ମୁଁ ବର୍ଷେ ହେଲା ସରକାରୀ ଚାକିରିରୁ ଅବସର ନେଲିଣି । ମୁଁ ଝିଅ ପସନ୍ଦ କରି କ'ଣ କରିବି ?

- ତୁମେ ଆଗେ କୁହ ଝିଅଟି ସୁନ୍ଦର ନା ନାହିଁ ?

ଆନଂଦ ଚଂଦ୍ର ପହି

Digitized by srujanika@gmail.com

- ମୁଁ ତ ପ୍ରଥମେ ଭାବିଲି ଏ ଫଟୋଟି କୌଣସି ଆଲବମ୍ କିମ୍ବା ସିରିଆଲ୍‌ର ସୁନ୍ଦରୀ ନାୟିକାର ବୋଲି । ଏତେ ସୁନ୍ଦର ଝିଅର ଫଟୋ ତୁମେ କେଉଁଠୁ ପାଇଲ ? ତୁମ ପୁତୁରା ମାନଙ୍କ ପାଇଁ ନା ତୁମ ଭାଇଙ୍କ ପୁଅ ମଳୟ ପାଇଁ ୟା'ର ପ୍ରସ୍ତାବ ପଡିଚି ? ସେମାନେ ତ କେହି ଏ ଯାଏ ଚାକିରି କରି ନାହାଁନ୍ତି ।

ସୁପ୍ରିୟା ହସି ହସି କହିଲେ - ନା । ଆମ ଅମିତ ପାଇଁ ଏ ପ୍ରସ୍ତାବ ଆସିଚି । ରିଟାୟାର୍ଡ ଚିପ୍ ଇଂଜିନିୟର ଦେବେନ୍ଦ୍ର ଚୌଧୁରୀଙ୍କ ଏକମାତ୍ର ପୁଅ ଅମିତ୍ । ମାନେ ତମ ପୁଅ ଅମିତ ପାଇଁ । କ'ଣ ମନକୁ ଯାଉଛି ?

ଦେବେନ୍ଦ୍ର ରାଗିଯାଇ ପ୍ରଶ୍ନ କଲେ- ତମ ମୁଣ୍ଡ କ'ଣ ଖରାପ ହେଲାଣି ? ଅମିତକୁ ତମେ ବାହା କରିବ ? ତାକୁ ୩୦ ବର୍ଷ ହୋଇଥିଲେ ବି ସିଏ ଏବେ ମଧ୍ୟ ଶିଶୁପରି ବ୍ୟବହାର କରୁଚି । ନିଜ ନିତ୍ୟକର୍ମ କରି ପାରୁନାହିଁ । ତାର ଶରୀରଟା ଯୁବକ ହୋଇଚି କିନ୍ତୁ ତା ମନ, ବୁଦ୍ଧି, ବିବେକ, ସବୁ ଶିଶୁ ଅବସ୍ଥାରେ ରହି ଯାଇଚି । ସିଏ ମାନସିକ ଅନଗ୍ରସର । ବିବାହ କ'ଣ ସିଏ ଜାଣି ନାହିଁ । କୌଣସି ଝିଅର ବାପା ତାକୁ ଝିଅ ଦେବାକୁ ଉଚିତ ମନେ କରିବେ ନାହିଁ । ଆମେ ସବୁକଥା ଜାଣି କେମିତି ଏତେ ସୁନ୍ଦର ଝିଅଟିର ଭବିଷ୍ୟତ ଜୀବନ ନଷ୍ଟ କରିବା ?

ସୁପ୍ରିୟା ଯୁକ୍ତି କଲେ - ଡାକ୍ତର ତ କହିଲେ ଅମିତ୍‌ର କିଛି ରୋଗ ନାହିଁ । ମୁଁ ଭାବୁଛି ବାହାଘର କରିଦେଲେ ସବୁ ଠିକ୍ ହୋଇଯିବ । ଆଉ ଆମର ଯେତେ ସଂପତ୍ତି ଅଛି ସେତକ ସିଏ ବସି ଖାଇଲେବି ସରିବ ନାହିଁ । ତା'ନାଆଁରେ ଯେତେ ଟଙ୍କା ବ୍ୟାଙ୍କରେ ଜମା ଅଛି ତାର ସୁଧରେ ସିଏ ତା' ଜୀବନଟା ଆରାମରେ କାଟିଦେଇ ପାରିବ ।

- ନା, ସୁପ୍ରିୟା ! ତମେ ସେମିତି ଭାବିବା ଠିକ୍ ନୁହଁ । ଏତେ ସୁନ୍ଦର ଝିଅର ଭାଗ୍ୟକୁ ନେଇ ଏମିତି ଖେଳିଲେ ଭଗବାନ ଆମକୁ କ୍ଷମା ଦେବେ ନାହିଁ ।

ବହୁ ଯୁକ୍ତିତର୍କ ପରେ ସ୍ଥିର ହେଲା, ସେମାନେ ସେ ଝିଅ ଓ ତାର ବାପା,ମାଆଙ୍କୁ ଅମିତ୍‌ର ମାନସିକ ଅନଗ୍ରସରତା କଥା ଖୋଲି କହିଦେବେ । ତଥାପି ସେମାନେ ଯଦି ରାଜିହୁଅନ୍ତି, ତାହେଲେ ବାହାଘର ହେବ ।

ଦେବେନ୍ଦ୍ର ନିଶ୍ଚିତ ଥିଲେ ଯେ ଅମିତର ଏ ଅବସ୍ଥା ବିଷୟରେ ଜାଣିଲେ ଝିଅ କିମ୍ବା ଝିଅର ବାପା, ମାଆ କେହି ରାଜିହେବେ ନାହିଁ । ଅତଏବ ଏ ବାହାଘର ହେବ ନାହିଁ । କିନ୍ତୁ ଦେବେନ୍ଦ୍ରଙ୍କୁ ବିସ୍ମିତ କରି ଝିଅ ଓ ତାର ପରିବାର ସମସ୍ତେ ଏ ବିବାହ ପ୍ରସ୍ତାବରେ ସମ୍ମତ ହେଲେ ।

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ଦେବେନ୍ଦ୍ର ଅନୁସନ୍ଧାନ କରି ଜାଣିଲେ ଯେ ଝିଅର ଚାରି ଭଉଣୀ ଥିଲେ । ସେମାନେ ସମସ୍ତେ ସୁନ୍ଦରୀ କିନ୍ତୁ ସମସ୍ତେ ବାହା ହୋଇଛନ୍ତି ଆଉ ଚାରି ଜଣ ଶାରୀରୀକ ବିକଳାଙ୍ଗ ଧନୀ ଯୁବକଙ୍କୁ । କାରଣ ଝିଅର ବାପା ଅତି ଗରିବ । ଭଲ ବରକୁ ବିବାହ ଦେବା ପାଇଁ ତାଙ୍କର ଆର୍ଥିକ ସ୍ୱଚ୍ଛଳତା ନାହିଁ ।

ବିବାହର ସମସ୍ତ ଖର୍ଚ୍ଚ ବହନ କଲେ ଦେବେନ୍ଦ୍ର । ବିଭାଘର ସରିଗଲା । ବୋହୂ ହୋଇ ଯେଉଁ ସୁନ୍ଦରୀ ଝିଅଟି ତାଙ୍କ ଘରକୁ ଆସିଲା ତାର ନାଆଁ ଥିଲା ଚନ୍ଦନା । ତାର ରୂପ, ଗୁଣ, ବ୍ୟବହାର, କାମ ଘରର ପରିବେଶକୁ ଚନ୍ଦନ ପରି ମହ ମହ ମହକାଇ ଦେଲା ।

ଅମିତ ପରି ଜଣେ ମାନସିକ ଅନଗ୍ରସର ମଣିଷକୁ ବିବାହ କରିଥଲେ ମଧ୍ୟ ଚନ୍ଦନା ମନରେ ସାମାନ୍ୟ ଟିକେ ବି ଦୁଃଖ ନ ଥିଲା । ସୁପ୍ରିୟା ତାକୁ ସବୁକଥା ବୁଝାଇ ଦେଇଛନ୍ତି । ଚନ୍ଦନାକୁ ନିଜ ଭାଗ୍ୟ ଓ ଭବିଷ୍ୟତ ନିଜେ ଗଢ଼ିବାକୁ ପଡ଼ିବ ।

ବିଭାଘର ପରଦିନଠୁ ଚନ୍ଦନା ନିଃସଂକୋଚରେ ଅମିତର ସବୁକାମ ନିଜେ କରୁଛି । ଦାନ୍ତ ଘସାଇବା, ପାଇଖାନାକୁ ନେବା, ଗାଧୋଇଦେବା, ମୁଣ୍ଡ କୁଣ୍ଡାଇଦେବା, ପୋଷାକ ପିନ୍ଧାଇବା, ଖୋଇଦେବା ସବୁ ଚନ୍ଦନା ନିଜ ହାତରେ କରୁଚି । ସତେ ଯେମିତି ଚନ୍ଦନା ଅମିତର ସ୍ତ୍ରୀ ନୁହଁ ମାଆ ।

ରୋଷେଇ କରିବା, ଶାଶୁ ଶ୍ୱଶୁରଙ୍କ ସେବା କରିବା, ବନ୍ଧୁବାନ୍ଧବ ଓ ସାଇପଡିଶାଙ୍କ କଥା ବୁଝିବା, ସବୁ କାମ ବିଚକ୍ଷଣ ଭାବେ କରି ସମସ୍ତଙ୍କୁ ଖୁସି କରି ପାରିଛି ଚନ୍ଦନା । ନିଜେ ଖୁବ୍ ଖୁସି ଖୁସି ଦିଶୁଚି ।

ସାଇ, ପଡିଶାର ଝିଅ, ବୋହୂମାନେ ଚନ୍ଦନାକୁ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ଚନ୍ଦନା କେବେ ମୁହଁ ଶୁଖାଇ ନାହିଁ କି କୌଣସି କାମକୁ ତାର ଅନାଗ୍ରହ ନାହିଁ । ତାର ସ୍ୱାମୀ ଯେ ଜଣେ ଅସଂପୂର୍ଣ୍ଣ ମଣିଷ ଏକଥା ନେଇ କେବେ ତା ମନରେ ଦୁଃଖର ଛାଇ ପଡି ନାହିଁ ।

ଅମିତର ବାହାଘର ହେବାର ଚାରିମାସ ପର୍ଯ୍ୟନ୍ତ ଅମିତ ରାତିରେ ତା ମାଆଙ୍କ କୋଳରେ ଶୋଉଥିଲା । ଅନେକ ଥର ସୁପ୍ରିୟା ଜୋର ଜବରଦସ୍ତ ଅମିତକୁ ଚନ୍ଦନା ବଖରାରେ ଛାଡିବାର ଚେଷ୍ଟା କରିଛନ୍ତି । କିନ୍ତୁ ଅମିତ ପାଟି ତୁଣ୍ଡ କରି ସେ ବଖରା ଛାଡି ମାଆଙ୍କ ପାଖକୁ ଫେରି ଆସିଛି । ସୁପ୍ରିୟା ଓ ଦେବେନ୍ଦ୍ରଙ୍କ ଧମକ ଚମକ ମଧ ଅମିତ ଉପରେ କିଛି ପ୍ରଭାବ ପକାଇ ପାରି ନାହିଁ ।

ଏମିତି ପରିସ୍ଥିତିରେ ଚନ୍ଦନା ଅଧିକ ଲଜ୍ଜାକର ଅବସ୍ଥାରେ ପଡିଲା । ଦିନେ ସିଏ



Digitized by srujanika@gmail.com

ମୁହଁ ଖୋଲି ସୁପ୍ରିୟାଙ୍କୁ କହିଲା- ବୋଉ ! ଏ ସବୁର କିଛି ଦରକାର ନାହିଁ । ପଡିଶା ଲୋକମାନେ ଏମିତି ପାଟିତୁଣ୍ଡ ଶୁଣିଲେ ମୁଁ ଆଉ କାହାକୁ ମୁହଁ ଦେଖାଇ ପାରିବି ନାହିଁ । ସିଏ ଆପଣଙ୍କ ପାଖରେ ଶୋଉଛନ୍ତି, ଶୁଅନ୍ତୁ ।

ସେଇ ଦିନଠୁ ସୁପ୍ରିୟା ଓ ଦେବେନ୍ଦ୍ର ଆଉ ସେମିତିଆ ଉଦ୍ୟମରୁ ବିରତ ରହିଲେ । ଚନ୍ଦନା ପୂରା ବର୍ଷଟିଏ ଅମିତର ସବୁକାମ କରିବା ଭିତରେ ଅମିତ ଆଉ ସୁପ୍ରିୟାଙ୍କୁ ଖୋଜିଲା ନାହିଁ । ଅମିତକୁ ଚନ୍ଦନାର ଅଧିକ ନିକଟତର ହେବାର ସୁଯୋଗ ଦେବା ପାଇଁ ସୁପ୍ରିୟା ଓ ଦେବେନ୍ଦ୍ର ଦେଢମାସ ପାଇଁ ତୀର୍ଥ ଦର୍ଶନରେ ଉତ୍ତର ଭାରତ ଚାଲିଗଲେ ।

ଏଇ ସମୟରେ ଅମିତ ଚନ୍ଦନା ପାଖରେ ରାତି ଶୋଇବାକୁ ଆଉ ଆପତ୍ତି କଲା ନାହିଁ । ସୁପ୍ରିୟାଙ୍କ କୋଳରେ ଯେମିତି ଶୋଉଥିଲା ଚନ୍ଦନାଙ୍କ କୋଳରେ ସେମିତି ପୁଅଟିଏ ପରି ଆରାମରେ ନିଦଗଲା ।

ତୀର୍ଥସ୍ଥାନରୁ ମଝିରେ ମଝିରେ ସୁପ୍ରିୟା ଓ ଦେବେନ୍ଦ୍ର ଫୋନ୍ କରି ଚନ୍ଦନାର ଭଲମନ୍ଦ ବୁଝନ୍ତି । ସବୁ ଠିକ୍ ଠାକ୍ ଜାଣି ଖୁସି ହୁଅନ୍ତି । ସେମାନେ ତୀର୍ଥ ଆସିବାଟା ଶୁଭଙ୍କର ହୋଇଛି ।

ସୁପ୍ରିୟା ତୀର୍ଥ ଭ୍ରମଣରୁ ଫେରି ଅମିତକୁ ଲକ୍ଷ୍ୟ କଲେ । ସିଏ ଯେମିତି ଶିଶୁଥିଲା ସେମିତି ଅଛି । ପୁଅଟିଏ ପରି ଚନ୍ଦନା ପାଖରେ ଅଳି କରୁଛି । ଚନ୍ଦନା ଯଶୋଦା ପରି ଅମିତର ସବୁ ଅଳି, ଅଝଟ, ଦୁଷ୍ଟାମି ସହୁଚି । କିନ୍ତୁ ଯା' ଭିତରେ ଗୋଟିଏ ପରିବର୍ତ୍ତନ ସିଏ ଲକ୍ଷ୍ୟ କଲେ । ଏବେ ଅମିତ ତାଙ୍କ ଅପେକ୍ଷା ଚନ୍ଦନା ଉପରେ ଅଧିକ ନିର୍ଭର କରୁଚି । ସୁପ୍ରିୟାଙ୍କ ପାଖରେ ରାତି ଶୋଇବା ଅଭ୍ୟାସ ତାର ଭାଙ୍ଗି ଯାଇଛି । ଏବେ ସିଏ ଚନ୍ଦନା ପାଖରେ ଶୋଉଛି ।

ଦିନେ ସୁପ୍ରିୟା ଚନ୍ଦନାକୁ ପାଖକୁ ଡାକି କହିଲେ - ତୋ ପରି ସୁନ୍ଦର ଆଉ ଗୁଣର ବୋହୂ ପାଇବା ଯେକୌଣସି ଲୋକ ପାଇଁ ଭାଗ୍ୟର କଥା । ଏବେ ତୋ ସ୍ନେହ, ଆଦର, ଯତ୍ନ ଯୋଗୁ ଅମିତ ମୋତେ ଆଉ ଖୋଜୁ ନାହିଁ । ଏତକ ଉନ୍ନତି କିଛି କମ୍ ନୁହଁ ମାଆ । ମୋର ବିଶ୍ୱାସ ଅଛି, ତୁ ଦିନେ ମୋ ପୁଅକୁ ଭଲ କରି ପାରିବୁ । ତାର କିଛି ବି ଶାରୀରିକ ଅକ୍ଷମତା ନାହିଁ । ତାକୁ ଆମେ ଆଉ ଏମିତି ଶିଶୁ ଅବସ୍ଥାରେ ବେଶି ଦିନ ଦେଖିବାକୁ ଚାହୁଁନୁ । ତୁ ଚେଷ୍ଟା କଲେ ତାକୁ ପୂର୍ଣ୍ଣତା ଆଣି ଦେଇ ପାରିବୁ ।

ଚନ୍ଦନା କିଛି ନ କହି ମୁହଁ ତଳକୁ କରି ବସି ରହିଲା । ସୁପ୍ରିୟା ତା' ପିଠିରେ ହାତ ବୁଲାଉ ବୁଲାଉ କହିଲେ - ଆମର ତୋ ଉପରେ ଆସ୍ଥା ଆଉ ଆଶୀର୍ବାଦ ଅଛି ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଜୀବନର ଏ ଆହ୍ୱାନକୁ ତୁ ଗ୍ରହଣ କରିବୁ । ମୁଁ ଜାଣେ ତୁ ପାରିବୁ, ନିଶ୍ଚୟ ପାରିବୁ । ଚନ୍ଦନା ଲାଜଲାଜ ହୋଇ ସେ ସ୍ଥାନ ଛାଡ଼ି ତା' ଶୋଇବା ଘରକୁ ପଶିଗଲା ।

ଆଉ ଦିନେ ସୁପ୍ରିୟା ଦେଖିଲେ ଖବର କାଗଜ ପୃଷ୍ଠାରୁ ଅମିତ ଚିତ୍ର ଦେଖୁଚି । ଖୁସି ହେଉଚି, ହସୁଚି । ସୁପ୍ରିୟା ଅମିତର ମୁହଁକୁ ଚାହିଁଲେ । ଅମିତର ହାତରୁ ଖବରକାଗଜଟି ନେଇଯାଇ ତା' ହାତରେ ଗୋଟିଏ ଦେହଲଗା ସାବୁନ୍ ଦେଇ କହିଲେ - ନେ, ଏଇ ସାବୁନ୍‌ଟା ଚନ୍ଦନାକୁ ଦେଇ ଆସ ।

ଅମିତ ମାଆଙ୍କ କଥା ବୁଝି ନ ପାରି ତାଙ୍କ ମୁହଁକୁ ବଡ଼ ବଡ଼ ଆଖି କାଢି ଚାହିଁଲା ।

ସୁପ୍ରିୟା ଗାଧୁଆଘର ଆଡକୁ ଆଙ୍ଗୁଳି ଦେଖାଇ କହିଲେ - ଚନ୍ଦନା ଗାଧୁଆ ଘର ଭିତରେ ଗାଧୋଉଚି । ନେ, ଏ ସାବୁନଟା ତାକୁ ଦେ । ଏଟା ବାସନା ସାବୁନ । ସିଏ ଏ ସାବୁନ ଲଗାଇ ଗାଧୋଇଲେ ତା'ଦେହ ବାସିବ ।

ଅମିତ ଗାଧୁଆ ଘର ପାଖକୁ ଗଲା । ଗାଧୁଆ ଘର କବାଟ ଭିତରୁ ବନ୍ଦ । ଅମିତ କବାଟକୁ ଗୋଟେ ହାତରେ ପିଟିଲା । ବାରମ୍ବାର ଜୋରରେ ପିଟି ଚାଲିଲା । ସୁପ୍ରିୟା କିଛି ଦୂରରେ ଠିଆ ହୋଇ ଅମିତକୁ ଠାରୁଥାନ୍ତି- ଆହୁରି ଜୋର୍‌ରେ ପିଟ ।

ଚନ୍ଦନା ଗାଧୁଆ ଘର କବାଟ ଖୋଲିଲା । ଚନ୍ଦନା ଦେହରେ ଶାୟା କିମ୍ବା ବ୍ଲାଉଜ ନଥିଲା । ଯୌବନ ଭରା ପଚିଶ ବର୍ଷର ସୁନ୍ଦର ଦେହ । ଧଳାରଙ୍ଗର ଓଦା ଶାଢ଼ିଟା ଚନ୍ଦନାର ଯୌବନ ପୁଷ୍ଟ ଦେହଟାରେ ସ୍ୱଚ୍ଛ ଜରିଟିଏ ପରି ଚାପି ହୋଇ ଆକର୍ଷଣୀୟ ଦିଶୁଥିଲା । ଚନ୍ଦନା ଆଗରେ ଠିଆ ହୋଇଥିଲା ଅମିତ । ତା' ହାତରେ ଦେହଲଗା ସାବୁନ । ହଠାତ ସାବୁନଟା ଅମିତ ହାତରୁ ଝାଂପି ନେଇ ଲାଜ ଲାଜ ହୋଇ ପୁଣି ଥରେ ଗାଧୁଆଘର କବାଟ ଧଡ କରି ବନ୍ଦକଲା ଚନ୍ଦନା ।

ସୁପ୍ରିୟା ଦେଖିଲେ ଅମିତ ସେଇଠି ସେମିତି ଠିଆ ହେଇଚି । ତା' ମୁହଁରେ କିଛି ପ୍ରତିକ୍ରିୟା ନାହିଁ । ସରଳ ଶିଶୁର ନିର୍ମଳତାରେ ତା ମୁହଁ ନିସ୍ତରଙ୍ଗ ଥିଲା ।

ସୁପ୍ରିୟା ଏଥର ବାସ୍ନାତେଲର ଗୋଟେ ଶିଶି ଅମିତର ହାତରେ ଦେଇ କହିଲେ - ଏଇଟାକୁ ବି ଚନ୍ଦନାକୁ ଦେ । ସିଏ ସାବୁନ ଲଗାଇ ସାରି ତେଲ ଲଗାଇବ ।

ଅମିତ ଏଥର ଗାଧୁଆ ଘର କବାଟ ପିଟି ପିଟି ହାଲିଆ ହେଲା ; କିନ୍ତୁ ଚନ୍ଦନା ଆଉ ଗାଧୁଆଘର ଖୋଲିଲା ନାହିଁ ।

ଗାଧୁଆ ସାରି ଭିତରୁ ଶୁଖିଲା ଶାଢ଼ି, ଶାୟା, ବ୍ଲାଉଜ ପିନ୍ଧି ଚନ୍ଦନା ଗାଧୁଆଘରୁ ବାହାରିବା ସମୟରେ ସିଏ ଦେଖିଲା ଅମିତ ହାତରେ ତେଲ ଶିଶି । ତା' ହାତରୁ ତେଲ



Digitized by srujanika@gmail.com

ଶିଶିଟା ନେଇ ଘରେ ଥୋଉ ଥୋଉ ଚନ୍ଦନା କହିଲା- ନା, ତେଲ ଲଗାଇବା ଦରକାର ନାହିଁ । ମୁଁ ସାବୁନ ଲଗାଇ ନାହିଁ ।

ଅମିତ କହିଲା - ତମେ କାହିଁକି ସାବୁନ ଲଗାଇଲ ନାହିଁ ? ମାଆ ଦେଇଥିଲେ ।

ଚନ୍ଦନା କଥାଟା ବୁଝିପାରି ଆଖିରୁ ଲୁହ ପୋଛିଲା । ତାକୁ ଏମିତି ଅପ୍ରସ୍ତୁତ କରିବାରେ ମାଆଙ୍କର ଭୂମିକା ଅଛି । ଚନ୍ଦନା କିଛି ନ କହି ତୁଳସୀ ଚଉଁରାରେ ପାଣି ଦେବା ପାଇଁ ବାହାରକୁ ଚାଲିଗଲା ।

ହଠାତ୍ ଦିନେ ଆସି ପହଞ୍ଚିଲା ସୁପ୍ରିୟାଙ୍କ ବଡ ଭାଇର ପୁଅ ମଳୟ । ବାଙ୍କିରେ ତାଙ୍କ ଘର । ସିଏ ଆସିଛି ଭୁବନେଶ୍ୱରରେ ବ୍ୟାଙ୍କ ପ୍ରୋବେସନ୍ ଅଫିସର୍ ପରୀକ୍ଷା ଦେବ । ମଳୟ ଏ ଘରକୁ ଆସିବା ନୂଆ ନୁହଁ । ଅନେକ ଥର ଆସିଛି । ଆଠ, ଦଶ ଦିନ ରହିଛି । କିନ୍ତୁ ଅମିତର ବାହାଘର ପରେ ମଳୟ ଆସିବା ଇଏ ପ୍ରଥମ ।

ମଳୟ ସହିତ ଚନ୍ଦନାର ପରିଚୟ କରାଇ ଦେଲେ ସୁପ୍ରିୟା । ଦୁହେଁ ଦୁହିଁଙ୍କୁ କିଛି ସମୟ ଚାହିଁ ରହିଲେ । ସୁପ୍ରିୟା ସଚେତନ କରାଇ ଦେଲେ - ଚନ୍ଦନା ତୋର ଭାଉଜ ହେବ । ଆମ ଅମିତର ସ୍ତ୍ରୀ । ଭାଉଜଙ୍କୁ ନମସ୍କାର କର ।

ମଳୟ ହସି ହସି ଥଟାରେ କହିଲା - ତୁ ଏଡେ ସୁନ୍ଦର ବୋହୂଟିଏ କୋଉଠୁ ପାଇଲୁ ଅପା ? ଇଏ ମଣିଷ ନା ଚିତ୍ର ?

ଚନ୍ଦନା ପ୍ରତ୍ୟୁତ୍ତର ଦେଲା - ମଳୟ ! ତୁମର ଆଖି ଦୋଷ ଅଛି କି ? ମଣିଷ ଆଉ ଚିତ୍ର ଭିତରେ ଥିବା ତଫାତ୍‌ଟା ଆଖିରେ ଦେଖି ଜାଣି ପାରୁନା ? ତମେ ତା ହେଲେ ବ୍ୟାଙ୍କ ପରୀକ୍ଷା କେମିତି ଦେବ ?

ସୁପ୍ରିୟା ଅନ୍ୟ ବଖରାକୁ ଚାଲିଗଲେ । ମଳୟ କହିଲା - ଭାଉଜ ! ତୁମ ରୂପରେ ଗୋଟେ ଅପୂର୍ବ ଉଜ୍ଜଳତା ଅଛି । ମୋ ଆଖି ଦୁଇଟା ତୁମ ରୂପର ଔଜ୍ଜ୍ୱଲ୍ୟରେ ଝଲସି ଗଲାଣି । ମୋ ଆଖିକି ଆଉ କିଛି ଭଲ ଦିଶୁନି ।

ଦୁଇ ଦିନର ରହଣି ଭିତରେ ମଳୟ ସବୁବେଳେ ଚନ୍ଦନାର ନିକଟତର ହେବାକୁ ଚେଷ୍ଟା କରିଛି । ଚନ୍ଦନାକୁ ଥଟା, ପରିହାସ କରିଛି ଏବଂ ବାଙ୍କି ଫେରିଗଲା ବେଳେ କହି ଯାଇଛି ସିଏ ଖୁବ୍‌ଶୀଘ୍ର ପୁଣି ଥରେ ଆସିବ ।

ସୁପ୍ରିୟା ଦିନେ ଦେବେନ୍ଦ୍ରଙ୍କୁ କହିଲେ- ମୁଁ ଆଶା କରିଥିଲି ବାହା କରିଦେଲେ ଅମିତର ପରିବର୍ତ୍ତନ ଆସିବ । କିନ୍ତୁ ନା, ସିଏ ସେମିତି ଶିଶୁଟିଏ ହୋଇ ରହିଗଲା । ଆମେ ଚନ୍ଦନାକୁ ତାର ସ୍ତ୍ରୀ ଭାବେ ଏ ଘରକୁ ଆଣିଥିଲେ, ହେଲେ ସିଏ ତାକୁ ମାଆ ପରି



Digitized by srujanika@gmail.com

ଗ୍ରହଣ କରିଚି ।

ଦେବେନ୍ଦ୍ର ଉତ୍ତର ଦେଲେ – ମୁଁ ତୁମକୁ ମନା କରିଥିଲି, କିନ୍ତୁ ତୁମେ ମୋ କଥା ମାନିଲ ନାହିଁ । ଚନ୍ଦନା ପରି ଗୋଟେ ସୁନ୍ଦର ଝିଅର ଜୀବନ ନଷ୍ଟକଲ ।

ସୁପ୍ରିୟା ତଥାପି ହାର ମାନିବାକୁ ପ୍ରସ୍ତୁତ ନୁହଁନ୍ତି । ଚନ୍ଦନାଠୁ ତାଙ୍କ ବଂଶଧର ପାଇବାର ଆଶା ତାଙ୍କର ତଥାପି ଅଛି । କିନ୍ତୁ କେମିତି ? ଏଇ କେମିତିର ସନ୍ଧାନ ସିଏ ଅନବରତ କରି ଚାଲିଛନ୍ତି । ସମ୍ଭାବନାର ସକାଳକୁ ସେ ଖୋଜୁଛନ୍ତି ।

ଆଉ ଦିନେ ମଳୟ ମଟର ସାଇକେଲ୍‌ରେ ଆସି ପହଞ୍ଚିଲା । ସୁପ୍ରିୟାଙ୍କ ମୁହଁ ସମ୍ଭାବନାର ଆଲୋକରେ ଉଜ୍ଜଳ ଦିଶିଲା । ସେ ମଳୟକୁ ଖୁବ୍ ଆଦରରେ ଘରେ ବସାଇ ତାର ଭଲ ମନ୍ଦ କଥା ପଚାରିଲେ । ତାକୁ ପ୍ରସ୍ତାବ ଦେଲେ- ତୁ ଏତେଥର ମଟର ସାଇକେଲ୍‌ରେ ବାଙ୍କିରୁ ଭୁବନେଶ୍ୱର ଆସୁଛୁ, ଫେରୁଛୁ । ତୁ' ଏଠି ଆମ ଘରେ ରହି ଚାକିରି ଖୋଜ, ପରୀକ୍ଷା ଦେ । ଏଠି ଆମର ଏତେ ବଡ ଘର ପଡିଛି । ତୁ' ଗୋଟେ ବଖରାରେ ରହ । ଆମ ଘରେ ଖିଆ ପିଆ କର । ପିଉସୀ କିଏ ମାଆ କିଏ ? ଏଇଟାକୁ ତୁ' ଆଜିଠୁ ନିଜଘର ବୋଲି ମନେକର । ଆରେ ଏଥିରେ ଲାଜ କି କୁଣ୍ଠା କରିବାର କ'ଣ ଅଛି ।

ମଳୟ କିଛି କହିବାକୁ ଯାଉଥିଲା, କିନ୍ତୁ ତାକୁ କିଛି କୁହାଇ ନ ଦେଇ ସୁପ୍ରିୟା ତା ଉପରେ ଶ୍ରଦ୍ଧା ଆଉ ଅଧିକାର ଜାହିର କରି କହିଲେ- ତୁ' ଏଠି ରହିଲେ ଆମେ ସମସ୍ତେ ଖୁସି ହେବୁ । ତୁ ଆଜିଠୁ ଏଇଠି ରହିବୁ । ତୋର ଚାକିରି ହେବା ଯାଏ ରହିବୁ । ଛମାସ, ବର୍ଷେ ,ଦିବର୍ଷ ଯେତେଦିନ ଇଚ୍ଛା ସେତେଦିନ ।

ଚନ୍ଦନା ଆସି ପହଞ୍ଚିଲା । ସୁପ୍ରିୟା ତାକୁ କହିଲେ – ଚନ୍ଦନା ! ଗେଷ୍ଟ ରୁମ୍‌ଟା ସଜାଡି ଦେ । ଆଜିଠୁ ମଳୟ ସେଠି ରହିବ । ପିଲାଟା ଏତେଥର ଏପଟ ସେପଟ ହେଇ ହାଲିଆ ହେଇଗଲାଣି ।

ସୁପ୍ରିୟା ଛାତ ଉପରକୁ ଚାଲିଗଲେ । ଚନ୍ଦନା କିଛି ନ ବୁଝି ପାରିବା ପରି ମଳୟର ମୁହଁକୁ ଚାହିଁ ରହିଲା ।

ମଳୟ ସଫେଇ ଦେଲା – ନାଇଁ ଭାଉଜ ! ମୋର ଜମା ଇଚ୍ଛା ନ ଥିଲା । ଅପା କହୁଚି ମୋର ଚାକିରି ହେବା ପର୍ଯ୍ୟନ୍ତ ମୁଁ ଏଇଠି ରହିବି । ପିଉସୀ ମାଆ ସମାନ । ତା' କଥାଟା କାଟିଥାନ୍ତି କେମିତି ? ତାଛଡା ତୁମ ପରି ସୁନ୍ଦରୀ ଭାଉଜର ସୁନ୍ଦର ମୁହଁ ସବୁଦିନେ ଦେଖିବାକୁ ମିଳିବ, ତମ କଇଁ ନାଡ ପରି କୋମଳ, କମନୀୟ ହାତରୁ ଖାଦ୍ୟ



Digitized by srujanika@gmail.com

ମିଳିବ । ସତରେ ଭାଉଜ ମୁଁ ଖୁବ୍ ଭାଗ୍ୟବାନ ।

ଚନ୍ଦନା କିଛି ନକହି ଘର ଭିତରକୁ ଚାଲିଗଲା ।

ମଳୟ କିଛି ଦିନର ରହଣି ଭିତରେ ପ୍ରତି ମୁହୂର୍ତ୍ତରେ ଚନ୍ଦନାର ନିକଟତର ହେବାକୁ ଚେଷ୍ଟା କଲା । ଚନ୍ଦନା ହାତରୁ ଚା' କପ୍ କିମ୍ବା ପାଣି ଗ୍ଲାସ ନେଲାବେଳେ ତାର ହାତକୁ ଜାଣି ଜାଣି ଛୁଇଁଲା ।

ଦିନେ ମଳୟ ଚନ୍ଦନାକୁ ଏକୁଟିଆ ପାଇ କହିଲା – ଭାଉଜ! ଅମିତଭାଇ ଆଉ କେବେ ବଡ ହୋଇ ପୁଅରୁ ସ୍ୱାମୀ ହେବେ ? ସେଥିପାଇଁ କ'ଣ କିଛି ଚେଷ୍ଟା କଲଣି ନା ତୁମର ସବୁ ଚେଷ୍ଟା ବିଫଳ ହେଲାଣି ?

ଚନ୍ଦନା ରାଗିଯାଇ ଉତ୍ତର ଦେଲା- ମତେ ଏସବୁ ପରିହାସ ଭଲ ଲାଗେନା । ତମେ ଏ ସବୁ ବନ୍ଦ୍ କର ।

ମଳୟ ବାଟ ଓଗାଳି ଠିଆ ହେଲା ଆଉ କହିଲା – ନା, ଭାଉଜ ! ରାଗନା, ମୁଁ ତୁମର ଦିଅର । ଥଟା କରିବାର ଅଧିକାର ମୋର ଅଛି । ହଁ, ଆଉ ଗୋଟେ କଥା, ଏବେ ପରା ଅମିତଭାଇ ତମ ବଖରାରେ ଶୋଉଛନ୍ତି । ଠିକ୍ ଅଛି, ମୁଁ ଅପେକ୍ଷା କରିଚି । ତମ ଚେଷ୍ଟାରେ ବିଫଳ ହେଲେ ମତେ କହିବ । ମୁଁ ଲାଇନ୍‌ରେ ଅଛି । ଦିଅରତ ମୋଟେ ପର ନୁହଁ । ସ୍ୱାମୀର ସାନ ଭାଇ । ନିଜର ନହେଲେ କ'ଣ ହେଲା, ସଂପର୍କୀୟ ଦିଅର ତ ?

ଚନ୍ଦନା ସେଦିନ ରାଗରେ ଫୁଲି ଫୁଲି ସୁପ୍ରିୟାଙ୍କ ପାଖରେ ଫେରାଦ କଲେ – ନା, ମାଆ ! ଏ ମଳୟ ଭଲ ଲୋକ ନୁହଁନ୍ତି । ତାଙ୍କ ମନ ପରିଷ୍କାର ନୁହଁ । ତାଙ୍କ ଦୃଷ୍ଟି ଭାରି ଖରାପ । ସିଏ ମତେ ବୁଲେଇ ବଙ୍କେଇ ନାନା ଅଶ୍ଳିଳ କଥା କହୁଛନ୍ତି । ବିଭିନ୍ନ ବାହାନାରେ ମୋ ହାତ ଓ ଦେହକୁ ଛୁଇଁବାକୁ ଚେଷ୍ଟା କରୁଛନ୍ତି । ତାଙ୍କ ଉଦ୍ଦେଶ୍ୟ ଆଦୌ ଭଲ ନୁହଁ । ମତେ ତାଙ୍କ କଥା ଆଉ ବ୍ୟବହାର ମୋଟେ ଭଲ ଲାଗୁନାହିଁ ।

ସୁପ୍ରିୟାଙ୍କ ଆଗରେ ଏତକ କହିବା ଭିତରେ ଚନ୍ଦନାର ଆଖିରୁ ଧାର ଧାର ଲୁହ ବହିଗଲା । ସୁପ୍ରିୟା ଚନ୍ଦନାର ଲୁହ ପୋଛୁ ପୋଛୁ ତାକୁ ଶାନ୍ତ କରାଇବାକୁ କହିଲେ – ମୁଁ ସବୁ ଜାଣେ ମାଆ ! ତୋ ଶ୍ୱଶୁର ମଧ୍ୟ ସବୁ ଜାଣନ୍ତି । ଆମ ପରିବାରର ମଙ୍ଗଳ ପାଇଁ ମୁଁ ମଳୟକୁ ଏଠି ରହିବାକୁ କହିଛି । ମୁଁ ଜାଣି ଜାଣି ତାକୁ ତୋ ସହିତ ମିଶିବାକୁ ସୁଯୋଗ ଦେଇଛି । କାହିଁକି ଜାଣୁ ମାଆ ? ମୁଁ ଜାଣେ ଅମିତ କେବେ ବି ଆମ ବଂଶ ରକ୍ଷା କରିବାକୁ ସମର୍ଥ ହେବ ନାହିଁ । ବିଭାଘର ଦୁଇ ବର୍ଷ ପରେ ମଧ୍ୟ ଅମିତର କିଛି ବି ଉନ୍ନତି



Digitized by srujanika@gmail.com

ହେଲା ନାହିଁ ।

ଚନ୍ଦନା ମୁହଁ ତଳକୁ କରି ଲୁହ ଗଡାଇ ଚାଲିଲା । ସୁପ୍ରିୟାଙ୍କ ମୁହଁକୁ ଚାହିଁବାକୁ ତାକୁ ଲାଜ ଲାଗିଲା ।

ସୁପ୍ରିୟା କହିଲେ - ତୋତେ ଏ ଘରକୁ ବୋହୂ କରି ଆଣିବାର ସବୁଠୁ ବଡ ଉଦ୍ଦେଶ୍ୟ ହେଉଛି ବଂଶରକ୍ଷା । ପୁଅ ହେଉ କିମ୍ୱା ଝିଅ ହେଉ ତୋ ଗର୍ଭରୁ ଗୋଟିଏ ସନ୍ତାନ ଆମର ଦରକାର । ତୋ ଚରିତ୍ର ଉଜ୍ଜଳ, ମୁଁ ସେ କଥା ଜାଣେ । କିନ୍ତୁ ଆମର ସନ୍ତାନଟିଏ ଦରକାର । ତୁ ଚାହିଁଲେ ଆମକୁ ଦେଇ ପାରିବୁ ।

ଚନ୍ଦନା ଏଥର କଇଁ କଇଁ ହୋଇ କାନ୍ଦିଲା । ତା' ଭିତରେ ଝଡ଼ ତୋଫାନର ତାଣ୍ଡବ ଚାଲିଛି । ସିଏ ନିଜକୁ ସ୍ଥିର ରଖିପାରୁ ନାହିଁ ।

ସୁପ୍ରିୟା ଖୁବ୍ ସତର୍କତାର ସହିତ ଆଗକୁ ବଢିଲେ - ମୁଁ ନୂଆ କଥା କିଛି କହୁନାହିଁ ମାଆ । ଆମ ପୁରାଣ ଶାସ୍ତ୍ରରେ ଯାର ନଜିର ଅଛି । ଭାରତର ପ୍ରଖ୍ୟାତ କୁରୁ ରାଜବଂଶରେ ଯାଠୁ ଗୁରୁତର ଉପାୟରେ ବଂଶରକ୍ଷା କରାଯାଇଥିଲା । କୁରୁବଧୂ ଅମ୍ୱା ଓ ଅମ୍ୱାଳିକାଙ୍କ କଥା ତୁ ଜାଣିଥିବୁ । ଶାଶୁ ସତ୍ୟବତୀଙ୍କ କଥା ମାନି ସେମାନେ ତାଙ୍କ ଦେଢଶୁର ବ୍ୟାସଦେବଙ୍କ ଔରଷରୁ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କୁ ଜନ୍ମ ଦେଇ କୁରୁବଂଶ ରକ୍ଷା କରିଥିଲେ ।

ଚନ୍ଦନା କାନ୍ଦି କାନ୍ଦି ସେଠୁ ଚାଲି ଯାଇ ତା' ବେଡରୁମ୍‌ରେ ଶୋଇଲା । ରାତି ସାରା ଅଖିଆ ଅପିଆ କାନ୍ଦିଲା । ସୁପ୍ରିୟା ଯେତେ ବୁଝାଇଲେ ବି ବୁଝିଲା ନାହିଁ ।

ଗୋଟିଏ ରାତି ଭିତରେ ଚନ୍ଦନା ନିଜ ଭିତରେ ନିଜକୁ ଦୃଢ କରି ନେଲା । ତା ଚଲାପଥରେ ସିଏ ଦୃଢଭାବେ ଚାଲିବ । କାହାରି କଥାରେ ବିଚଳିତ ହେବ ନାହିଁ କି ଅବାଟକୁ ପାଦ ବଢାଇବ ନାହିଁ । ପରିସ୍ଥିତିର ସାମାନା କରିବ । ବାଟରେ ଯେତେ ପ୍ରତିବନ୍ଧକ ଆସିଲେ ବି ହଡଲସ୍ ରେସ୍‌ର ଦୌଡାଳି ପରି ସବୁ ପ୍ରତିବନ୍ଧକକୁ ଡେଇଁବ ।

ଚନ୍ଦନା ତା'ପର ଦିନ ସକାଳୁ ଉଠିଲା । ସ୍ୱାଭାବିକ ଭାବେ ଘରକାମ କଲା । ଶାଶୁଙ୍କ ସହିତ ନର୍ମାଲ କଥାବାର୍ତ୍ତା କଲା । କାଲି ଘଟିଥିବା ଘଟଣା, ଶାଶୁ କହିଥିବା କଥା, ତା ମନରେ ଉଠିଥିବା ଝଡ ସବୁକୁ ସଂପୂର୍ଣ୍ଣ ଭୁଲିଯାଇଛି । ମନରୁ ପୋଛି ଲିଭାଇ ଦେଇଛି । ନୂଆ ମନ, ନୂଆ ଶପଥ ନେଇ ଆଜିର ନୂଆ ସକାଳର ସୂର୍ଯ୍ୟକୁ ସେ ଦେଖିଛି ।

ସ୍ୱାଭାବିକ ଚଳପ୍ରଚଳ, କାମଧନ୍ଦା କରୁଥିବା ଚନ୍ଦନାକୁ ଦେଖି ସୁପ୍ରିୟା ଧାରଣା କଲେ ହୁଏତ ଚନ୍ଦନା ତାଙ୍କ କଥାକୁ ଗ୍ରହଣ କରିଯାଇଛି । ତାଙ୍କ ପ୍ରସ୍ତାବ ତା' ମନକୁ



Digitized by srujanika@gmail.com

ବୁଝୁଛି । ପରିସ୍ଥିତି ସହିତ ସେ କଂପ୍ରମାଇଜ କରିଛି । ଆଜି କାଲିର ଶିକ୍ଷିତା ଝିଅ, ବୋହୂମାନେ ଆଦର୍ଶ ଅପେକ୍ଷା ପରିସ୍ଥିତି ଆଉ ସୁଯୋଗର ଅଧିକ ଉପଯୋଗ କରିବାକୁ ପସନ୍ଦ କରନ୍ତି ।

ମଳୟକୁ ଅଧିକ ସୁଯୋଗ ଦେବା ଉଦ୍ଦେଶ୍ୟରେ ସୁପ୍ରିୟା ଦେବେନ୍ଦ୍ରଙ୍କୁ ସାଙ୍ଗରେ ନେଇ ଗାଆଁର ଚାଷ ଧାନ ଆଣିବା ଆଳରେ ଆଠ ଦିନ ପାଇଁ ଗାଆଁକୁ ଚାଲିଗଲେ ।

ସୁପ୍ରିୟା ଓ ଦେବେନ୍ଦ୍ର ଗାଆଁକୁ ଚାଲିଯିବା ପରଦିନ ରାତି ଏଗାରଟା ସମୟ । ମଳୟ ଚନ୍ଦନାର ହାତକୁ ଧରି ଟାଣିଲା । ଚନ୍ଦନା ପ୍ରାଣମୂର୍ଚ୍ଛା ଚେଷ୍ଟା କଲା ମଳୟ ହାତରୁ ନିଜକୁ ମୁକ୍ତ କରିବାକୁ । କିନ୍ତୁ ପାରିଲା ନାହିଁ । ହାତ, ହାତରୁ ଅଣ୍ଟା ତାପରେ ଚନ୍ଦନାର ସାରା ଦେହଟାକୁ ନିଜ ଅକ୍ତିଆରକୁ ଆଣିବାକୁ ବସିଲା ମଳୟ । ଚନ୍ଦନା ପାଟି କଲା, ଛାଟିପିଟି ହେଲା; କିନ୍ତୁ ତାକୁ ରକ୍ଷା କରିବାକୁ ସେଠି କିଏ ଅଛି ?

ଖଣ୍ଡେ ଦୂରରେ ଅମିତ ଠିଆ ହୋଇ ଏସବୁ ଦେଖୁଥିଲା । ତା ମୁହଁର ରଙ୍ଗ ବଦଳି ଗଲା । ସିଏ ଜାଣି ପାରିଲା ନାହିଁ । ଏସବୁ କ'ଣ ହେଉଚି ? ଚନ୍ଦନା କାନ୍ଦୁଛି, କାହିଁକି ? ? ମଳୟ ତାକୁ ଏ କ'ଣ କରୁଚି ?

ଚନ୍ଦନା ପାଟିକଲା - ମତେ ରକ୍ଷା କର ଅମିତ । ମତେ ଏ ମଳୟ ହାତରୁ ରକ୍ଷା କର ।

ତଥାପି ଅମିତ କିଛି ବୁଝି ପାରିଲା ନାହିଁ, ଇଏ କି ଖେଳ ଚାଲିଛି ?

ଚନ୍ଦନା ଖୁବ୍ ଜୋର୍‌ରେ କାନ୍ଦି କାନ୍ଦି କହିଲା- ମଳୟ ମତେ ମାରି ପକାଇବ । ମତେ ରକ୍ଷା କର ଅମିତ ।

ଅମିତ ତାର ସମସ୍ତ ଶକ୍ତି ଏକାଠି କରି ମଳୟ ଉପରକୁ ଡେଇଁ ପଡିଲା । ମଳୟର ଅଣ୍ଟାକୁ ଧରି ଭିଡି ଓଟାରି ତାକୁ କାନ୍ଥରେ ପିଟିଦେଲା । ମଳୟ କାନ୍ଥରେ ପିଟି ହୋଇ ତଳେ ପଡି ଚିତ୍କାର କଲା । ତା ମୁଣ୍ଡ ଫାଟି ରକ୍ତ ଜୁଡୁବୁଡୁ ।

ଚନ୍ଦନା ମଳୟ ହାତରୁ ମୁକ୍ତ ହୋଇ ଅମିତକୁ କୁଣ୍ଢାଇ ଧରିଲା ।

ଅମିତ ରାଗରେ ପାଚି ଲାଲ ହୋଇ ମଳୟକୁ ଆହୁରି ମାରିବାକୁ ଠେଙ୍ଗା ଉଠାଇଥିଲା; କିନ୍ତୁ ଚନ୍ଦନା ତାକୁ ଅଟକାଇଲା । ଅମିତ ହିଂସ୍ର ବାଘ ପରି ଠିଆ ଠିଆ ଗର୍ଜୁଥିଲା । ବିଲେଇ ଭିତରେ ହଠାତ୍ ବାଘଟିଏ ପଶି ଡେଉଁଚି । ରକ୍ତ ପିଇବାକୁ ଗର୍ଜନ କରୁଛି ।

ମଳୟ ସେଇ ରାତାରାତି ଭୁବନେଶ୍ୱର ଛାଡି ବାକି ଚାଲିଗଲା । ସେଦିନ



Digitized by srujanika@gmail.com

ଗଣ୍ଡଗୋଳର ପ୍ରଭାବ କିନ୍ତୁ ଧୀରେ ଧୀରେ ଓହ୍ଲାଇ ଯାଇଥିଲା ଅମିତ ଦେହରୁ । ଘଟଣାର ଘଣ୍ଟାଟିଏ ପରେ ଅମିତ ପୁନଶ୍ଚ ବାଘରୁ ବିଲେଇ ପାଲଟି ମିଆଁଉ ମିଆଁଉ ହେଲା । ନିର୍ବୋଧ ଶିଶୁଟିଏ ପରି ଚନ୍ଦନାର କୋଳରେ ମୁହଁ ଲୁଚାଇଲା ।

କିନ୍ତୁ ସେ ଦିନ ଚନ୍ଦନା ମୁହୂର୍ତ୍ତକ ପାଇଁ ହେଉ ପଛକେ ଅମିତ ଭିତରେ ବାଘଟାର ଦର୍ଶନ ପାଇ ତା ମୁହଁରେ ସମ୍ଭାବନାର ସକାଳର ସୂର୍ଯ୍ୟୋଦୟ ଦେଖିଥିଲା ।

ସୁପ୍ରିୟା ଗାଆଁରୁ ଫେରି ଚନ୍ଦନାଠୁ ସବୁକଥା ଶୁଣିଲେ । ଦେବେନ୍ଦ୍ର ଏଥିପାଇଁ ସୁପ୍ରିୟାଙ୍କୁ ଦାୟୀ କଲେ । ତୁରନ୍ତ ବାଙ୍କିକୁ ଫୋନ୍ କରି ମଳୟକୁ ତାଗିଦ୍ କଲେ ଆଉ ଥାନାରେ ଜଣାଇବାର ଧମକ ଦେଲେ ।

ସୁପ୍ରିୟା ଚୁପ୍ ରହିଲେ । ବଂଶରକ୍ଷା ପାଇଁ ତାଙ୍କର ସମସ୍ତ ପ୍ରଚେଷ୍ଟା ବିଫଳ ହୋଇ ଯାଇଛି । ସୁପ୍ରିୟା ନିଜ ବୋହୂ ପାଖରେ ନିଜକୁ ଅପରାଧୀ ମନେ କଲେ । ଚନ୍ଦନା ଆଖିରେ ଆଖି ମିଳାଇବାକୁ ତାଙ୍କୁ ସଙ୍କୋଚ ଲାଗିଲା ।

ଦିନେ ଚନ୍ଦନା ଘରୁ ବାହାରି ରାସ୍ତା ଉପରକୁ ଉଠିଲା । ଟେମ୍ପୋ ଧରି କୁଆଡେ ଚାଲିଗଲା । ସୁପ୍ରିୟା ଆଶ୍ଚର୍ଯ୍ୟ ହେଲେ, କେବେ ଏକୁଟିଆ ନଯାଇଥିବା ଚନ୍ଦନା ଆଜି କୁଆଡେ ଗଲା ?

ଦେବେନ୍ଦ୍ର ନିଜ ସ୍ତ୍ରୀଙ୍କ ଉପରେ ବିରକ୍ତ ହେଲେ - ସିଏ କୁଆଡେ ଗଲା, ତୁମେ ପଚାରିଲନି କାହିଁକି ? କିଛି ଦିନ ହେଲା ସିଏ ଅନ୍ୟମନସ୍କ ଆଉ ଉଦାସୀନ ରହୁଛି । ସେଇ ମଳୟର ବ୍ୟବହାର ତାକୁ ଦୁଃଖ ଦେଇଚି । ତାଛଡା ସେ ଘଟଣା ପଛରେ ତୁମର ହାତ ଅଛି, ପ୍ରୋତ୍ସାହନ ଅଛି ବୋଲି ସିଏ ଜାଣିଛି । ସିଏ ଯଦି କିଛି କରି ବସେ ଆମେ ଅପଦସ୍ତ ହେବା ।

କିନ୍ତୁ ଘଣ୍ଟାଏ ଭିତରେ ଚନ୍ଦନା ଘରକୁ ଫେରି ଆସିଲା । ସୁପ୍ରିୟା ଚନ୍ଦନା ପାଖକୁ ଯାଇ ଖୁବ ନରମ କଣ୍ଠରେ କହିଲେ - ତୁ' ମୋ ଉପରେ ରାଗିଚୁ ମାଆ ? ମତେ କ୍ଷମା କରିଦେ । ତୁ' ଜାଣିଚୁ ମାଆ ମନ କ'ଣ ଖୋଜେ । ବଂଶରକ୍ଷା କରିବା ପାଇଁ ମୁଁ ସତରେ ପାଗଳ ହୋଇ ଯାଇଥିଲି । ବାଟ ଅବାଟ ଭୁଲି ଯାଇଥିଲି । ମୁଁ ତୋ ପ୍ରତି ଖୁବ୍ ଅନ୍ୟାୟ କରିଚି ମାଆ । ପ୍ରଥମ ଅନ୍ୟାୟ ଅମିତ ପରି ଗୋଟେ ଅସଂପୂର୍ଣ୍ଣ ମଣିଷ ହାତରେ ତୋତେ ଛନ୍ଦିବା ।

ଚନ୍ଦନା ଏଥର ଉତ୍ତର ଦେଲା - ମୁଁ ତ ଆପଣଙ୍କୁ ଏଥିପାଇଁ କେବେ ଦୋଷ ଦେଇନାହିଁ । । ମୋ ସୌଭାଗ୍ୟ ମୁଁ ଆପଣଙ୍କ ଘରକୁ ବୋହୂ ହୋଇ ଆସିଚି । ଆପଣ



Digitized by srujanika@gmail.com

ମୋତେ ବୋହୂ ଭାବରେ ଏ ଘରକୁ ଆଣିଥିବାରୁ ମୁଁ ଆପଣଙ୍କ ପାଖରେ କୃତଜ୍ଞ ।

- ନା ମାଆ ! ତୁ ମୋତେ ଯାହା କହିଲେ ବି ମୁଁ ନିଜକୁ କେବେ କ୍ଷମା ଦେଇ ପାରିବି ନାହିଁ । ମୋର ସବୁଠୁ ବଡ ଭୁଲ ମଳୟକୁ ଆଣି ଏ ଘରେ ରଖିବା ଆଉ ତାକୁ ତୋ ସହିତ ମିଶିବାକୁ ପ୍ରଶୟ ଦେବା ।

- ସେ କଥା ଏବେ ଆଉ ନ ଉଠାଇଲେ ଭଲ । ସେ କଥା ମୁଁ ଭୁଲି ସାରିଛି ।

- କିନ୍ତୁ ମୁଁ ଆଜି ଆଉ ଗୋଟେ ପ୍ରସ୍ତାବ ଦେବି ଚନ୍ଦନା । ମୁଁ ଭାବୁଚି ଏଇଟା ତୁ ଗ୍ରହଣ କରିବୁ । ତୋ ଶ୍ୱଶୁର ଆଉ ମୁଁ ସ୍ଥିର କରିଛୁ କୌଣସି ଗୋଟିଏ ଅନାଥ ଆଶ୍ରମର ଶିଶୁକୁ ତୋର ସନ୍ତାନ ଭାବେ ଗ୍ରହଣ କରିବୁ । ସିଏ ହେବ ଏ ବଂଶର ଉତ୍ତରାଧିକାରୀ ।

ଚନ୍ଦନା ହଠାତ୍ ଏମିତି ଗୋଟେ ପ୍ରସ୍ତାବ ହୁଏତ ପ୍ରତ୍ୟାଶା କରି ନଥିଲା । ସେ କିଛି ସମୟ ନିରବ ରହିବା ପରେ ସୁପ୍ରିୟାଙ୍କ ମୁହଁକୁ ଚାହିଁଲା ।

ସୁପ୍ରିୟା ପ୍ରଶ୍ନ କଲେ- କ'ଣ କହିବାକୁ ଚାହୁଁଚୁ କହ ମାଆ ? ଏଥିରେ ସଂକୋଚ କରିବାର କଣ ଅଛି ?

ଚନ୍ଦନା ମୁଣ୍ଡ ତଳକୁ କରି ଉତ୍ତର ଦେଲା - ମୋର ଆଶଙ୍କା ହେଉଛି ମାଆ, ଆପଣ ମୋ କୋଳରେ ଆଉ ଗୋଟିଏ ଶିଶୁ ଦେଲେ ମୁଁ ହୁଏତ ଆପଣଙ୍କ ପୁଅର ସେବାରେ ଅବହେଳା କରିବି । ସିଏ ତ ଶିଶୁଟିଏ ପରି ମୋ ଉପରେ ଏ ପର୍ଯ୍ୟନ୍ତ ନିର୍ଭରଶୀଳ । ମତେ ଆଉ କିଛି ଦିନ ସମୟ ଦିଅନ୍ତୁ । ମୁଁ ଭାବୁଛି ମୁଁ ତାଙ୍କୁ ଆତ୍ମନିର୍ଭରଶୀଳ କରିପାରିବି ।

ସୁପ୍ରିୟା ସେଦିନ ଆଉ କିଛି ନ କହି ଚୁପ୍ ରହିଲେ । ନିଜ ମନ ଭିତରେ କଥାଟାକୁ ପରଖିଲେ । ବାହାଘରର ମାତ୍ର ଦୁଇ ବର୍ଷ ପରେ ପୌଷ୍ୟ ସନ୍ତାନ ଗ୍ରହଣ କରିବା ନିଷ୍ପତ୍ତି ସମାଜ ଆଖିରେ ଅସୁନ୍ଦର ଦିଶିବ

ଦେବେନ୍ଦ୍ର ପ୍ରସ୍ତାବ ଦେଲେ - ସୁପ୍ରିୟା, ଏବେ ତୁମ ଘର କଥା, ବଂଶରକ୍ଷା କଥା, ପୁଅବୋହୂ କଥା ଛାଡି ନିଜ କଥା ଚିନ୍ତାକର । ମୁଁ ଚାକିରିରୁ ଅବସର ନେବା ତିନି ବର୍ଷ ହେଲାଣି । ତୁମକୁ ମଧ୍ୟ ଷାଠିଏ ବର୍ଷ ପାଖାପାଖି ହେଲାଣି । ଆମ ଦୁହିଁଙ୍କ ଆଣ୍ଠୁରେ ସମସ୍ୟା ଦେଖା ଦେଲାଣି । ବସିଲେ ଉଠିବାକୁ କଷ୍ଟ ଲାଗୁଛି । ଶୀଘ୍ର ଶୀଘ୍ର ଚାଲି ହେଉନାହିଁ । କିଛି ଦାନ୍ତ ହଲିଲାଣି, କିଛି ଦାନ୍ତ ପଡିଲାଣି । ଆଖି ଦୁଇଟା ଅବଶ୍ୟ ତୁମର ଭଲ ଅଛି, କିନ୍ତୁ ମୋ ଡାହାଣ ଆଖିଟାକୁ ଚାଳିଶା ଚଷମା କିଛି ଶକ୍ତି ଯୋଗାଇ ପାରୁନହିଁ । ଆମକୁ ଏଣିକି ନିଜ ଦେହ କଥା ଭାବିବାକୁ ପଡିବ । ସକାଳୁ ଗଜାମୁଗ ଖାଇବାକୁ



Digitized by srujanika@gmail.com

ହେବ, ମର୍ଣ୍ଣିଙ୍ଗ ଓ ଇଭିନିଙ୍ଗ ୱାକ କାରିବାକୁ ପଡିବ । ସେଥିରେ କିଛି ସୁଫଳ ନ ମିଳିଲେ ଟିଭିରୁ ଆସ୍ଥା ଚ୍ୟାନେଲ ଦେଖି ନିୟମିତ ପ୍ରାଣାୟାମ ଆଉ ଯୋଗ କରିବାକୁ ହେବ ।

ସୁପ୍ରିୟା ସେଇ ଦିନଠୁ ସକାଳେ, ସଂଧ୍ୟାରେ ଦେବେନ୍ଦ୍ରଙ୍କ ସହିତ ୱାକିଙ୍ଗରେ ଗଲେ । ଅନ୍ୟମାନଙ୍କ ସହିତ ଗପସପ କରି ନିଜ କଥା, ନିଜ ଘର କଥା, ନିଜ ଦୁଃଖ କଥା ଭୁଲିବାକୁ ଚେଷ୍ଟା କଲେ ।

ଦିନେ ଦେବେନ୍ଦ୍ର ବଜାରରୁ ଫେରି ସୁପ୍ରିୟାଙ୍କୁ କହିଲେ- ମୁଁ ଆଜି ଚନ୍ଦନାକୁ ଗୋଟେ ଭିଡିଓ ସିଡି ଦୋକାନରେ ଦେଖିଲି । ଅବଶ୍ୟ ମୁଁ ତାକୁ ମୁହାଁମୁହିଁ ଦେଖିନାହିଁ ।

ସୁପ୍ରିୟା ଆଶ୍ଚର୍ଯ୍ୟ ହେଲେ - ଚନ୍ଦନା ପୁଣି ଭିଡିଓ ସିଡି ଦୋକାନରେ, ମୋର ମୋଟେ ବିଶ୍ୱାସ ହେଉ ନାହିଁ । ସିଏ ତ ଦିନେ କେବେ ଟିଭିରୁ ସିନେମା କି ସିରିଆଲ୍ ଦେଖେ ନାହିଁ ।

ଦେବେନ୍ଦ୍ର କହିଲେ- ମୁଁ ଭାବୁଛି ଦିନ ଯାକ ଘରକାମ, ରାତିରେ ରୋଷେଇ କରିବା ଯୋଗୁ ଚନ୍ଦନା ସମୟ ପାଉନି ଟିଭି ଦେଖିବାକୁ । ହୁଏତ ରାତିରେ ସବୁକାମ ସରିବା ପରେ ଶୋଇବା ପୂର୍ବରୁ ସିଏ ଭିଡିଓ ସିଡି ଲଗାଇ ସିନେମା ଦେଖୁଥିବ ।

ସେଇ ଦିନ ରାତି ବାରଟା ବେଳେ ସୁପ୍ରିୟା ବିଛଣା ଛାଡି ଉଠିଲେ । ଦେବେନ୍ଦ୍ରଙ୍କୁ ନିଦରୁ ଉଠାଇ ଖୁବ୍ ଚୁପ୍‌ଚାପ୍ କବାଟ ଖୋଲି ବାହାରକୁ ଆସିଲେ । ବୋହୂର ଶୋଇବା ଘର କବାଟ ପାଖରେ ଠିଆ ହୋଇ କାନ ଡେରିଲେ । ଖୁବ୍ ଚାପା ଚାପା ଟିଭି ଶବ୍ଦ ଶୁଭୁଥିଲା ।

ସୁପ୍ରିୟା ଓ ଦେବେନ୍ଦ୍ର ନିଶ୍ଚିତ ହେଲେ ରାତିରେ ଚନ୍ଦନା ସିଡି ଲଗାଇ ସିନେମା ଦେଖୁଛି । ଦେଖୁ, କ୍ଷତି କ'ଣ ? ଦୁହେଁ ଫେରି ଆସିଲେ ନିଜ ବଖରାକୁ ।

ହଠାତ୍ ଦିନେ ମଳୟ ଆସି ପହଞ୍ଚିଲା । ସୁପ୍ରିୟା ଓ ଦେବେନ୍ଦ୍ର ଚମକି ପଡିଲେ । କିଛି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବା ମତଲବ ନେଇ ହୁଏତ ମଳୟ ଏଠି ଆଉଥରେ ଆବିର୍ଭୂତ ହୋଇଛି । ଦେବେନ୍ଦ୍ର ଦୃଢ ହେଲେ, ଆଉ ଏ ଅଜଗରକୁ ଘରେ ଆଶ୍ରୟ ଦେବେ ନାହିଁ । ସିଏ ଯେତେ ଅଭିନୟ କରୁ କିମ୍ବା ଅନୁନୟ, ବିନୟ କରୁ ।

ମଳୟ କିନ୍ତୁ ଆଉ ଗୋଟେ ବଡ ଧରଣର ଖେଳ ଖେଳିବାକୁ ପ୍ରସ୍ତୁତ ହୋଇ ଆସିଥିଲା । ସିଏ କହିଲା - ଅପା ! ମୁଁ ଗୋଟେ ଗୁପ୍ତ ଆଉ ଗୁରୁତ୍ୱପୂର୍ଣ୍ଣ କଥା କହିବାକୁ ଆସିଛି ।

ସୁପ୍ରିୟା ଓ ଦେବେନ୍ଦ୍ର କିଛି ନ କହି ଗମ୍ଭୀର ଆଉ ନିରବ ରହିଲେ । ସେମାନେ



Digitized by srujanika@gmail.com

ମଳୟର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି ।

ମଳୟ ସେମାନଙ୍କ ଅନୁମତିକୁ ଅପେକ୍ଷା ନକରି ଚାପା କଣ୍ଠରେ କହିଲା - ତୁମର ସତୀ, ସୁନ୍ଦରୀ, ନିରିହା, ନିରିମାଖୀ ବୋହୂ ତୁମକୁ ନ ଜଣାଇ ବଜାରର ବିଭିନ୍ନ ଭିଡିଓ ସିଡି ଦୋକାନ ଯାଇ ସେଠାରୁ ବଛା ବଛା ସିଡି ଆଣୁଛି ।

ସୁପ୍ରିୟା ଓ ଦେବେନ୍ଦ୍ର ତଥାପି ନିରବ ରହିଲେ । ସେମାନଙ୍କ ଉପରେ ମଳୟର ଖବର କିଛି ବି ପ୍ରତିକ୍ରିୟା ସୃଷ୍ଟି କଲା ନାହିଁ ।

ମଳୟ ଆଶ୍ଚର୍ଯ୍ୟ ହେଲା । ବାଣଟା ଫୁଟିବା ଶବ୍ଦରେ ଏମାନେ ଚମକି ନପଡି ଏମିତି ନର୍ମାଲ ରହିବାର କାରଣ କ'ଣ ? ଏଥର ବୋମାଟି, ହାତରେ ଧରିଲା । ବୋମାର ଧମାକା ନିଶ୍ଚୟ ଚମତ୍କାର କରାମତି ଦେଖାଇବ । ମଳୟ କହିଲା- ବାପୁଜୀନଗରରେ ମୋର ଗୋଟେ ସାଙ୍ଗର ଭିଡିଓ ସିଡି ଦୋକାନ ଅଛି । ତୁମ ବୋହୂ ସେ ଦୋକାନରୁ ଅନେକ ଥର ଅଶ୍ଳୀଳ ବ୍ଲୁ ସିଡି ଆଣିଚି ।

ଦେବେନ୍ଦ୍ର ପ୍ରତିବାଦ କଲେ - ସିଏ ଭିଡିଓ ସିଡି ଆଣୁଚି, କିନ୍ତୁ ଅଶ୍ଳୀଳ ବ୍ଲୁ ସିଡି ନୁହଁ । ଆମ ବୋହୂକୁ ଆମେ ଜାଣୁ । ତୁ ଏଇ ମୁହୂର୍ତ୍ତରେ ଆମ ଘରୁ ଚାଲିଯା ନ ହେଲେ ମୁଁ ପୋଲିସ ଡାକିବାକୁ ବାଧ୍ୟ ହେବି ।

ମଳୟ ଆଉ କିଛି ଉପାୟ ନପାଇ ଅପମାନର ଝାଳକୁ ରୁମାଲରେ ପୋଛି ମଟର ସାଇକେଲ ଷ୍ଟାର୍ଟ କରି ଚାଲିଗଲା ।

ଖଣ୍ଡେ ଦୂରରେ ଠିଆ ହୋଇ ଚନ୍ଦନା କାନ୍ଦୁଥିଲା । ସୁପ୍ରିୟା ସାନ୍ତ୍ୱନା ଦେଲେ- ତୁ ଆଦୌ ବ୍ୟସ୍ତ ହୋ ନା ମାଆ । ତୋ ଉପରେ ଆମର ଯଥେଷ୍ଟ ଆସ୍ଥା ଆଉ ବିଶ୍ୱାସ ଅଛି । ତୁ କେବେ ବି ଅଶ୍ଳୀଳ ସିଡି ଆଣି ନଥିବୁ , ଏ ବିଷୟରେ ଆମେ ନିଶ୍ଚିତ । ତୁ ସିଡି ଆଣି ଡେରି ରାତିରେ ସିନେମା ଦେଖିବା କଥା ଆମେ ଜାଣିଚୁ । ସେଥିରେ ଆମର ଆପତ୍ତି ନାହିଁ ।

ଚନ୍ଦନା ଅଧିକରୁ ଅଧିକ କାନ୍ଦିଲା । ସୁପ୍ରିୟା ଯେତେ ବୁଝାଇଲେ ବି ତାର କାନ୍ଦଣା ନ କମି ବେଳକୁ ବେଳ ବଢିଲା । ହଠାତ୍ ଚନ୍ଦନା ସେନ୍ସଲେସ୍ ହୋଇ ତଳେ ପଡିଗଲା । ସଙ୍ଗେ ସଙ୍ଗେ ଚନ୍ଦନାକୁ ଡାକ୍ତରଖାନାକୁ ନିଆଗଲା । ଲେଡି ଡକ୍ଟର ଚେକଅପ କରିବା ପରେ ଜଣାଇଲେ - ବ୍ୟସ୍ତ ହେବାର କିଛି ନାହିଁ । ଚନ୍ଦନା ସଂପୂର୍ଣ୍ଣ ଠିକ୍ ଅଛି । ବରଂ ଖୁସୀ ଖବର । ଆପଣମାନେ ଜେଜେବାପା, ଜେଜେମାଆ ହେବାକୁ ଯାଉଛନ୍ତି ।

କଥାଟା ଖୁବ୍ ଜଟିଳ ଅଙ୍କ ପରି ସୁପ୍ରିୟା ଓ ଦେବେନ୍ଦ୍ରଙ୍କୁ ଅବୁଝା ଅବୁଝା ଲାଗିଲା ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ମଳୟର କଥା ସେମାନଙ୍କ ମନରେ ଅନେକ ଦୁଃଶ୍ଚିନ୍ତା ଆଣିଦେଲା । ଅଶ୍ଳୀଳ ସିଡି ଦେଖି ଚନ୍ଦନା କିଛି ଭୁଲ କାମ କରି ନାହିଁ ତ ? ଅଶ୍ଳୀଳ ସିଡି ଆଣିବାକୁ ବଜାରକୁ ଯାଉଥିବା ଚନ୍ଦନା ଆଉ କୌଣସି ହୋଟେଲକୁ ଯାଉ ନଥିଲା ତ ? ଏମିତି ଅନେକ ଗୋଳମାଳିଆ ଚିନ୍ତାର ପବନ ଝଡ ପରି ତାଙ୍କ ମନ ଭିତରକୁ ପଶି ଆସି ଖୁବ୍ ଓଲଟ ପାଲଟ ସୃଷ୍ଟି କଲା ।

ଚନ୍ଦନାକୁ ଧରି ସେମାନେ ଘରକୁ ଫେରିଲେ । ଘରେ ପହଞ୍ଚିବା ପରେ ସୁପ୍ରିୟା ରୁକ୍ଷ କଣ୍ଠରେ କହିଲେ - ବହୁତ ହୋଇଗଲା । ଆଉ ତୋତେ ମୁଁ ଘରେ ଗୋଟିଏ ମୁହୂର୍ତ୍ତକ ରହିବାକୁ ଦେବି ନାହିଁ । ମୁଁ ଟ୍ରାଭେଲ ଏଜେନ୍ସିକୁ ଫୋନ୍ କରିଦେଉଛି । ଏଇ ଦଶ ମିନିଟ୍ ଭିତରେ ଗାଡି ଆସିବ । ତୁ ତୋ ବାପଘରକୁ ଚାଲିଯିବୁ ।

ଚନ୍ଦନା ପଥର ମୂର୍ତ୍ତିଟିଏ ପରି ତଳକୁ ମୁହଁ କରି ଠିଆ ହୋଇ କାନ୍ଦୁଥିଲା । ସେମିତି କାନ୍ଦି କାନ୍ଦି କହିଲା- ହଁ, ମୁଁ ବ୍ଲୁ ସିଡି ଘରକୁ ଆଣିଚି । ମୋ ପାଇଁ ଅନ୍ୟ କିଛି ଉପାୟ ନଥିଲା ମାଆ ଆଉ ସେଇ ସିଡି ଯୋଗୁ ମୁଁ ଆପଣଙ୍କର ରକ୍ତକୁ ଗର୍ଭରେ ଧରି ପାରିଛି । ମୋତେ ବିଶ୍ୱାସ କରନ୍ତୁ । ଏଇ ବ୍ଲୁ ସିଡି ଦେଖି ଅମିତ ଶିଶୁରୁ ଯୁବକ ହୋଇ ପାରିଛନ୍ତି ।

ସୁପ୍ରିୟା ଖୁସିରେ ଚନ୍ଦନାକୁ ଦୁଇ ହାତରେ କୁଣ୍ଢାଇ ଧରି ଚିତ୍କାର କଲେ - ଏକଥା ତୁ'ମତେ ଆଗରୁ ନ କହିଲୁ କାହିଁକି ମାଆ ? ଏତେ ଡାକ୍ତର, ଏତେ ପୂଜା,ଅର୍ଚ୍ଚନା ଯାହା କରିପାରି ନଥିଲା ତୋ ସାଧନା ଆଉ ବିଶ୍ୱାସ ସେ ଚମତ୍କାର କରି ପାରିଛି । ମୁଁ ଆଜି ସବୁଠୁ ବେଶି ଖୁସି ।

କିଛି ଦୂରରେ ଠିଆ ହୋଇ ଅମିତ ମୁରୁକି ମୁରୁକି ହସୁଥିଲା । ଦେବେନ୍ଦ୍ର ଆଉ ଟିକେ ଦୂରରେ ଥାଇ ଏ ସମୁଦାୟ ଦୃଶ୍ୟକୁ ମୁଗ୍ଧ ଦୃଷ୍ଟିରେ ଉପଭୋଗ କରୁଥିଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ସାତୀ

ଭୁବନେଶ୍ୱର ଏକ ନମ୍ବର ୟୁନିଟ୍ ହାଇସ୍କୁଲର ବିସ୍ତିର୍ଣ୍ଣ ଖେଳ ପଡିଆ । ଫେବୃୟାରୀ ସଂଧ୍ୟା ସାତଟା ସମୟ । ସ୍ୱାମୀ ଶ୍ରଦ୍ଧାନନ୍ଦଜୀ ପ୍ରବଚନ ଦେଉଚନ୍ତି । ପଡିଆ ଭର୍ତ୍ତି ସ୍ତ୍ରୀ, ପୁରୁଷ, ଯୁବକ, ଯୁବତୀ ଆଉ ବୃଦ୍ଧ, ବୃଦ୍ଧା ମନଧ୍ୟାନ ଦେଇ ସ୍ୱାମୀଜୀଙ୍କ ଆଧ୍ୟାତ୍ମିକ ପ୍ରବଚନ ଶୁଣୁଛନ୍ତି । ପ୍ରତି ଅଧ ଘଣ୍ଟା ପ୍ରବଚନ ପରେ ସ୍ୱାମୀଜୀଙ୍କୁ ପାଞ୍ଚ ସାତ ମିନିଟ୍ ବିଶ୍ରାମ ଦେବା ପାଇଁ ଭଜନ କୀର୍ତ୍ତନ ଗାନ କରାଯାଉଛି । ଭଜନର ଅପୂର୍ବ ଆକର୍ଷଣରେ ସମ୍ମୋହିତ ଉପସ୍ଥିତ ଶ୍ରୋତାମଣ୍ଡଳୀ ତାଳେ ତାଳେ ମୁଣ୍ଡ ହଲାଇ ତାଳି ମାରୁଛନ୍ତି ।

ସ୍ୱାମୀଜୀ ସେଦିନ ରାଧା ଭକ୍ତିର ମହିମା ଉପରେ ପ୍ରବଚନ ଦେଉଥିଲେ । ପ୍ରଥମ ପର୍ଯ୍ୟାୟରେ ସ୍ୱାମୀଜୀ ଦେଇଥିବା ପ୍ରବଚନର ସାରମର୍ମ ଥିଲା, ଭଗବାନ ଶ୍ରୀକୃଷ୍ଣଙ୍କୁ ପାଇବାକୁ ହେଲେ ଆମ ସମସ୍ତଙ୍କୁ ରାଧାଙ୍କ ପରି ପ୍ରେମ କରିବାକୁ ପଡିବ । ରାଧା ଯେମିତି ସକଳ ପଦାର୍ଥରେ କୃଷ୍ଣଙ୍କୁ ଦର୍ଶନ କରି କୃଷ୍ଣ ପ୍ରେମରେ ମଜ୍ଜି ଯାଇଥିଲେ ଆମକୁ ସେମିତି ସବୁଠି, ସବୁ ପଦାର୍ଥରେ ଯେତେବେଳେ ଭଗବତ ସତ୍ତାର ଦର୍ଶନ ମିଳିବ ସେତେବେଳେ ଆମ ସାଧନାର ସିଦ୍ଧି ମିଳିବ ।

ସ୍ୱାମୀଜୀଙ୍କ ଏଇ ପର୍ଯ୍ୟାୟ ପ୍ରବଚନ ଶେଷରେ ତାଙ୍କ ଅନୁଗାମୀମାନେ ଭଜନ ଗାନ ଆରମ୍ଭ କରିବା ବେଳେ ଶ୍ରୋତା ମଣ୍ଡଳୀରୁ ଜଣେ ସୌମଦର୍ଶନା ଚବିଶ, ପଚିଶ ବର୍ଷର ଯୁବତୀ ହାତଯୋଡି ଠିଆହୋଇ ନମ୍ରତାର ସହ ଅନୁମତି ମାଗିଲେ - ସ୍ୱାମୀଜୀ ! ଆପଣ ଜଣେ ବିଜ୍ଞ, ସିଦ୍ଧ, ସାଧୁ ପୁରୁଷ । ମୋ ମନରେ ଗୋଟିଏ ସନ୍ଦେହ ଅଛି । ମୁଁ ଆଶା କରୁଛି ମୋ ମନରେ ବହୁ ଦିନରୁ ଥିବା ଏ ସନ୍ଦେହକୁ ଆପଣ ଦୂର କରି ଦେଇ ପାରିବେ ।

ଉପସ୍ଥିତ ଥିବା ବହୁ ଶ୍ରୋତା ଉତ୍‌କ୍ଷିପ୍ତ ହୋଇ ଚିତ୍କାର କଲେ - ଏଟା ମହାବିଦ୍ୟାଳୟ କି ବିଶ୍ୱବିଦ୍ୟାଳୟର ତର୍କସଭା କିମ୍ବା ସେମିନାର ନୁହଁ । ଏଠି ଆମେ ପ୍ରଶ୍ନୋତ୍ତର ଶୁଣିବାକୁ ଆସିନାହୁଁ, ଆସିଛୁ ସ୍ୱାମୀଜୀଙ୍କ ଶ୍ରୀମୁଖ ନିଃସୃତ ଆଧ୍ୟାତ୍ମିକ ପ୍ରବଚନ ଶୁଣି ମନ, ପ୍ରାଣକୁ ପବିତ୍ର କରିବାକୁ । ଅଯଥାଟାରେ ବାଧା ସୃଷ୍ଟି ନ କରି ବସିପଡ ।

ଝିଅଟି ଲଜ୍ଜିତ ହୋଇ ଠିଆ ହୋଇଥିବା ସ୍ଥାନରେ ବସି ପଡିଲା । ସ୍ୱାମୀଜୀ କିନ୍ତୁ

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ସେ ଝିଅଟିକୁ ଅନୁମତି ଦେଲେ ଠିଆ ହୋଇ ତାର ସନ୍ଦେହ ବ୍ୟକ୍ତ କରିବାକୁ । ଉପସ୍ଥିତ ଶ୍ରୋତାମାନଙ୍କୁ ସ୍ୱାମୀଜୀ ଅନୁରୋଧ କଲେ ପାଟି ତୁଣ୍ଡ ନକରି ଝିଅଟିର କଥା ଶୁଣିବାକୁ । ସ୍ୱାମୀଜୀଙ୍କ ନିର୍ଦ୍ଦେଶରେ ସମଗ୍ର ସଭା ନିରବ ହୋଇଗଲା ।

ଝିଅଟି ଦବିଲା ଦବିଲା କଣ୍ଠରେ ଆରମ୍ଭ କଲା - ମୁଁ ଆମ ହିନ୍ଦୁ ପୁରାଣ, ଶାସ୍ତ୍ର, ଗୀତା , ଭଗବତ, ଉପନିଷଦ ଇତ୍ୟାଦି ପଢ଼ି ଯେତିକି ଜ୍ଞାନ ଆହରଣ କରିଛି ସେଥିରୁ ମୋର ଧାରଣା ଜନ୍ମିଛି ଯେ ଭାରତର ପୂର୍ବ, ପଶ୍ଚିମ ଓ ଦକ୍ଷିଣ ଏପରି ତିନି ଦିଗରେ ଦିଗନ୍ତ ବିସ୍ତାରି ସାଗର ଓ ମହାସାଗର ରହିଛି ଆଉ ସେଇ ସାଗର ଭିତରେ ସିଂହଳ, ବାଲି, ଜାଭା, ସୁମାତ୍ରା, ଗୋଆ, ଡାମନ ଡିଉ ପରି ଅଳ୍ପ କେତୋଟି ଦ୍ୱୀପ ରହିଛି । ଉତ୍ତର ଦିଗରେ ରହିଛି ନଭଶ୍ଚୁମ୍ବି ହିମାଳୟ ପର୍ବତଶ୍ରେଣୀ । ହିମାଳୟ ସ୍ୱର୍ଗକୁ ଲାଗିଥିବାରୁ ହିମାଳୟ ଆରପଟେ ଆଉ ସ୍ଥଳଭାଗ ନାହିଁ । ମହାଭାରତର ବର୍ଣ୍ଣନା ଅନୁସାରେ ଏଇ ହିମାଳୟଟା ସ୍ୱର୍ଗକୁ ଲାଗିଥିବାରୁ ଏଇ ହିମାଳୟ ପର୍ବତଶ୍ରେଣୀ ଆରୋହଣ କରି ପାଣ୍ଡବ ପାଞ୍ଚଭାଇ ଓ ଦ୍ରୌପଦୀ ସ୍ୱର୍ଗଯାତ୍ରା କରିଥଲେ । ମହାଭାରତର ଦ୍ରୌପଦୀଙ୍କ ସ୍ୱୟମ୍ବରକୁ ଲକ୍ଷେ ରାଜାଙ୍କୁ ନିମନ୍ତ୍ରଣ କରାଯାଇଥିଲା, କିନ୍ତୁ ସମସ୍ତେ ଏଇ ଭାରତର । ତେଣୁ ମୋର ଧାରଣା ହୁଏ ଆମ ଭାରତ ବର୍ଷର ସେତେବେଳର ମୁନି, ଋଷି, ଓ ମନିଷୀମାନେ ଏଇ ଭାରତକୁ ହିଁ ସମଗ୍ର ପୃଥିବୀ ବୋଲି ଭାବିଥିଲେ । ତେଣୁ ଗୋଟିଏ କଥା ଅଛି- "ଯାହା ନାହିଁ ଭାରତେ, ତାହା ନାହିଁ ମରତେ" ।

ଏ ପର୍ଯ୍ୟନ୍ତ ନିରବରେ ବସିଥିବା ଶ୍ରୋତାଙ୍କ ମଧ୍ୟରୁ କେତେ ଜଣ ପାଟି କଲେ- ଏତେ ଦୀର୍ଘ ଭାଷଣ ନ ଦେଇ, ସଂକ୍ଷେପରେ ତୁମ କଥା ସାରିଦିଅ । ଏଠି ଏତେ ସଂଖ୍ୟାରେ ବସିଥିବା ଲୋକ ସ୍ୱାମୀଜୀଙ୍କ ପ୍ରବଚନ ଶୁଣିବାକୁ ଆସିଚନ୍ତି, ତୁମର ବାଚଳତା ଶୁଣିବାକୁ ଆସିନାହାଁନ୍ତି ।

ଝିଅଟି ଦ୍ୱନ୍ଦ୍ୱରେ ପଡି ଠିଆହେଲା । ଆଗକୁ ବଢ଼ିବ କି ବସି ପଡିବ ଏମିତି ଚିନ୍ତା କରୁଥିବା ବେଳେ ସ୍ୱାମୀଜୀ କହିଲେ - କୁହ ମାଆ ! ଅଟକିଲ କାହିଁକି ? ତୁମ କଥା ଖୁବ୍ ଚମତ୍କାର । ତୁମ କଥା ଶୁଣିବାକୁ ମୁଁ ଅତ୍ୟନ୍ତ ଆଗ୍ରହୀ ।

ପାଟି କରୁଥିବା ଲୋକମାନେ ସ୍ୱାମୀଜୀଙ୍କ କଥା ଶୁଣି ନିରବ ହୋଇଗଲେ । ଝିଅଟି ପୁଣି ଆରମ୍ଭ କଲା-ମୋର ମନେ ହୁଏ ଆମ ମୁନି, ଋଷି ଓ ମନିଷୀମାନେ ଭାରତକୁ ସମଗ୍ର ପୃଥିବୀ ବୋଲି ଧରିନେଇଥିବାରୁ ଭଗବାନଙ୍କ ଦଶଟି ଯାକ ଅବତାର ଏଇ ଭାରତରେ ହୋଇଥିବା କଥା କହିଛନ୍ତି । ଦଶଟିଯାକ ଅବତାରକୁ କେବଳ ଭାରତ ଭିତରେ



Digitized by srujanika@gmail.com

ସୀମିତ ରଖାଯିବାର କାରଣ କ'ଣ ? ଆମ ମୁନି, ଋଷି ଓ ମନିଷୀମାନଙ୍କ ଚିନ୍ତାଧାରା କଣ ଭାରତ ଭିତରେ ସୀମିତ ଥିଲା ?

ସ୍ୱାମୀଜୀ କିଛି ସମୟ ନିରବ ରହି ଚିନ୍ତାକଲା ପରେ କହିଲେ - ମୁଁ ମୋର ଏତେ ବର୍ଷର ସନ୍ନ୍ୟାସୀ ଜୀବନ ଭିତରେ ଏମିତି ଗୋଟେ ଅନନ୍ୟ ପ୍ରଶ୍ନର କେବେ ସାମନା କରି ନଥିଲି । ଏ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଓ ଚମତ୍କାର ପ୍ରଶ୍ନ । ତୁମେ ବସ । ମୁଁ ତୁମର ସନ୍ଦେହ ମୋଚନ କରିବାକୁ ଚେଷ୍ଟା କରୁଚି ।

ଝିଅଟି ଏଥର ଠିଆ ହୋଇଥିବା ସ୍ଥାନରେ ବସିପଡିଲା । ସମଗ୍ର ସଭା ଗମ୍ଭୀର । କିଛି ସମୟ ପରେ ସ୍ୱାମୀଜୀ କହିଲେ-ଆମ ଏ ଦେଶ ଭାରତବର୍ଷ ସବୁଠୁ ପ୍ରାଚୀନ । ପୃଥିବୀରେ ସବୁଠୁ ପ୍ରଥମେ ଅଭ୍ୟୁଦୟ ହୋଇଥିଲା ଆମ ହିନ୍ଦୁଧର୍ମର । ହିନ୍ଦୁଧର୍ମର ପ୍ରଥମ ଅଭ୍ୟୁଦୟ ହୋଇଥିଲା ଆମ ଏ ଭାରତ ବର୍ଷରେ । ଏ ଧର୍ମର କେବେ ଅଭ୍ୟୁଦୟ ଘଟିଥିଲା ସେକଥା କେହି କହି ପାରିବେ ନାହିଁ । ତେଣୁ ହିନ୍ଦୁଧର୍ମର ଅନ୍ୟନାମ ସନାତନ ଧର୍ମ । ଈଶ୍ୱରଙ୍କର ଦଶଟିଯାକ ଅବତାର ସବୁଠୁ ପ୍ରାଚୀନ ଦେଶ ଭାରତରେ ହିଁ ଘଟିଛି । ସବୁଦେଶର ଇତିହାସ ଅଛି, କିନ୍ତୁ ପୁରାଣ ନାହିଁ । ଇତିହାସର ପୂର୍ବକଥା ପୁରାଣ ପୃଷ୍ଠାରେ ଲିପିବଦ୍ଧ ହୋଇଥାଏ । ଯେଉଁ ଦେଶର ପୁରାଣ ଅଛି ସେ ଦେଶ ପ୍ରାଚୀନ ବା ପୁରଣା । ଆମ ଦେଶ ସବୁଠୁ ପ୍ରାଚୀନ ତେଣୁ ଆମର ପୁରାଣ ଅଛି । ଆମର ସବୁଠୁ ମହାନ ପୁରାଣ ଦୁଇଟି ହେଲା, ମହାଭାରତ ଓ ରାମାୟଣ । ତେଣୁ ଦଶଟି ଯାକ ଅବତାର ଆମ ଦେଶରେ ଘଟିଥିବା ଅସମ୍ଭବ ନୁହଁ ।

ସ୍ୱାମୀଜୀଙ୍କ ଏ ତଥ୍ୟ ପୂର୍ଣ୍ଣ ଉତ୍ତର ଶୁଣି ଝିଅଟିର ମୁହଁ ହସ ହସ ଦିଶିଲା । ତତ୍କ୍ଷଣାତ୍ ଠିଆ ହୋଇ ସ୍ୱାମୀଜୀଙ୍କୁ ତାର କୃତଜ୍ଞତା ଜଣାଇ କହିଲା- ସ୍ୱାମୀଜୀ ! ଆପଣ ପ୍ରକୃତରେ ମହାଜ୍ଞାନୀ । ମୋ ମନର ସମସ୍ତ ସନ୍ଦେହକୁ ଆପଣଙ୍କ ଉତ୍ତର ଧୋଇ ସଫାକରି ଦେଇଛି । ମୁଁ ଆଜି ସାରା ପୃଥିବୀକୁ କହି ପାରିବି ଆମ ଦେଶ ସବୁଠୁ ପ୍ରାଚୀନ । ଆମ ଦେଶ ହିଁ ହିନ୍ଦୁଧର୍ମ ପରି ସନାତନ ଧର୍ମକୁ ଜନ୍ମ ଦେଇଛି । ଆମ ଦେଶ ପ୍ରାଚୀନ ଆଉ ପବିତ୍ର ହୋଇ ଥିବାରୁ ଈଶ୍ୱରଙ୍କ ସମସ୍ତ ଅବତାର ଏଠି ସମ୍ଭବ ହୋଇଛି ।

ପନ୍ଦର ଦିନ ଧରି ସେଠି ପ୍ରତି ସଂଧ୍ୟାରେ ସ୍ୱାମୀଜୀଙ୍କ ପ୍ରବଚନ ଓ ଭଜନ କୀର୍ତ୍ତନ ଚାଲିଲା । ପ୍ରତିଦିନ ଲୋକ ଗହଳି ଅଧିକରୁ ଅଧିକ ହେଲା । ଥିଏଟର କି ସିନେମା ଦେଖିବାକୁ ଲୋକମାନେ ଯେତେ ଆଗ୍ରହୀ ନୁହନ୍ତି ତାଠୁ ଢେର ଅଧିକ ସଂଖ୍ୟାରେ ଲୋକ ସ୍ୱାମୀଜୀଙ୍କ ପ୍ରବଚନ ଶୁଣିବାକୁ ଆସୁଛନ୍ତି । ଅନେକ ଲୋକ ଟିଭି ଧାରାବାହିକ ଆଉ



Digitized by srujanika@gmail.com

ଟିଭିର ଅନ୍ୟାନ୍ୟ ମନୋରଂଜନ କାର୍ଯ୍ୟକ୍ରମ ଛାଡି ସ୍ୱାମୀଜୀଙ୍କ ପ୍ରବଚନ ଶୁଣୁଛନ୍ତି ।

ଏଇ ପନ୍ଦର ଦିନଯାକ ଆଗ ଧାଡିରେ ବସି ସେଇ ଝିଅଟି ସ୍ୱାମୀଜୀଙ୍କ ପ୍ରବଚନ ସବୁ ତନ୍ମୟ ହୋଇ ଶୁଣିଲା । ଭୁବନେଶ୍ୱର ପରେ ସ୍ୱାମୀଜୀ କଟକ ଗଲେ । ସେଠି ସେମିତି ପ୍ରବଚନ ଚାଲିଲା ।

ସେଇ ଝିଅଟି ବାହାରିଲା କଟକ ଯାଇ ସ୍ୱାମୀଜୀଙ୍କ ପ୍ରବଚନ ଶୁଣିବ । ତା ବାପା, ମାଆ ଭାଇ ସମସ୍ତେ ମନାକଲେ-ନା, ସ୍ୱାତୀ ! ରାତିରେ କଟକ ଯାଇ ପ୍ରବଚନ ଶୁଣି ପୁଣି ରାତି ରାତି ବସ୍ ଧରି ଭୁବନେଶ୍ୱର ଫେରିବା ଠିକ୍ ନୁହଁ । ତୁ ଏତେ ଦିନ ତ ସେଇ ପ୍ରବଚନ ଏଠି ଶୁଣିଲୁ, ସେଇ ପ୍ରବଚନ ସେଠି ଶୁଣିବା କ'ଣ ଦରକାର ?

ସ୍ୱାତୀ ଯୁକ୍ତିକଲା- ଭୁବନେଶ୍ୱରଠୁ କଟକ ବେଶି ବାଟ ନୁହଁ । ଏବେ ଡବଲ ରାସ୍ତା ହେବା ଫଳରେ କଟକ ଯିବାକୁ ମାତ୍ର ଅଧ ଘଣ୍ଟାଏ ସମୟ ଲାଗୁଛି । କଟକର ବାଦାମବାଡିରେ ପ୍ରବଚନ ହେଉଛି । ରାତି ନଅଟାରେ ପ୍ରବଚନ ସରିବ । ମୁଁ ରାତି ନଅଟାରେ ବସ୍‌ରେ ବସିଲେ ସାଢେ ନଅଟାରେ ଭୁବନେଶ୍ୱର ପହଞ୍ଚିବି । ତା ଛଡା ମୁଁ ତ ଏକୁଟିଆ ଯିବି ନାହିଁ, ମୋ ସାଙ୍ଗରେ ମୋର ଆଉ ଦୁଇ, ତିନି ଜଣ ସାଙ୍ଗ ଝିଅ ଯିବେ । ତମେ ଯାହା କହୁଚ ଏକା ପ୍ରବଚନ ଏଠି ଶୁଣି ସେଠି ଶୁଣିବା କ'ଣ ଆବଶ୍ୟକ ବୋଲି, ସେ କଥା ବି ଠିକ୍ ନୁହଁ । ସ୍ୱାମୀଜୀ ସବୁ ସ୍ଥାନରେ ନୂଆ ନୂଆ କଥା କୁହନ୍ତି ।

ଯିଏ ଯେତେ ଆକଟ କଲେ ବି ସ୍ୱାତୀ କାହାରି କଥା ନମାନି ପ୍ରତି ସଂଧ୍ୟାରେ କଟକ ଯାଇ ପ୍ରବଚନ ଶୁଣିଲା । କଟକ ପରେ ସ୍ୱାମୀଜୀଙ୍କ କ୍ୟାମ୍ପ ପଡିଲା ଖୋର୍ଦ୍ଧାରେ । ସେଠିକି ମଧ୍ୟ ସ୍ୱାତୀ ଗଲା ଆଉ ପ୍ରବଚନ ଶୁଣି ପ୍ରତିରାତିରେ ଭୁବନେଶ୍ୱର ଫେରିଲା ।

ସ୍ୱାମୀଜୀ ପ୍ରବଚନ ସାରି ବୃନ୍ଦାବନ ଫେରିଯିବା ପରେ ସ୍ୱାତୀ ମନରେ ସ୍ୱାମୀଜୀଙ୍କ ପ୍ରବଚନ, ଭଜନ ଇତ୍ୟାଦି ଆଲୋଡନ ସୃଷ୍ଟିକଲା । ଅନେକ ସମୟରେ ସ୍ୱାତୀ ତାଙ୍କ ଭଜନ ଓ ପ୍ରବଚନର ସି.ଡି. ବଜାଇ ଶୁଣିଲା ଓ ସ୍ୱାମୀଜୀଙ୍କ ଲିଖିତ ପୁସ୍ତକ ପଢିଲା ।

ସ୍ୱାମୀ ଶ୍ରଦ୍ଧାନନ୍ଦଜୀଙ୍କ ବୃନ୍ଦାବନ ଆଶ୍ରମରେ ଦୋଳ ପୂର୍ଣ୍ଣମୀ ସମୟରେ ସାତ ଦିନ ବ୍ୟାପି ଉତ୍ସବ ପାଳନ କରାଯାଏ । ସାରା ଦେଶରୁ ଓ ଦେଶ ବାହାରୁ ସ୍ୱାମୀଜୀଙ୍କ ଭକ୍ତମାନେ ବହୁ ସଂଖ୍ୟାରେ ଏହି ଉତ୍ସବରେ ଯୋଗ ଦିଅନ୍ତି । ସାତଦିନ ଧରି ଦେଶର ବିଭିନ୍ନ ପ୍ରାନ୍ତରୁ ଆସିଥିବା ସାଧୁ, ସନ୍ନ୍ୟାସୀ, ଯୋଗୀ, ଜ୍ଞାନୀ ପୁରୁଷମାନେ ପ୍ରବଚନ ଦିଅନ୍ତି । । ଏଇ ଉତ୍ସବରେ ଯୋଗ ଦେବା ପାଇଁ ସ୍ୱାତୀ ତା' ବାପାଙ୍କ ଅନୁମତି ମାଗିଲା । ଯିବା ଆସିବା ଓ ରହିବା ସମୟ ସମୁଦାୟ ବାରଦିନ । ଖାଇବା, ରହିବାର ସମସ୍ତ ସୁବିଧା



Digitized by srujanika@gmail.com

ଆଶ୍ରମ ଯୋଗାଇଦେବ । ଟଙ୍କା ପଇସା ବେଶି ଦରକାର ନାହିଁ । କେବଳ ଯିବା ଆସିବା ରାସ୍ତା ଖର୍ଚ୍ଚ । ଯିବା ଆସିବା ପାଇଁ ଯାହା ଟ୍ରେନ୍ ଟିକେଟ ଲାଗିବ ସେତକ ସ୍ୱାତୀ ନିଜ ହାତ ଖର୍ଚ୍ଚ ପଇସାରୁ ସଂଚୟ କରି ରଖିଛି ।

ସ୍ୱାତୀର ବାପା ପ୍ରଭାତ ସିଧା ମନାକଲେ - ଏ ବୟସରେ ସ୍ୱାତୀର ଏ ସ୍ୱାମୀଜୀ, ପ୍ରବଚନ, ଭଜନ ଆଉ ଆଶ୍ରମର ଉତ୍ସବ କଥା ଚିନ୍ତା କରିବା ଉଚିତ ନୁହଁ । ଏଇଟା ତାର ଚାକିରି କରିବା ପାଇଁ ବିଭିନ୍ନ ପରୀକ୍ଷା ଦେବା ଆଉ ବିବାହ କରି ଘରସଂସାର କରିବା ବୟସ । ଧର୍ମ, ପ୍ରବଚନ, ତୀର୍ଥ ଦର୍ଶନ କିମ୍ବା ଆଧ୍ୟାତ୍ମିକ ଚିନ୍ତା କରିବା ପାଇଁ ମଣିଷ ପାଇଁ ଅଲଗା ସମୟ ନିର୍ଦ୍ଦିଷ୍ଟ ଅଛି । ସେ ବୟସ ସ୍ୱାତୀଠୁ ଏବେ ଢେର ଦୂରରେ ଅଛି ।

ସ୍ୱାତୀ କିନ୍ତୁ ଅଡି ବସିଲା, ସିଏ ଯିବ । ସିଏ ଏକୁଟିଆ ଯାଉ ନାହିଁ, ତା ସାଙ୍ଗରେ ତାଙ୍କ କଲୋନୀରୁ କିଛି ବୟସ୍କ ସ୍ତ୍ରୀଲୋକ ଓ ତା'ର ଆଉ କିଛି ସାଙ୍ଗ ଯାଉଛନ୍ତି । ମାତ୍ର ବାର ଦିନର କଥା । ସିଏ କିଛି ଖରାପ କାମ କରୁନାହିଁ । ତେଣୁ ବାପା ଅନୁମତି ନ ଦେଲେ ମଧ୍ୟ ସିଏ ନିଶ୍ଚୟ ବୃନ୍ଦାବନ ଯିବ ।

ସ୍ୱାତୀର ମାଆ ପ୍ରତିମା ସ୍ୱାତୀର ବାପାଙ୍କୁ ବୁଝାଇଲେ- କଲୋନୀରୁ ଏତେ ଝିଅ ଆଉ ସ୍ତ୍ରୀ ଲୋକ ଯାଉଛନ୍ତି, ସିଏ ଯାଉ । ଏଇ ଥରଟା ତାକୁ ଛାଡ । ଏଣିକି ତାକୁ ଆଉ କୁଆଡେ ଛାଡିବା ନାହିଁ । ତା'ର ବାହାଘର ଶୀଘ୍ର କରିଦେଲେ ସବୁ ଦାୟିତ୍ୱ ତୁଟିବ । ତା ସାଙ୍ଗରେ ଅଯଥା ପାଟି ତୁଣ୍ଡ କଲେ କଥାଟା ଭଲ ହେବ ନାହିଁ ।

ପ୍ରଭାତ ଚୁପ୍ ରହିଲେ । ସ୍ୱାତୀ ନିର୍ଦ୍ଦିଷ୍ଟ ଦିନରେ ବୃନ୍ଦାବନ ଗଲା । ବାର ଦିନ ପରେ ଫେରି ଆସି ଆଶ୍ରମ ଆଉ ଆଶ୍ରମ ଜୀବନ ବିଷୟରେ ଅନେକ କଥା କହିଲା । ଆଶ୍ରମ ଜୀବନର ଆନନ୍ଦ କଥା ଖୁବ ଉଲ୍ଲସିତ ହୋଇ ବର୍ଣ୍ଣନା କଲା ।

ପ୍ରଭାତ ଓ ପ୍ରତିମା ଦୁହେଁ ସ୍ଥିର କଲେ ସ୍ୱାତୀର ବିବାହ କରିଦେବା ଠିକ୍ ହେବ । ତାକୁ ଏବେ ପଚିଶ ବର୍ଷ ହେଲାଣି । ତା' ତଳେ ଆଉ ଦୁଇଟା ଝିଅ ଅଛନ୍ତି । ସଂଧ୍ୟାକୁ ତେଇଶି ବର୍ଷ ଆଉ ସିପ୍ରାକୁ କୋଡିଏ । ପୁଅ ଶ୍ରୀତମର ବୟସ ଅଠେଇଶ । ସ୍ୱାତୀର ବାହାଘର ନ ସରିଲେ ଶ୍ରୀତମ ବାହା ନ ହେବାକୁ ଯିଦ୍ ଧରିଛି । ଅବଶ୍ୟ ସିଏ କିଛି ଭୁଲ କଥା କହୁନାହିଁ । ପଚିଶ ବର୍ଷର ଭଉଣୀଟେ ଥାଉଁ ଥାଉଁ ସିଏ ବିବାହ କରିବା ସୁନ୍ଦର ଦିଶିବ ନାହିଁ ।

ଏମିତି ହୁଏତ ହୋଇପାରେ, ସ୍ୱାତୀ ଓ ଶ୍ରୀତମ ଉଭୟଙ୍କ ବାହାଘର ଏକ ସମୟରେ କରାଯାଇପାରେ । ଗୋଟିଏ ଭୋଜିରେ ଚଳାଇ ଦେଲେ ଦୁଇଟା ବାହାଘର ଝାମେଲା



Digitized by srujanika@gmail.com

ତୁଟି ଯାଆନ୍ତା ।

ସ୍ୱାତୀର ରଙ୍ଗ ଗୋରା, ଉଚ୍ଚତା ପାଞ୍ଚ ଫୁଟ ଚାରିଇଞ୍ଚ, ତିଖ ନାକ, ଆକର୍ଷଣୀୟ ଆଖି। ସୁନ୍ଦର ଚେହେରା । ସ୍ୱାତୀ ପାଇଁ ଅନେକ ପ୍ରସ୍ତାବ ଆସିଲା । ପ୍ରଭାତ ପ୍ରସ୍ତୁତ କଲେ ଝିଅ ଜାତକର ଏକ ଟିପଣା ଯେଉଁଥିରେ ତାର ରାଶି ଓ ନକ୍ଷତ୍ର ସହିତ ଗ୍ରହମାନଙ୍କର ଅବସ୍ଥିତି ସୂଚିତ ହେଲା । ଡି.ଟି.ପି. କରି ଗୋଟିଏ ବାୟୋଡାଟା ତୁରନ୍ତ ତିଆରି ହୋଇ ଆସିଲା । କିନ୍ତୁ ସବୁଠୁ ଅତ୍ୟାବଶ୍ୟକ ପଦାର୍ଥ ପାଖରେ କଥାଟା ଅଟକି ଗଲା । ସ୍ୱାତୀର ଗୋଟେ ଶାଢିପିନ୍ଧା ମ୍ୟାରେଜ ଫଟୋ ପାଇଁ ପ୍ରତିମା ଯେତେ କହିଲେ ମଧ ସ୍ୱାତୀ ଆଦୌ ରାଜିହେଲା ନାହିଁ । ପ୍ରତିମା ବୁଝାଇ ବୁଝାଇ ପରାସ୍ତ ହେଲେ । ସ୍ୱାତୀର ଏକା ଜିଦ୍ ସିଏ ବିବାହ କରିବ ନାହିଁ । ତେଣୁ ଏ ଶାଢିପିନ୍ଧା ଫଟୋର କିଛି ଆବଶ୍ୟକତା ନାହିଁ । ବାହା ହୋଇ ଘର ସଂସାର କରିବା କିମ୍ବା ପିଲାଛୁଆର ମାଆ ହୋଇ ସେମାନଙ୍କ ଲାଳନ ପାଳନ କରିବା ତାର ଇଚ୍ଛା ନୁହଁ , କି ତା ଜୀବନର ଲକ୍ଷ୍ୟ ନୁହଁ ।

ଅତି ବାଧ୍ୟ କରିବାରୁ ସ୍ୱାତୀ ଦିନେ କହିଲା ସିଏ ତାର ଜୀବନକୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ କରିବାକୁ ଚାହେଁ । ସିଏ ସ୍ଥିର କରି ସାରିଛି ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କ ଆଶ୍ରମକୁ ଚାଲିଯିବ ।

ସ୍ୱାତୀର କଥା ଶୁଣି ତାଙ୍କ ସମୁଦାୟ ପରିବାର ଦୁଃଖରେ ଭାଙ୍ଗି ପଡିଲା । ସମସ୍ତେ ତାକୁ ବିଭିନ୍ନ ଭାବରେ ବୁଝାଇବାକୁ ଚେଷ୍ଟା କଲେ । ତା ବାପା ପ୍ରଭାତ ବୁଝାଇଲେ- ଦେଖ ମାଆ! ମତେ ତୁ ଲୋକହସା କରନା । ତୁ ଯଦି ଆଶ୍ରମକୁ ଚାଲିଯାଉ ତା' ହେଲେ ସମସ୍ତେ କହିବେ ଝିଅଟା ସନ୍ନ୍ୟାସିନୀ ହୋଇଗଲା । ଆଜିକାଲି ଆଶ୍ରମ, ସନ୍ନ୍ୟାସୀ, ସନ୍ନ୍ୟାସିନୀମାନଙ୍କ ବିଷୟରେ ଆମ ସମାଜର ଲୋକମାନଙ୍କର ଭଲ ଧାରଣା ନାହିଁ ।

ସ୍ୱାତୀ ଯୁକ୍ତି ବାଢିଲା - ଆପଣ ଓଲଟା କଥା କହୁଛନ୍ତି ବାପା ! ଆଧାତ୍ମିକ ମାର୍ଗରେ ଜୀବନ ବଞ୍ଚିବା ସବୁଠୁ ଉତ୍କୃଷ୍ଟ କଥା । ଭୋଗ, ବିଳାସ ଓ ସଂସାରର ମୋହ, ମାୟା ତ୍ୟାଗକରି ସନ୍ନ୍ୟାସୀ କି ସନ୍ନ୍ୟାସିନୀ ହେବା ସମସ୍ତଙ୍କ ପକ୍ଷେ ସହଜ ନୁହେଁ କି ସମ୍ଭବ ନୁହଁ। ପୃଥିବୀର ଅଧିକାଂଶ ଲୋକ ଭୋଗ ବିଳାସ ପାଇଁ ବିବାହ ପରି ସହଜ ବାଟକୁ ବାଛି ନିଅନ୍ତି । ଏ ସଂସାରୀମାନେ ବିଭିନ୍ନ ମିଛ, ମାୟା, ଅସତ୍ୟ, ଅନ୍ୟାୟ, ଅଧର୍ମ ପଥରେ ପାଦ ଦେଇଥାନ୍ତି । ଏମିତିଆ ଜୀବନର ମିଠା ସମସ୍ତଙ୍କ ମୁହଁ ବନ୍ଦ କରିଦିଏ । ସେମାନେ ଜାଣିଶୁଣି ପ୍ରତିଦିନ ପାପ ପଙ୍କରେ ପାଦ ଭର୍ତ୍ତି କରନ୍ତି । ପଙ୍କରେ ତାଙ୍କ ପାଦ



Digitized by srujanika@gmail.com

ବୁଡେ, ଅଣ୍ଟା ବୁଡେ, ଛାତି ବୁଡେ, ବେକ ବୁଡେ । କେବଳ ପାଟି , ନାକ ଆଉ ଆଖି ଖୋଲାଥାଏ । ସେମାନେ ଆପ୍ରାଣ ଚେଷ୍ଟା କରନ୍ତି ପଙ୍କରୁ ଉଠିବାକୁ । କିନ୍ତୁ ଉଠି ପାରନ୍ତି ନାହିଁ । ସେମାନେ ସମସ୍ତେ ଜାଣନ୍ତି ଏଥିରୁ ସେମାନେ ଉଠି ପାରିବେ ନାହିଁ, ତଥାପି ସେମାନେ ହାତଗୋଡ ଛାଟି ପଙ୍କରୁ ଉଠି ଆସିବାର ପ୍ରୟାସ ଜାରି ରଖିଥାନ୍ତି ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ।

ପ୍ରଭାତ ବିରକ୍ତ ହେଲେ - ତୁ ମୋତେ ପ୍ରବଚନ ଶୁଣାନା ସ୍ୱାତୀ ! ମୋର ସେସବୁ ଶୁଣିବାରେ ଆଗ୍ରହ ନାହିଁ କି ଧୈର୍ଯ୍ୟ ନାହିଁ । ମୁଁ ଜଣେ ବାସ୍ତବବାଦୀ ମଣିଷ । ସ୍ୱପ୍ନର ମୂଲ୍ୟ ମୋ ପାଖରେ କିଛି ନାହିଁ । ଜଣେ ମଣିଷ ବିବାହ କରି ମଧ ଆଧ୍ୟାତ୍ମିକ ଜୀବନ ବଞ୍ଚିବାରେ କିଛି ଅସୁବିଧା ନାହିଁ କିମ୍ୱା ବାରଣ ନାହିଁ । ବିବାହ ନ କରିବା ଅର୍ଥ ଜୀବନକୁ ସାମନା ନ କରି ପାରି ପୃଷ୍ଠଭଙ୍ଗ ଦେଇ ପଳାୟନ କରିବା । ତୋତେ ବିବାହ କରିବାକୁ ପଡିବ । ଏମିତି ପଳାଇ ଯିବାକୁ ମୁଁ ତୋତେ ଦେବି ନାହିଁ ।

ସ୍ୱାତୀର କଣ୍ଠ ଅଧିକ ଦୃଢ ହେଲା - ନା ବାପା! ବିବାହ କରିବା ନ କରିବା ବିଷୟରେ ନିଷ୍ପତ୍ତି ନେବି ମୁଁ, ଆପଣ ନୁହଁ । ଆପଣ ଜନ୍ମ ଦେଇଛନ୍ତି, ବଢେଇଛନ୍ତି, ପାଠ ପଢେଇଛନ୍ତି, ଏ ସବୁ ବିଷୟରେ ଆପଣଙ୍କର ପୂର୍ଣ୍ଣ ଅଧିକାର ଥିଲା । ଆପଣ ଯାହା ଚାହିଁଲେ ତାହା କଲେ । କିନ୍ତୁ ମୋ ଜୀବନ ମୁଁ କେମିତି ବଞ୍ଚିବି ସେ ନିଷ୍ପତ୍ତି ମୋର ଏକଚାଟିଆ । ମୋର ଏ ନିଷ୍ପତ୍ତିକୁ ପରିବର୍ତ୍ତନ କି ନିୟନ୍ତ୍ରଣ କରିବାର ଅଧିକାର ବାପା, ମାଆ, ଭାଇ କିମ୍ୱା ଅନ୍ୟ କୌଣସି ଗୁରୁଜନଙ୍କର ନାହିଁ । ଜୀବନ ବଞ୍ଚିବାର ମାତ୍ର ଗୋଟିଏ ବାଟ ନୁହଁ ଅନେକ ବାଟ ଅଛି । ଏଇ ଯେମିତି ବିବାହ କରି ଘର ସଂସାର ଓ ପିଲାଛୁଆ ନେଇ ବଞ୍ଚିବା, ବିବାହ ନ କରି ଏକ ବ୍ୟାଚେଲର ଜୀବନ ବଞ୍ଚିବା, ବିବାହ କରି ଏକ ନିର୍ଦ୍ଦିଷ୍ଟ ବୟସରେ ଘର, ସଂସାର, ସ୍ୱାମୀ, ପୁତ୍ର, କନ୍ୟା ଛାଡି ସନ୍ନ୍ୟାସ ନେବା କିମ୍ୱା ଆଦୌ ବିବାହ ନ କରି ଆରମ୍ଭରୁ ଆଧ୍ୟାତ୍ମିକ ଜୀବନ ବଞ୍ଚିବା । ପୃଥିବୀର ପ୍ରାୟ ଅଧିକାଂଶ ଲୋକଙ୍କୁ ପ୍ରଥମ ପନ୍ଥାଟି ଭଲ ଲାଗୁଚି ଅଥବା ସେଇଟା ସବୁଠୁ ସହଜ ଓ ବହୁ ଲୋକ ଗ୍ରହଣ କରିଥିବା ପନ୍ଥା ବୋଲି ସେମାନେ ତାକୁ ଆପଣାଇ ନେଉଛନ୍ତି । ସେ ଜୀବନ ବଞ୍ଚିବାରେ ଯେ କେତେ ଅସୁବିଧା ଅଛି ସେକଥା ପ୍ରତି ସମସ୍ତେ ହୁଏତ ପ୍ରଥମରୁ ସଚେତନ ନୁହଁନ୍ତି । ଏଇ ଯେମିତି ଗୋଟିଏ ଝିଅ ଯାହାକୁ ବିବାହ କରିବ ସିଏ ମଣିଷଟିଏ ନା ରାକ୍ଷସଟିଏ ତାହା ଜାଣିବା ବେଳକୁ ତା' ହାତରୁ ପ୍ରତିକାରର ସମୟ ଅତିବାହିତ ହୋଇଯାଇଥାଏ । ଯଦି ବି ତାର ସ୍ୱାମୀଟି ଭଲ ମଣିଷ ହୋଇଥାଏ, ତଥାପି ମଧ ଝିଅର



Digitized by srujanika@gmail.com

ରକ୍ଷା ନାହିଁ । ଯଦି ବିବାହ ପରେ ସେ ଝିଅଟିର ସନ୍ତାନ ନ ହେଲା, ତା ହେଲେ ସମସ୍ତ ଦୋଷ ତା ମୁଣ୍ଡରେ ଲଦିଦେଇ ତା ଜୀବନକୁ ଦୁର୍ବିସହ କରିଦେବେ । ଯଦିବା ତା ଗର୍ଭରୁ ସନ୍ତାନ ଜନ୍ମିଲା ତେବେ ପୁଅ ନ ହୋଇ ଝିଅ ହେଲେ ନିସ୍ତାର ନାହିଁ । ପେଟ ଭିତରେ ଝିଅ ଅଛି କି ପୁଅ ଅଛି ତାର ପରୀକ୍ଷା କରାଯିବ ଏବଂ ପରୀକ୍ଷାରୁ ଯଦି ଜଣାପଡେ ଝିଅଟିଏ ଅଛି ତାହେଲେ ତାକୁ ପେଟ ଭିତରେ ମାରି ଦିଆଯିବ ।

ଝିଅଟିଏ ତାର ବିବାହ ପୂର୍ବରୁ ବୈବାହିକ ଜୀବନର ଏତେ ସବୁ ଦୁଃଖ, କଷ୍ଟ, ନିର୍ଯ୍ୟାତନା କଥା ଜାଣିବା ପରେ ବିବାହ କରି ସଂସାର କରିବାକୁ ସାହସ କରି ପାରିବ ତ ? ଆଉ ରହିଲା ଚାକିରି କରି ଆର୍ଥିକ ସ୍ୱାବଲମ୍ବୀ ହୋଇଥିବା ଝିଅମାନଙ୍କ ବୈବାହିକ ଜୀବନର ସୁଖ, ଦୁଃଖର ହିସାବ କଥା । ଚାକିରି କରିଥିବା ଝିଅଟି ଘରେ ରୋଷେଇ, ଲୁଗାସଫା, ଘରସଜ୍ଜା, ଅତିଥିଚର୍ଚ୍ଚା, ସନ୍ତାନପାଳନ ସହିତ ଅଫିସ୍ କାମକରେ । କୋଉଟାକୁ ସିଏ ଠିକ୍ ଭାବେ କରିବ, ଆଉ କେମିତି କେତେବେଳେ କରିବ ? ରୋଜଗାରିଆ ଝିଅ ହିସାବରେ ବାପଘର ଲୋକମାନଙ୍କର ଅନେକ ପ୍ରତ୍ୟାଶା ଥାଏ ତା'ଠାରୁ । ତାର ସ୍ୱାମୀ ସବୁବେଳେ ହିସାବ ଖୋଜେ ସିଏ ପାଉଥିବା ଦରମା ଟଙ୍କାର କାଳେ ସିଏ ସେଥିରୁ କିଛି ଟଙ୍କା ଦେଇଦେବ ତା'ବାପଘରକୁ । ସନ୍ଦେହ କରେ ତା' ଅଫିସ୍‌ର ପୁରୁଷ ବନ୍ଧୁମାନଙ୍କ ସହିତ ମିଳାମିଶାକୁ ନେଇ । ସ୍ୱାମୀ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ସ୍ତ୍ରୀଟି ସୁଖ ପାଏନା କି ନିଜକୁ ଆର୍ଥିକ ଦୃଷ୍ଟିରୁ ସ୍ୱାବଲମ୍ବୀ କରି ଗଢିଥିବା ସ୍ତ୍ରୀ ଶାନ୍ତି ପାଏନା ।

ପ୍ରଭାତ କହିଲେ - ତୁ ତାହେଲେ ବୈବାହିକ ଜୀବନକୁ ଭୟ କରି ସନ୍ନ୍ୟାସିନୀ ହେବାକୁ ଚାହୁଁଛୁ, ତୋ ଭିତରେ ଆଧ୍ୟାତ୍ମିକ ଚେତନା ଉଦ୍‌ଭବ ହୋଇନାହିଁ ?

ସ୍ୱାତୀ ଜବାବ ଦେଲା - ମୁଁ ଏ ପୁରୁଷ ପ୍ରଧାନ ସମାଜ ବିରୁଦ୍ଧରେ ଯୁଦ୍ଧକରି ନାରୀମାନଙ୍କୁ ମୁକ୍ତ କରି ପାରିବି ନାହିଁ । ମୁଁ ଯାହା ବିରୁଦ୍ଧରେ ଲଢିବି ସେମାନେ ମୋର ବାପା, ବଡବାପା, ଦାଦା, ମାମୁ, ମଉସା, ପିଉସା କିମ୍ବା ଭାଇ ପରି ପୁରୁଷ । ମୁଁ ପ୍ରଥମେ ଏଇ ସାମାଜିକ ସଂପର୍କ କାଟିବା ପାଇଁ ପରିବାର ଛାଡିବି । ଆଶ୍ରମରେ ରହିବି । ଆଶ୍ରମରେ ରହିଲେ ମତେ ସମାଜଠୁ ଉର୍ଦ୍ଧ୍ୱରେ ରହିବାର ସୁଯୋଗ ମିଳିବ । ମୁଁ ସ୍ୱାଧୀନଭାବେ ଚିନ୍ତା କରି ପାରିବି, ମୁକ୍ତଭାବେ ଜୀବନ ବଞ୍ଚିବି । ମୋ ପଛରେ କି ଆଗରେ ସ୍ୱାମୀ, ସନ୍ତାନ କି ଅନ୍ୟ କୌଣସି ପାରିବାରିକ କି ସାମାଜିକ ବାଧା କି ବନ୍ଧନ ନଥିବ ।

ସ୍ୱାତୀର ଦୃଢତା ଦେଖି ସେ ଦିନ ପ୍ରଭାତ, ପ୍ରତିମା ଓ ସ୍ୱାତୀର ଭାଇ ଭଉଣୀ



Digitized by srujanika@gmail.com

ସମସ୍ତେ ଚୁପ୍ ହୋଇଯାଇଥିଲେ ।

ସ୍ୱାତୀ ପାଇଁ ସେଇ ରାତି ଥିଲା ତା' ନିଜ ଘରେ ଶେଷ ରାତି । ସମସ୍ତେ ନିଦରେ ଶୋଇବା ପରେ ରାତି ଚାରିଟାବେଳେ ଶ୍ୱାତୀ ତା' ବ୍ରିଫକେସ୍‌ରେ କିଛି ପୋଷାକ ଭର୍ତ୍ତି କରି ଘର ଛାଡିଲା । ରେଳ ଷ୍ଟେସନରେ ପହଞ୍ଚି ଦେଖିଲା ଅନ୍ଧାର ଅଛି । ଟିକେଟ କାଟି ଟ୍ରେନ୍ ଚଢିଲା । ଝରକା ପାଖ ସିଟରେ ବସି ବାହାରକୁ ଚାହିଁଥିଲା । ଭୁବନେଶ୍ୱର ପଛକୁ ରହିଯାଉଥିଲା ଓ ସ୍ୱାତୀ ଆଗକୁ ଆଗକୁ ଚାଲି ଯାଉଥିଲା ।

ପ୍ରଭାତ ସକାଳୁ ପ୍ରଥମେ ଦେଖିଲେ ତାଙ୍କ ହାତବନ୍ଧା ଘଣ୍ଟା ତଳେ କ୍ଷୁଦ୍ର ଚିଠିଟିଏ ଥୁଆ ହୋଇଛି । ସ୍ୱାତୀର ଚିଠି । ସିଏ ଲେଖିଥିଲା- ମୁଁ ଶ୍ରଦ୍ଧାନନ୍ଦଜୀଙ୍କ ଆଶ୍ରମକୁ ଚାଲିଯାଉଛି । ଆପଣ ଆଉ ବୋଉ ମୋତେ ଆଶୀର୍ବାଦ କରନ୍ତୁ, ମୁଁ ମୋ ଲକ୍ଷ୍ୟ ହାସଲ କରିବାରେ ସଫଳ ହୁଏ ।

ଏମିତି ଗୋଟେ ଘଟଣା ଘଟିବ ବୋଲି ପ୍ରଭାତ ଆଗରୁ ପ୍ରସ୍ତୁତ ଥିଲେ । ସିଏ ସ୍ତ୍ରୀଙ୍କୁ ବୁଝାଇଲେ, ସିଏ ତା' ବାଟରେ ଯାଇଛି, ତାକୁ ଅଟକାଇ ଲାଭ ନାହିଁ । ଆମର ଆଉ ଦୁଇଟା ଝିଅ ଅଛନ୍ତି । ସେମାନଙ୍କ ଭବିଷ୍ୟତ ଆମେ ଗଢିବା । ତା' ଭବିଷ୍ୟତ ସିଏ ନିଜେ ଗଢୁ । ନିଆରା ରାସ୍ତାରେ ଚାଲିବାର ସ୍ୱାଦ ଚାଖୁ ।

ସ୍ୱାତୀ ଚାଲିଯିବାର ଦୁଇବର୍ଷ ପର୍ଯ୍ୟନ୍ତ ପ୍ରଭାତ ଓ ପ୍ରତିମାଙ୍କୁ ଅନେକ ଲୋକ ଅନେକ ସାନ୍ତ୍ୱନା ଦେଇଛନ୍ତି । କିଏ କହିଛନ୍ତି- ଏତେ ବ୍ୟସ୍ତ ହେବାର କ'ଣ ଅଛି ? ସିଏ ତ ସବୁଠୁ ଭଲ ମାର୍ଗ ବାଛି ନେଇଚି । ତାର ସମସ୍ତ ସମୟ ଭଗବତ ଚିନ୍ତା ଆଉ ଭଜନ, କୀର୍ତ୍ତନରେ କଟିବ । ଆଶ୍ରମ ପରିବେଶରେ ଦିନଟେ ବୁଲି ଆସିଲେ କେତେ ଶାନ୍ତି ଲାଗୁଚି । ସେଠି ଆମ ପରି ତାମସିକ ଆହାର ନାହିଁ । ସବୁଦିନ ଠାକୁରଙ୍କ ପ୍ରସାଦ ସେବନ କରିବ । ମନରେ ଭଗବାନଙ୍କ ନାମ, କାନରେ ଭଗବାନଙ୍କ ନାମ । ଏମିତିଆ ଜୀବନ ବଞ୍ଚିବା ସମସ୍ତଙ୍କ ଭାଗ୍ୟରେ କ'ଣ ଜୁଟେ ? ଦୁଃଖ,ଜଂଜାଳ ନାହିଁ, ମାୟାମୋହ ନାହିଁ, ଅସତ୍ୟ ଅନ୍ୟାୟ ନାହିଁ, ପରନିନ୍ଦା ପରଚର୍ଚ୍ଚା ନାହିଁ କି ସଂସାର ବନ୍ଧନ ନାହିଁ । ଅଛି ଭକ୍ତି ଭାବନା, ମୁକ୍ତି ଚେତନା, ଶାନ୍ତି କାମନା, ଗଭୀର ସାଧନା । ଏମିତି ଆଧ୍ୟାତ୍ମିକ ଜୀବନଧାରାକୁ ଆପଣାଇ ନେଇଥିବା ମଣିଷକୁ ଆମ ପୁରାଣ ଶାସ୍ତ୍ରରେ ଉଚ୍ଚ ଆସନ ଦିଆ ଯାଇଥିଲା । ଏ ପୃଥିବୀ ଯେତିକି ଯେତିକି ବସ୍ତୁବାଦୀ ହେଲା ସେତିକି ସେତିକି ସେ ସବୁ ପଥ ହୁଡିଲା । ଏବେ ଏ ପୃଥିବୀ ସଂପୂର୍ଣ୍ଣ ବସ୍ତୁବାଦୀ ହୋଇଯାଇଛି । ତେଣୁ ଆଧ୍ୟାତ୍ମିକ ମାର୍ଗଟା ତାକୁ ଭ୍ରମାତ୍ମକ ଲାଗୁଛି ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ମଝିରେ କିଏ କେମିତି ବୃନ୍ଦାବନ ଯାଇ ସେଠି ସ୍ୱାତୀକୁ ଦେଖିଆସି ଖୁସି ହୋଇଚନ୍ତି । ତା'ର ଆଚାର, ବ୍ୟବହାର ଆଉ ଜ୍ଞାନର ଗରିମା ଦେଖି ମୁଗ୍ଧ ହୋଇଚନ୍ତି । ସେ କଥା ଆସି ତା' ବାପା, ମାଆଙ୍କୁ କହିଛନ୍ତି - ତୁମ ଝିଅ ଆଉ ଆଗ ପରି ନାହିଁ । ତା' କଥାବାର୍ତ୍ତା, ଚାଲିଚଳନ ସବୁ ବଦଳି ଯାଇଛି । ଗୈରିକ ଶାଢ଼ି, ରୁଦ୍ରାକ୍ଷମାଳା, ଆଉ ଫୁଲହାର ପିନ୍ଧି ସିଏ ସାକ୍ଷାତ ଦେବୀ ପରି ସୁନ୍ଦର ଦିଶୁଛି । ତା' ଦେହରୁ ଦିବ୍ୟଜ୍ୟୋତି ବାହାରୁଚି । ସିଏ ଆଶ୍ରମରେ ପ୍ରତି ସଂଧ୍ୟାରେ ପ୍ରବଚନ ଦେଉଛି । ତା' ପ୍ରବଚନ ସଭାରେ ବହୁତ ଶ୍ରୋତା ।

ପ୍ରତିମା ଦିନେ ତାଙ୍କ ସ୍ୱାମୀଙ୍କୁ କହିଲେ- ଏତେ ଲୋକ ଏତେ କଥା କହୁଚନ୍ତି, ମୋ ଝିଅ ଏତେ ଜ୍ଞାନ ଅର୍ଜନ କଲାଣି, ଏତେ ନାଆଁ କମେଇ ଲାଣି, ଚାଲ ଆମେ ଦିନେ ବୃନ୍ଦାବନ ଯାଇ ତାକୁ ସେଠି ସ୍ୱଚକ୍ଷୁରେ ଦେଖି ଆସିବା ।

ପ୍ରଭାତ ମନା କଲେ - ନା, ସିଏ ଆମଠୁ ସଂପର୍କ କାଟି ଚାଲି ଯାଇଛି । ଦିନଟିଏ ହେଲେ, ଚିଠି ଖଣ୍ଡେ ଦେଇନାହିଁ କି ଫୋନ୍‌ଟିଏ କରି ନାହିଁ । ଆମେ କାହିଁକି ତା' ପାଖକୁ ଯିବା ? ସିଏ ଆମ ଏ ପରିବାରର ସଂକୀର୍ଣ୍ଣ ପରୀସୀମା ପରିତ୍ୟାଗ କରି ବୃହତ୍ତର ପରିସୀମା ଛୁଇଁବାକୁ ଆଗେଇଛି । ଆମେ କାହିଁକି ତାକୁ ସେଥିରେ ବାଧା ଦେବା ? ତା ସାଧନା ପଥରେ ପ୍ରତିବନ୍ଧକ ସୃଷ୍ଟି କରିବା ଠିକ୍ ହେବ ନାହିଁ । ସିଏ ଯେତେବେଳେ ଆହୁରି ବଡ ହେବ, ଆହୁରି ଅଧିକ ନାଆଁ କମେଇବ, ଯେତେବେଳେ ତାର ଜ୍ଞାନର ଆଲୋକ ଆମ ପର୍ଯ୍ୟନ୍ତ ପହଞ୍ଚିବ , ସେତେବେଳେ ଆମେ ତାକୁ ଦେଖିପାରିବା । ଯେତେବେଳେ ତା' କଣ୍ଠସ୍ୱର ଆମକୁ ଏଠିକି ଶୁଭିବ ଆମେ ଶୁଣିବା । ମୁଁ ଭାବୁଚି ସିଏ ଠିକ୍ ବାଟରେ ଆଗେଇ ଚାଲିଛି । ତାକୁ ଆମେ ଏଇଠି ଏଇ ଭୁବନେଶ୍ୱରରେ ଥାଇ ଦେଖିପାରିବା, ଶୁଣିପାରିବା । ମୋ ମନ କହୁଚି ସେ ଦିନ ଆଉ ବେଶି ଡେରି ନାହିଁ ।

ସ୍ୱାତୀ ଘର ଛାଡି ବୃନ୍ଦାବନ ଆଶ୍ରମ ଯିବା ଦିନଟିକୁ ପ୍ରତିମା ପ୍ରତିବର୍ଷ ପାଳନ କରନ୍ତି । ସାଇ ପଡିଶା ସମସ୍ତଙ୍କୁ ଲିଙ୍ଗରାଜଙ୍କ ମହାପ୍ରସାଦ ଆଣି ଖୁଆନ୍ତି । ସ୍ୱାତୀର ମଙ୍ଗଳ କାମନା କରନ୍ତି । ଏଇ ପାଞ୍ଚ ବର୍ଷ ଭିତରେ ପ୍ରତିମାଙ୍କ ପରିବାରରେ ବେଶ୍ କିଛି ପରିବର୍ତ୍ତନ ଘଟି ଯାଇଛି । ପୁଅ ବାହା ହୋଇ ତା' ସ୍ତ୍ରୀ ସହିତ ରାଉରକେଲାରେ ରହୁଛି । ଦୁଇ ଝିଅ ବିବାହ କରି ନିଜ ନିଜ ସ୍ୱାମୀଙ୍କ ଚାକିରି ସ୍ଥାନରେ ରହୁଛନ୍ତି । ଗୋଟେ ଜ୍ୱାଇଁ ଇଂଜନିୟର, ଆର ଜଣକ ଡାକ୍ତର । ପ୍ରଭାତ ସରକାରୀ ଚାକିରିରୁ ଅବସର ନେଇଛନ୍ତି । ସରକାରୀ ଘର ଛାଡି ନିଜ ତିଆରି ଘରେ ରହୁଛନ୍ତି ।

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ପ୍ରଭାତ ଦିନେ ଶୁଣି ଆସି ସ୍ତ୍ରୀଙ୍କୁ କହିଲେ ଯେ ସ୍ୱାମୀ ଶ୍ରଦ୍ଧାନନ୍ଦ ଭୁବନେଶ୍ୱର ଆସିଛନ୍ତି । ତାଙ୍କ ସହିତ ସ୍ୱାତୀ ମଧ୍ୟ ଆସିଛି । ଆଜି ସ୍ୱାମୀଜୀଙ୍କ ପ୍ରବଚନ ଅଛି କ୍ୟାପିଟାଲ ହାଇସ୍କୁଲ ପଡିଆରେ ।

ପ୍ରତିମା ଖୁସିରେ ଅଧୀର ହୋଇ ସଙ୍ଗେ ସଙ୍ଗେ ବାହାରିଲେ ନିଜ ଝିଅକୁ ଦେଖିବାକୁ । ପ୍ରଭାତ ବୁଝାଇଲେ- ଏତେ ବ୍ୟସ୍ତ ହେବା ଉଚିତ ନୁହଁ । ଏ ଦିନ ବେଳରେ ତା' ପାଖକୁ ଯିବା ଠିକ୍ ନୁହଁ । ତାର ତା' ବାପା, ମାଆଙ୍କୁ ଦେଖିବାର ଥିଲେ ସିଏ ଆମ ଘରକୁ ଆସିଥାନ୍ତା । ତୁମେ ସଂଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କର । ଆମେ ପ୍ରବଚନ ସଭାକୁ ଯିବା । ସେଇଠି ଆମେ ତାକୁ ଦେଖିବା, ତା ସହିତ କଥାବାର୍ତ୍ତା କରିବା ।

ସଂଧ୍ୟା ସାଢେ ସାତଟାରେ ପ୍ରବଚନ ଆରମ୍ଭ । ପ୍ରତିମା ଓ ପ୍ରଭାତ ସଂଧ୍ୟା ସାତଟା ବେଳକୁ ସଭାରେ ପହଞ୍ଚି ଦେଖିଲେ ସଭାସ୍ଥଳ ଲୋକ ଗହଳିରେ ଭରପୂର । ପ୍ରତିମା ଚାହୁଁଥିଲେ ପ୍ରଥମ ଦୁଇ, ତିନି ଧାଡି ଭିତରେ ଆସନ ଦୁଇଟି ପାଇବାକୁ, କିନ୍ତୁ ତାହା ସମ୍ଭବ ହେଲା ନାହିଁ । ସେ ଦୁହେଁ ବହୁ କଷ୍ଟ କରି କୌଣସି ମତେ ପନ୍ଦରତମ ଧାଡିରେ ନିଜ ପାଇଁ ଆସନ ଦୁଇଟି ଯୋଗାଡ କରି ବସିଗଲେ ।

ତାଙ୍କ ପ୍ରତୀକ୍ଷାର ଶେଷ ହେଲା । ପ୍ରଥମେ ମଞ୍ଚ ଉପରକୁ ଆସିଲେ ସ୍ୱାମୀ ଶ୍ରଦ୍ଧାନନ୍ଦଜୀ ଆଉ ତାଙ୍କ ପଛକୁ ତାଙ୍କ ଝିଅ ସନ୍ନ୍ୟାସିନୀ ସୁଶ୍ରୀ ସ୍ୱାତୀ । ଗୈରିକ ଶାଢି, ବେକରେ ରୁଦ୍ରାକ୍ଷ ହାର, ବାହୁ ଆଉ ମଣିବନ୍ଧରେ ଧଳା ରଜନୀଗନ୍ଧା ଫୁଲର ଗଜରା । ସାକ୍ଷାତ ଦେବୀ ପ୍ରତିମା ପରି ସୁନ୍ଦର ଆଉ ତେଜୋଦୀପ୍ତ । ମାଆ ସ୍ୱାତୀ ! ବୋଲି ପ୍ରତିମାଙ୍କ ପାଟିରୁ ବାହାରିବା ବେଳେ ପ୍ରଭାତ ତାଙ୍କୁ ଆକଟ କଲେ- ଚୁପ୍‌ଚାପ୍ ବସ ଆଉ ପ୍ରବଚନ ଶୁଣ ।

ସ୍ୱାମୀଜୀ ସ୍ୱାତୀ ବିଷୟରେ ସଂକ୍ଷିପ୍ତ ପ୍ରାରମ୍ଭିକ ସୂଚନା ଦେଇ କହିଲେ- ପ୍ରଥମେ ସୁଶ୍ରୀ ସ୍ୱାତୀ ପ୍ରବଚନ ଦେବେ । ଆପଣମାନେ ତାଙ୍କ କଥା ଧୀରସ୍ଥିର ଭାବେ ଶୁଣନ୍ତୁ । ମନରେ ଯଦି କିଛି ସନ୍ଦେହ ରହେ ତେବେ ନିଃସଂକୋଚରେ ପଚାରନ୍ତୁ ; ସିଏ ତାହା ଦୂର କରିବେ ।

ସ୍ୱାତୀ ପ୍ରଥମେ ସ୍ୱାମୀ ଶ୍ରଦ୍ଧାନନ୍ଦଜୀଙ୍କ ପାଦ ଛୁଇଁ ପ୍ରଣାମ କରି ଗୋଟିଏ ଶ୍ଳୋକରୁ ତାଙ୍କ ପ୍ରବଚନ ଆରମ୍ଭ କଲେ । ଶୁଦ୍ଧ ସଂସ୍କୃତ ଉଚ୍ଚାରଣ, ଓଜସ୍ୱିନୀ କଣ୍ଠ, ଗଭୀର ଜ୍ଞାନର ଗରିମା, ତଥ୍ୟ ଓ ତର୍କପୂର୍ଣ୍ଣ ବିଶ୍ଳେଷଣ, ବହୁଶାସ୍ତ୍ର ଓ ଜ୍ଞାନ ଗର୍ଭକ ପ୍ରବଚନ ପ୍ରଦାନ କରି ସୁଶ୍ରୀ ସ୍ୱାତୀ ଉପସ୍ଥିତ ଶ୍ରୋତାମାନଙ୍କୁ ଚମତ୍କୃତ କଲେ ।ସ୍ୱାତୀଙ୍କ ପ୍ରବଚନରେ ମୁଗ୍ଧ



Digitized by srujanika@gmail.com

ଶ୍ରୋତାମାନେ ପ୍ରଭାତ ଓ ପ୍ରତିମାଙ୍କୁ ସାକ୍ଷାତ କରି ତାଙ୍କୁ ପ୍ରଶଂସାରେ ପୋତି ପକାଇଲେ । ଏମିତି ଜଣେ ପୁଣ୍ୟବତୀ ଝିଅର ବାପା, ମାଆ ହୋଇଥିବାରୁ ସେ ଦୁହେଁ ନିଜକୁ ଧନ୍ୟ ମନେ କଲେ । ଅନେକ ଲୋକ ସେମାନଙ୍କ ଆଡକୁ ଆଙ୍ଗୁଳି ନିର୍ଦ୍ଦେଶ କରି ପରସ୍ପରଙ୍କୁ ଚିହ୍ନାଇ ଥିଲେ- ସେଇ ପନ୍ଦରତମ ଧାଡିରେ ବସିଥିବା ପ୍ରୌଢ ପ୍ରୌଢା ଦୁଇଜଣ ସନ୍ନ୍ୟାସିନୀ ସୁଶ୍ରୀ ସ୍ୱାତୀଙ୍କ ବାପା, ମାଆ ।

ନିଜ ଝିଅ ଯୋଗୁ ପ୍ରଭାତ ଓ ପ୍ରତିମା ଆଜି ଗର୍ବିତ । ନିଜ ଝିଅ ନାଆଁରେ ସେମାନେ ଆଜି ପରିଚିତ । ଆଜି କେହି କହୁ ନାହାଁନ୍ତି ପ୍ରଭାତ ଓ ପ୍ରତିମାଙ୍କ ଝିଅ ସ୍ୱାତୀ । ସମସ୍ତେ ତାଙ୍କୁ କହୁଛନ୍ତି ସେମାନେ ସୁଶ୍ରୀ ସ୍ୱାତୀଙ୍କ ବାପା, ମାଆ ବୋଲି । ସ୍ୱାତୀ ତା' ନିଜ ପାଇଁ ଗୋଟେ ବୃହତ୍ତର ପରିଚୟ ସୃଷ୍ଟି କରି ପାରିଛି । ସନ୍ତାନ ନିଜର ପରିଚୟ ନିଜେ ସୃଷ୍ଟି କରୁ, ପୁଣି ଏମିତି ଏକ ଶୁଦ୍ଧ, ମହିମାନ୍ୱିତ ଓ ବୃହତ୍ତର ପରିଚୟ ସୃଷ୍ଟି କରୁ ବୋଲି କୋଉ ବାପା ମାଆ ନ ଚାହାନ୍ତି ?ସ୍ୱାତୀର ପ୍ରବଚନ ସରିବା ପରେ ଉପସ୍ଥିତ ସମସ୍ତ ଶ୍ରୋତା ସ୍ୱାତୀ ପାଖକୁ ଯାଇ ଉଚ୍ଛ୍ୱସିତ ପ୍ରଶଂସା କଲେ । ପ୍ରତିମା ଠିଆ ହେଲେ ସ୍ୱାତୀ ପାଖକୁ ଯିବା ପାଇଁ । ପ୍ରଭାତ ତାଙ୍କ ହାତ ଧରି ସଭାଠୁ ବାହାରକୁ ଟାଣି ନେଇ କହିଲେ - ନା, ପ୍ରତିମା ! ସିଏ ଏବେ ଆଉ ତୁମ ଝିଅ ହୋଇ ନାହିଁ । ସିଏ ପାରିବାରିକ ସଂପର୍କର ଉର୍ଦ୍ଧ୍ୱକୁ ଚାଲିଯାଇଛି । ତାକୁ ତୁମେ ଆଉ ସଂପର୍କର ସଂକୀର୍ଣ୍ଣ ବନ୍ଧନରେ ବାନ୍ଧିବାକୁ ଚେଷ୍ଟା କରନା । ଏଇ ଦୂରରୁ ଥାଇ ତାକୁ ଆଉ ତାର କାର୍ଯ୍ୟକଳାପକୁ ଦେଖ, ଖୁସିହୁଅ, ଗର୍ବକର । ତାକୁ ଆଶୀର୍ବାଦ କର ଯେମିତି ସିଏ ତା ଲକ୍ଷ୍ୟ ହାସଲରେ ସଫଳ ହେବ ।

ପ୍ରତିମା କିଛି ନ କହି ଆଖିରୁ ଲୁହ ଗଡାଇଲେ । ପ୍ରଭାତ ରାତ୍ରିର ଖୋଲା ଓ ନିର୍ମଳ ଆକାଶ ଆଡକୁ ହାତ ବଢାଇ କହିଲେ - ଆକାଶର ଏଇ ପୂର୍ଣ୍ଣମୀ ଜହ୍ନକୁ ଦେଖ ପ୍ରତିମା । ଆମ ସ୍ୱାତୀ ଆଜି ଏଇ ଜହ୍ନ ପରି ପୃଥିବୀ ଆକାଶରେ ଝଲମଲ । ଜହ୍ନକୁ ପାଖରେ ପାଇବାରେ ଆନନ୍ଦ ନ ଥାଏ, ତାକୁ ଏମିତି ଦୂରରୁ ଦେଖି ସମସ୍ତେ ଖୁସି ହୁଅନ୍ତି । ତୁମେ ସେମିତି ତୁମ ଝିଅକୁ ତା' ସ୍ଥାନରେ ଝଲମଲ ହେବାକୁ ଦିଅ । ଦୂରରୁ ଦେଖି ଖୁସି ହୁଅ , ନିଜକୁ ଗର୍ବିତ ମନେକର ।ପ୍ରତିମା ତାଙ୍କ ଆଖିରୁ ଲୁହ ପୋଛିଲେ । ପ୍ରଭାତ ପଚାରିଲେ - ତୁମେ କାନ୍ଦୁଛ ? ପ୍ରତିମା ହସିବାକୁ ଚେଷ୍ଟା କରୁ କରୁ କହିଲେ - ନା, ନା, ଏଟା ଅତି ଖୁସିର ଲୁହ । ମୁଁ କାନ୍ଦୁନି, ହସୁଛି ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଭଡାଘର

ତମ ଚାକିରି ଦଶ ବର୍ଷଥିଲା ସେବେଠୁ ମୁଁ ତୁମକୁ କହୁଚି ଭୁବନେଶ୍ୱରରେ ଘରଟିଏ ତିଆରି କର । ମୋ କଥା ତୁମେ ଶୁଣଲ ନାହିଁ । ଆଉ ମାସ ଛଅଟା ପରେ ତମର ରିଟାୟାରମେଣ୍ଟ । ରିଟାୟାରମେଣ୍ଟ ପରେ କୋଉଠି ରହିବ ଶୁଣେ ?

ସଦାଶିବ ଅନୁରାଧାଙ୍କ କଥାର ତୁରନ୍ତ କିନ୍ତୁ ସଂକ୍ଷିପ୍ତ ଉତ୍ତରଟିଏ ଫେରାଇଲେ- କାହିଁକି ଏତେ ବ୍ୟସ୍ତ ହେଉଛ ? ଆମେ ଦୁଇ ଜଣ ରହିବା ପାଇଁ କଣ ଘରର ଅଭାବ ଅଛି ?

ଅନୁରାଧା ପ୍ରଶ୍ନ କଲେ - ଆମ ରହିବା ପାଇଁ ତମେ କ'ଣ ମୋ ଅଗୋଚରରେ ଏ ଭୁବନେଶ୍ୱରରେ କେଉଁଠି ଘର କିଣିଚ ନା କ'ଣ ?

ସଦାଶିବ ଅନୁରାଧାଙ୍କ ମୁହଁକୁ ଚାହିଁ ମୁରକି ମୁରକି ହସିଲେ ଆଉ କହିଲେ- ଏମିତି କିଛି କାମ ମୁଁ କେବେ କରିଛି ତୁମକୁ ନ ଜଣାଇଁ ? ତୁମକୁ ବିବାହ କରିବା ପରଠୁ ମୁଁ ପରା ଅନ୍ୟ କୌଣସି ଝିଅ ସହିତ ତୁମ ଅଗୋଚରରେ କଥା ପଦେ ବି ହୁଏ ନାହିଁ । ତୁମେ ପରା ଜାଣିଚ ମୋର ପ୍ରେମିକା ପ୍ରିୟମ୍ୱଦା ଦେଇଥିବା ଲଗାତର ଅଠରଟି ଚିଠିର ଉତ୍ତର ମୁଁ ଦେଇନାହିଁ । ପ୍ରିୟମ୍ୱଦାର ସବୁ ଚିଠି ମୁଁ ତୁମ ହାତରେ ଦେଇଥିଲି, ଏକଥା ତୁମେ କ'ଣ ଅସ୍ୱୀକାର କରିବ ?

ଅନୁରାଧା ଟିକେ ହସି କହିଲେ-ଏତେ ଦିନ ପରେ ସେ ପ୍ରିୟମ୍ୱଦା ଭୂତ ତୁମ ମୁଣ୍ଡକୁ କାହିଁକି ଘାରିଲା ? ଏବେ ହୁଏତ ସିଏ ମୋ ପରି ବୁଢୀ ହୋଇ ଯିବନି । ତାର ମୁଣ୍ଡବାଳ କିଛି କିଛି ଧଳା ହୋଇ ଯିବନି । ତମେ ଖବର ରଖିଚକି ନାହିଁ ମୁଁ ଜାଣେନା, କିନ୍ତୁ ମୋ ସାନ ଭାଇ ମହେଶ କହୁଥିଲା ପ୍ରିୟମ୍ୱଦାର ସ୍ୱାମୀ ପ୍ରକାଶ ମହାନ୍ତି ରିଟାୟାର କଲେଣି । ସିଏ ରାଉରକେଲାରେ ଜାଗା କିଣି ନିଜର ଘର ତିଆରି କରି ତୁମ ପ୍ରେମିକା ପ୍ରିୟମ୍ୱଦାକୁ ସୁଖରେ ରଖିଛନ୍ତି । ପ୍ରିୟମ୍ୱଦା ତୁମକୁ ବାହା ନ ହୋଇ ପ୍ରକାଶବାବୁଙ୍କୁ ବିବାହ କରି ଭଲରେ ଅଛି । ତୁମକୁ ବିବାହ କରିଥିଲେ ତୁମେ ତାକୁ କୋଉଠି ରଖିଥାନ୍ତ ? ତୁମ ଗାଆଁର ସେଇ ପୁରୁଣା ଘରେ ନା ଭୁବନେଶ୍ୱରର କୋଉ ଭଡାଘରେ ?

- କାହିଁକି ଭଡାଘରଟା ଖରାପ କଣ ? ବୁଲି ବୁଲି ଯେତେ ଇଚ୍ଛା ସେତେ ଘର

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଦେଖିବ । ସେଥି ମଧ୍ୟରୁ ଯେଉଁ ଘରଟା ପସନ୍ଦହେବ ସେଇ ଘର ପାଇଁ ଆଡଭାନ୍ସ ଦେବ । ଘର ତିଆରି କରିବାର ଝାମେଲା ନାହିଁ । ଘର ମେଣ୍ଟିନାସ୍ କରିବାର ତକ୍‌ଲିଫ୍ ନାହିଁ । ଆଜି ପାଇଖାନା ଚୋକ୍ ହେଲା କି କାଲି ପାଣିପମ୍ପ ଖରାପ ହେଲାଣି, ସେ ସବୁ ହରକତ ନାହିଁ । ମାସ ଶେଷରେ ଘରଭଡାଟା ଘର ମାଲିକ ଥାଳରେ ପକାଇ ଦେଲେ ଆଉ କିଛି ଟେନ୍‌ସନ୍ ନାହିଁ । ଯେତେବେଳେ ଯାହା ଅସୁବିଧା ହେଲା ଘରମାଲିକଙ୍କୁ ଫୋନ୍‌ଟେ କରିଦେଲେ ସିଏ ତେଣିକି ସେ କଥା ବୁଝିବେ । ଯା'ଠୁ ଆରାମ କ'ଣ ନିଜ ଘରେ ମିଳିବ ?

ଭଡାଘରେ କେବେ ତୁମେ ରହିନା ବୋଲି ଏକଥା କହୁଚ । ସରକାରୀ କ୍ୱାର୍ଟର ପରି ଭଡାଘର ଆରାମଦାୟକ ନୁହଁ । ଆମ ଶାମୁକା ବରର କଂପାନୀ ଚାକିରି । ସିଏ ଭଡାଘରେ ରହୁଛନ୍ତି । ଶାମୁକା କଣ କହୁଥିଲା ତୁମେ କ'ଣ ଶୁଣିନା ?

ସଦାଶିବ ପରିହାସ କରି କହିଲେ- ତମେ କଣ କେବେ ତମ ସାନ ଭଉଣୀମାନଙ୍କ ସହିତ ମୋତେ ମିଶିବାକୁ ସୁଯୋଗ ଦିଅ ? ତମର ଧାରଣା ମୁଁ କୁଆଡେ ଭାରି ଦୁଷ୍ଟ । ସେମାନଙ୍କ ସହିତ ମିଶିଲେ ମୁଁ କାଳେ ଦୁଷ୍ଟାମି କରିବି ।

ଅନୁରାଧା ଲାଜେଇ ଯାଇ କହିଲେ- ସବୁବେଳେ ସେଇକଥା ତୁମ ମୁହଁରୁ କାହିଁକି ବାହାରେ ? ଅବସର ନେବାକୁ ବସିଲଣି ତଥାପି ତୁମେ ବଦିଳିଲ ନାହିଁ । ଭଡାଘର କଥା ଆମେ କଥାବାର୍ତ୍ତା ହେଲାବେଳକୁ କଥାର ମଙ୍ଗକୁ ତମେ ଏଣେ ତେଣେ କ'ଣ ମୋଡୁଚ ? ଶାମୁକା କହୁଥିଲା, ସିଏ ଯେଉଁ ଭଡାଘରେ ଥିଲେ ସେଘରର, ମାଲିକ ପ୍ରତିମାସ ପ୍ରଥମ ରବିବାର ଦିନ ଆସିବ ଘରଭଡା ନେବାକୁ । ଏମାନେ ଲଗାଇଥିବା ଅମୃତଭଣ୍ଡା, କଦଳୀ ଆଉ ସଜନା ଗଛର ସବୁଯାକ ଫଳ ତୋଳିନେବ । ଭଦ୍ରାମି ଦୃଷ୍ଟିରୁ ସେମାନଙ୍କୁ ଥରଟେ ସୁଦ୍ଧା ପଚାରିବ ନାହିଁ ।

ସଦାଶିବ ଘରମାଲିକର ପକ୍ଷନେଇ ଯୁକ୍ତିକଲେ- ସେ ଘରମାଲିକ କିଛି ଭୁଲ୍ କରୁ ନାହାଁନ୍ତି । ଭଡାଟିଆ ମାସ ସାରା ବଗିଚାର ଫଳମୂଳ ଖାଇବେ, ଘରମାଲିକ ମାସରେ ମାତ୍ର ଥରଟେ ନେବେ । ତାଙ୍କ ଘର ପାଇଁ ସିନା ଶାମୁକା ଭଡ଼ା ଦଉଚି, ତାଙ୍କ ବଗିଚା ପାଇଁ ଭଡା ଦଉଚିକି ?

ଅନୁରାଧା କହିଲେ- ତମେ ଜଣେ କଜଳପାତିଆ ଭଦ୍ରଲୋକ । ଇଏ ମାସ ସାରା ଗଛର ଯତ୍ନନେବେ, ପାଣିଦେବେ, କୋଡାଖୁସା କରିବେ, ସାରଖତ ଦେବେ ଆଉ ସିଏ ମାସ ଶେଷରେ ଆସି ଫଳତକ ତୋଳିନେବେ । ବାଃ, ଭାରି ନ୍ୟାୟ କଥା ଇଏ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଭଡାଘର ସପକ୍ଷ, ବିପକ୍ଷ ଯୁକ୍ତି ସେଦିନ ଅନେକ ସମୟ ପର୍ଯ୍ୟନ୍ତ ଚାଲିଥାନ୍ତା । ହଠାତ୍ ଲ୍ୟାଣ୍ଡ ଫୋନ୍‌ଟା ବାଜିଲା । ଅନୁରାଧା ଉଠିଯାଇ ଫୋନ୍ ଉଠାଇଲେ । ବଡ ଝିଅ ଚିନ୍ମୟୀର ଫୋନ୍ । ଚିନ୍ମୟୀ ତା ସ୍ୱାମୀଙ୍କ ସହିତ ଦିଲ୍ଲୀରେ ରହେ । ସିଏ ମାଆଙ୍କୁ ଫୋନ୍‌ରେ କହିଲା- ବାପାଙ୍କର ରିଟାୟାରମେଣ୍ଟ ପାଖ ହେଲାଣି । ସରକାରୀ କ୍ୱାର୍ଟର ତ ବେଶି ଦିନ ରଖିହେବ ନାହିଁ । ଗାଆଁଘର ଅବସ୍ଥା ଯାହା ସେଠି ଯାଇ ତମେ ଦୁହେଁ ରହିବା ସମ୍ଭବ ନୁହଁ । ତା' ଛଡା ବଡବାପା, ବଡବୋହୂ ଆଉ ତାଙ୍କ ପୁଅ ବୋହୂ ସେଘରେ ରହୁଛନ୍ତି । ତାଙ୍କ ସହିତ ଆଡଜଷ୍ଟ କରି ତୁ ଆଉ ବାପା ଆଦୌ ଚଳି ପାରିବ ନାହିଁ । ତୁ ବାପାଙ୍କୁ କହ ସିଏ ଭୁବନେଶ୍ୱର ଟାଉନ୍ ଭିତରେ ଥିବା ଯେକୌଣସି ଫ୍ଲାଟ୍‌ରେ ଘର କିଣନ୍ତୁ । ରିଟାୟାରମେଣ୍ଟ ବେଳେ ତାଙ୍କୁ କିଛି ଟଙ୍କା ମିଳିବ । ମୁଁ ଆଉ ଭାଇ କିଛି ଟଙ୍କା ଦେବୁ । ତୁ ବାପାଙ୍କୁ ରାଜି କରାଇ ଯେମିତି ହେଲେ ଫ୍ଲାଟ ଘରଟିଏ କିଣ । ଫ୍ଲାଟଘରେ ରହିବା ସବୁ ଦୃଷ୍ଟିରୁ ସୁବିଧା । ନିରାପଦ ସ୍ଥାନ । ସହରର ଦୋକାନ, ବଜାର, ପରିବା ମାର୍କେଟ ଆଉ ଡାକ୍ତରଖାନା ସବୁ ସୁବିଧା, ସବୁପାଖ । ପାହାଚ ଉଠା କଷ୍ଟ ନାହିଁ, ଲିଫ୍ଟ ଅଛି । ଚୋର ଭୟ ନାହିଁ, ସିକ୍ୟୁରିଟି ଗାର୍ଡ ଦିନରାତି ବନ୍ଧୁକ ଧରି ଜଗିଛନ୍ତି ।

ଅନୁରାଧା ଚିନ୍ମୟୀର ସବୁକଥା ଶୁଣି ସଂକ୍ଷିପ୍ତ ଉତ୍ତରଟିଏ ଦେଲେ- ତୁ ସିନା ଏତେ ସହଜରେ ମୋତେ ବୁଝାଇଦେଲୁ , ହେଲେ ତୋ ବାପା କ'ଣ ମୋ କଥା ଶୁଣିବେ ନା ବୁଝିବେ । ସିଏ ଅଶୁଣା ମହାଦେବ । ଯାହା ବୁଝିଥିବେ ସେଇଆ ।

ସଦାଶିବ ବଡ ପାଟିରେ ପ୍ରଶ୍ନ କଲେ- କିଏ ତୁମ କଥା ଶୁଣୁ ନାହିଁକି ବୁଝୁନାହିଁ ? ମୁଁ ନା ଆଉ କିଏ ? ତମେ କାହା ସହିତ କଥା ହେଉଛ ?

ଅନୁରାଧା ଫୋନ୍‌ର ରିସିଭରଟାକୁ ସଦାଶିବଙ୍କ ଆଡକୁ ବଢାଇ ଦେଇ କହିଲେ- ନିଅ, ଦିଲ୍ଲୀରୁ ଚିନୁ ଫୋନ୍ କରିଛି । ସିଏ କହୁଛି ଫ୍ଲାଟଘର କିଣିବା ପାଇଁ । ତମରତ ଏକା ଜିଦି ଭଡାଘରେ ରହିବା ସବୁଠୁ ଭଲ । ନିଅ, ତା ସହିତ କଥା ହୁଅ ।

ସଦାଶିବ ଫୋନ୍‌ଟା ଧରି ଦୁଇ ତିନି ଥର ହ୍ୟାଲୋ ହ୍ୟାଲୋ କହିଲେ । ସେପଟରୁ କିଛି ଉତ୍ତର ନାହିଁ । ଚିନୁ ସେପଟରେ ଫୋନ୍‌ଟା ଥୋଇଦେଲା ବୋଧହୁଏ ।

ଅନୁରାଧା କହିଲେ- ଫୋନ୍‌ଟା କଟିଗଲା କି କ'ଣ ? ଟିକେ ଅପେକ୍ଷାକର ସିଏ ପୁଣି ଫୋନ୍ କରିବ ।

ସଦାଶିବ ହସି ହସି କହିଲେ- ଫୋନ୍‌ଟା କଟିଗଲା ନୁହଁ, ଚିନୁ ଜାଣି ଜାଣି କାଟିଦେଲା । ସିଏ ଦୁଇ, ତିନି ଦିନ ତଳେ ଫ୍ଲାଟ୍‌ଘର କିଣିବାକୁ ମୋତେ ପରାମର୍ଶ



Digitized by srujanika@gmail.com

ଦେଇଥିଲା । ତା' ଦିନକ ଆଗରୁ ତମ ପୁଅ ସୁଶାନ୍ତ ବି ଏଇ ଫ୍ଲାଟ୍‌ଘର କିଣିବା କଥା ମତେ ଫୋନ୍‌ରେ କହିଥିଲା । ମୁଁ ସେମାନଙ୍କୁ ଫ୍ଲାଟ୍‌ଘରର ଅପକାରିତା ସଂପର୍କରେ ଗୋଟେ ଲମ୍ୱା ରଚନା ଶୁଣାଇ ଦେଇଛି । ସେମାନେ ମତେ ଆଉ ଫ୍ଲାଟ୍‌ଘର କିଣିବା ପାଇଁ ପରାମର୍ଶ ଦେବେ ନାହିଁ । ତେଣୁ ଏବେ ସେମାନେ ତୁମ ପଛରେ ପଡିଛନ୍ତି ।

- ଫ୍ଲାଟ୍‌ଘରର କ'ଣ ସବୁ ଅପକାରିତା ଅଛି ମତେ ତ ତମେ ଏଯାଏ କହିନ? ମୋର ଲମ୍ୱା ରଚନା ଶୁଣିବାକୁ ସମୟ ନାହିଁ । ଠିକେ ଠିକେ କୁହ ।

- ତମେ ପଞ୍ଜୁରୀ ଦେଖିଚ ଅନୁରାଧା ? ପଞ୍ଜୁରୀ ଥାଏ ଚଢେଇ ପୋଷିବା ପାଇଁ । କୌଣସି ଉଚ୍ଚସ୍ଥାନରୁ ପଞ୍ଜୁରୀଟିଏ ଝୁଲୁଥାଏ । ଏ ଫ୍ଲାଟ୍‌ଘର ସେମିତି ମଣିଷ ରଖିବା ପାଇଁ ଅନେକ ଗୁଡିଏ ପଞ୍ଜୁରୀ । ଏବେ ଆମ ଦେଶରେ ବଡ ବଡ ସହରରେ ଆଠ ମହଲା, ଦଶ ମହଲା, ଏପରିକି କୋଡିଏ ମହଲା ଘର ତିଆରି ହେଉଛି । ସେ ଘରେ ଯେଉଁମାନେ ରହୁଛନ୍ତି ସେମାନେ ତଳକୁ ଚାହିଁଲେ ତାଙ୍କ ମୁଣ୍ଡ ବୁଲାଇଦେବ । ଏଇ ଫ୍ଲାଟ୍‌ଘରକୁ ଚଢିବାକୁ କି ତଳକୁ ଓହ୍ଲାଇବାକୁ ଇଲେକ୍ଟ୍ରି ଲିଫ୍ଟ ଲାଗିଛି । ଇଲେକ୍ଟ୍ରି ନଥିବାବେଳେ ପାହାଚ ଚଢ଼ି ଏଘରକୁ ଯିବା କିମ୍ୱା ତଳକୁ ଓହ୍ଲାଇବା କେତେ କଷ୍ଟକର ସେ କଥା ସମସ୍ତେ ଜାଣନ୍ତି । ଏ ଘରେ ରହୁଥିବା ଲୋକର ନିଜର ମାଟି ମୁଠାଏ ନାହିଁ କି ଆକାଶ ଚେନାଏ ନାହିଁ । ଫୁଲ ଗଛଟିଏ କିମ୍ୱା ତୁଳସୀ ଗଛଟିଏ ଲଗାଇବାର ସୁବିଧା ନାହିଁ । ଏ ବୟସରେ ଆମର ଖୋଲା ଜାଗାରେ ବୁଲିବା କି ବସିବା ଭାରି ଦରକାର । ସେ ସୁଯୋଗ ଫ୍ଲାଟ୍‌ଘରେ ଆଦୌ ମିଳିବ ନାହିଁ । ତା ଛଡା ପାଣି, ଲିଫ୍ଟ , ଗ୍ୟାରେଜ, ସିକ୍ୟୁରିଟି ଇତ୍ୟାଦି ପାଇଁ ପ୍ରତିମାସରେ ଘରଭଡା ପରି ଦେଢ଼ ହଜାର କି ଦୁଇ ହଜାର ଟଙ୍କା ଦେବାକୁ ପଡିବ ।

ଅନୁରାଧା ସବୁ ଶୁଣିସାରି କହିଲେ- ଫ୍ଲାଟ୍‌ଘରେ ଏତେ ସବୁ ଅସୁବିଧା ଅଛି ବୋଲି ମୁଁ ଆଗରୁ ଜାଣିନଥିଲି । ଠିକ୍ ଅଛି, ଆମେ ଫ୍ଲାଟଘର କିଣିବା ନାହିଁ । ଆମରତ ଭୁବନେଶ୍ୱରରେ ଜାଗାଖଣ୍ଡେ ଅଛି । ସେ ଜାଗାଟା ସେମିତି କିଛି ଦୂର ନୁହଁ । ସେ ଜାଗାକୁ ଇଲେକ୍ଟ୍ରି ଗଲାଣି । କେବଳ ପାଣି ଲାଇନ୍‌ଟା ଯାଇନାହିଁ । ଆମେ ବୋରିଙ୍ଗ କରି ମୋଟର ବସାଇ ଦେବା । ସରସ୍ୱତୀ ପୂଜା ଆଉ ପନ୍ଦର ଦିନ ଅଛି । ସରସ୍ୱତୀ ପୂଜା ଦିନଟା ଶୁଭ ଦିନ । ସେଇ ଦିନ ଘର ତିଆରି ପାଇଁ ଶୁଭ ଦେଇଦିଅ । ଛଅ ମାସ ଭିତରେ ଘର ତିଆରି କାମ ସାରିହେବ । ଯଦି ଏତେ କମ୍ ଦିନ ଭିତରେ ଘର ତିଆରି ନ ସରିବ, ତେବେ ରହିବାଘର ବଖରେ , ରୋଷେଇଘର ଆଉ ପାଇଖାନାର କାମ ସାରିଦିଅ । ଆଗ ଆମେ ରହିଯିବା । ସେଠି ରହିକି ବାକି କାମ କରିବା ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସଦାଶିବ ଖୁବ୍ ଗମ୍ଭୀର କଣ୍ଠରେ ଉତ୍ତର ଦେଲେ- ଘର ତିଆରି କଥାଟା ତମେ ଯେତେ ସହଜରେ ଆଉ ସାବଲୀଳ ଭାବେ କହିଗଲ ସେଟା ସେତେ ସହଜ ନୁହଁ । ସେଇଥି ପାଇଁ କୁହାଯାଏ- ଶତ୍ରୁକୁ ମତେଇ ଘର ତିଆରି ପାଇଁ ରାଜି କରାଇ ଦିଅ, ତାହେଲେ ସିଏ ସହଜରେ ସାବାଡ ହୋଇଯିବ । ସିଏ ଯେତେ ତାଗଡା ବଳଶାଳୀ ହୋଇଥିଲେ ମଧ୍ୟ ଘର ତିଆରି କାମ ତାର ଦଫାରଫା କରିଦେବ । ସିଏ ଦୁର୍ବଳ ଆଉ ରୋଗଣା ହୋଇଯିବ । ତାର ବୟସ ଦଶ ବର୍ଷ ବଢିଗଲା ପରି ସିଏ ରୁଗଣ୍ ଦେଖାଯିବ । ସିଏ ଯେଉଁଠି ଯେତେ ପଇସା ରଖିଥିବ ସବୁ ସରିଯିବ । ତଥାପି ତାର ଘରକାମ ସରିବ ନାହିଁ । ସିଏ ନାନା ଧାର କରଜରେ ବୁଡିଯିବ ।

ଅନୁରାଧା ଯୁକ୍ତି କଲେ- ନୂଆଘର ତାହେଲେ ଏ ରାଜଧାନୀରେ ଆଉ କେହି କରୁ ନାହାଁନ୍ତି ? ପ୍ରତିଦିନ ତାହେଲେ ଏତେ ସଂଖ୍ୟାରେ ଘର ତିଆରି ହେଉଛି କେମିତି ? ଭୁବନେଶ୍ୱର ଏଇ କେଇଟା ଦିନ ଭିତରେ ତାର ଚାରି ଦିଗକୁ କେମିତି ପବନ ଗତିରେ ମାଡି ଚାଲିଛି ? ଉତ୍ତର ଦିଗକୁ ଭୁବନେଶ୍ୱର ବଢି ବଢି ପହଞ୍ଚିଲାଣି ଫୁଲନଖରାଠି, ଦକ୍ଷିଣରେ ଜାଆଁଳା ଟପିଲାଣି । ପୂର୍ବ ଆଉ ପଶ୍ଚିମ ଦିଗକୁ ସେମିତି କେତେ ନାହିଁ କେତେ ଦୂର କ୍ଷେପିଲାଣି । ଏବେ ଖାଲ, ବିଲ, ପଡିଆ, ଜଙ୍ଗଲ ସବୁ ସମତୁଲ ହୋଇ ଘର ଉପରେ ଘର, ଘର ପରେ ଘର ତିଆରି ଚାଲିଛି । ଆଉ ତମେ କହୁଛ କଣନା ଶତ୍ରୁକୁ ପରାମର୍ଶ ଦେବ ଘର ତିଆରି କରିବାକୁ ? ଯିଏ ଭୁବନେଶ୍ୱରରେ ଜାଗା କିଣି ଘରଟିଏ କରିଛି ସିଏ ଜାଣ ରାଜଧାନୀ ଖଣ୍ଡେ କିଣି ପାରିଛି, ତା' ପାଇଁ ଆଉ ତାର ପୁଅ, ନାତି, ଅଣନାତି ପାଇଁ । ଭୁବନେଶ୍ୱରରେ ଘର କରିବାକୁ ନିର୍ବୁଦ୍ଧିଆ କାମ ବୋଲି ଯିଏ କହେ ସିଏ ନିଜେ ନିର୍ବୁଦ୍ଧିଆ, ନିପାରିଲା, ଦୁର୍ବଳ ଆଉ ଦରିଦ୍ର ମଣିଷ ।

ସଦାଶିବ ଅନୁରାଧାଙ୍କ ଯୁକ୍ତିକୁ ଖଣ୍ଡନ କରିବା ପାଇଁ ପ୍ରତିଶର ଖୋଜିଲେ । କିଛି ସମୟ ଚିନ୍ତା କରି କହିଲେ- ଦୁଇଟି ବେଡରୁମ୍, ଡ୍ରଇଁରୁମ୍, ଡାଇନିଙ୍ଗରୁମ୍, କିଚିନ୍, ଷ୍ଟୋରରୁମ୍, ଦୁଇଟି ଟଏଲେଟର ପ୍ରୋଭିଜନ ରଖି ପକ୍କାଘରଟିଏ ତିଆରି କଲେ କେତେ ଟଙ୍କା ଲାଗିବ ତମେ ଜାଣିଛ ? କାଠ ଦାମ୍ ଆଜିକାଲି ଆକାଶ ଛୁଇଁଲାଣି । ଲୁହାରଡ଼ ଦାମ୍ କ୍ୱିଣ୍ଟାଲ ପ୍ରତି ଛଅ ହଜାର ଟଙ୍କା ପାଖାପାଖି । ସିମେଣ୍ଟ ବସ୍ତାକୁ ୩୫୦ ଟଙ୍କା । ମାର୍ବଲ ବର୍ଗଫୁଟ ସତୁରି,ଅଶି ଟଙ୍କା ,ମିସ୍ତ୍ରୀ ମଜୁରୀ ୫୫୦ଟଙ୍କା ଓ ମୂଲିଆ ମଜୁରୀ ୩୫୦ ଟଙ୍କା ଟପିଲାଣି । ଚଉଦଶହ ବର୍ଗଫୁଟ ପରିମିତ ଘରଟିଏ କଲେ ୨୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇଯିବ । ସେଇ ୨୦ଲକ୍ଷ ଟଙ୍କା ବ୍ୟାଙ୍କରେ ଜମା ରଖିଲେ ବାର୍ଷିକ ଶତକଡା ୮ଟଙ୍କା



Digitized by srujanika@gmail.com

ହାର ସୁଧରେ ବର୍ଷକୁ ମିଳିବ ଲକ୍ଷେ ୧ଲକ୍ଷ ୬୦ ହଜାର ଟଙ୍କା । ମାସିକ ସୁଧ ମିଳିବ ୧୩ହଜାର ୩୩୩ ଟଙ୍କା । ମାସକୁ ମିଳୁଥିବା ସୁଧରେ ତାଠୁ ଯଥେଷ୍ଟ ଭଲ ଘର ଭଡାରେ ମିଳିବ । ତେବେ ତୁମେ ଏବେ କୁହ ଟଙ୍କାକୁ ବ୍ୟାଙ୍କରେ ଜମା ରଖି ତାର ସୁଧ ଟଙ୍କାରୁ କିଛି ଦେଇ ଘରଭଡା ନେଇ ଆରାମରେ ରହିବାଟା ବୁଦ୍ଧିମାନର କାମ କି ନିର୍ବୁଦ୍ଧିଆର କାମ ?

ଅନୁରାଧା ଯୁକ୍ତିରେ ପରାସ୍ତ ହେବା କଣ୍ଠରେ କହିଲେ - ଠିକ୍ ଅଛି, ତୁମକୁ ଯାହା ସୁବିଧା ଲାଗୁଛି ଓ ସୁନ୍ଦର ଦିଶୁଛି ସେଇଆ କର ।

ସଦାଶିବଙ୍କ ଅବସର ଗ୍ରହଣ ଦିନ ଆସି ପହଞ୍ଚିଲା ; ତଥାପି ସେ ନିଜର ଘର ତିଆରି କରିବା ଦିଗରେ କିଛି ପଦକ୍ଷେପ ନେଲେ ନାହିଁ । ସରକାରୀ ଘର ଛାଡିବାକୁ ଠିକ୍ ମାସଟିଏ ଥାଏ ସଦାଶିବ ବାହାରିଲେ ଭଡାଘର ଖୋଜିବାକୁ । ବୁଲିବୁଲି ଅନେକ ଘର ଦେଖିଲେ, ମାତ୍ର ଦୁଇ, ତିନିଟା ଘର ତାଙ୍କ ମନକୁ ପାଇଲା । ଘର ମାଲିକମାନଙ୍କର ସର୍ତ୍ତଶୁଣି ସଦାଶିବ ଆଷ୍ଚର୍ଯ୍ୟ ହେଲେ । ଜଣେ ଘରମାଲିକ ସର୍ତ୍ତ ରଖିଲେ- କାନ୍ଥରେ କଣ୍ଟା ପିଟିବେ ନାହିଁ । ଝରକା, କବାଟ, ଚଉକାଠ କୌଣସିଥିରେ ଯେପରି ଉଈ ନଲାଗନ୍ତି ସେଥିପ୍ରତି ଯତ୍ନବାନ ହେବେ । ଯଦି ଉଈ ଲାଗି କିଛି ନଷ୍ଟ କରନ୍ତି ତାର କ୍ଷତିପୂରଣ ଟଙ୍କା ଆପଣ ଦେବେ । ଦିନେ ଦୁଇ ଦିନଠୁ ଅଧିକ ସମୟ ଘରେ ତାଲା ପକାଇ କୁଆଡେ ଯିବେ ନାହିଁ । ଛାତ ଉପରେ ଫୁଲ ଗଛ କିମ୍ୱା ଅନ୍ୟ କିଛି ଗଛ ଲଗାଇବେ ନାହିଁ । ଏପରିକି ଫୁଲକୁଣ୍ଡ ମଧ ଛାତ ଉପରେ ରଖିବେ ନାହିଁ । ଅଗଣାରେ କିଛି ବଡ ଗଛ ଲଗାଇବେ ନାହିଁ । କଲୋନୀର ଯାହା ଚାନ୍ଦା ଭେଦା ହେବ ତାହା ଆପଣ ବିନା ବାକ୍ୟ ବ୍ୟୟରେ ଦେବେ । ଅଗ୍ରୀମ ଦୁଇ ମାସର ଭଡା ଅମାନତ ଦେବେ । ପ୍ରତିମାସର ପାଞ୍ଚ ତାରିଖ ଭିତରେ ଘରଭଡା ଦେବେ । ତିନି ବର୍ଷ ପରେ ଘର ଛାଡିବେ । ତାଠୁ ଅଧିକ ଦିନ ରହିବାକୁ ଅନୁରୋଧ କରିବେ ନାହିଁ । ଘର ଛାଡିବା ଦୁଇ ମାସ ଆଗରୁ ନୋଟିସ୍ ଦେବେ ।

ଘରମାଲିକଙ୍କର ସମସ୍ତ ସର୍ତ୍ତକୁ ସ୍ୱୀକାର କରି ସେ ଘରଟିକୁ ସଦାଶିବ ଭଡା ନେବା ପାଇଁ ସ୍ଥିର କଲେ, କାରଣ ଅନ୍ୟ ଘରମାଲିକ ଆହୁରି ଅଜବ ସର୍ତ୍ତ ସବୁ ବାଢିଥିଲେ । ଟ୍ରକ୍‌ରେ ସବୁ ଜିନିଷ ବୁହାବୁହି ହୋଇ ନୂଆ ଭଡାଘରକୁ ଆସିଲା । ଜିନିଷପତ୍ର ସବୁ ଯଥା ସ୍ଥାନରେ ସଜାଇ ରଖିବାକୁ ପନ୍ଦର ଦିନ ଲାଗିଗଲା । ଜିନିଷ ସବୁ ଟେକା,ଉଠା କରିବା ଓ ତାକୁ ଠିକଣା ଜାଗାରେ ଥୋଇବାରେ ଅନୁରାଧା ଓ ସଦାଶିବ ଉଭୟଙ୍କ ଅଣ୍ଟା, ପିଠି, ହାତ ଗୋଡ, ଦରଜ ହୋଇଗଲା ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଦିନେ ସଦାଶିବ ଚା’ ପିଉ ପିଉ ଡାକ ପକାଇଲେ - ଅନୁରାଧା ! ଟିକେ ଆସିଲ ।

ଅଧାଧୁଆ ବାସନକୁ ରୋଷେଇ ଘରେ ଥୋଇ ଅନୁରାଧା ଆସି ପହଞ୍ଚିଲେ । ସଦାଶିବ କହିଲେ- ଏମିତିଆ ମାର୍ବଲ ଫ୍ଲୋର ଘର ଶାଗୁଆନ୍ କାଠର କବାଟ, ଝରକା, ଦୁଇ ଦୁଇଟା ବେଡରୁମ୍ , ଅଲଗା ଡାଇନିଙ୍ଗ ରୁମ୍, ଅଲଗା ଡ୍ରଇଁରୁମ୍ ସହିତ ପୋର୍ଟିକୋ ଓ ବାଲକୋନି ଥିବା ଘର ମାସିକ ମାତ୍ର ଆଠ ହଜାର ଟଙ୍କା ଭଡାରେ ପୁଣି ସହର ଭିତରେ ଆମକୁ ମିଳିଲା । ଆମେ କେତେ ଟଙ୍କା ଖର୍ଚ୍ଚ କରିଥିଲେ ଏତେ ଭଲ ଘରଟିଏ ତିଆରି କରି ପାରିଥାନ୍ତେ ? ପୁଣି ଏ ଘରର ଲୋକେସନ ଏତେ ଭଲ ଯେ ଏଠୁ ବଜାର ମୋଟେ ଅଧ କିଲୋମିଟର ଦୂର ।

ଅନୁରାଧା କିଛି ଉତ୍ତର ନ ଦେଇ ରୋଷେଇ ଘରକୁ ଫେରିଗଲେ । ଭଡାଘର ପାଇ ସଦାଶିବ ଏତେ ସନ୍ତୁଷ୍ଟ ଯେ ସିଏ କିଛି ପ୍ରତିକୂଳ ଉତ୍ତର ଦେଲେ କିଛି ଲାଭହେବ ନାହିଁ । କେବଳ ମନୋମାଳିନ୍ୟ ସୃଷ୍ଟିହେବ ।

ସଦାଶିବ ଓ ଅନୁରାଧା ଏ ଭଡାଘରେ ରହିବା ପରେ କିଛି ସାଙ୍ଗ ସାଥୀ , ବନ୍ଧୁବାନ୍ଧବ ଓ ସଂପର୍କୀୟ ବିଭିନ୍ନ କାମରେ ଆସିଛନ୍ତି । ସଦାଶିବ ଉତ୍‌ଫୁଲ୍ଲିତ ହୋଇ ଏ ଭଡାଘରକୁ ସେମାନଙ୍କୁ ବୁଲାଇ ଦେଖାଇଛନ୍ତି । ସେମାନଙ୍କ ଭିତରୁ କେତେକ କିଛି ନ କହି ଘର ଦେଖିଛନ୍ତି । କିନ୍ତୁ ଆଉ କେତେକ ତାଙ୍କ ମୁହେଁ ମୁହେଁ କହିଛନ୍ତି- ଏ ଘର ଦେଖି ଲାଭ କଣ ? ଏଟାତ ଆପଣଙ୍କ ନିଜ ଘର ନୁହଁ, ଭଡାଘର ।

ସଦଶିବ ସେମାନଙ୍କୁ ସଫେଇ ଦେଇଛନ୍ତି - ଏତେ କମ୍ ଭଡାରେ ଏତେ ଭଲ ଲୋକେସନ୍‌ରେ ଯେତେବେଳେ ଏତେ ସୁନ୍ଦର ଘର ମିଳିଛି ଅଯଥା ଉଣେଇଶ କୋଡ଼ିଏ ଲକ୍ଷ ଟଙ୍କା ଖର୍ଚ୍ଚକରି ଘର ତିଆରି କରିବା ବୋକାମି ନୁହଁତ ଆଉ କଣ ? ଘର ତିଆରି କରିବାରେ ଯେତେ ପରିଶ୍ରମ, ଯେତେ ଟେନ୍‌ସନ୍ ସେ କଥା ଘର ତିଆରି କରିଥିବା ଲୋକ ହିଁ ଜାଣେ ।

ଅନୁରାଧା ନିଜ ସ୍ୱାମୀଙ୍କର ଏକତରଫା ଯୁକ୍ତିରେ ଆଦୌ ସନ୍ତୁଷ୍ଟ ହୁଅନ୍ତି ନାହିଁ । ଏ ପୁରୁଷ ପ୍ରଧାନ ସମାଜରେ ଅନୁରାଧାମାନଙ୍କର ଚାରା କାହିଁ ?

ଭଡାଘରେ ରହିବାର ବର୍ଷଟିଏ କଟିଲା । ସଦାଶିବ ଅତ୍ୟନ୍ତ ଖୁସି । ମାସ ଶେଷରେ ଘରଭଡା ଟଙ୍କା ଘର ମାଲିକଙ୍କୁ ଧରାଇ ଦେଲେ ତାଙ୍କର ଅନ୍ୟ କିଛି ଦାୟିତ୍ୱ ନାହିଁ କି ଝାମେଲା ନାହିଁ । ଏଇ ବର୍ଷକ ଭିତରେ ପାଇଖାନା ଥରଟେ ଚୋକ୍ ହୋଇଛି, ପାଣି ଟାଙ୍କିକୁ ପାଣିଉଠା ପମ୍ପ ବି ଥରେ ଖରାପ ହୋଇଛି । ଗୋଟେ ପାଣି ଟ୍ୟାପ ମରାମତି



Digitized by srujanika@gmail.com

ହୋଇଛି । ଘର ମାଲିକଙ୍କୁ ଫୋନ୍ କରି ତିନି, ଚାରି ଘଣ୍ଟା ଅପେକ୍ଷା କରିବା ପରେ ସବୁ ଠିକ୍ ହୋଇ ଯାଇଛି ।

ସଦାଶିବ ଦିନେ ମର୍ଣ୍ଣିଙ୍ଗୱାର୍କରୁ ଫେରିବା ପରେ ହଠାତ୍ ଅସୁସ୍ଥ ହୋଇପଡିଲେ । ଖରାବେଳକୁ ତାଙ୍କର ବାମ ଅଙ୍ଗଟା ଅଚଳ ହୋଇଗଲା । ଅନୁରାଧା ତୁରନ୍ତ ଅଟୋ ରିକ୍ସାଟିଏ ଡାକି ସଦାଶିବଙ୍କୁ ହସ୍‌ପିଟାଲକୁ ନେଇଗଲେ । ପୁଅ ଓ ଝିଅ ଜ୍ୱାଇଁଙ୍କୁ ଫୋନ୍ କରି ଜଣାଇଲେ । ସେମାନେ ସମସ୍ତେ ଆସି ପହଞ୍ଚିଲେ । ସଦାଶିବଙ୍କର ଚିକିତ୍ସା ଚାଲିଲା । କିନ୍ତୁ କିଛି ହେଲେ ଉନ୍ନତି ହେଲାନାହିଁ । ଡାକ୍ତରଙ୍କ ପରାମର୍ଶକ୍ରମେ ସଦାଶିବଙ୍କୁ ଭେଲୋର ନିଆଗଲା । ସେଠି ପହଞ୍ଚିବା ବେଳକୁ ସଦାଶିବଙ୍କର ହୋସ୍ ନଥିଲା । ସିଏ କୋମାରେ ଥିଲେ । ଭେଲୋର ଡାକ୍ତର ପନ୍ଦର ଦିନ ଚିକିତ୍ସା କଲାପରେ ମଧ୍ୟ ତାଙ୍କୁ କୋମାରୁ ନର୍ମାଲ ଅବସ୍ଥାକୁ ଫେରାଇ ଆଣି ପାରିଲେ ନାହିଁ । ଅନ୍ୟ କିଛି ଉପାୟ ନଥିବାରୁ ଡାକ୍ତର ପରାମର୍ଶ ଦେଲେ- ରୋଗୀ କୋମାରେ ମାସ ମାସ ରହିପାରେ । ତେଣୁ ରୋଗୀକୁ ଭୁବନେଶ୍ୱର ଫେରାଇ ନିଅନ୍ତୁ । ଘରେ ରଖି ଚିକିତ୍ସା କରନ୍ତୁ । ତାଙ୍କ ଅବସ୍ଥାରେ ଉନ୍ନତି ଆସିଲେ ଯାହା କରାଯିବ ।

ସଦାଶିବଙ୍କୁ ପନଶ୍ଚ ଭୁବନେଶ୍ୱର ଫେରାଇ ଅଣାଗଲା । ସଦାଶିବ ଘରେ ରହିଲେ । ପ୍ରତିଦିନ ସକାଳେ ଓ ସଂଧ୍ୟାବେଳେ ଡାକ୍ତର ଆସି ସଦାଶିବଙ୍କୁ ଆବଶ୍ୟକ ଚିକିତ୍ସା କଲେ । ପାଖ ନର୍ସିଂହୋମରୁ ଜଣେ ନର୍ସ ଆସି ପ୍ରତିଦିନ ଦୁଇ ଥର ଔଷଧ, ଇଂଜେକେସନ୍ ଦେଲେ । ପୁଅ ଏବଂ ଝିଅ, ଜ୍ୱାଇଁ ନିଜ ନିଜ ଚାକିରି ସ୍ଥାନକୁ ଫେରିଗଲେ । ସେମାନେ ଅନୁରାଧାଙ୍କୁ କହିଗଲେ - ବାପାଙ୍କ ସ୍ୱାସ୍ଥ୍ୟ ଅବସ୍ଥାରେ ଯଦି କିଛି ଉନ୍ନତି କି ଅବନତି ଘଟେ ତା ହେଲେ ଆମକୁ ଫୋନ୍‌ଯୋଗେ ଜଣାଇବ ।

ଦିନେ ଘରମାଲିକ ରଂଜନବାବୁ ଆସି ପହଞ୍ଚିଲେ । କୋମାରେ ଥିବା ସଦାଶିବଙ୍କୁ ଦେଖି ଫେରିଯାଇ ରାତିରେ ଅନୁରାଧାଙ୍କୁ ଫୋନ୍‌କଲେ- ଦେଖନ୍ତୁ ମ୍ୟାଡାମ୍ ! ସଦାଶିବ ବାବୁଙ୍କ ଅବସ୍ଥା ଆଦୌ ଭଲ ନାହିଁ । କେତେବେଳେ କ'ଣ ହେବ କହି ହେବ ନାହିଁ । ତେଣୁ ଭଲ ହେବ ଆପଣ ପହିଲାକୁ ଘରଛାଡି ଦିଅନ୍ତୁ ।

ଅନୁରାଧା କହିଲେ- ଆପଣଙ୍କ ସହ ଆଗ୍ରିମେଣ୍ଟ ହୋଇଥିଲା ଆମେ ଏଘରେ ତିନିବର୍ଷ ରହିବୁ । ମାତ୍ର ଗୋଟିଏ ବର୍ଷ ଦୁଇ ମାସ ହୋଇଚି । ଆପଣଙ୍କ ଘରଭଡା ଆମେ ଠିକ୍ ସମୟରେ ଦେଉଛୁ । ଘର ଛାଡିବା କଥା ଆପଣ କାହିଁକି କହୁଛନ୍ତି ? ସିଏ ଅସୁସ୍ଥ ଅଛନ୍ତି । ଏମିତି ଅବସ୍ଥାରେ ମୁଁ ତାଙ୍କୁ ଅନ୍ୟ କେଉଁଠିକି କେମିତି ସିଫ୍ଟ କରିବି ? ତାଙ୍କ



Digitized by srujanika@gmail.com

ଦେହ ଭଲ ହୋଇଗଲେ ଆମେ ନିଶ୍ଚୟ ଆପଣଙ୍କ ଘର ଛାଡିଦେବୁ ।

ଅବଶ୍ୟ ସେ ରାତିରେ ରଂଜନବାବୁ ଅନୁରାଧାଙ୍କୁ ଆଉ କିଛି କହିଲେ ନାହିଁ; କିନ୍ତୁ ତା' ଚାରି ଦିନ ପରେ ପୁଣି ଥରେ ଫୋନ୍ କରି କହିଲେ- ସଦାଶିବବାବୁଙ୍କ ଅବସ୍ଥା ଆଦୌ ଭଲ ନୁହଁ । ତାଙ୍କୁ ଭେଲୋର ଡାକ୍ତର ଫେରାଇ ଦେଲେ । ସିଏ ସୁସ୍ଥ ହେବାର ଆଶା ଆଉ ଦିଶୁନାହିଁ । ଯଦି ମୋ ଘରେ ତାଙ୍କର ଭଲ ମନ୍ଦ କିଛି ହୋଇଯାଏ, ମୋ ଘରକୁ ଭଡାନେବାକୁ ଆଉ କେହି ରାଜି ହେବେ ନାହିଁ । ତେଣୁ ମୋର ଶେଷକଥା ଆପଣ ଏଇ ମାସ ଶେଷରେ ମୋ ଘର ଛାଡି ଦିଅନ୍ତୁ ।

ଅନୁରାଧାଙ୍କର ଅନ୍ୟ କିଛି ଉତ୍ତର ଶୁଣିବା ପୂର୍ବରୁ ରଂଜନବାବୁ ସେ ପଟେ ଫୋନ୍ ଥୋଇଦେଲେ । ଅନୁରାଧା ସବୁକଥା ଫୋନ୍ ଯୋଗେ ସୁଶାନ୍ତକୁ ଜଣାଇଲେ । ସୁଶାନ୍ତ ସାନ୍ତ୍ୱନା ଦେଲା- ତମେ ବ୍ୟସ୍ତ ହୁଅନା ମାଆ ! ମୋ ସାଙ୍ଗ ସବ୍ୟସାଚୀକୁ ମୁଁ କହିଛି ସିଏ ଆଉ ଗୋଟେ ଘର ଯୋଗାଡ କରି ସେଠିକି ସିଫ୍ଟ କରାଇଦେବ ।

ସେ ଦିନ ସଂଧ୍ୟାବେଳକୁ ସବ୍ୟସାଚୀ ଆସି ଅନୁରାଧାଙ୍କୁ ସାକ୍ଷାତ କଲା । ତା' ନଜରରେ କେତେଟା ଭଡାଘର ଅଛି ବୋଲି କହିଲା । ଏଇ ଆଠ ଦଶ ଦିନ ଭିତରେ ସିଏ ନିଶ୍ଚୟ ଭଡାଘରଟିଏ ଯୋଗାଡ କରିଦେବ ଓ ଗାଡି ଠିକ୍ କରି ସେଠାକୁ ସିଫ୍ଟ କରିବାର ସମସ୍ତ ବନ୍ଦୋବସ୍ତ କରିଦେବ ବୋଲି ପ୍ରତିଶ୍ରୁତି ଦେଇଗଲା ।

କିନ୍ତୁ ଦୁଇଦିନ ପରେ ସବ୍ୟସାଚୀ ଫୋନ୍‌ଯୋଗେ ଜଣାଇଲା ଯେ ମଉସାଙ୍କ ଅସୁସ୍ଥ ଅବସ୍ଥା କଥା ଜାଣି କେହି ଘରଭଡା ଦେବାକୁ ରାଜିହେଉ ନାହାଁନ୍ତି । ସେ ସମସ୍ତ ଘର ମାଲିକଙ୍କର ଗୋଟିଏ କଥା, ଯଦି କୌଣସି ଘରେ ଭଡାଟିଆ ମରିଯାଏ ତେବେ ସେ ଘରକୁ କେହି ଭଡାନେବାକୁ ରାଜିହେବେ ନାହିଁ ।

ସୁଶାନ୍ତ ଫୋନ୍ କଲା- ମାଆ, ତମେ ବ୍ୟସ୍ତ ହୁଅନା, ମୁଁ ଏଇ ଶନିବାର ଦିନ ଯାଇ ପହଞ୍ଚୁଛି । ମୁଁ ଗଲେ ଯାହା କିଛି ବ୍ୟବସ୍ଥା କରିବା ।

ଘରମାଲିକ ବାରମ୍ବାର ଫୋନ୍ କରି ଅନୁରାଧାଙ୍କୁ ବ୍ୟତିବ୍ୟସ୍ତ କରି ଚାଲିଛନ୍ତି । ଆସନ୍ତା ମାସ ପହିଲା ପୂର୍ବରୁ ତାଙ୍କୁ ଯେମିତି ହେଲେ ଘର ଖାଲି କରିବାକୁ ପଡିବ । ଅନୁରାଧାଙ୍କର କୌଣସି କଥା ସିଏ ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି ।

ମାଆଙ୍କ ଫୋନ୍ ପାଇ ଶନିବାର ଦିନ ସକାଳ ସାତଟାରେ ସୁଶାନ୍ତ ଆସି ଘରେ ପହଞ୍ଚିଲା । ପୁଅର ପାଟି ଶୁଣି ସଦାଶିବ ହଠାତ ଆଖି ଖୋଲି ଚାହିଁଲେ । ସୁଶାନ୍ତ ପାଟିକରି ମାଆଙ୍କୁ ଡାକିଲା- ମାଆ ! ଦେଖିବ ଆସ ବାପା କୋମାରୁ ଫେରି ଆସିଛନ୍ତି ।

ଅନୁରାଧା ଆସି ସଦାଶିବଙ୍କ ମୁଣ୍ଡ ଆଉଁଶି ଦେଲେ । ସଦାଶିବ କିଛି କହିବାକୁ



Digitized by srujanika@gmail.com

ଚାହୁଁଛନ୍ତି, କିନ୍ତୁ କିଛି କହିପାରୁ ନାହାଁନ୍ତି । ସୁଶାନ୍ତ ଫୋନ୍‌କରି ଡାକ୍ତରଙ୍କୁ ଡକାଇଲା । ଡାକ୍ତର ଆସି ସଦାଶିବଙ୍କୁ ପରୀକ୍ଷା କରି କହିଲେ- ଏଥର ସଦାଶିବବାବୁ ଆଉଟ୍ ଅଫ୍ ଡେଞ୍ଜର । ସିଏ ଖୁବ୍ ଶୀଘ୍ର ଭଲ ହୋଇ ଯିବେ । ତାଙ୍କ ସ୍ୱାସ୍ଥ୍ୟର ଚମତ୍କାର ଉନ୍ନତି ହୋଇଛି ।

ଡାକ୍ତର ଆଉ କିଛି ଔଷଧ ଲେଖିଦେଇ ଗଲେ । ତାଙ୍କୁ ସଙ୍ଗେ ସଙ୍ଗେ ସେ ଔଷଧ ଖୋଇ ଦିଆଗଲା । ଅଚଳ ହୋଇଥିବା ହାତ ପାଦର ଆଙ୍ଗୁଠି ଚାରି ପାଞ୍ଚ ଦିନ ଭିତରେ ଚାଲିଲା । ପନ୍ଦର ଦିନ ପରେ ସଦାଶିବ ବିଛଣା ଛାଡି ଉଠି ବସିଲେ । କଥାବାର୍ତ୍ତା କଲେ । ନିଜେ ଘରମାଲିକଙ୍କୁ ଫୋନ୍‌କରି କହିଲେ - ରଂଜନବାବୁ! ମୁଁ ଆପଣଙ୍କ ଘରେ ଭଡାରେଥିବା ସଦାଶିବ କହୁଛି । ମୋର ଏବେ ଆଉ ମରିବାର ଆଶଙ୍କା ନାହିଁ। ମୁଁ ଏବେ କୋମାରୁ ସଂପୂର୍ଣ୍ଣ ଭାବେ ମୁକ୍ତ ।

ଘରମାଲିକ ଲଜ୍ଜିତ କଣ୍ଠରେ କହିଲେ- ଆପଣ ସୁସ୍ଥ ହୋଇଗଲେ, ଖୁବ୍ ଖୁସୀ କଥା । ଏବେ ଆପଣ ଆଉ ଘର ଛାଡିବା କିଛି ଆବଶ୍ୟକ ନାହିଁ । ଆପଣଙ୍କ ଇଚ୍ଛା ଆପଣ ଯେତେଦିନ ରହିପାରନ୍ତି ।

ସଦାଶିବ କହିଲେ- ଯେତେ ଦିନ ଇଚ୍ଛା ସେତେଦିନ ନୁହଁ, ମୁଁ ଆପଣଙ୍କ ଘରେ ଆଉ ମାତ୍ର ବର୍ଷଟିଏ ରହିବି । ଏଇ ବର୍ଷକ ଭିତରେ ମୁଁ ମୋ ନିଜ ପ୍ଲଟ୍‌ରେ ଘର ତିଆରି କରି ସେଠିକୁ ସିଫ୍ଟ କରିଯିବି ।

ଅନୁରାଧା ଖଣ୍ଡେ ଦୂରରେ ଠିଆ ହୋଇ ସଦାଶିବଙ୍କ କଥା ଶୁଣୁଥିଲେ । ସିଏ ଖୁବ୍ ଖୁସି ହୋଇ କହିଲେ- ଭଡାଘରେ ରହିବାରେ ଥିବା ଅସୁବିଧା କଥା ତୁମେ ଏତେ ଦିନେ ତାହେଲେ ବୁଝିପାରିଲ ?

ସଦାଶିବ ହସି ହସି ଉତ୍ତର ଦେଲେ-ନା,ନା, ମୁଁ ଏବେବି କହୁଛି ଭଡ଼ାଘରେ ରହିବାରେ କିଛି ହେଲେ ଅସୁବିଧା ନାହିଁ । କିନ୍ତୁ ମୁଁ ଏବେ ଜାଣି ପାରିଲି ଯେ, ଘର ମାଲିକମାନେ ଭଡାଟିଆଙ୍କୁ ଭଡାଘରେ ମରିବାକୁ ଦେବେ ନାହିଁ । ତେଣୁ ନିଜର ଗୋଟେ ଘର ଦରକାର ଯେଉଁଠି ନିଜେ ଆରାମରେ ରହି ପାରିବ ଆଉ ଆରାମରେ ମରି ପାରିବ।

ଅନୁରାଧା, ସୁଶାନ୍ତ ଓ ସଦାଶିବ ଏକ ସଙ୍ଗରେ ହସି ଉଠିଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ପ୍ରଥମ ପ୍ରେମ

କଲିଂବେଲ୍ ବାଜିଲା । ସୁଚିତ୍ରା ମାଗାଜିନ୍ ପଢ଼ା ଅଧାରେ ରଖି ଉଠିଲେ କବାଟ ଖୋଲିବାକୁ । କିନ୍ତୁ ଏ ଖରାବେଳଟାରେ କିଏ କଲିଂବେଲ୍ ବଜାଇଲା ? କୋରିଅର ସର୍ଭିସ୍‌ବାଲା କିମ୍ୱା ଡାକବାଲା ହୋଇଥାଇ ପାରେ । କବାଟ ଖୋଲିବା ପୂର୍ବରୁ କବାଟରେ ଥିବା ପିପିଙ୍ଗ୍ ହୋଲ୍‌ର ମ୍ୟାଜିକ୍ ଆଖିରେ ଚାହିଁଲେ । ମୁହଁଟା ଦିଶୁନି । ଲୋକଟା କବାଟକୁ ଲାଗି ଠିଆ ହୋଇଛି ।

ସୁଚିତ୍ରାଙ୍କୁ ଭୟ ଲାଗିଲା । ଏ ସହରୀ ଜୀବନରେ ଏମିତି ଅଜଣା ଲୋକ ପୁଣି ନିର୍ଜନ ଖରାବେଳେ । କବାଟ ଖୋଲିଦେବା ପରେ ଆଉ କିଛି ଉପାୟ ନଥିବ । ସୁଚିତ୍ରା ଘର ଭିତରେ ଥାଇ ପ୍ରଶ୍ନକଲେ- ଆପଣ କିଏ ଡାକୁଚନ୍ତି ?

ବାହାରେ ଠିଆ ହୋଇଥିବା ଲୋକ ଉତ୍ତର ଦେଲେ-ଭୟ କରନା ଚିତ୍ରା ! କବାଟ ଖୋଲିଲେ ଦେଖିବ କିଏ ଡାକୁଚି ।

କଣ୍ଠସ୍ୱର ଚିହ୍ନା ଚିହ୍ନା ଲାଗିଲା ସୁଚିତ୍ରାଙ୍କୁ । କବାଟ ଖୋଲିଦେଇ ସେ ଚମକି ପଡ଼ିଲେ ଓ କହିଲେ- ଆରେ ଚନ୍ଦ୍ର ! ତମେ ଏ ଭୁବନେଶ୍ୱରରେ ? ତମେ ଆମର ଏ କ୍ୱାର୍ଟର ଠିକଣା କେମିତି ପାଇଲ ?

ଚନ୍ଦ୍ରକାନ୍ତ ସୁଚିତ୍ରାଙ୍କ କୌଣସି ପ୍ରଶ୍ନର ଉତ୍ତର ନ ଦେଇ ଓଲଟା ପ୍ରଶ୍ନ କଲେ- କ'ଣ ଘର ଭିତରକୁ ଡାକିବ ନାହିଁ ? ଘର ଦୁଆର ମୁହଁରେ ଏମିତି ଜେରା କରି ଚାଲିଥିବ ?

ସୁଚିତ୍ରା ଅପ୍ରସ୍ତୁତ ହୋଇ ଉତ୍ତର ଦେଲେ - ନା, ସେମିତି କିଛି ନୁହଁ । ତମକୁ ହଠାତ୍ ଦେଖି ମୁଁ ଏମିତି ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ଯେ ସାଧାରଣ ଭଦ୍ରାମି ଭୁଲିଯାଇଥିଲି । ଠିଆହେଲ କାହିଁକି ? ଆସ, ଭିତରକୁ ଆସ ।

ଚନ୍ଦ୍ରକାନ୍ତ ଘର ଭିତରକୁ ଆସି ଘରର ସାଜସଜ୍ଜାକୁ ଚାହିଁଲେ । ସୋଫାରେ ବସୁ ବସୁ କହିଲେ- ରିଏଲି, ଭେରି ନାଇସ୍ । ସୁନ୍ଦର ଭାବେ ତୁମେ ତୁମ ଡ୍ରଇଂରୁମ୍‌କୁ ସଜେଇଚ । ତୁମ ରୁଚିକୁ ତାରିଫ୍ କରିବାକୁ ପଡ଼ିବ ।

ସୁଚିତ୍ରା ସୋଫାରେ ବସିବା ପୂର୍ବରୁ କବାଟଟାକୁ ଭିତର ପଟୁ ଭଲକରି ହୁକ୍ ଲଗାଇ ଦେଲେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଚନ୍ଦ୍ରକାନ୍ତ ରସିକତା କରି କହିଲେ- ହମ୍ ତୁମ୍ ଏକ୍ କମରେମେ ବନ୍ଦ୍ ହେ ।

ସୁଚିତ୍ରା ତାଗିଦ୍ କଲେ- ଏଡ଼େ ପାଟି କରନା, ସହରୀ ପଡ଼ୋଶୀମାନଙ୍କ କାନ ଭାରି ସାର୍ପ । କଲେଜ ଜୀବନର ଫାଜିଲାମି ତୁମର ଏପର୍ଯ୍ୟନ୍ତ ଗଲାନି । ତୁମ ବିଭାଘର କେତେ ବର୍ଷ ହେଲା ଗଲାଣି ? ପନ୍ଦର ବର୍ଷ ହେଇଯିବ ବୋଧହୁଏ ?

- ତୁମେ ତ ମୋର ଦୁଇ ବର୍ଷ ଆଗରୁ ବିବାହ କରିଚ । ତୁମ ଚେହେରାରେ କିନ୍ତୁ କିଛି ପରିବର୍ତ୍ତନ ନାହିଁ । କଲେଜ ଝିଅ ବୟସର ଗୋଟିଏ ସୁନ୍ଦରୀ ଝିଅର ଚିତ୍ରପରି ତମ ଚେହେରା ଆଜିବି ଝଟକୁଛି । ତୁମେ ଶିଳ୍ପୀର ତୂଳୀରେ ଅଙ୍କା ଚିତ୍ରଟିଏ ପରି ସୁନ୍ଦର ।

ସୁଚିତ୍ରା ଲାଜେଇ ଯାଇ କହିଲେ- ତୁମେ ଏସବୁ ବନ୍ଦ୍‌କର ଚନ୍ଦ୍ର! ଆଚ୍ଛା, ତମେ କୋଉଥିରେ ଏଠିକି ଆସିଛ ? ବାହାରେ ତୁମେ କାର୍ କି ସ୍କୁଟର ରଖିଚ କି ?

- ନା ସୁଚିତ୍ରା ! ମୁଁ ସେମିତି ଭୁଲ୍ କରିବା ଲୋକ ନୁହଁ । ମୁଁ ଗୋଟେ ହାୟାର ଟେମ୍ପୋରେ ଆସିଥିଲି । ତୁମ ଘର ପାଇବା ପରେ ତାକୁ ଫେରାଇ ଦେଇଚିତ୍ରୁଁ ଜାଣେ ତୁମ ସ୍ୱାମୀ ସିଦ୍ଧାର୍ଥ ଆଜି ଭୁବନେଶ୍ୱରରେ ନାହାଁନ୍ତି । ସିଏ ଦୁଇଦିନ ପାଇଁ ଦିଲ୍ଲୀ ଯାଇଚନ୍ତି । ତୁମ ପୁଅ ସ୍କୁଲ ଯାଇଚି । ସିଏ ଫେରିବ ସନ୍ଧ୍ୟା ଛଅଟା ବେଳକୁ । ସିଏ ସ୍କୁଲ ଛୁଟିପରେ କ୍ରିକେଟ ଖେଳେ । ତୁମେ ଆଶ୍ଚର୍ଯ୍ୟ ହେଉଛ ନା ମୁଁ ଏତେ କଥା କେମିତି ଜାଣିଲି ? ଜଣେ ସଚ୍ଚା ପ୍ରେମିକକୁ ପ୍ରେମିକା ଆଉ ତା'ପରିବାର ବିଷୟରେ ଅନେକ ଖବର ରଖିବାକୁ ପଡ଼େ ।

ସୁଚିତ୍ରା ଅନ୍ୟ ବଖରାକୁ ଉଠିଯିବା ବେଳେ ଚନ୍ଦ୍ରକାନ୍ତ ତାଙ୍କ ହାତଧରି ଅଟକାଇ ଦେଲେ- ନା, ମୋର ଚା', କଫି କିମ୍ବା ଜଳଖିଆ କିଛି ଦରକାର ନାହିଁ । ମୋର କେବଳ ତୁମର ସାନ୍ନିଧ୍ୟ ଦରକାର । ତୁମେ ମୋ ପାଖରେ ବସ । ସେଇ ଯଥେଷ୍ଟ ।

ସୁଚିତ୍ରା ପ୍ରସଙ୍ଗ ବଦଳାଇ ପ୍ରଶ୍ନ କଲେ - ତୁମେ କ'ଣ ଯା'ଭିତରେ ଫୁଲ୍‌ବାଣୀରୁ ଭୁବନେଶ୍ୱରକୁ ଟ୍ରାନ୍ସଫର ହୋଇ ଆସି ଗଲଣି ? କେବେ ଆସିଲ ?

- ଦୁଇ ମାସ ହେଇ ଗଲାଣି । ତୁମକୁ ସରପ୍ରାଇଜ୍ ଦେବାପାଇଁ କିଛି ନ ଜଣାଇ ଚାଲି ଆସିଲି ।

- ତୁମର ତ ଖୁବ୍ ସାହସ । ଖରାବେଳଟାରେ ଜଣେ ଭଦ୍ରମହିଳାଙ୍କ ଘର ଭିତରକୁ...

- ତୁମେ କ'ଣ ମୋ ସାହସ ବିଷୟରେ ଅବଗତ ନୁହଁ ଚିତ୍ରା ? ତୁମର ମନେଥିବ, ତୁମେ ଥରେ କଲେଜରୁ ଫେରିବାବେଳେ ମୁଁ ତୁମ ଉପରକୁ ଗୋଟେ ପ୍ରେମଚିଠି ଫିଙ୍ଗିଥିଲି । ସେ ଚିଠିଟା ତୁମ ଛାତିରେ ବାଜି ରାସ୍ତା ମଝିରେ ପଡ଼ିଲା । ରାସ୍ତାରେ ଲୋକ ଭର୍ତ୍ତି ।



Digitized by srujanika@gmail.com

ତୁମେ ଲଜ୍ଜାରେ ଅପ୍ରସ୍ତୁତ ହୋଇ ଯାଇଥିଲ । କିନ୍ତୁ କ'ଣ ଭାବି ଚିଠିଟାକୁ ତୁମେ ଗୋଟେଇ ନେଇଥିଲ ।

- ସେତେବେଳେ ମୁଁ ଝିଅ ଥିଲି । ଏବେ କିନ୍ତୁ ମୁଁ ଅନ୍ୟ ଜଣକର ସ୍ତ୍ରୀ । ତାଙ୍କ ସନ୍ତାନର ମାଆ । ପ୍ଲିଜ୍ ଚନ୍ଦ୍ର! ତମେ ମୋ ପରିସ୍ଥିତି ବୁଝିବାକୁ ଚେଷ୍ଟାକର ।

- ତୁମେ କ'ଣ ଜାଣିନା ଚିତ୍ରା! ଯେଉଁ ପ୍ରେମରେ ଯେତେ ଅଧିକ ରିସ୍କ ସେ ପ୍ରେମ ସେତେ ଅଧିକ ମିଠା । ନିଜ ସ୍ତ୍ରୀ ଆଉ ତା'ର ପ୍ରେମକୁ ଡେଇଁ ଜଣେ ପୁରୁଷ ଯଦି ଆଉ ଜଣେ ନାରୀକୁ ଭଲପାଇଲା, ତା କଥା ଭାବିଲା, ତା ସାନ୍ନିଧ ପାଇଁ ବ୍ୟାକୁଳ ହେଲା ତେବେ ସେ ନାରୀ କ'ଣ ସେ ପ୍ରେମ ପାଇଁ ଉଲ୍ଲସିତ ହେବ ନାହିଁ ? ତୁମେ କ'ଣ ତୁମ ସ୍ୱାମୀଙ୍କୁ ପାଇବା ପରେ ମୋ କଥା କେବେ ଭାବିନା ? ଆମ କଲେଜ ଜୀବନର ସ୍ମୃତି କ'ଣ ତୁମ ମନର ପରିଧି ଭିତରକୁ କେବେ ଅନୁପ୍ରବେଶ କରିନାହିଁ ? ତୁମ ସ୍ୱାମୀଙ୍କ ସହିତ ତୁମର ପ୍ରେମ, ପ୍ରୀତି ଆଉ ଦେହଜ ସମ୍ପର୍କ ବାହାରେ ଆଉ କିଛି କ'ଣ କିଛି ମାନେ ରଖେନା ତୁମ ପାଇଁ ? ଆମ କଲେଜ ଜୀବନରେ ପୁରୀ ସମୁଦ୍ର କୂଳର ଓଦା ବାଲିରେ ପାଦଚିହ୍ନ ଆଙ୍କି ଆଙ୍କି ଚାଲିବା, ଜହ୍ନ ରାତିରେ କୃଷ୍ଣଚୂଡ଼ା ଗଛମୂଳେ ଠିଆହୋଇ ଘଣ୍ଟା ଘଣ୍ଟା ଗପିବା, ବର୍ଷା ବେଳେ ଗୋଟିଏ ଛତା ତଳେ ଚାଲିବା, କଲେଜ କ୍ୟାଣ୍ଟିନ୍‌ର କଫି ଖିଆ, ଖରାବେଳେ ପାର୍କରେ ମଧୁମାଳତି ଗଛ ଛାଇରେ ବସିବା, ଭବିଷ୍ୟତକୁ ନେଇ ନକ୍ସା ଆଙ୍କିବା କଥା କ'ଣ ତୁମର କେବେ ମନେ ପଡ଼େନା । କୌଣସି ଝିଅ କ'ଣ ବାହାଘର ପରେ ତା'ର କଲେଜ ଜୀବନର ସ୍ମୃତି ସବୁକୁ ଭୁଲିଯାଇପାରେ ?

ତଥାପି ସୁଚିତ୍ରା ନିରବ । ସବୁ ଝିଅଙ୍କ ଜୀବନରେ କିଛି କଥା ଅସତର୍କ ମୁହୂର୍ତ୍ତରେ ଅଚାନକ ଘଟିଯାଏ ଆଉ ତାହା ଜୀବନରେ ସ୍ମୃତି ହୋଇ ରହିଯାଏ । ପ୍ରେମ ଆଉ ଭଲ ପାଇବା କ'ଣ ଜାଣିବା ପୂର୍ବରୁ ହଠାତ୍ ତାକୁ କିଏ, ପ୍ରେମ କରି ବସେ । ଭଲପାଇବା ଶିଖାଏ । ବାହାର ଦୁନିଆକୁ ଦେଖିବା, ପରଖିବା ପୂର୍ବରୁ ତାଠୁ କିଏ ଜଣେ ପ୍ରେମ ଦାବି କରେ । ତାକୁ ଫୁଲ ଦିଏ, ଚିଠି ଦିଏ, ରାସ୍ତାରେ ଭେଟେ, କଫି ପିଆଏ ଆଉ ପାର୍କକୁ ଡାକେ । ନିଜ ଅଜାଣତରେ ମନ ନଟେଇରୁ କେତେ ମିଟର ସୂତା ତା'ହାତରୁ ଖସିଯାଏ, ଯାହାକୁ ସିଏ ନିଜ ହାତରେ ଅତି କୌଶଳରେ ଗୁଡ଼ାଇ ନିଏ । ଏକଥା ସିଏ ନା କହିପାରେ ତା' ବାପା ମାଆଙ୍କୁ ନା ଭାଇ ଭାଉଜଙ୍କୁ । ସେମାନେ ଖୋଜନ୍ତି ଝିଅଟି ପାଇଁ ଉପଯୁକ୍ତ ଜୀବନ ସାଥୀ ।

ସେମିତି ଗୋଟେ ପରିସ୍ଥିତି ଆସିଥିଲା ସୁଚିତ୍ରାଙ୍କ ଜୀବନରେ । ଚନ୍ଦ୍ରକୁ ଛାଡ଼ି



Digitized by srujanika@gmail.com

ସୁଚିତ୍ରା ବିବାହ କଲେ ଓ.ଏ.ଏସ୍. ଅଫିସର ସିଦ୍ଧାର୍ଥଙ୍କୁ । ସୁଚିତ୍ରା ନିରବରେ ମାନି ନେଇଥିଲେ ସେ ବିବାହକୁ । ଚନ୍ଦ୍ର ଏଇ ବିବାହର ଆଠ ଦିନ ପୂର୍ବରୁ ସୁଚିତ୍ରାଙ୍କୁ ସାକ୍ଷାତ କରି କହିଥିଲେ - ତୁମେ ସିଦ୍ଧାର୍ଥଙ୍କୁ ବିବାହ କର ଚିତ୍ରା ! । ସୁଖୀ ଦାମ୍ପତ୍ୟ ଜୀବନ କାଟ । ସିଦ୍ଧାର୍ଥ ତୁମର ସ୍ୱାମୀ, କିନ୍ତୁ ମୁଁ ତୁମ ଜୀବନର ପ୍ରଥମ ପୁରୁଷ, ପ୍ରଥମ ପ୍ରେମ । ମୁଁ ତୁମ ଦେହଟାକୁ ନ ପାଇ ପାରିଲେ ବି ତୁମର ମନଟାକୁ ପାଇଛି । ଦେହ ନୁହଁ, ମନ ସବୁଦିନ ସୁନ୍ଦର ରହିବ । ସତେଜ ରହିବ ।

ଚନ୍ଦ୍ରକାନ୍ତ କହିଲେ- କ'ଣ ଏତେ ଭାବୁଛ ଚିତ୍ରା ? ମୁଁ ଜାଣେ କୌଣସି ନାରୀ ତା'ର ଜୀବନର ପ୍ରଥମ ପ୍ରେମ କି ପ୍ରଥମ ପୁରୁଷକୁ କେବେ ଭୁଲି ପାରେନା । ତା'ର ସ୍ୱାମୀ ଯେତେ ସୁନ୍ଦର, ଯେତେ ଧନବାନ ବା କ୍ଷମତା, ପ୍ରତିପତ୍ତିର ଅଧିକାରୀ ହୋଇଥାଆନ୍ତୁ, ତଥାପି ନାରୀଟି ତା'ର ପ୍ରଥମ ପ୍ରେମ ଆଉ ପ୍ରଥମ ପୁରୁଷକୁ କେବେ ଭୁଲି ପାରେନା ।

ସୁଚିତ୍ରା ତଥାପି ନିରବ । ଟେଲିଫୋନ୍‌ଟା ବାଜିବାରୁ ଉଠିଯାଇ ରିସିଭର ଉଠାଇଲେ - ହାଲୋ ! ହଁ, ହଁ ସବୁ ଠିକ୍ ଅଛି । ନା, ନା, କିଛି ଅସୁବିଧା ନାହିଁ । ମୋ କଣ୍ଠ ଥରିବା ଥରିବା ଶୁଭୁଛି ? ନା, ମୁଁ ଖାଇପିଇ ଏ ଖରା ବେଳଟାରେ ଶୋଇଥିଲିତ, ଫୋନ୍‌ଟା ହଠାତ୍ ଧରିଲି । ସେଇଥି ପାଇଁ ମୋ କଣ୍ଠଟା ତୁମକୁ ସେମିତି ଶୁଭିଥିବ । ଆଚ୍ଛା, ତମେ କେତେବେଳେ ଦିଲ୍ଲୀରେ ପହଞ୍ଚିଲ ? ଏଇ ସଙ୍ଗେ ସଙ୍ଗେ ? ଏତେ ଡେରି କାହିଁକି ହେଲା ? ପ୍ଲେନ୍ ଘଣ୍ଟାଏ ଲେଟ୍ ଥିଲା ? ହଉ, ରାତିକି ଆଉ ଥରେ ଫୋନ୍ କରିବ । ବେଷ୍ଟ ଅଫ୍ ଲକ୍, ରହୁଛି ।

ସୁଚିତ୍ରା ରିସିଭରଟା ଥୋଇ ସୋଫା ଚେୟାର ପାଖକୁ ଫେରି ଆସିଲେ । ମୁହଁ ଉପରେ ଜମି ଯାଇଥିବା ବିନ୍ଦୁ ବିନ୍ଦୁ ଝାଳକୁ ଶାଢ଼ି କାନିରେ ପୋଛିନେଲେ ।

ଚନ୍ଦ୍ରକାନ୍ତ କହିଲେ - ତୁମେ ମୁହଁ ଖୋଲି ନକହିଲେ ବି ତୁମେ ଧରାପଡ଼ି ଯାଇଛ ଚିତ୍ରା ! ତମଠି ମୁଁ ଏବେ ସତର ବର୍ଷର କଲେଜ ଛାତ୍ରୀ ଚିତ୍ରାକୁ ପାଇଲି ଯିଏ ଦିନେ ଆମ ପ୍ରେମ ପାଇଁ ତା ବାପା, ମାଆ ଆଉ ଭାଇ ଭାଉଜଙ୍କୁ ମିଛ କହୁଥିଲା । ମୋ ସାଙ୍ଗରେ ପାର୍କରେ ସନ୍ଧ୍ୟା ସମୟ କଟାଇ ଡେରିରେ ଘରକୁ ଫେରିବା ପରେ ଘରେ ମିଛ କହିଥିଲା ଯେ ସିଏ ତା' ସାଙ୍ଗଘରେ ଅଟକି ଯାଇଥିଲା । ତୁମେ ସେମିତି ଆଜି ମୋ ପାଇଁ ତୁମ ସ୍ୱାମୀଙ୍କୁ ମିଛ କହିଛ ।

ସୁଚିତ୍ରା କହିଲେ- କେମିତି କହିଥାନ୍ତି ମୋର କଲେଜ ଜୀବନର ଫ୍ରେଣ୍ଡ ଚନ୍ଦ୍ରକାନ୍ତ ଆସିଛନ୍ତି ବୋଲି ? କୌଣସି ସ୍ତ୍ରୀ କ'ଣ ଏକଥା ତା ସ୍ୱାମୀଙ୍କୁ କେବେ କହିବାକୁ ସାହସ



Digitized by srujanika@gmail.com

କରିପାରେ ?

- ତୁମେ ଏତେ ଡରିବାର କ'ଣ ଅଛି ସୁଚିତ୍ରା ? ଆମେ କଲେଜ ଜୀବନ ପରେ କେହି କାହା ସହିତ ସାକ୍ଷାତ କରି ନ ଥିଲେ । ଯଦିବା କୋଉଠି କେମିତି ଆମର ସାକ୍ଷାତ ହୋଇଥିଲା, ସେତେବେଳେ ତୁମ ସ୍ୱାମୀ ତୁମ ସହିତ ଆଉ ମୋ ସ୍ତ୍ରୀ ମୋ ସହିତ ଥିଲେ । ଏବେ ତୁମେ ନର୍ମାଲ ହୁଅ । ଆମେ ପଛଦିନ କଥା ମନେ ପକାଇବା, କଲେଜ ଜୀବନର ସ୍ମୃତି ସାଉଁଣ୍ଟିବା ।

- ନା ଚନ୍ଦ୍ର ! ସେଦିନ ସବୁ ଆମ ହାତରୁ ଚାଲି ଯାଇଛି । ସେ ଦିନର ସ୍ମୃତି ଆଉ ଆମକୁ ଆନନ୍ଦ ନ ଦେଇ କଷ୍ଟଦେବ । ମତେ ଡର ଲାଗୁଛି । କିଛି ଅଘଟଣ କି ଦୁର୍ଘଟଣା ଘଟିବା ପୂର୍ବରୁ ତୁମେ ଫେରିଯାଅ । ମୁଁ ମୋ ସ୍ୱାମୀଙ୍କୁ ଭଲପାଏ । ତାଙ୍କୁ ମୁଁ ପ୍ରତାରିତ କରି ପାରିବି ନାହିଁ ।

- ତୁମେ ତୁମ ସ୍ୱାମୀ ସିର୍ଦ୍ଧାର୍ଥଙ୍କୁ ଭଲପାଅ ମୋର ସେଥିରେ ଆପତ୍ତି ନାହିଁ । କିଛି ଅଘଟଣ ଘଟାଇବାକୁ ମୁଁ ଆସିନାହିଁ । କିନ୍ତୁ ପ୍ରଥମ ପ୍ରେମକୁ କେହି ଭୁଲିପାରେନା । ସେ ସ୍ମୃତି ରୋମନ୍ଥନ କରିବାରେ କିଛି କ୍ଷତି ନାହିଁ, ବରଂ ତାହା ଜୀବନ ବଞ୍ଚିବାକୁ ଶକ୍ତି ଯୋଗାଏ । ତୁମ ସ୍ୱାମୀ ସିଦ୍ଧାର୍ଥଙ୍କର ପ୍ରଥମ ପ୍ରେମ ଏବେ ଦିଲ୍ଲୀରେ ଅଛି । ତମେ ସଂଘମିତ୍ରାଙ୍କ ନାଆଁ ଶୁଣିଚ ?

ସୁଚିତ୍ରା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲେ - ସଂଘମିତ୍ରା କିଏ ? ସିଦ୍ଧାର୍ଥଙ୍କର ତାଙ୍କ ସହିତ କି ସମ୍ପର୍କ ତମେ କେମିତି ସେ ସଂଘମିତ୍ରାଙ୍କୁ ଜାଣିଲ ? ସଂଘମିତ୍ରା ବିବାହିତା ନା ଅବିବାହିତା ?

ଚନ୍ଦ୍ରକାନ୍ତ କହିଲେ- ତୁମେ ଏତେ ଅଧୈର୍ଯ୍ୟ ହୁଅନା ଚିତ୍ରା ! ଏ ସଂଘମିତ୍ରା ହେଉଛନ୍ତି ତୁମ ସ୍ୱାମୀ ସିଦ୍ଧାର୍ଥଙ୍କର ପ୍ରଥମ ପ୍ରେମ । କଲେଜ ଜୀବନରୁ ଜଣାଶୁଣା । ସିଏ ତାଙ୍କ ସ୍ୱାମୀଙ୍କ ସହିତ ଏବେ ଦିଲ୍ଲୀରେ ଅଛନ୍ତି । ମୁଁ କେବଳ ଏତିକି ଜାଣେ । ସିଦ୍ଧାର୍ଥ ହୁଏତ ତାଙ୍କ ଦିଲ୍ଲୀ ଟୁର୍ ବେଳେ ସଂଘମିତ୍ରାଙ୍କୁ କୌଣସି ପାର୍କରେ କିମ୍ବା ତାଙ୍କ ଘରେ ଭେଟିଥିବେ ।ଏଇ ଆଜି ଯେମିତି ମୁଁ ତୁମକୁ ତୁମ ଘରେ ଭେଟିଛି ।ଏଇଟା ନିହାତି ନର୍ମାଲ କଥା ଚିତ୍ରା ! ଟେକ ଇଟ୍ ଇଜି ।

ସୁଚିତ୍ରା ଚନ୍ଦ୍ରକାନ୍ତଙ୍କ କଥାକୁ ବିଶ୍ୱାସ କରି ପାରିଲେ ନାହିଁ । କହିଲେ- ପ୍ଲିଜ୍ ଚନ୍ଦ୍ର ! ତୁମେ ମୋ ସ୍ୱାମୀଙ୍କ ନଆଁରେ ମିଛ କୁହନା । ତୁମେ ଟିକେ ଯାଅ । ମତେ କିଛି ଭଲ ଲାଗୁନାହିଁ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

- ମୋ କଥା ତୁମକୁ ଭଲ ଲାଗୁନାହିଁ, ମୁଁ ଏକଥା ଜାଣେ ଚିତ୍ରା । କୌଣସି ସ୍ତ୍ରୀ ତା ନିଜ ସ୍ୱାମୀ ବିଷୟରେ ଏମିତି କଥା ଶୁଣିବାକୁ ପସନ୍ଦ କରିବ ନାହିଁ । କିନ୍ତୁ ସତ୍ୟଟା ଅପ୍ରିୟ ହେଲେ ବି ସତ୍ୟ। ସିଦ୍ଧାର୍ଥବାବୁ କଲେଜ ଜୀବନରେ ମେଧାବୀ ଥିଲେ, ସୁନ୍ଦର ଥିଲେ । ତାଙ୍କୁ କଲେଜ ଜୀବନରେ କେଉଁ ଝିଅ ଭଲ ପାଇବା କିଛି ଅସ୍ୱଭାବିକ କଥା ନୁହଁ । କୌଣସି କାରଣ ବଶତଃ ସିଏ ସଂଘମିତ୍ରାଙ୍କୁ ବିବାହ ନ କରି ତୁମକୁ ବିବାହ କରିବା ସେମିତି କିଛି ଅସମ୍ଭବ କଥା ବି ନୁହଁ । ସିଏ ଅଫିସ୍ କାମରେ ଦିଲ୍ଲୀ ଯାଇଛନ୍ତି, ସେଠି ଦୁଇ ଦିନର ରହଣି। ତାଙ୍କ ଦିଲ୍ଲୀ ରହିଣି ସମୟରେ ସିଏ ତାଙ୍କ କଲେଜ ଜୀବନର ପ୍ରେମିକାକୁ ସାକ୍ଷାତ କରିବା, ତା ସହିତ ଗପସପ କରିବା କିମ୍ୱା ସ୍ମୃତି ରୋମନ୍ଥନ କରିବାଟା ସେମିତି କିଛି ପାପ କଥା ନୁହଁ । ଏସବୁ ଜୀବନର ଅଂଶବିଶେଷ । ମୋ ସ୍ତ୍ରୀ ସୁପ୍ରୀତି ଆଠ ଦିନ ହେଲା ତାଙ୍କ ବାପଘର ସହରକୁ ଯାଇଛନ୍ତି । ସେଠି ଯେ ସିଏ ତାଙ୍କ ପ୍ରଥମ ପୁରୁଷକୁ ଭେଟି ନଥିବେ ତାର ଗ୍ୟାରେଣ୍ଟି କିଏ ଦେଇ ପାରିବ ?

- ପ୍ଲିଜ୍ ଚନ୍ଦ୍ର । ତମେ ଏମିତି ମନଗଢ଼ା କାହାଣୀ କହି ମତେ ଭୁଲାଇବାକୁ ଚେଷ୍ଟା କରନା । ମୋ ସ୍ୱାମୀଙ୍କ ଉପରେ ମୋର ଯଥେଷ୍ଟ ବିଶ୍ୱାସ ଅଛି ।

- ଇଏ ବିଶ୍ୱାସ ଅବିଶ୍ୱାସର କଥା ନୁହଁ । ତମେ ଭୁଲି ଯାଉଛ, ତମେ କେବଳ ସିଦ୍ଧାର୍ଥ ବାବୁଙ୍କର ସ୍ତ୍ରୀ ନୁହଁ । ତମେ କାହାର ଝିଅ, କାହାର ମାଆ, କାହାର ଭଉଣୀ । ଆଉ ସେମିତି ତମେ ମୋର ପ୍ରେମିକା । ପ୍ରତି ମଣିଷକୁ ଅନେକ ଚରିତ୍ରରେ ଅବତୀର୍ଣ୍ଣ ହେବାକୁ ପଡ଼ିଥାଏ । ଏଥିରୁ କୌଣସି ଗୋଟିଏ ଚରିତ୍ରକୁ ତୁମେ ଗୌଣ ବୋଲି କହି ପାରିବ ନାହିଁ କିମ୍ୱା ଅସ୍ୱୀକାର କରି ପାରିବ ନାହିଁ । ତୁମେ ମୁହଁରେ କୌଣସି ଚରିତ୍ରକୁ ସ୍ୱୀକାର ନକଲେ ବି ତୁମ ମନ ଅସ୍ୱୀକାର କରି ପାରିବ ନାହିଁ । ।

ସୁଚିତ୍ରା କିଛି ଉତ୍ତର ନ ଦେଇ ମନର ଦୋଛକିରେ କିଛି ସମୟ ନିରବରେ ଠିଆହେଲେ, ତା'ପରେ ରାସ୍ତାର ଗୋଟିଏ ଦିଗକୁ ଆଗେଇଲେ କିଛି ବାଟ, ପୁଣି ଫେରି ଆସିଲେ ସେତିକି ବାଟ । ପୁଣି ଠିଆ ହେଲେ ଦୋଛକିରେ । ପୁଣି ଯାଉଥିଲେ ଅନ୍ୟ ଦିଗକୁ ଓ ଫେରି ଆସୁଥିଲେ ଦୋଛକିକୁ । ଏମିତି ଅନେକ ସମୟ ଛକରୁ ଏଦିଗ ସେଦିଗ ଏପଟ ସେପଟ ହେବା ପରେ ଛକରେ ଷ୍ଟାଚ୍ୟୁଟିଏ ପରି ଠିଆ ହୋଇ ରହିଲେ ସୁଚିତ୍ରା । ଅନେକ ସମୟ ସେମିତି ଠିଆ ହେବା ପରେ ତାଙ୍କ ସମ୍ୱିତ ଫେରି ଆସିଲା, ସିଏ ସଚେତନ ହେଲେ । ସେତେବେଳକୁ ଚନ୍ଦ୍ରକାନ୍ତ ତାଙ୍କ ବାଟରେ ଫେରି ଯାଇଥିଲେ ।

ସେ ଦିନଟା ସାରା ସୁଚିତ୍ରା ଅନ୍ୟମନସ୍କା ରହିଲେ । ତାଙ୍କ ମନ ଭିତରକୁ ତାଙ୍କ



Digitized by srujanika@gmail.com

କଲେଜ ଦିନର ଅନେକ ସ୍ମୃତି ପଶି ଆସୁଥିଲା ଆଉ ଫେରି ଯାଉଥିଲା ।

ରାତି ୧୧ଟା ବେଳେ ଫୋନ୍ ରିଙ୍ଗ୍ ହେଲା । ସିଦ୍ଧାର୍ଥଙ୍କ ଫୋନ୍ ଭାବି ସୁଚିତ୍ରା ଫୋନ୍ ଉଠାଇଲେ । ସେପଟରୁ ଆସୁଥିଲା ଚନ୍ଦ୍ରକାନ୍ତଙ୍କ ସ୍ୱର । ସିଏ ଏକ ତରଫା କହି ଚାଲିଥିଲେ- ତୁମର କ'ଣ ହେଲା ଚିତ୍ରା ? ତମେ ହଠାତ୍ ଏମିତି ଷ୍ଟାଚ୍ୟୁ ପରି ଠିଆ ହୋଇ ରହିଲ କାହିଁକି ? ମୁଁ ଅନେକ ସମୟ ଠିଆ ହେଲି, ତୁମକୁ ଡାକିଲି ତୁମେ କିଛି ଉତ୍ତର ଦେଲ ନାହିଁ । ତୁମକୁ ହଲାଇ ଦେଲି, ତମର କିଛି କ୍ରିୟା କି ପ୍ରତିକ୍ରିୟା ନ ଥିଲା । ତମେ ଯେମିତି ତମ ଭିତରେ ନ ଥିଲ । ତୁମ ଶରୀର ଭିତରୁ ବାହାରି ତୁମ ମନଟା ଅନ୍ୟ କୁଆଡ଼େ ଚାଲିଯାଇଥିଲା । ଆରେ ତମେ କିଛି କହୁନା କାହିଁକି ? ତମେ କ'ଣ ଏପର୍ଯ୍ୟନ୍ତ ନର୍ମାଲ ହୋଇନା ? ଚିତ୍ରା, ଚିତ୍ରା ! ଆରେ ମୁଁ ଡାକୁଚି ତୁମକୁ, ମୁଁ । ଚନ୍ଦ୍ର, ଚନ୍ଦ୍ରକାନ୍ତ । ତୁମର ପ୍ରଥମ ପ୍ରେମ । ତମ ପ୍ରଥମ ପୁରୁଷ ।

ହଠାତ୍ ରିସିଭରଟା ଥୋଇଦେଲେ ସୁଚିତ୍ରା । ତାଙ୍କ ବିଭାଘର ସତର ବର୍ଷ ହେଲାଣି, କିନ୍ତୁ ଏମିତି ଗୋଟେ ମାନସିକ ଦ୍ୱନ୍ଦ୍ୱରେ ସେ କେବେ ପଡି ନଥିଲେ । ଅତୀତର ଅନ୍ୟାନ୍ୟ ଅନେକ ସ୍ମୃତି ପରି ଚନ୍ଦ୍ରକାନ୍ତଙ୍କ ସହିତ ଜଡ଼ିତ ଥିବା କଲେଜ ଜୀବନର ସମସ୍ତ ସ୍ମୃତିକୁ ବିଭାଘର ପରଦିନଠୁ ଗୋଟେ ଷ୍ଟିଲ ବାକ୍ସରେ ଭର୍ତ୍ତି କରି, ତାଲା ପକାଇ ତା'ର କିଇଟାକୁ ଗଭୀର କୂଅ ଭିତରକୁ ଫିଙ୍ଗି ଦେଇଥିଲେ ସୁଚିତ୍ରା । ଏବେ ବାକ୍ସର ତାଲା ଭାଙ୍ଗିବାକୁ ଚନ୍ଦ୍ରକାନ୍ତ ଯେଉଁ ଚେଷ୍ଟା କରୁଛନ୍ତି, ତାହା ତାଙ୍କୁ ଭୟଭୀତ, ଅସ୍ଥିର କରୁଛି ।

ପୁଣିଥରେ ଟେଲିଫୋନ୍ ବାଜିଲା । ଏଥର ସୁଚିତ୍ରା ଆଉ ରିସିଭର୍ ଉଠାଇଲେ ନାହିଁ । ଟେଲିଫୋନ୍ ବାଜି ବାଜି ବନ୍ଦ୍ ହେଲା ।

ରାତିର ବିଭିନ୍ନ ପ୍ରହରରେ ଏମିତି ଟେଲିଫୋନ୍ ବାଜିଲା । ବାଧ୍ୟ ହୋଇ ରିସିଭରଟାକୁ ଉଠାଇ ଅଲଗା ଥୋଇଦେଲେ ସୁଚିତ୍ରା । ତା'ପର ଦିନ ସକାଳୁ ସକାଳୁ ପଡ଼ୋଶୀଘର ଚାକର ଆସି କହିଲା- ମ୍ୟାଡ଼ମ୍ ! ଆପଣଙ୍କ ଫୋନ୍ ଠିକ୍ ନାହିଁକି ? ସବୁବେଳେ ଏନ୍‌ଗେଜଡ୍ ରହୁଛି । ଆପଣଙ୍କ ବାବୁ ଦିଲ୍ଲୀରୁ ଫୋନ୍ କରିଥିଲେ । ଫୋନ୍‌ଟା ଠିକ୍ ଭାବେ ରଖା ହେଇନି ବୋଧହୁଏ ।

ସୁଚିତ୍ରା ସଚେତନ ହେଲେ । ସଙ୍ଗେ ସଙ୍ଗେ ରିସିଭରଟାକୁ ଫୋନ୍ ଉପରେ ରଖିଲେ । ଫୋନ୍‌ଟା ବାଜି ଉଠିଲା । ସୁଚିତ୍ରା ଫୋନ୍ ଉଠାଇଲେ । ଏଥର ଫୋନ୍ କଲ୍‌ଟା ଥିଲା ସିଦ୍ଧାର୍ଥଙ୍କର । ସୁଚିତ୍ରାଙ୍କ ଉପରେ ସିଦ୍ଧାର୍ଥ ବିରକ୍ତ ହେଲେ - ଫୋନ୍‌ର ରିସିଭରଟା ଠିକ୍ ଭାବେ ଫୋନ୍ ଉପରେ ରଖି ପାରୁନା ? ମୁଁ କାଲି ରାତିଯାକ ଫୋନ୍



Digitized by srujanika@gmail.com

କରି କରି ଥକିଲି, ସବୁବେଳେ ଏନ୍‌ଗେଜ୍‌ଡ଼ ଆସିଲା ।

ସୁଚିତ୍ରା କାନ୍ଦି ପକାଇଲେ- ତୁମେ ଶୀଘ୍ର ଫେରିଆସ ସିଦ୍ଧାର୍ଥ, ମତେ ଖୁବ୍ ଡର ଲାଗୁଚି । କିଏ ଗୋଟେ ବଦମାସ୍ ମତେ ବାରମ୍ବାର ଫୋନ୍‌କରି ହାଇରାଣ କରୁଛି । ସେଥିପାଇଁ ମୁଁ କାଲି ରାତିରେ ରିସିଭର୍‌ଟା ଫୋନ୍‌ରୁ ଉଠାଇ ଅଲଗା ରଖି ଦେଇଥିଲି ।

ସିଦ୍ଧାର୍ଥ ସୁଚିତ୍ରାଙ୍କୁ ସାନ୍ତ୍ୱନା ଦେଲେ- ଆଦୌ, ଭୟ କରନା । ମୁଁ କାଲି ଫ୍ଲାଇଟ୍‌ରେ ଯାଉଛି । ମୁଁ ଗଲେ ଫୋନ୍‌ରେ କଲର ଆଇଡ଼ି ବ୍ୟବସ୍ଥା କରିଦେବା । କିଏ ଫୋନ୍ କରୁଛି ଜଣା ପଡ଼ିଯିବ । ଆଜି ଦିନଟା ତମେ ମ୍ୟାନେଜ୍ କର । ଯଦି ଅଧିକ ଭୟ ଲାଗୁଚି ତା'ହେଲେ ତୁମେ କଟକ ଫୋନ୍ କର, ତମ ସାନଭାଇ ରଂଜନ ଆସିଯିବ । ସିଏ ଆସି ଆଜି ରାତିଟା ଆମ ଘରେ ରହିବ ।

ସେ ଦିନଟା ଆଉ କିଛି ଅସୁବିଧା ହେଲା ନାହିଁ । କିନ୍ତୁ ଚନ୍ଦ୍ରକାନ୍ତଙ୍କ ସ୍ମୃତିସବୁ ରାତିସାରା ସ୍ୱପ୍ନ ହୋଇ ସୁଚିତ୍ରାଙ୍କୁ ବ୍ୟତିବ୍ୟସ୍ତ କଲା । ସୁଚିତ୍ରା ସେସବୁ ସ୍ମୃତିକୁ ତଡ଼ିବାକୁ ଯେତେ ଚେଷ୍ଟା କଲେ ମଧ୍ୟ ସୁଚିତ୍ରାଙ୍କୁ ଅନେକ ଡରାଇଲା ।

ତାପର ଦିନ ସିଦ୍ଧାର୍ଥ ଦିଲ୍ଲୀରୁ ଫେରି ସୁଚିତ୍ରାଙ୍କୁ ପଚାରି ବୁଝିଲେ ଆଉ କିଛି ଅସୁବିଧା ନାହିଁ । ସିଦ୍ଧାର୍ଥ ଫ୍ରେସ୍ ହୋଇ ଅଫିସ୍ ଗଲେ। ସିଦ୍ଧାର୍ଥ ଦିଲ୍ଲୀରୁ ଫେରାଇ ଆଣିଥିବା ବ୍ରିଫ୍‌କେଶ୍‌ଟା ସୁଚିତ୍ରା ଖୋଲିଲେ ଓ ସବୁ ଜିନିଷ ଏପଟ ସେପଟ କରି ତା' ଭିତରୁ କିଛି ଖୋଜିଲେ । ନା ବ୍ରିଫ୍‌କେଶ୍‌ରେ ଆପତ୍ତିଜନକ ପଦାର୍ଥ କିଛି ନାହିଁ । କେବଳ ଅଫିସିଆଲ୍ କିଛି ପେପର । ବ୍ରିଫ୍‌କେଶଟା ଓଲଟାଇ ଝାଡ଼ିଦେଲେ । ବ୍ରିଫ୍‌କେଶ୍‌ର ଉପର ପକେଟ୍‌ରୁ ଖସିପଡ଼ିଲା ଗୋଟେ ଲାଲ ଗୋଲାପ । ସେଥିରୁ ପରଫ୍ୟୁମ୍‌ର ବାସ୍ନା । ସାପ ଦେଖିବା ପରି ଚମକି ଉଠିଲେ ସୁଚିତ୍ରା । ଚନ୍ଦ୍ରକାନ୍ତଙ୍କ କଥା ତା'ହେଲେ ସତ । ଏଇଟା ସେଇ ସଂଘମିତ୍ରାର ଉପହାର ।

ସୁଚିତ୍ରା ଅସ୍ଥିର ହୋଇ ସିଦ୍ଧାର୍ଥଙ୍କ ଅଫିସ୍‌କୁ ଫୋନ୍ ଲଗାଇଲେ - ଆଚ୍ଛା ! ଏ ସଂଘମିତ୍ରାଟି କିଏ ?

ସେପଟୁ ଶଙ୍କିତ କଣ୍ଠରେ ସିଦ୍ଧାର୍ଥ ପ୍ରଶ୍ନ କଲେ - କୋଉ ସଂଘମିତ୍ରା ?

ସୁଚିତ୍ରା ଗର୍ଜନ କଲେ - ଦିଲ୍ଲୀରେ ରହୁଥିବା ସଂଘମିତ୍ରା, ତୁମ ପ୍ରେମିକା ସଂଘମିତ୍ରା, ତୁମର ପ୍ରଥମ ପ୍ରେମ, ଯିଏ ତୁମକୁ ଉପହାର ଦେଇଛି ସୁଗନ୍ଧିତ ଲାଲ ଗୋଲାପ ଆଉ ତମେ ତାକୁ ଅତି ଆଦରରେ ଗ୍ରହଣ କରି ଯତ୍ନର ସହିତ ବ୍ରିଫ୍‌କେଶ୍‌ରେ ଭରି ଭୁବନେଶ୍ୱର ଆଣିଚ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

- ଓଃ, ସେଇ ସଂଘମିତ୍ରା କଥା କହୁଚ ? ସିଏ ମୋ କ୍ଲାସ୍‌ମେଟ୍ ଥିଲେ । ସିଏ ଦିଲ୍ଲୀରେ ତାଙ୍କ ସ୍ୱାମୀ ଆଉ ସନ୍ତାନ ନେଇ ରହୁଛନ୍ତି । କାଲି ସିଏ ତାଙ୍କ ଘରକୁ ଡିନରକୁ ଡାକିଥିଲେ । ସେ ସ୍ୱାମୀ ସ୍ତ୍ରୀ ଦୁହେଁ ଖୁବ୍ ବନ୍ଧୁବତ୍ସଳ ।

- ତମେ ତାହେଲେ ସେଥିପାଇଁ ବାରମ୍ୱାର ଦିଲ୍ଲୀ ଟୁର୍ ପକାଇ ସଂଘମିତ୍ରାଙ୍କୁ ନେଇ ପ୍ରେମ କରୁଚ ? ଇଟ୍ ଇଜ୍ ଟୁ ମଚ ।

- ଆରେ ତମେ ଏମିତି କ'ଣ କହୁଚ ?

ରାଗରେ ଟେଲିଫୋନ୍‌ଟା କାଟିଦେଲେ ସୁଚିତ୍ରା । ସିଦ୍ଧାର୍ଥ ସନ୍ଧ୍ୟାରେ ଘରକୁ ଫେରି ଦେଖିଲେ ବଡ଼ ତାଲାଟେ ଘର କବାଟରେ ଝୁଲୁଛି । ପଡ଼ିଶା ଘର ଚାକର ଆଣି ତାଲାର କି ଦେଇଗଲା ଆଉ କହିଲା- ମ୍ୟାଡ଼ାମ୍ କ'ଣ ଅର୍ଜେଣ୍ଟ କାମରେ କଟକ ଚାଲିଗଲେ । ତାଙ୍କ ସାଙ୍ଗରେ ଆପଣଙ୍କ ପୁଅ ବଣ୍ଟି ଯାଇଛି ।

ତାଲା ଖୋଲି ଘର ଭିତରେ ପଶିଲେ ସିଦ୍ଧାର୍ଥ । କଟକକୁ ଫୋନ୍ ଲଗାଇଲେ- ହ୍ୟାଲୋ ! ଆରେ ରଞ୍ଜନ, ତୋ ଅପା ସେଠି ଅଛି କି ? ତାକୁ ଟିକେ ଫୋନ୍ ଦେଲୁ ।

ସୁଚିତ୍ରା ଫୋନ୍ ଧରିଲେ । ସିଦ୍ଧାର୍ଥ ତାଙ୍କୁ ବୁଝାଇଲେ - ତୁମର ଏକି ପିଲାଳିଆମି ବାହାରୁଚି ସୁଚିତ୍ରା ? ସ୍ୱାମୀ ଆଉ ସ୍ତ୍ରୀଙ୍କ ଭଲ ପାଇବା ଆଉ ବିଶ୍ୱାସ ଯେଉଁଠି ଦୃଢ଼ଥାଏ, ତାକୁ ସନ୍ଦେହ ଦୋହଲାଇ ଦେଇ ପାରେନା । ଆମ ସମ୍ପର୍କ କ'ଣ ଏତେ ଦୁର୍ବଳ ? ଏତେ ସହଜରେ ତାହା କ'ଣ ଛିଣ୍ଡିଯାଇ ପାରେ ?

ସୁଚିତ୍ରା କିଛି ନ କହି କେବଳ ରାଗରେ ଜର୍ଜର ହୋଇ ସାପ ପରି ଫଁ ଫଁ ଦୀର୍ଘଶ୍ୱାସ ଛାଡୁଥିଲେ ଯାହା ସିଦ୍ଧାର୍ଥଙ୍କ କାନରେ ଶକ୍ତ ପ୍ରହାର ପରି ପିଟି ହେଉଥିଲା ।

ସିଦ୍ଧାର୍ଥ ପୁଣି କହିଲେ- ସଂଘମିତ୍ରା ମୋ କ୍ଲାସ୍‌ମେଟ୍ । ସିଏ ମତେ ତା' ଘରକୁ ଡିନରକୁ ଡାକିଥିଲା । କ'ଣ ଅସୁବିଧା ହେଲା ? ଆମେ କଲେଜ ଜୀବନରେ ଅତି କ୍ଲୋଜ ଫ୍ରେଣ୍ଡ ଥିଲୁ, ପରସ୍ପରକୁ ଭଲ ପାଉଥିଲୁ । ତାକୁ ମୁଁ ଯଦି ବିବାହ କରିଥାନ୍ତି, ତେବେ ତୁମେ ମୋ ଜୀବନ ପରିସର ଭିତରକୁ ଆସି ନ ଥାନ୍ତ । କିନ୍ତୁ ମ୍ୟାରେଜ୍‌ସ ଆର ମେଡ୍ ଇନ୍ ହେଭେନ୍ । ଆମ ଦୁହିଁଙ୍କର ବିଭାଘର ହେଇଗଲା । ତା ବୋଲି ମୁଁ ସଂଘମିତ୍ରା ସହିତ କଥା ହେବି ନାହିଁ କି ସିଏ ଡିନରକୁ ଡାକିଲେ ଯିବି ନାହିଁ ଏଇଟା କ'ଣ ସୌଜନ୍ୟ ହେବ ? ସଂଘମିତ୍ରା ମତେ ଖୁସିରେ ଫୁଲଟିଏ ଦେଲେ ତାକୁ କେମିତି ଗ୍ରହଣ କରି ନଥାନ୍ତି ? କ'ଣ କହିଥାନ୍ତି ? କହିଥାନ୍ତି ତୁମେ ମୋତେ ଫୁଲ ଦେଇ ପାରିବ ନାହିଁ । ଏ ଫୁଲ ମୋତେ ଦେବାର ଅଧିକାର କେବଳ ଅଛି ମୋ ସ୍ତ୍ରୀ ସୁଚିତ୍ରାଙ୍କର । ମତେ ସିଏ



Digitized by srujanika@gmail.com

କେତେ ମିନ୍ ଭାବିଥାନ୍ତେ ସେକଥା ଜାଣିଚ ? ଏଇ ଛୋଟ ଛୋଟ କଥାକୁ ଏମିତି ମାଇଣ୍ଡ୍ କଲେ ତୁମେ ଜୀବନରେ ଅନେକ ଦୁଃଖ ପାଇବ ସୁଚିତ୍ରା ! ମୁଁ ଏକୁଟିଆ ତୁମର ନୁହଁ । ଗୋଟେ ମଣିଷ ଭିତରେ ଅନେକ ଚରିତ୍ର ଥାଏ । ମୁଁ ତୁମର ସ୍ୱାମୀ ହେଲେ ବି ଆଉ କାହାର ଫ୍ରେଣ୍ଡ, କାହାର ପୁଅ, କାହାର ବାପା, କାହାର ଭାଇ । ପ୍ରତ୍ୟେକଙ୍କର ମୋଠୁ କିଛି କିଛି ପ୍ରତ୍ୟାଶା ଅଛି । ମୁଁ ମଧ୍ୟ ଗୋଟେ ନିର୍ଦ୍ଦିଷ୍ଟ ନିୟନ୍ତ୍ରଣ ଆଉ ସୀମା ଭିତରେ ରହି ସେମାନଙ୍କ ପ୍ରତ୍ୟାଶା ପୂରଣ କରିବା ପାଇଁ ଉଦ୍ୟମ କରିବି ।

ସୁଚିତ୍ରା କେବଳ କାନ୍ଦୁଥିଲେ । କାନ୍ଦି କାନ୍ଦି ମହମବତୀ ପରି ତରଳି ଯାଉଥିଲେ ।

- ସୁଚିତ୍ରା ! ମୁଁ ତୁମକୁ କେବେ ତୁମ ପ୍ରଥମ ପ୍ରେମ କିମ୍ୱା ପ୍ରଥମ ପୁରୁଷ ବିଷୟରେ କିଛି ପଚାରି ନାହିଁ । ମୁଁ ଜାଣେ ସେଟା ପ୍ରତି ମଣିଷର ଅତି ବ୍ୟକ୍ତିଗତ କଥା । ସେକଥାକୁ ମଣିଷ ଅନ୍ୟ କାହା ସହିତ ସେୟାର କରିବାକୁ ଇଚ୍ଛା କରେନା । ମୁଁ ବି ଏଇ କାରଣରୁ ସଂଘମିତ୍ରାଙ୍କ କଥା ଆଜି ପର୍ଯ୍ୟନ୍ତ ତୁମକୁ କହି ନଥିଲି । ତୁମେ ସେ ବିଷୟରେ ଅଜ୍ଞ ଥିଲ । ଆମର ସତର ବର୍ଷର ଦାମ୍ପତ୍ୟ ଜୀବନ ଅତ୍ୟନ୍ତ ମଧୁର ଥିଲା । ପ୍ଲିଜ୍ ସୁଚିତ୍ରା । ଆମର ଏ ପବିତ୍ର ସମ୍ପର୍କରେ ସନ୍ଦେହର କଳଙ୍କ ଲଗାଅନା । ମୁଁ ତୁମକୁ ଯେମିତି ବିଶ୍ୱାସ କରୁଛି, ତୁମେ ମୋତେ ସେମିତି ବିଶ୍ୱାସ କର । ମଣିଷ ଜୀବନର ପ୍ରଥମ ପ୍ରେମ ତା'ଜୀବନର ମିଠା ସ୍ମୃତି । ସିଏ ତାକୁ କେବେ ଭୁଲି ପାରେନା, ଭୁଲିବାକୁ ଚାହେଁନା । ସେଇ ମିଠା ସ୍ମୃତି ସହିତ ଜଡ଼ିତ ମଣିଷଟି ତା'ର ପ୍ରିୟ । ତାକୁ ଦେଖିବାକୁ, ତା' କଥା ଶୁଣିବାକୁ ସେ ଭଲପାଏ । ତା' ସାନ୍ନିଧ୍ୟ ପାଇବାର ସୁଯୋଗ ପାଇଲେ ତାକୁ ସେ ହାତଛଡ଼ା କରେନା । ଜଣେ ପୁରୁଷ ଜୀବନରେ ତା'ର ସ୍ତ୍ରୀ ରହିବ, ତା'ର ପ୍ରଥମ ପ୍ରେମ ମଧ୍ୟ ରହିବ । ଦୁହିଁଙ୍କ ସ୍ଥାନ ନିଆରା । ପ୍ରତ୍ୟେକ ପ୍ରତ୍ୟେକଙ୍କ ସ୍ଥାନରେ ସୁନ୍ଦର, ଉଜ୍ଜ୍ୱଳ । ଦୁହିଁଙ୍କର ଆବଶ୍ୟକତା ମଧ୍ୟ ଭିନ୍ନ ଭିନ୍ନ । ଦାମ୍ପତ୍ୟ ଜୀବନର ଛୋଟ ଛୋଟ ଦୋଷ ତୃଟି ଆମ ଆଖିରେ ପଡ଼ିଲେ ବି ଆମେ ଆଖି ବୁଜି ଦେବା, କାନରେ ପଡ଼ିଲେ କାନ ବନ୍ଦ କରିଦେବା । ସେସବୁ କାହା ଆଗରେ ପ୍ରକାଶ ନକରି ଚୁପ୍ ରହିବା ।

ତଥାପି ସେପଟ ଫୋନ୍‌ରେ ସୁଚିତ୍ରା ନିରବ ଥିଲେ । ସିଏ ସିଦ୍ଧାର୍ଥକୁ କ୍ଷମା କରିଦେବେ ନା ଚନ୍ଦ୍ରକାନ୍ତଙ୍କୁ କ୍ଷମା କରିଦେବେ ନା ନିଜକୁ କ୍ଷମା କରିଦେବେ ନା ତିନିଜଣଙ୍କୁ କ୍ଷମା କରିଦେବେ କିଛି ସ୍ଥିର କରି ନପାରି ଫୋନ୍‌ଟା କାଟିଦେଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଆପାର୍ଟମେଣ୍ଟ

ଭୁବନେଶ୍ୱରର ପ୍ରତିଧ୍ୱନି ଆପାର୍ଟମେଣ୍ଟ । ସମୟ ସକାଳ ଦଶଟା । ରିକ୍ସାରୁ ଓହ୍ଲାଇଲେ ବୃଦ୍ଧ ସନାତନ ମିଶ୍ର ଆଉ ତାଙ୍କ ବୃଦ୍ଧା ସ୍ତ୍ରୀ ସୁଲୋଚନା । ଦୁଇ ଜଣଙ୍କ ହାତରେ ଦୁଇଟି ବ୍ୟାଗ୍ । ଦୁଇଟି ଯାକ ବ୍ୟାଗ୍‌ରେ ଜିନିଷ ଖୁନ୍ଦାଖୁନ୍ଦି । ଗୋଟିଏ ବ୍ୟାଗ୍ ଉପରକୁ ଫୁଟି ବାହାରୁଚି ସଜନା ଛୁଇଁ, କଞ୍ଚା କଦଳୀ, ଅମୃତଭଣ୍ଡାର ସବୁଜ ମୁହଁ । ଅନ୍ୟ ବ୍ୟାଗଟିର ମୁହଁରେ ଥୁଆ ହୋଇଛି ଗୋଟିଏ କନାରେ ବନ୍ଧା ବଡ ଏକ ପୁଟୁଳା । ତା'ତଳକୁ ତଳ ଅନେକ ପୁଟୁଳା ଖଞ୍ଜାଇ ରଖା ଯାଇଛି । ଦୁଇଟା ଯାକ ବ୍ୟାଗ୍ ଖୁବ୍ ଓଜନଦାର୍ ।

ସନାତନ ମିଶ୍ର ଆପାର୍ଟମେଣ୍ଟର ଲୁହା ଗେଟ୍ ଭିତରେ ପଶିବା ପୂର୍ବରୁ ସିକ୍ୟୁରିଟି ଗାର୍ଡ଼ ଜଣେ ଆଲ୍‌ସିସିଆନ୍ କୁକୁର ପରି ଝପଟି ଯାଇ ସେମାନଙ୍କ ଆଗ ଓଗାଳି ଠିଆ ହେଲା । ପ୍ରଶ୍ନ କଲା -ଆପଣ କୋଉଠିକି ଯିବେ ? କେତେ ନମ୍ବର ଘରକୁ ? କୋଉଠୁ ଆସିଲେ ?

ସନାତନଙ୍କ ଉତ୍ତରଥିଲା ଅତି ସଂକ୍ଷିପ୍ତ । ସିଏ ତାଙ୍କ ପୁଅ ପାଖକୁ ଯିବେ । ନୟାଗଡ଼ ଜିଲ୍ଲା ବେତନଟି ଗାଆଁରୁ ସିଏ ଆସିଚନ୍ତି ।

ସନାତନ ଭାବିଥିଲେ ସିକ୍ୟୁରିଟି ଗାର୍ଡ଼ ତାଙ୍କୁ ଏଥର ସାଲୁଟ୍ ମାରି ଗେଟ୍ ଖୋଲି ଦେବ । କିନ୍ତୁ ସେମିତି କିଛି ଘଟିଲା ନାହିଁ । ବରଂ ସିଏ ଅତିରିକ୍ତ ପ୍ରଶ୍ନ ପଚାରିଲା - ଆପଣଙ୍କ ପୁଅଙ୍କ ନାଆଁ କ'ଣ ? ସିଏ କେତେ ନମ୍ବର ଘରେ ରୁହନ୍ତି ?

ସୁଲୋଚନା ବୃଦ୍ଧଙ୍କୁ କହିଲେ- ଅତନୁର ଚିଠିଟା କାଢ଼ିକି ଦେଖେଇ ଦଉନା ?

ସନାତନ ଏଥର ଛାତି ପକେଟ୍‌ରୁ କିଛି କାଗଜ କାଢ଼ି ତା' ଭିତରେ ଥିବା ଚାରି ଭାଙ୍ଗର ପୋଷ୍ଟକାର୍ଡ଼ଟାକୁ ଫିଟାଇ ସିକ୍ୟୁରିଟି ଗାର୍ଡ଼ ହାତକୁ ବଢ଼େଇ ଦେଲେ ।

ସିକ୍ୟୁରିଟି ଗାର୍ଡ଼ ଚିଠିଟିକୁ ଏପଟ ସେପଟ କରି ଦେଖି ସାରି କହିଲା- ହଁ । ଠିକ୍ ଅଛି । ଏଇଠି ଏଇ ଖାତାରେ ଆପଣଙ୍କ ନାଆଁ ଲେଖି ଦିଅନ୍ତୁ ଆଉ ତା' କଡ଼ରେ ନିଜ ଦସ୍ତଖତ କରି ଦିଅନ୍ତୁ ।

ସନାତନ ସେ ଖାତାରେ ନିଜ ନାଆଁ, ଗାଆଁ ଆଉ ଠିକଣା ଲେଖି ଦସ୍ତଖତ କଲେ । ସନାତନଙ୍କ ଅକ୍ଷର ଖୁବ୍ ଭଲ । କିନ୍ତୁ ବୟସ ଅଧିକ ଯୋଗୁଁ ତାଙ୍କ ହାତ ସାମାନ୍ୟ ଥରୁଥିଲା ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସିକ୍ୟୁରିଟି ଗାର୍ଡ୍ ଏଥର କହିଲା-ଏଇ ଆପାର୍ଟମେଣ୍ଟର ଛଅ ମହଲାରେ ଆପଣଙ୍କ ପୁଅ ଅତନୁବାବୁ ରହନ୍ତି ।

ବ୍ୟାଗ୍ ଦୁଇଟି ଧରି ସନାତନ ଓ ସୁଲୋଚନା ଆପାର୍ଟମେଣ୍ଟ ଆଡ଼କୁ ଆଗେଇଲେ । ତଳେ ଠିଆ ହୋଇ ମୁଣ୍ଡ ଉଠାଇ ଆପାର୍ଟମେଣ୍ଟକୁ ଚାହିଁଲେ । ମହଲାକୁ ମହଲା ଗଣି ଗଣି ଦେଖିଲେ ସମୁଦାୟ ସତର ମହଲା । ଛଅ ମହଲାକୁ ଉଠିବା ତାଙ୍କ ପକ୍ଷେ ଅତ୍ୟନ୍ତ କଷ୍ଟକର କଥା । ପୁଣି ଓଜନିଆ ବ୍ୟାଗ୍ ଦୁଇଟା ଟେକିକି ଏତେ ଉପର ମହଲାକୁ ଚଢ଼ିବା ଅସମ୍ଭବ କଥା ।

ସୁଲୋଚନା ଏକଡ଼ ସେକଡ଼ ଚାହିଁଲେ, କାଳେ ତାଙ୍କ ପୁଅକୁ କୋଉଠି ଦେଖି ପକାଇବେ । ତଳେ ଠିଆ ହୋଇ ଛଅ ମହଲାକୁ ହୁରି ଛାଡ଼ି ଡାକିବା ଲଜ୍ୟାକର କଥା । ଇଏ ସହର ବଜାର । ଗାଆଁ ପରି ଡାକ ଛାଡ଼ିବା ଏଠି ଚଳେନା ।

ସନାତନ ତାଙ୍କ ସ୍ତ୍ରୀ ସୁଲୋଚନାଙ୍କ ଉପରେ ବିରକ୍ତ ହେଲେ- ମୁଁ ମନା କରୁଚି ଏତେଗୁଡ଼େ ଜିନିଷ ଆଣନା, ତମେ ମୋ କଥା ମୋଟେ ମାନିଲ ନାହିଁ । ସାରୁ, ମାଟିଆଳୁ, କଖାରୁ, ଅମୃତଭଣ୍ଡା, ସଜନା ଛୁଇଁ, କଞ୍ଚା କଦଳୀ, ମୁଢ଼ି, ଚୁଡ଼ା ଏସବୁ ଜିନିଷ କ'ଣ ଭୁବନେଶ୍ୱରରେ ମିଳୁନାହିଁଯେ ତମେ ଫେରିବାଲା ପରି ଏତେ ସବୁ ଜିନିଷ ବୋହିକି ଆଣିଚ ? ଏଇ ବ୍ୟାଗ୍ ଦିଇଟା ନ ଥିଲେ ଆମେ କଷ୍ଟେ ମଷ୍ଟେ ପାହାଚ ଉଠିଯାଇ ପାରିଥାନ୍ତେ ।

ସୁଲୋଚନା କିନ୍ତୁ ଓଲଟା ସନାତନଙ୍କ ଉପରେ ବିରକ୍ତ ହେଲେ - ତୁମକୁ କିଏ କହୁଥିଲା ଦାସଘର ବସ୍‌ରେ ଆସିବାକୁ ? ଅତନୁ କହିଥିଲା ସିଏ ପଟ୍ଟନାୟକ ଘର ବସ୍ ପାଖକୁ ଯାଇକି ଆମକୁ ତା'ଗାଡ଼ିରେ ଆଣିଥାନ୍ତା ।

ସନାତନ ବିରକ୍ତ ହେଲେ- ପଟ୍ଟନାୟକ ଘର ବସ୍ ଆଉ ଦି'ଘଣ୍ଟା ପରେ ଆସି ପହଞ୍ଚିଥାନ୍ତା । ସେତେବେଳେ କେତେ ଖରା ହେଇଥାନ୍ତା, ଜାଣିଚନା ? ଦେହ, ମୁଣ୍ଡ ଜଳି ଯାଇଥାନ୍ତା । ଆଜି କାଲି ଅଂଶୁଘାତରେ କେତେ ଲୋକ ମରୁଚନ୍ତି ତମେ କ'ଣ ଟିଭିରୁ ଶୁଣିନା ? ସେଇଥି ପାଇଁ ପ୍ରଥମ ବସ୍‌ରେ ଚାଲି ଆସିଲି, ଖରା ଆଗରୁ ପହଞ୍ଚି ଗଲି । ଚିଠିଟା ଅଛି, ବସା ଘର ପାଇବାରେ ଅସୁବିଧା ନାହିଁ । ଲୋକ ପଚାରି ପଚାରି ଲଙ୍କା ଚାଲି ଯାଉଛନ୍ତି । ହେଲେ ଏଇ ବ୍ୟାଗ୍ ଦିଇଟା ସବୁ ଅଡୁଆ କରୁଚି ।

ଏମିତି ବ୍ୟାଗ୍ ଦୁଇଟା ଧରି ତଳେ ବେଶି ସମୟ ଠିଆ ହୋଇ ରହି ପରସ୍ପରଙ୍କ ଦୋଷ ଦେଇ କଳି କରିବାଟା ସୁନ୍ଦର ଦିଶୁନାହିଁ ବୋଲି ଦୁହେଁ ହୃଦୟଙ୍ଗମ କରି ବ୍ୟାଗ୍



Digitized by srujanika@gmail.com

ଦୁଇଟା ଧରି ପାହାଚ ପରେ ପାହାଚ କଷ୍ଟେ ମଷ୍ଟେ ଉଠିବାକୁ ଆରମ୍ଭ କଲେ । ତିନି ମହଲା ପର୍ଯ୍ୟନ୍ତ ବହୁ କଷ୍ଟରେ ଉଠିବା ପରେ ଦୁହିଁଙ୍କ ଗୋଡ଼ ଆଉ ଉଠିଲା ନାହିଁ । ଦୁହେଁ ସ୍ଥିର କଲେ ନା, ଆଉ ଯାଇ ହେବ ନାହିଁ । ପୁଅ କିମ୍ବା ବୋହୂ ପାଖକୁ କାହା ହାତରେ ଖବର ଦେବାକୁ ପଡ଼ିବ । ସୁଲୋଚନା ଗୋଟେ ପାହାଚ ଉପରେ ଗୋଡ଼ ଲମ୍ବାଇ ବସିପଡ଼ି ପାନ ବଟୁଆ ବାହାର କରି ପାନ ଭାଙ୍ଗିଲେ ।

ଜଣେ ମଧ ବୟସ୍କା ସ୍ତ୍ରୀ ଲୋକ ଗୋଟିଏ ପ୍ଲାଷ୍ଟିକ ବାଲ୍‌ଟି ଧରି ସେଇ ବାଟେ ଉପର ମହଲାକୁ ଯାଉଥିଲା । ପାହାଚରେ ବୁଢ଼ା,ବୁଢ଼ୀ ଦୁଇଜଣ ବସିଥିବାର ଦେଖି ମନେ ମନେ ବିରକ୍ତ ହେଲା - କୁଆଡୁ କୁଆଡୁ ଲୋକ ସବୁ ଆସି ଏ ଆପାର୍ଟମେଣ୍ଟକୁ ଅଳିଆ, ମଇଳା, ଅସନା କରୁଚନ୍ତି । ମୁଁ ଗୋଟେ ଲୋକ କେତେ ସଫା କରିବି ? ଏ ସିକ୍ୟୁରିଟି ଗାର୍ଡ଼ଟା ବି ଆଜିକାଲି କିଛି ଦେଖୁନେଇଁ । ଆଜେ ବାଜେ ଲୋକଙ୍କୁ ଆପାର୍ଟମେଣ୍ଟ ଭିତରକୁ ଛାଡ଼ି ଦଉଚି ।

ସନାତନ ପଚାରିଲେ- ଆଚ୍ଛା, ମାଆ ! ମୋ ପୁଅ ଅତନୁକୁ ଟିକେ ଖବର ଦେଇ ପାରିବ ? ସିଏ ଛଅ ମହଲାରେ ରୁହେ ।

ସ୍ତ୍ରୀ ଲୋକଟି ସନାତନ ଓ ସୁଲୋଚନାଙ୍କୁ ଘୂରି ଘୂରି ଚାହିଁଲା । ବିରକ୍ତ ଆଉ ସନ୍ଦେହ ମିଶା କଣ୍ଠରେ ପଚାରିଲା- ଏଠି ନାଆଁ କିଛି ନୁହଁ, ନମ୍ବର ସବୁ । ତାଙ୍କ ଘର ନମ୍ବର ଜାଣିଚ ?

ସନାତନ ଛାତି ପକେଟ୍‌ର କାଗଜ ବିଡ଼ାକ ବାହାର କରି ପାହାଚ ଉପରେ ତାଆସ ପଟ ପରି ଗୋଟି ଗୋଟିକି ଖେଳାଇ ଖେଳାଇ ସେଥିରୁ ପୁଅର ପୋଷ୍ଟକାର୍ଡ଼ ଚିଠିଟା ଖୋଜିଲେ । ଚିଠିଟା କୁଆଡ଼େ ଗଲା ? ଚିଠିଟା ନ ପାଇ ଆଶ୍ଚର୍ଯ୍ୟ ହେଲେ । ହଠାତ୍ ମନେ ପଡ଼ିଗଲା ଆପାର୍ଟମେଣ୍ଟର ଗେଟ୍ ପାଖରେ ସିକ୍ୟୁରିଟି ଗାର୍ଡ଼କୁ ସିଏ ଚିଠିଟା ଦେଇଥିଲେ । ତା' ପାଖରେ ହୁଏତ ରହିଗଲା । ଆଉ ତଳକୁ ଯାଇ ସିକ୍ୟୁରିଟି ଗାର୍ଡ଼ ପାଖରୁ ଚିଠିଟା ଆଣିବା ତାଙ୍କ ଶକ୍ତି କି ସାମର୍ଥ ଭିତରେ ନାହିଁ । ଆଣ୍ଠୁ ଆଉ ପୁଟିଆ ଦରଜ ହୋଇଗଲାଣି । ସିଏ ବହୁ କଷ୍ଟ କରି ଗଛର ଅଧାକୁ ଚଢ଼ି ଆସିଚନ୍ତି । ଆଉ ଉପରକୁ ଚଢ଼ିପାରୁ ନାହାଁନ୍ତି କି ତଳକୁ ଓହ୍ଲାଇ ପାରୁନାହାଁନ୍ତି ।

ସେ ସ୍ତ୍ରୀଲୋକ ମୁହଁ ମୋଡ଼ି ପାହାଚରେ ପାଦ କଚାଡ଼ି କଚାଡ଼ି ଉପରକୁ ଉପରକୁ ଉଠିଗଲା ।

ତିନି ମହଲାରେ ଆତଯାତ ହେଉଥିବା ଆଉ ଜଣେ ଦୁଇ ଜଣଙ୍କୁ ସେମାନେ



Digitized by srujanika@gmail.com

ଅନୁରୋଧ କଲେ ଅତନୁକୁ ଖବର ଦେବାକୁ; କିନ୍ତୁ ସେମାନେ ଅକ୍ଷମତା ପ୍ରକାଶ କଲେ । ଘର ନମ୍ବର ନ ପାଇଲେ ସେମାନେ କିଛି ସାହାଯ୍ୟ କରି ପାରିବେ ନାହିଁ ।

ଏମିତି କିଛି ସମୟ ବସିବା ପରେ ତାଙ୍କ ପୁଅ ଅତନୁ ମାର୍କେଟରୁ ଘରକୁ ଫେରି ସିକ୍ୟୁରିଟି ଗାର୍ଡ଼ଠୁ ବୁଝିଲେ ବାପା,ବୋଉ ଗାଆଁରୁ ଆସିଛନ୍ତି । ପାହାଚ ବାଟେ ଚଢ଼ି ଖୋଜି ଖୋଜି ତିନି ମହଲାରେ ବାପା,ବୋଉଙ୍କୁ ଦେଖିଲେ ଆଉ ଲିଫ୍ଟରେ ବସାଇ ନିଜ ଘରକୁ ନେଇଗଲେ ।

ସନାତନ ପୁଅର ଘର ଆଗରେ ଠିଆ ହୋଇ ପଚାରିଲେ- ତୋ ଘରର ଏଇ ଆଗ ଜାଗାଟା କ'ଣ ତୋର ?

ଅତନୁ କହିଲା- ନା ବାପା ! ଏ ଆପାର୍ଟମେଣ୍ଟ ଘରେ ଅଗଣା କୁଆଡୁ ଆସିବ ? ଏ ମହଲାରେ ଥିବା ସବୁଘରର ଲୋକ ଏଇ ଅଗଣାରେ ଚଲାବୁଲା, ଯିବା ଆସିବା କରିବେ । ତେଣୁ ଏଥିରେ କାହାର ଜଣକର ଅଧିକାର ନାହିଁ ।

ଅତନୁ ତାଙ୍କ ଘରର କବାଟ ଖୋଲି ବାପା, ବୋଉଙ୍କୁ ଘର ଭିତରକୁ ନେଇଯାଇ କବାଟ ବନ୍ଦ କରିଦେଲେ ଓ କହିଲେ- ଏଇ କବାଟଠୁ ଆରମ୍ଭ କରି ଏ ଘର ଭିତରେ ଥିବା ଡ୍ରଇଙ୍ଗ୍ ରୁମ୍, ବେଡ୍ ରୁମ୍, ଗେଷ୍ଟ ରୁମ୍, କିଚିନ୍ ଓ ଟଏଲେଟ୍, ଏତିକି ଆମର ।

ସନାତନ ଓ ସୁଲୋଚନା ବୁଲି ବୁଲି ଘରର ବିଭିନ୍ନ ବଖରା ଦେଖି ଖୁସିହେଲେ । ମନ୍ଦିର ଚଟାଣରେ ଲାଗିଥିବା ଧଳା ମାର୍ବଲ ପଥର ସବୁଘରେ ଲାଗିଛି । ପାଦକୁ ଚିକସିଆ ଲାଗୁଚି । ଦୁହେଁ ପାଦ ଚିପି ଚିପି ଘର ଭିତରେ ଚାଲୁଥିଲେ ଯେମିତି ବର୍ଷା ଋତୁର କାଦୁଆ, ଖସଡ଼ା ରାସ୍ତାରେ ପାଦ ଚିପି ଚିପି ଚାଲିଯିବାକୁ ହୁଏ ।

ରୋଷେଇ ଘରେ ଠିଆ ହୋଇ ସନାତନ ପୁଅକୁ ପଚାରିଲେ ଏଇଟା କୋଉ ଦିଗ ? ଅଗ୍ନିକୋଣରେ ରୋଷେଇ ଘର ରହିବା କଥା । ମତେ ଲାଗୁଚି ଏଇଟା ବାୟୁକୋଣ । ଏଠି ରୋଷେଇ ଘର ରହିବା ଜମା ଶୁଭ ନୁହଁ ।

ଅତନୁ ହସି ହସି ଉତ୍ତର ଦେଲେ -ନାଇଁ ବାପା ! ମୁଁ ବାସ୍ତୁଦୋଷ କି ଗୁଣ ପ୍ରତି ଦୃଷ୍ଟି ଦେଇନାହିଁ । ମୁଁ କିଣିଲା ବେଳକୁ ଏ ଆପାର୍ଟମେଣ୍ଟର ସବୁଘର ବିକ୍ରି ହୋଇ ଯାଇଥିଲା, କେବଳ ଏଇ ଗୋଟିକ ଘର ଅବିକ୍ରି ଥିଲା । ଆଉ ଦିନଟେ ଡେରି କରିଥିଲେ ଏଟାବି ବିକ୍ରି ହୋଇ ଯାଇଥାନ୍ତା । ଆପାର୍ଟମେଣ୍ଟ ଘରେ ବାସ୍ତୁଦୋଷ ଦେଖିଲେ ଘର କିଣି ହେବନାହିଁ ।

ମାଛ ତର୍କାରି ରାନ୍ଧି ଶାଶୁ, ଶ୍ୱଶୁରଙ୍କୁ ଖାଇବାକୁ ଦେଲେ ସୁନନ୍ଦା । ଗେଷ୍ଟ ରୁମ୍‌ରେ



Digitized by srujanika@gmail.com

ସନାତନ ଓ ସୁଲୋଚନା ଖରାବେଳଟା ବିଶ୍ରାମ ନେଲେ ।

ସନ୍ଧ୍ୟାବେଳେ ଚା' ପିଇବା ବେଳେ ବୋହୂକୁ ପଚାରି ବୁଝିଲେ ସନାତନ । ଏ ଆପାର୍ଟମେଣ୍ଟ ଘର କିଣିବାକୁ ପଡ଼ିଛି ସତୂରୀ ଲକ୍ଷ ଟଙ୍କା । ପ୍ରତି ମାସରେ ସିକ୍ୟୁରିଟି ଗାର୍ଡ଼, ଲିଫ୍ଟ, ଗ୍ୟାରେଜ୍, ସ୍ୟାନିଟେସନ୍, ପାଣି ଇତ୍ୟାଦି ବାବଦକୁ ତାଙ୍କୁ ଦେବାକୁ ପଡ଼େ ଦୁଇ ହଜାର ଟଙ୍କା । ତା ବ୍ୟତୀତ ଘରର ଇଲେକ୍ଟ୍ରି ବିଲ୍ ମିଟର ଅନୁସାରେ ପେମେଣ୍ଟ କରିବାକୁ ପଡ଼େ । ସନାତନ ମନେ ମନେ ବିଚାର କଲେ, ପ୍ରତିମାସରେ ଏସବୁ ପାଇଁ ଦୁଇ ହଜାର ଟଙ୍କା ଦେବା କିଛି କମ୍ କଥା ନୁହେଁ । ମାସକୁ ଦୁଇ,ଅଢ଼େଇ ହଜାର ଟଙ୍କା ଦେଲେ ଛୋଟ ପରିବାର ରହିବା ପାଇଁ ଗୋଟେ ଭଡ଼ାଘର ମିଳିଯିବ ।

ତାପର ଦିନ ସକାଳୁ ଉଠି ନିତ୍ୟକର୍ମ ସାରି ସନାତନ ଗାଧୋଇ ପଡ଼ିଲେ । ଓଦାଲୁଗା ପିନ୍ଧି, କାନ୍ଧରେ ଓଦା ଗାମୁଛା ପକାଇ ବାହାରିଲେ ସୂର୍ଯ୍ୟ ନମସ୍କାର କରିବାକୁ । ଅତନୁ ମନାକଲେ - ଏଠି ସେ ସୁବିଧା ନାହିଁ । ଛଅ ମହଲା ଓହ୍ଲାଇ ତଳକୁ ଗଲେ ସୂର୍ଯ୍ୟ ଦେଖିବେ, ନଚେତ୍ ଆଉ ଏଗାର ମହଲା ଚଢ଼ିକି ଛାତ ଉପରକୁ ଗଲେ ସୂର୍ଯ୍ୟ ମିଳିବେ । ଏମିତି ଓଦା ଲୁଗାରେ, ଖୋଲା ଦେହରେ ଏତେ ପାହାଚ ଚଢ଼ିବା କି ଓହ୍ଲାଇବା ସମ୍ଭବ ନୁହଁ । ସୂର୍ଯ୍ୟଙ୍କୁ ନମସ୍କାର କରିବା ପାଇଁ ଲିଫ୍ଟରେ ଓଦା ଲୁଗାରେ ଯିବା ମଧ ଭଲ ନୁହେଁ ।

ସନାତନ ନିରୁପାୟ ହୋଇ ବସ୍ତ୍ରାଭାବେ ସୂତ୍ରଂ ଦଦାତ ନ୍ୟାୟରେ ନଇଁପଡ଼ି ଡ୍ରଇଂରୁମ୍‌ର ଝରକା ଫାଙ୍କରେ ସୂର୍ଯ୍ୟଙ୍କୁ ନମସ୍କାର କରି ଶ୍ଲୋକ ଉଚ୍ଚରଣ କଲେ -

'ହେ ସୂର୍ଯ୍ୟ ସହସ୍ରାଂଶୁ ତେଜୋରାଶି ଜଗତପତେ
ଅନୁକମ୍ପାୟା ମାଂଭକ୍ତ୍ୟା ଶ୍ରୀସୂର୍ଯ୍ୟଂ ନମସ୍ତୁତେ ।
ଆକାଶାତ ପତିତ ତୋୟଂ ଯଥା ଗଚ୍ଛତି ସାଗରଂ
ସର୍ବ ଦେବଂ ନମସ୍କାରଂ କେଶବ ପ୍ରତିଗଚ୍ଛତି
ଜବା କୁସୁମ ସଂକାଶଂ କାଶ୍ୟପେୟଂ ମହାଦ୍ୟୋତି
ଧ୍ୱାନ୍ତାରି ସର୍ବ ପାପଘ୍ନ ପ୍ରଣତସ୍ମି ଦିବାକରଂ ।'

ସନାତନ ଠାକୁର ପୂଜା କରିବା ପାଇଁ ଫୁଲ ଖୋଜିଲେ । କିନ୍ତୁ ଏ ଆପାର୍ଟମେଣ୍ଟ ଘରେ ଫୁଲଗଛ ଲଗାଇବା ପାଇଁ ଜାଗା ନାହିଁ । ଫୁଲ ପାଇଁ ଅତନୁ ସ୍କୁଟର ନେଇ ବଜାର ଗଲେ । ଅଳ୍ପ କିଛି ଗେଣ୍ଡୁଫୁଲ କିଣିଆଣି ବାପାଙ୍କୁ ଦେଲେ ।

ସୁଲଲୋଚନା ଗାଧୋଇ ସାରି ଚଉଁରା ଖୋଜିଲେ ପାଣିଦେଇ ମୁଣ୍ଡିଆ ମାରିବାକୁ ।



Digitized by srujanika@gmail.com

କିନ୍ତୁ ଆପାର୍ଟମେଣ୍ଟ ଘରେ ଚଉଁରା କାହିଁ ? ଏଠି ମାଟି ମୁଠେ ନାହିଁ କି ଆକାଶ ଟିକିଏ ନାହିଁ । ଗଳବସ୍ତ୍ର ହୋଇ ଗାଆଁରେ ଛାଡ଼ି ଆସିଥିବା ଚଉଁରାକୁ ସ୍ମରଣ କରି ମୁଣ୍ଡିଆ ମାରିଲେ ।

ଖରାବେଳେ ଦିଲ୍ଲୀରୁ ବଡ଼ ନାତି ଅସୀମ ଫୋନ୍ କଲା । ଜେଜେଙ୍କ ସହିତ କଥା ହେଲା । ପଚାରିଲା - ଜେଜେ! ଆମ ନୂଆଘର ତୁମକୁ କେମିତି ଲାଗିଲା ? ତମ ଗାଆଁରେ ଏମିତି ଘର ଅଛିନା ?

ସନାତନ ପରିହାସ କରି କହିଲେ- ତୋ ବୁଦ୍ଧିରେ ତାହେଲେ ତୋ ବାପା ଏମିତି ଗୋଟେ ପାରାଭାଡ଼ି ଘର କିଣିଚି ? ମତେତ ଏମିତି ଘର ବିନା ପଇସାରେ କିଏ ଦେଲେ ମୁଁ ନେବିନାହିଁ । ଗଛ ଡାଳର ଚଢ଼େଇ ବସା ଯାହା ଏଘର ସେଇଆ । ଫୁଲ ଗଛଟିଏ କି ଲଙ୍କା ଗଛଟିଏ ଲଗାଇବା ପାଇଁ ଏଠି ମାଟି ମୁଠେ ନାହିଁ । ଚଉଁରାଟିଏ ଥୋଇବାକୁ ସୁବିଧା ନାହିଁ । ତୋ ବାପାରତ ଏବେ ଚାକିରି ସରିବ । ସିଏ ଗୋଡ଼ ହାତ ଯାକି ଘରେ ବସି ରହିଲେ ନାନା ରୋଗ ମାଡ଼ି ବସିବ । ବଗିଚା କରିବାକୁ ଜାଗା ଖଣ୍ଡେ ଥିଲେ ତୋ ବାପା କିଛି ଝାଳବୁହା ପରିଶ୍ରମ କରିବାର ସୁବିଧା ପାଇଥାନ୍ତା । ଏ ଘରୁ ଝରକା ବାଟେ ତଳକୁ ଅନେଇଲେ ମୁଣ୍ଡ ବୁଲାଇ ଦେଉଛି ।

ସେପଟୁ ଅସୀମ କହିଲା- ଆପାର୍ଟମେଣ୍ଟ ଘରେ କିଛି ଅସୁବିଧା ଅଛି, ମୁଁ ମାନୁଚି । କିଛି ସୁବିଧା ମଧ୍ୟ ଅଛି । ଏଇ ଯେମିତି ଏଠି ଚୋରଭୟ କମ୍ । ଘରେ ତାଲା ପକାଇ ଦେଇ ଯୁଆଡ଼େ ଇଚ୍ଛା ସିଆଡ଼େ କିଛି ଦିନ ପାଇଁ ଯାଇ ପାରିବ । ତମେ ଆଉ ଜେଜେମା ଗାଆଁରେ ରହୁଛ । ଦରକାର ପଡ଼ିଲେ ମୋ ବାପା, ବୋଉ ଗାଆଁକୁ ଯାଇ ଆଠ, ଦଶଦିନ ରହି ପାରିବେ । ଆମ ପାଖକୁ ବମ୍ବେ, ଦିଲ୍ଲୀ ଆସି ପାରିବେ । ସିଙ୍ଗଲ୍ ଘର ହୋଇଥିଲେ ଘରକୁ ଜଗିକି ଦିନରାତି ଚବିଶ ଘଣ୍ଟା ରହିବାକୁ ହେଇଥାନ୍ତା ।

ସନାତନ ହସି ହସି ଜବାବ ଦେଲେ - ମୁଁ ସବୁ ବୁଝିଲି । ତୋ ବାପା ଏଠି ଅବଶିଷ୍ଟ ଜୀବନ କେମିତି ଚଳିବ ମୁଁ ଜାଣିନେଇଁ, କିନ୍ତୁ ମୁଁ ଏ ଘରେ ଆଠଦିନ ରହିଲେ ଅଣନିଃଶ୍ୱାସି ହେଇଯିବି ।

ଅସୀମ ସେପଟେ ଫୋନ୍ ଥୋଇଦେଲା । ସନାତନ ନିଜକୁ ନିଜେ କହିଲେ- ଏମାନେ ସବୁ ସହରୀ ସଭ୍ୟତାରେ ଜନ୍ମିଚନ୍ତି ଆଉ ବଢ଼ିଛନ୍ତି । ଏମାନଙ୍କର ମାଟି, ଆକାଶ କି ଗଛ ସହିତ ସେତେ ବେଶି ସମ୍ପର୍କ ନାହିଁ, ତେଣୁ ଅନୁରାଗ କି ଆକର୍ଷଣ ନାହିଁ । ଆମ ପରି ମାଟି ଆଉ ଗଛ ମେଳରେ ପିଲାଦିନରୁ ବୁଢ଼ା ହେବା ପର୍ଯ୍ୟନ୍ତ ବଢ଼ିଥିବା ମଣିଷ ଏ ଆପାର୍ଟମେଣ୍ଟ ଜୀବନ ବଞ୍ଚିବା କଷ୍ଟକର । ପାଣି ବାହାରର ମାଛ ପରି ଏଠି ଆମକୁ



Digitized by srujanika@gmail.com

ଛଟପଟ ଲାଗୁଛି ।

ଖବର କାଗଜ ପଢୁ ପଢୁ ମଝି ପୃଷ୍ଠାରେ ଗୋଟେ ସମ୍ବାଦ ଉପରେ ସନାତନଙ୍କ ଦୃଷ୍ଟି ପଡ଼ିଲା । ବଡ଼ ବଡ଼ ଅକ୍ଷରରେ ହେଡ୍‌ଲାଇନ୍ ଲେଖାଯାଇଛି- "ଇନ୍ଦ୍ରଧନୁ ଆପାର୍ଟମେଣ୍ଟରେ ଚୋରି ।"

ସନାତନ ସଙ୍ଗେ ସଙ୍ଗେ ଅତନୁକୁ ଡାକି କହିଲେ ତୋର, ତୋ ପୁଅର ଆଉ ତମ ସମସ୍ତଙ୍କର ପରା ଧାରଣା ଯେ ଆପାର୍ଟମେଣ୍ଟ ଘର ନିରାପଦ । ଏଠି ଚୋରି ହୁଏନା । ଏ ଘରେ ତାଲା ପକେଇ ଦେଇ ନିଶ୍ଚିନ୍ତରେ ମାସେ, ପନ୍ଦର ଦିନ କିମ୍ବା ଆଠ ଦିନ ପାଇଁ ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇ ହବ । ନେ, ଏ ଖବରକାଗଜରେ କ'ଣ ବାହାରିଚି ପଢ଼ ।

ଅତନୁ ଖବରକାଗଜଟା ବାପାଙ୍କ ହାତରୁ ନେଇ ପଢ଼ିଲା । ସେଥିରେ ଲେଖାଥିଲା- ରାତି ବାରଟା ବେଳେ ଇନ୍ଦ୍ରଧନୁ ଆପାର୍ଟମେଣ୍ଟର ଚତୁର୍ଥ ମହଲାର ଚାରି ଶହ ସାତ ନମ୍ବର ଘରର ପଛ ଝରକାର ରେଲିଂ କାଟି ଚୋର ପଶିଚି । ଘରର ମାଲିକ ଓ ତା'ର ସ୍ତ୍ରୀଙ୍କୁ ବାନ୍ଧି ପକାଇ ସେମାନଙ୍କ ପାଟିରେ କନାବିଣ୍ଡା ମାଡ଼ିଦେଇ ପାଟି ଚୁପ୍‌କରି ଦେଇଚନ୍ତି । ତାଙ୍କଠୁ ଆଲମାରି ଚାବିକାଠି ନେଇ ଆଲମାରି ଖୋଲି ଦୁଇ ଲକ୍ଷ ଟଙ୍କା ଆଉ ସାତ, ଆଠ ଭରି ସୁନା ଗହଣା ନେଇ ଚାଲି ଯାଇଛନ୍ତି । ଚୋରମାନେ ସେ ସ୍ଥାନ ଛାଡ଼ି ଯିବା ପୂର୍ବରୁ ଘରର ବାହାର ପଟ କବାଟରେ ତାଲା ପକାଇଦେଇ ଯାଇଛନ୍ତି । ତିନି ଦିନ ପରେ ପଡ଼ୋଶୀମାନେ ସନ୍ଦେହ କରି ପୋଲିସ୍‌କୁ ଖବର ଦେବାରୁ ସେମାନେ ଆସି ତାଲାଭାଙ୍ଗି ଘର ମାଲିକ ଓ ତାଙ୍କ ସ୍ତ୍ରୀଙ୍କୁ ଉଦ୍ଧାର କଲେ ।

ସନାତନ କହିଲେ- ସିଏ ଏମିତି ଗୋଟେ ଆପାର୍ଟମେଣ୍ଟ ହେଇଥିବ । ସେଠି ଏଠିକା ପରି ସିକ୍ୟୁରିଟି ଗାର୍ଡ଼ ଥିବେ । ତଥାପି ଚୋରି ହେଲା କେମିତି ? ଏତେ ପଡ଼ୋଶୀ ଲାଗି ଲାଗି କରି ଥିଲେ କେହି କିଛି ଦେଖି ପାରିଲେ ନାହିଁକି ଜାଣି ପାରିଲେ ନାହିଁ । ଏ ସିକ୍ୟୁରିଟି ଗାର୍ଡ଼ମାନେ ଗେଟ୍‌ରେ କେବଳ ଭଦ୍ରଲୋକମାନଙ୍କୁ ଅଟକାନ୍ତି । ଆପାର୍ଟମେଣ୍ଟ ଭିତରକୁ କୋଉ ଭଦ୍ରଲୋକ କେତେବେଳେ ଆସିଲା, ଗଲା ତା'ର ହିସାବ ରଖନ୍ତି । କିନ୍ତୁ ଚୋର କେବେ ଗେଟ୍ ବାଟେ ଆସେନା କି ସିକ୍ୟୁରିଟି ଗାର୍ଡ଼ ସହିତ ଚୋରମାନଙ୍କର କେବେ ମୁହାଁମୁହିଁ ହୁଏନା । ଚୋର ଆସେ ଲୁଚିଛପି ସିକ୍ୟୁରିଟିଗାର୍ଡ଼ ଢୋଳଉଥିବା ବେଳେ । ପାଚିରି ଡେଇଁ ଭିତରେ ପଶେ ।

ଅତନୁ ବୋକା ବୋକା କଣ୍ଠରେ କହିଲେ- ଆପାର୍ଟମେଣ୍ଟ ଘରେ ଏତେ ସବୁ



Digitized by srujanika@gmail.com

ଅସୁବିଧା ଅଛି ବୋଲି ମୁଁ ଜାଣିନଥିଲି ।

ସନାତନ କହିଲେ- ଆହୁରି ଗୋଟେ ଅସୁବିଧା ଅଛି ମୁଁ ଭାବୁଚି ସେଇଟା ସବୁଠୁ ବଡ଼ ଅସୁବିଧା ।

ଅତନୁ ଉତ୍କଣ୍ଠିତ ହୋଇ ପ୍ରଶ୍ନ କଲେ- ଆଉ ପୁଣି କି ଅସୁବିଧା ?

ସନାତନ ସ୍କୁଲର ହେଡ଼ମାଷ୍ଟର ଛାତ୍ରକୁ ପଚାରିବା ପରି ଅତନୁକୁ ପଚାରିଲେ- ତୁ କହିପାରିବୁ ଏ ଘରର ଆୟୁଷ କେତେ ବର୍ଷ ?

ଅତନୁ ଏ ପ୍ରଶ୍ନରେ ପ୍ରଥମେ ହଡ଼ବଡ଼େଇ ଗଲେ । ତା'ପରେ କିଛି ସମୟ ଚିନ୍ତାକରି ଉତ୍ତରଦେଲେ- ମୁଁ ସଠିକ୍ ଭାବେ କହି ପାରିବି ନାହିଁ । କିନ୍ତୁ ମୁଁ ଯାହା ଅନ୍ୟମାନଙ୍କଠୁ ଶୁଣିଛି ଯେକୌଣସି ସିମେଣ୍ଟ କଙ୍କ୍ରିଟ୍ ଘରର ଆୟୁଷ ପ୍ରାୟ ଶହେ ବର୍ଷ ।

ସନାତନ କହିଲେ- ମୁଁ ମଧ୍ୟ ସେଇଆ ଜାଣିଚି । କିନ୍ତୁ ମହାବାତ୍ୟା କିମ୍ବା ଭୂମିକମ୍ପ ପରି ଦୁର୍ଘଟଣା ଘଟିଲେ ଏଇ ଉଚା ଉଚା ଆପାର୍ଟମେଣ୍ଟ ସବୁ ସାଂଘାତିକ ଭାବେ କ୍ଷତିଗ୍ରସ୍ତ ହୁଏ । ସେସବୁ ପ୍ରାକୃତିକ ଦୁର୍ଘଟଣା ନ ପଡ଼ିଲେ ବି ଶହେ ବର୍ଷପରେ ଏ ଆପାର୍ଟମେଣ୍ଟ ବୁଢ଼ା ହୋଇଯିବ ଆଉ ମନକୁ ମନ ଭାଙ୍ଗିପଡ଼ିବ । ଭାଙ୍ଗି ନ ପଡ଼ିଲେ ମଧ୍ୟ ଦୁର୍ବଳ ହୋଇ ଯିବ ଏବଂ ନିରାପତ୍ତା ଦୃଷ୍ଟିରୁ ଆପାର୍ଟମେଣ୍ଟକୁ ଭାଙ୍ଗି ଦିଆଯିବ । ଆପାର୍ଟମେଣ୍ଟ ଭଙ୍ଗା ହେଲାପରେ ଏଠି ଗୋଟେ ଭଙ୍ଗା ଇଟାର କୁଢ଼ ଦେଖିବାକୁ ମିଳିବ । ସେଇ କୁଢ଼ ଭିତରୁ ତୋ ଘରର ଭଙ୍ଗା ଇଟାଗୁଡ଼ିକୁ ତୋ ଉତ୍ତରାଧିକାରୀମାନେ ଚିହ୍ନିପାରିବେ ନାହିଁ । ଆପାର୍ଟମେଣ୍ଟର ତଳି ଜାଗା ଉପରେ ତୋ ଉତ୍ତରାଧିକାରୀର କୌଣସି ଅଧିକାର ଆଉ ରହିବ ନାହିଁ । ଶହେ ବର୍ଷ ପରେ ଏ ଆପାର୍ଟମେଣ୍ଟ ନ ଥିବ କି ତୋର ଏ ଘର ନ ଥିବ । ତୋର କି ତୋ ଉତ୍ତରାଧିକାରୀ କାହାର ଏଠି କିଛି ଅଧିକାର ନଥିବ । ଯଦି ପୁଣିଥରେ ଏଇ ଜାଗାରେ ନୂଆକରି ଆଉ ଗୋଟେ ଆପାର୍ଟମେଣ୍ଟ ଠିଆ କରାଯାଏ ତାହେଲେ ପୁଣିଥରେ ନୂଆ ଦାମ୍ ଦେଇ ତୋ ଉତ୍ତରାଧିକାରୀ ଆପାର୍ଟମେଣ୍ଟରୁ ଗୋଟିଏ ଘର କିଣିବ କି କିଣି ନ ପାରିବ ତାହା ଏବେଠୁ ତୁ କହି ପାରିବୁ ନାହିଁ ।

ଅତନୁ ଅପରାଧୀ ଛାତ୍ରଟିଏ ପରି ମୁଣ୍ଡତଳକୁ କରି ବସିଥିଲେ ।



ଆନଂଦ ଚଂଦ୍ର ପତି

Digitized by srujanika@gmail.com

# ବାସ୍ତୁ ଦୋଷ

ହାଲୋ, କିଏ ? ଫାଲ୍‌ଗୁନି ? ତୁ ବମ୍ବେରୁ କେବେ ଫେରିଲୁ ? ଆଚ୍ଛା, ଠିକ୍ ଅଛି । ହଁ, ତୁ ଆସିଲେ ମୁଁ ବହୁତ ଖୁସି ହେବି । ମୋର ଏ ନୂଆଘର ନମ୍ବର ଶହେ ସାତ, କଳିଙ୍ଗ ନଗର । କେତେବେଳେ ଆସିବୁ ? ଘଣ୍ଟାଏ ଭିତରେ ତ ? ହଉ ଆସ । ମୁଁ ତତେ ଅପେକ୍ଷା କରିଚି ।

କିଶୋର ଟେଲିଫୋନ୍‌ଟା ଥୋଇବା ବେଳକୁ ତାଙ୍କ ସ୍ତ୍ରୀ ସୁନନ୍ଦା ପ୍ରଶ୍ନ କଲେ - ଏତେ ସକାଳୁ କିଏ ଆସୁଚି ? କାହାକୁ ଏମିତି ଫୁଲ, ଚନ୍ଦନ ଦେଇ ନିମନ୍ତ୍ରଣ କଲ ? ଏ ଅପନ୍ତରା ଜାଗାରେ ତ କିଛି ମିଳୁନି, କ'ଣ ଦେଇ ତାଙ୍କୁ ଚର୍ଚ୍ଚା କରିବ ? ଖାଲି ଚା' ଦେଲେ ଯଦି ଚଳିବ ଭଲ, ନହେଲେ ସ୍କୁଟି ବାହାର କର । ତୁମର ସେ ଅତିଥି ଏଠି ପହଞ୍ଚିବା ଆଗରୁ ତାଙ୍କ ପାଇଁ କିଛି ମିଠା ଆଉ କିଛି ଖାରା ରୁଚିକା ମାର୍କେଟରୁ କିଣି ଆଣ ।

କିଶୋର ଟିକେ ହସିଦେଇ ହାଲୁକା ଭାବେ କହିଲେ- ନାଇଁମ, ଏଇ ଫାଲ୍‌ଗୁନି ଆସୁଚି । ସିଏ କ'ଣ କୁଣିଆ ଯେ ତା' ପାଇଁ ତମେ ଏତେ ବ୍ୟସ୍ତ ହେଉଚ ? ସିଏ ତ ମୋ ପିଲାଦିନର ସାଙ୍ଗ । ଆମେ ମୁଢ଼ିରେ ସୋରିଷ ତେଲ ଗୋଳେଇ ପିଆଜ କାମୁଡ଼ି ଗାଆଁରେ ଅନେକ ଥର ବର୍ଷା ପାଗର ମଉଜ ନେଇଚୁ । ଆମ ଘରେ ମୋ ବୋଉ ହାତରୁ ସିଏ ଅନେକ ଥର ପଖାଳ, ବାଇଗଣ ପୋଡ଼ା ଓ ବଡ଼ିଚୁରା ଖାଇଚି । ତୁମେ ଚିନ୍ତା କରନା । ସିଏ ଆସିଲେ ମୋ ସାଙ୍ଗରେ ମୁଢ଼ି ମିକ୍ସଚର ଖାଇବ ।

ସୁନନ୍ଦା କହିଲେ- ସିଏ ପରା, ଆମର ଏ ନୂଆ ଘର ଦେଖିବାକୁ ଆସୁଚନ୍ତି ? ମିଠା ନ ଖାଇଲେ ସିଏ କ'ଣ ତୁମକୁ ଛାଡ଼ିବେ ? ତମେ ଯାଅ, କିଛି ମିଠା ନେଇ ଆସ । ହଁ, ସିଏ ଛେନାପୋଡ଼କୁ ଖୁବ୍ ଭଲ ପାଆନ୍ତି । କିଛି ଛେନାପୋଡ଼ ନିଶ୍ଚୟ ଆଣିବ ।

କିଶୋର ଆଉ କିଛି ପ୍ରତିବାଦ ନ କରି ସ୍କୁଟି ଧରି ରୁଚିକା ମାର୍କେଟ ବାହାରି ଗଲେ । ରୁଚିକାରୁ ମିଠା ଆଣି ଘରକୁ ଫେରିବା ବାଟରେ ଫାଲ୍‌ଗୁନିଙ୍କ ସହିତ ତାଙ୍କର ଦେଖାହେଲା । କିଶୋର ଆଗେ ଆଗେ ବାଟ କଢ଼ାଇ ଆଣିଲେ ।

ନୂଆଘର ଦେଖି ଫାଲ୍‌ଗୁନି ଖୁବ୍ ଖୁସି ହେଲେ । କିଶୋରଙ୍କ ରୁଚିକୁ ତାରିଫ୍ କରି କହିଲେ- ଏ ଅଞ୍ଚଳଟା ଖୁବ୍ ଖୋଲାମେଲା । ସହରର ଗହଳ, ଚହଳ, ଧୂଳି ଧୂଆଁ କିମ୍ବା ଗାଡ଼ି, ମଟରର ପ୍ରଦୂଷଣ ନାହିଁ । ଗୋଟେ ପଟେ ରିଜର୍ଭ ଫରେଷ୍ଟ । ନିରୁତା, ନିର୍ମଳ

ଆନଂଦ ଚଂଦ୍ର ପତ୍ରି

Digitized by srujanika@gmail.com

ଅମ୍ଳଜାନର ଉତ୍ସ । ଦୁଇପଟରେ ଦିଗନ୍ତ ବିସ୍ତାରି ଖୋଲା ପଡ଼ିଆ । କେବଳ ଗୋଟେ ପଟେ ଅଛି ବସ୍ତି । ତମର ଏଇଟା ସରକାରଙ୍କ ଦ୍ୱାରା ଆବଣ୍ଟିତ ପ୍ଲଟେଡ୍ ସ୍କିମ୍ । ଘର ଆଗରେ ତିରିଶ ଫୁଟ ଚଉଡ଼ାର ରାସ୍ତା, ଡ୍ରେନେଜ୍, ସ୍ୱରେଜ୍, ଇଲେକ୍ଟ୍ରି, ପାଣି ସବୁ ସରକାରୀ ଯୋଜନା ମୁତାବକ ବନ୍ଦୋବସ୍ତ କରା ଯାଇଛି । ମଝିରେ ମଝିରେ ପାର୍କ ପାଇଁ ଖୋଲା ସ୍ଥାନ । ସ୍କୁଲ, ମାର୍କେଟ, ଡାକ୍ତରଖାନା, ଥାନା, କ୍ଲବ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ହୋଇ ରହିଛି । ଏବେ ମୋର ମନେପଡ଼ିଲା ମୁଁ ଦଶବର୍ଷ ପୂର୍ବେ ଥରେ ଏ ସ୍ଥାନକୁ ଆସିଥିଲି । ସେଇ ପାଣିଟାଙ୍କି ପାଖାପାଖି ଗୋଟେ ପ୍ଲଟ୍ ମୋ ସାନ ଭଉଣୀ କିଣିଛି । ମୁଁ ଏ ସ୍କିମ୍‌ର ନକ୍ସା ବି.ଡ଼ି.ଏ.ରେ ଦେଖିଛି । ଖୁବ୍ ଭଲ ଏରିଆ ଇଏ ।

ଯୋତା ଷ୍ଟାଣ୍ଡରେ ଯୋତା ଥୋଇ ଘର ଭିତରକୁ ପଶିଲେ ଫାଲ୍‌ଗୁନି । ଡ୍ରଇଂରୁମ୍, ବେଡ୍‌ରୁମ୍, ଡାଇନିଂରୁମ୍, କିଚେନ୍, ଟଏଲେଟ୍ ଇତ୍ୟାଦି ସବୁ ରୁମ୍ ବୁଲି ବୁଲି ଦେଖିଲେ । ପ୍ରତି ବଖରା ବଡ଼ ବଡ଼ । ଚଟାଣରେ ଦାମି ମାର୍ବଲ ପଡ଼ିଛି । କାନ୍ଥରେ ପୁଟି କରାଯାଇ ଅଏଲ୍ ପେପର୍ ପରି ଚିକ୍କଣ ଓ ଧଳା କରା ଯାଇଛି । କବାଟ ଝରକା ପାକଳ ସାଗୁଆନ୍ କାଠରେ ଅତି ଆଧୁନିକ ଡିଜାଇନ୍‌ରେ ତିଆରି ହୋଇଛି । ଘର ଦେଖି ଖୁବ୍ ଖୁସିହୋଇ ଫାଲ୍‌ଗୁନି କହିଲେ- ମୋ ନେତ୍ର ପବିତ୍ର ହୋଇଗଲାରେ କିଶୋର । ତୋର ଆଉ ସୁନନ୍ଦା ଭାଉଜଙ୍କ ରୁଚିକୁ ଯେତେ ତାରିଫ୍ କଲେ ବି କମ୍ ହେବ । ଖୁବ୍ ଚମତ୍କାର ହେଇଚି ତୋର ଏ ଘର । ଏ ଘରର ନାଆଁ ରଖ "ଆକର୍ଷଣ" ।

ଗୋଟେ ପ୍ଲେଟ୍‌ରେ କିଛି ମିଠା ବାଢ଼ି ଆଣିଲେ ସୁନନ୍ଦା । ପ୍ଲେଟ୍‌ଟି ଡାଇନିଂ ଟେବୁଲ୍‌ରେ ଥୋଇଲେ ।

ଡାଇନିଂ ଟେବୁଲ୍ ପାଖରେ ବସି ଗୋଟେ ମିଠା ପାଟିରେ ପୂରାଇ ସାରି ଫାଲ୍‌ଗୁନି କହିଲେ- ଏତେ ସୁନ୍ଦର ଆଉ ଚମତ୍କାର ନୂଆଘର, ତା'ପାଇଁ ମୋର ଏତେ ପ୍ରଶଂସାର କିମତ୍ ଏଇ ମିଠାରେ ପରିଶୋଧ ହେବନାହିଁ । ଭୁବନେଶ୍ୱରର କୌଣସି ଷ୍ଟାର ହୋଟେଲ୍‌ରେ ତୁମକୁ ଗୋଟେ ପାର୍ଟି ଦେବାକୁ ପଡ଼ିବ ।

କିଶୋର ଉତ୍ତର ଦେଲେ- ହଉ ଦରଖାସ୍ତ ପକା । ସୁବିଧା, ସୁଯୋଗ ହେଲେ ସେକଥା ବିଚାର କରାଯିବ । ଆଚ୍ଛା ତୁ ଏକା ଆସିଲୁ, ତୋ ସ୍ତ୍ରୀ ଉତ୍ତରାଦେବୀଙ୍କୁ ସାଙ୍ଗରେ ଆଣିଲୁ ନାହିଁ ?

ସୁନନ୍ଦା ହସି ହସି କହିଲେ- ଠିକ୍ ଅଛି । ଆମେ ତୁମକୁ ସସ୍ତ୍ରୀକ କୌଣସି ଷ୍ଟାର୍ ହୋଟେଲ୍‌ରେ ଆପ୍ୟାୟିତ କରିବୁ । କିନ୍ତୁ ତୁମେ ପ୍ରଥମେ ତୁମ ବିଜିନେସ୍ ପ୍ରୋଗ୍ରାମ୍



Digitized by srujanika@gmail.com

ଭିତରୁ ଛୁଟି ଦିନଟିଏ କାଢ଼ି ଆମକୁ ଜଣାଅ । ତମେତ ଆଜି ବମ୍ବେରେ, କାଲି ଦିଲ୍ଲୀରେ, ପହରଦିନ କଲିକତାରେ । ଏବେଠୁ କହି ଦଉଚି ଆଠ ଦିନ ପୂର୍ବରୁ ଆମକୁ ଗୋଟେ ଡେଟ୍ ଜଣାଇବ ଆଉ ତାକୁ ଶେଷ ମୁହୂର୍ତ୍ତରେ କ୍ୟାନ୍‌ସେଲ୍ ନକର ଯେମିତି ?

- ଇଏତ ଖୁବ୍ କଠିନ ସର୍ତ୍ତ । ମତେ କେତେବେଳେ କୁଆଡ଼େ ଯିବାକୁ ପଡ଼ିବ, ମୁଁ କଦାପି କହି ପାରିବି ନାହିଁ । ଆଠଦିନ ଆଗରୁ କ'ଣ ? ଗୋଟେ ଦିନ ଆଗରୁ ମଧ୍ୟ କହିବା ମୋ ପକ୍ଷେ କଷ୍ଟକର । ମୁଁ ଏମିତି ମଜାରେ କହି ଦେଲିନା, ସତରେ କ'ଣ ହୋଟେଲ୍ ଯାଇ ଖାଇବାକୁ ମୋର ଇଚ୍ଛା ? ଠିକ୍ ଅଛି । ଆସ ଏଥର ଛାତ ଉପରକୁ ଯିବା । ଛାତ ଉପରୁ ଏ ଅଞ୍ଚଳର ଗୋଟେ ସୁନ୍ଦର ଭିଉ ମିଳିବ ।

ଶିଡ଼ି ଦେଇ ଉପରକୁ ଉଠିଲେ ଫାଲ୍‌ଗୁନି । ତାଙ୍କ ପଛେ ପଛେ ଗଲେ କିଶୋର ଓ ସୁନନ୍ଦା । ଛାତ ଉପରେ ଠିଆ ହୋଇ ଚାରିକଡ଼କୁ ଚାହିଁଲେ ଫାଲ୍‌ଗୁନି ।

କଲୋନୀର ଅଧା ଅଧି ଘର ତିଆରି ହେଲାଣି । ଅବଶିଷ୍ଟ ଘର ତିଆରି ହେବାକୁ ଆଉ ଚାରି, ପାଞ୍ଚ ବର୍ଷ ଲାଗିବ । ଛାତ ଉପରେ ବିଭିନ୍ନ ପ୍ରକାର ଫୁଲ କୁଣ୍ଡ ଧାଡ଼ି ଧାଡ଼ି ହୋଇ ଥୁଆ ହୋଇଛି । ସେଥିରେ ଖୁବ୍ ସୁନ୍ଦର ଫୁଲ ଫୁଟିଛି ।

ସୁନନ୍ଦା ଓ କିଶୋରଙ୍କ ଫୁଲ ସଉକ୍ ଫାଲ୍‌ଗୁନିଙ୍କୁ ଆନନ୍ଦିତ କଲା । ଫୁଲ କୁଣ୍ଡରେ ଫୁଟିଥିବା ଫୁଲର ସାଇଜ୍ ଖୁବ୍ ଆଖି ଆକର୍ଷକ ।

ଫାଲ୍‌ଗୁନି ଛାତ ଉପରେ ଠିଆ ହୋଇ ଦିଗ ନିର୍ଣ୍ଣୟ ନ କରି ପାରି କହିଲେ- ମୋ ପିଲାଦିନଠୁ ଆଜି ପର୍ଯ୍ୟନ୍ତ ଯେ କୌଣସି ସ୍ଥାନର ଦିଗ ନିର୍ଣ୍ଣୟ କରିବାରେ ମୋର ସମସ୍ୟା ହୁଏ । ଆଚ୍ଛା ତୁମର ଏ ଘରର ମୁଖ୍ୟ ପ୍ରବେଶ ଦ୍ୱାରଟା କେଉଁ ଦିଗରେ ଅଛି ?

କିଶୋର ଉତ୍ତର ଦେଲେ- ପଶ୍ଚିମ ଦିଗରେ ।

ଏ ଉତ୍ତର ଶୁଣି ଫାଲ୍‌ଗୁନିଙ୍କ ମୁହଁର ରଙ୍ଗ ବଦଳିଗଲା । ସେ ଆଉ ଥରେ ପ୍ରଶ୍ନକଲେ - ପଶ୍ଚିମ ଦିଗରେ ନା ପୂର୍ବ ଦିଗରେ ?

ସୁନନ୍ଦା କହିଲେ- ନା । ପୂର୍ବଦିଗ ଏଇଟା । ସୂର୍ଯ୍ୟଙ୍କୁ ଦେଖନ୍ତୁ ସିଏ ପୂର୍ବ ଦିଗରେ ଅଛନ୍ତି । ଆମ ଘରର ପ୍ରବେଶ ଦ୍ୱାର ପଶ୍ଚିମ ଦିଗକୁ ଅଛି ।

ଫାଲ୍‌ଗୁନି କହିଲେ- ତା ହେଲେ ତ ମହା ଅନିଷ୍ଟ ହୋଇଗଲା । ବାସ୍ତୁଶାସ୍ତ୍ର ଅନୁସାରେ ଘରର ମୁଖ୍ୟ ପ୍ରବେଶ ଦ୍ୱାର ପଶ୍ଚିମ ଦିଗକୁ ରହିଲେ ଭାରି ଅଶୁଭ । ଏତେ ଟଙ୍କା ଖର୍ଚ୍ଚ କରି, ଏତେ ବଡ଼ ଘର ତିଆରି କଲ ଅଥଚ ବାସ୍ତୁଶାସ୍ତ୍ର ବିଶାରଦ କାହାକୁ ଟିକେ ପଚାରିଲ ନାହିଁ ? ମତେ କହିଥିଲେ ମୁଁ ଦେଖି ଦେଇଥାନ୍ତି । ବାସ୍ତୁଶାସ୍ତ୍ର ଉପରେ ମୋର



Digitized by srujanika@gmail.com

ମୋଟା ମୋଟି ଗୋଟେ ସାଧାରଣ ଧାରଣା ଅଛି । ଆଜି କାଲି ବଜାରରେ ମଧ ବାସ୍ତୁଶାସ୍ତ୍ର ବହି ମିଳୁଛି । ଘରର ପ୍ଲାନ୍ କଲାବେଳେ ସେଇ ବହି ସହିତ ମିଳେଇ ଦେଇଥିଲେ ଏ ସମସ୍ୟା ନଥାନ୍ତା ।

କିଶୋର ଓ ସୁନନ୍ଦା ପରସ୍ପରଙ୍କ ମୁହଁକୁ ଚାହିଁଲେ । ଫାଲ୍‌ଗୁନି ଶିଡ଼ିର ପାହାଚ ସବୁକୁ ଗଣି ଗଣି ତଳକୁ ଓହ୍ଲାଇ ଆସିଲେ । ତାଙ୍କ ପଛେ ପଛେ କିଶୋର ଓ ସୁନନ୍ଦା ମଧ୍ଯ ଓହ୍ଲାଇ ଆସିଲେ ।

ଫାଲ୍‌ଗୁନି ପଢ଼ିବା ପଢ଼ିବା ଆଖିରେ ଡ୍ରଇଂରୁମ୍, ଡାଇନିଂରୁମ୍, କିଚିନ୍, ବେଡ୍‌ରୁମ୍, ଟଏଲେଟ୍‌କୁ ଦେଖିସାରି ଥକ୍କା ହୋଇ ଡ୍ରଇଂରୁମ୍‌ର ସୋଫା ଉପରେ ବସିଯାଇ କ'ଣ ଚିନ୍ତାକଲେ । ପକେଟ୍‌ରୁ କାଗଜ କଲମ ବାହାର କରି କିଛି ଗାର ଟାଣିଲେ ଓ କହିଲେ - ତୁମର ଏ ଘର ତିଆରି ହେବା ଭିତରେ ଅନେକ ଲୋକ ଆସି ଦେଖିଥିବେ ନିଶ୍ଚୟ । ପୁଣି ଗୃହପ୍ରବେଶ ଦିନ ମଧ ବହୁତ ଲୋକ ଆସିଥିବେ । ଘରଦ୍ୱାର ବୁଲି ଦେଖିଥିବେ । କେହି କ'ଣ ତୁମକୁ କିଛି କହି ନାହାଁନ୍ତି ? ସେମାନେ ଘର ଦେଖିବାକୁ ଆସିଥିଲେ ନା କେବଳ ଭୋଜି ଖାଇବାକୁ ଆସିଥିଲେ ?

କିଶୋର ଡରିଲା ଡରିଲା କଣ୍ଠରେ ପଚାରିଲେ- କ'ଣ ହେଇଚି ?

ଫାଲ୍‌ଗୁନି ଦୁଃଖିତ କଣ୍ଠରେ ଉତ୍ତର ଦେଲେ- ଗୋଟେ କଥା ହେଇଚି ଯେ କହିବି ? ସବୁ ଭୁଲ୍ ହେଇଚି । ଏ ଘରେ ରହିବା ଯାହା ସତ୍ୟନଗର ଶ୍ମଶାନରେ ରହିବା ତାହା ।

ସୁନନ୍ଦା କାନ୍ଦ କାନ୍ଦ ହାଇ ପଚାରିଲେ- ତୁମେ ଏମିତି କ'ଣ କହୁଚ ? କ'ଣ ସବୁ ଭୁଲ୍ ହେଇଚି ? ଏ ଘରର ମାଟି ତଳେ କ'ଣ କୋଉଠି ହାଡ଼ କି କଙ୍କାଳ ଥିବାର ତୁମେ ଆଶଙ୍କା କରୁଛ କି ? ଏଇ ସ୍ଥାନଟାତ ଅନେକ ବର୍ଷ ପର୍ଯ୍ୟନ୍ତ ଅପନ୍ତରା ହୋଇ ପଡ଼ିଥିଲା । ଅତୀତରେ ଏଇଟା ଶ୍ମଶାନ ଥାଇପାରେ । କିଛି ବିଚିତ୍ର କଥା ନୁହଁ ।

ଫାଲ୍‌ଗୁନି ମୁଣ୍ଡ ହଲାଇ ମନାକଲେ- ନା, ଏଇଟା କେବେ ଶ୍ମଶାନ ଥିଲା କି ନ ଥିଲା ସେଇଟା ଭିନ୍ନ କଥା । କିନ୍ତୁ...

ସୁନନ୍ଦା ଉତ୍କଣ୍ଠିତ ହୋଇ ପଚାରିଲେ- ଆଉ ତେବେ କି ଅସୁବିଧା ଅଛି ?

ଫାଲ୍‌ଗୁନି ଗମ୍ଭୀର କଣ୍ଠରେ କହିଲେ- ଗୃହର ମୁଖ୍ୟ ପ୍ରବେଶଦ୍ୱାର ଉତ୍ତର କିମ୍ବା ପୂର୍ବ ଦିଗରେ ରହିବା ଉତ୍ତମ । ଦକ୍ଷିଣ ଓ ପଶ୍ଚିମ ଦିଗରେ ମୁଖ୍ୟ ପ୍ରବେଶ ଦ୍ୱାର ନ ରହିବା ଉଚିତ । ପଶ୍ଚିମ ଦିଗରେ ମୁଖ୍ୟପ୍ରବେଶ ଦ୍ୱାର ରହିଲେ ଏ ଘରେ ରହିବା ଲୋକମାନଙ୍କ ରୋଗ ଦୀର୍ଘସ୍ଥାୟୀ ହୁଏ, ଆର୍ଥିକ କ୍ଷତି ହୁଏ ଓ ମାଲି ମକଦ୍ଦମା ବୃଦ୍ଧିପାଏ । ଘରର ଶିଡ଼ି ବା



Digitized by srujanika@gmail.com

ଷ୍ଟେୟାରକେଶ ଦକ୍ଷିଣ, ପଶ୍ଚିମ କିମ୍ବା ଦକ୍ଷିଣ-ପଶ୍ଚିମ ଦିଗରେ ରହିବା କଥା । ଶିଡ଼ିର ପାହାଚ ବିଯୋଡ ସଂଖ୍ୟା ହେବା ଭଲ । କିନ୍ତୁ ତୁମର ଷ୍ଟେୟାରକେଶ୍ ଉତ୍ତର ଦିଗରେ ରହିଛି । ପାହାଚ ସଂଖ୍ୟା ପୁଣି ବାଇଶ, ଅର୍ଥାତ୍ ଯୁଗ୍ମ ସଂଖ୍ୟା । ଏହା କ୍ଷତିକାରକ । ମହା ଅନିଷ୍ଟକାରକ । ମୁଖ୍ୟ ବେଡ଼ରୁମ୍ ଦକ୍ଷିଣ-ପଶ୍ଚିମ ଦିଗରେ ରହିବା କଥା । କିନ୍ତୁ ତୁମର ଏହା ଅଛି ଉତ୍ତର-ପୂର୍ବ ଦିଗରେ । ଏପରି ଘରେ ଅନେକ ବିପଦ ଦେଖାଦିଏ । ଅସୁସ୍ଥତା ବଢ଼େ । ଅଧିକ ଝିଅ ଜନ୍ମ ହୁଅନ୍ତି । ଝିଅମାନଙ୍କ ବିବାହରେ ବିଳମ୍ବ ଘଟେ । ମାନସିକ ଅଶାନ୍ତି ବଢ଼େ ।

ରୋଷେଇ ଘର ପାଇଁ ଦକ୍ଷିଣ-ପୂର୍ବ ଅର୍ଥାତ୍ ଅଗ୍ନି କୋଣ ସବୁଠୁ ଭଲ, ଶୁଭପ୍ରଦ । କିନ୍ତୁ ତୁମ ରୋଷେଇ ଘରଟି ଉତ୍ତର-ପୂର୍ବ ଅର୍ଥାତ୍ ଐଶାନ୍ୟ କୋଣରେ ଅଛି । ଏଇ କୋଣରେ ପୂଜାଘର ରହିବା କଥା । ଏ କୋଣରେ ରୋଷେଇ ଘର ଥିଲେ ଠାକୁରଙ୍କ କୋପ ଦୃଷ୍ଟି ପଡ଼େ । ପାରିବାରିକ ଶାନ୍ତି ଓ ସଦ୍ଭାବ ନଷ୍ଟହୁଏ । ସ୍ୱାସ୍ଥ୍ୟହାନି ଘଟେ ।

ସୁନନ୍ଦା କାନ୍ଦ କାନ୍ଦ ହୋଇ କହିଲେ- ଏତେ କଥା ଅଛି ? ଇଏ କ'ଣ କାହାକୁ ପଚାରିଲେ ନା ବୁଝିଲେ ? ତରବର ହୋଇ ଘର ତିଆରି କରି ପକାଇଲେ । ଏତେ ଟଙ୍କା ଖର୍ଚ୍ଚ କରି କେବଳ ରୋଗ ଆଉ ଅଶାନ୍ତି କିଣିବା କଥା ।

କିଶୋର ଭଙ୍ଗା ଭଙ୍ଗା କଣ୍ଠରେ ସଫେଇ ଦେଲେ - ମୁଁ କ'ଣ ଏତେ କଥା ଜାଣିଚି ? ରୋଡ଼ସ୍ ଆଣ୍ଡ ବିଲ୍ଡିଂସ୍‌ର ଜଣେ ଦକ୍ଷ ଏକ୍‌ଜୁକ୍ୟୁଟିଭ୍ ଇଞ୍ଜିନିୟର ମୋ ଘରର ନକ୍ସା ପ୍ରସ୍ତୁତ କରିଚନ୍ତି ଆଉ ତାକୁ ଆପ୍ରୁଭ କରିଛି ଭୁବନେଶ୍ୱର ଡେଭେଲପ୍‌ମେଣ୍ଟ ଅଥରଟି । କାହିଁ ସେମାନେତ କେହି ଏସବୁ କଥା କହିଲେ ନାହିଁ ?

ଫାଲ୍‌ଗୁନି ସାମାନ୍ୟ ହସି ଉତ୍ତର ଦେଲେ- ଏସବୁ କଥା ସେମାନେ କାହିଁକି କହିବେ ? ତୁମ ରିକ୍ୱାରମେଣ୍ଟ ଅନୁସାରେ ଦୁଇଟା ବେଡ଼୍‌ରୁମ୍, ଡ୍ରଇଂରୁମ୍, ଡାଇନିଂରୁମ୍, କିଚିନ୍, ଟଏଲେଟ୍, ଷ୍ଟେୟାରକେଶ୍ ରଖି ନକ୍ସା କରି ତୁମଠୁ ପଇସା ନେଇଗଲେ । ତୋର ଯଦି ଦୂରଦୃଷ୍ଟି ଥାଆନ୍ତା, ତେବେ ତୁ ସେ ନକ୍ସାଟାକୁ କୌଣସି ବାସ୍ତୁ ବିଶାରଦଙ୍କୁ ଦେଖାଇ ପାରିଥାନ୍ତୁ । ଏତକ ସାଧାରଣଜ୍ଞାନ ତୋର ରହିବା କଥା । ବାସ୍ତୁ ଶାସ୍ତ୍ରର ଗୁରୁତ୍ୱ ଦିନକୁ ଦିନ ବୃଦ୍ଧି ପାଉଛି, ତୁ କ'ଣ ଏସବୁ କିଛି ଖବରକାଗଜ ଆଉ ପତ୍ରପତ୍ରିକାରୁ ପଢୁନାହୁଁ ? ଭୁବନେଶ୍ୱର ପୁସ୍ତକମେଳା ଯଦି କେବେ ଯାଇଥିବୁ, ନିଶ୍ଚୟ ଏ ବାସ୍ତୁଶାସ୍ତ୍ର ବହି ଦେଖିଥିବୁ । ଓଡ଼ିଆ ଗଳ୍ପ, ଉପନ୍ୟାସ, ନାଟକ ପୁସ୍ତକଠୁ ଏ ବାସ୍ତୁଶାସ୍ତ୍ର ପୁସ୍ତକ ବହୁ ଅଧିକ ସଂଖ୍ୟାରେ ବିକ୍ରି ହେଉଛି ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସୁନନ୍ଦା କିଶୋରଙ୍କ ଉପରେ ବିରକ୍ତ ହୋଇ ଚଢ଼ାଗଳାରେ କହିଲେ- ଯାଙ୍କର ସାନ ପିଲାଟାକର ବୁଦ୍ଧି ମଧ ନାହିଁ । ସବୁ କାମକୁ ଖାଲି ତରତର । ଫାଲଗୁନିବାବୁ ! ଆଉ କ'ଣ ସବୁ ଅସୁବିଧା ଅଛି ଟିକେ କୁହ । ଗାଧୁଆ ଘର, ପାଇଖାନା ଠିକ୍ ଜାଗାରେ ଅଛିତ ? ଡାଇନିଂ ରୁମ୍‌ଟା ଟିକେ ଦେଖ ।

ଫାଲଗୁନି ଟଏଲେଟ୍‌ର କବାଟ ଖୋଲି ଭିତରକୁ ପଶିଲେ । ଲାଇଟ୍ ସୁଇଚ ମାରି ଏପଟ ସେପଟ ଚାହିଁ ମୁଣ୍ଡ ହଲାଇ କହିଲେ- ନା, ଏଇଟା ବି ଠିକ୍ ନାହିଁ । ଏହା ନୈଋତ କୋଣ, ଦକ୍ଷିଣ ଦିଗ କିମ୍ବା ପଶ୍ଚିମ ଦିଗର ମଧ ଭାଗରେ କରିବା କଥା । ତୁମର କିନ୍ତୁ ଏହା ପୂର୍ବ ଦିଗର ମଧ ଭାଗରେ ଅଛି । ଏ ଦିଗରେ ଶୌଚାଳୟ ରହିଲେ ବଂଶବୃଦ୍ଧି ହୁଏ ନାହିଁ। ସ୍ୱାସ୍ଥ୍ୟ ଭଲ ରହେ ନାହିଁ । ଶୌଚ ହେବାବେଳେ ମୁହଁ ଦକ୍ଷିଣ କିମ୍ବା ପଶ୍ଚିମ ଆଡ଼କୁ ହେବା ଦରକାର । କିନ୍ତୁ ତୁମ ଶୌଚାଳୟର ବ୍ୟବସ୍ଥା ଭିନ୍ନ ପ୍ରକାର । ପରିବାର ଲୋକଙ୍କ ସ୍ୱାସ୍ଥ୍ୟହାନି ଘଟାଇବାରେ ଏହା ମୁଖ୍ୟ ଭୂମିକା ଗ୍ରହଣ କରିବ ।

କିଶୋର ଓ ସୁନନ୍ଦାଙ୍କ ମୁହଁ ଦୁଃଖ ଓ ଭୟରେ କୁହୁଡ଼ିଆ ଦିଶିଲା । ଫାଲଗୁନି ଏଥର ଡାଇନିଂ ରୁମ୍‌ରେ ଠିଆହୋଇ ଚାରି ଆଡ଼କୁ ନଜର ପକାଇଲେ । ତାଙ୍କ ଆଖି ବଡ଼ ବଡ଼ ଦିଶିଲା । କିଛି ସମୟ ନିରବ ରହି ମନେ ମନେ କ'ଣ ସବୁ ହିସାବ କରିବା ପରେ କହିଲେ- ପୂର୍ବ କିମ୍ବା ପଶ୍ଚିମ ଦିଗରେ ଡାଇନିଂରୁମ୍ ରହିବା କଥା । ତୁମ ଡାଇନିଂ ରୁମ୍‌ଟା କିନ୍ତୁ ଦକ୍ଷିଣ ଦିଗକୁ ରହିଛି । ଏମିତି ବ୍ୟବସ୍ଥାରେ ଅଭାବ ଅନଟନ ଲାଗି ରହିବ ଅତି ଅନ୍ତରଙ୍ଗ ବନ୍ଧୁଟିଏ ପରି ।

ଆଉ କିଛି କଥା ପଚାରିବାକୁ କିଶୋର କିମ୍ବା ସୁନନ୍ଦା କେହି ସାହସ କଲେ ନାହିଁ। ଫାଲଗୁନି ମଧ ଆଉ କିଛି କହିବାକୁ ଉଚିତ ମନେକଲେ ନାହିଁ । ପରିସ୍ଥିତି ଖୁବ୍ ଗୁମ୍‌ସୁମ୍ ଓ ଗମ୍ଭୀର ଲାଗୁଥିଲା । କାହାରି ମୁହଁରେ କଥା ନାହିଁ, ହସ ନାହିଁ ।

ଫାଲଗୁନି ଫେରିବାକୁ ବାହାରିଲେ । କିଶୋର କିମ୍ବା ସୁନନ୍ଦା ତାଙ୍କୁ ଅଟକାଇଲେ ନାହିଁ । ତେବେ ଫାଲଗୁନି ଫେରିଗଲା ବେଳେ କହିଲେ- ମୋ କଥାରେ ତୁମେ ଦୁହେଁ ଭାଙ୍ଗିପଡ଼ିଛ । ମୁଁ ଏସବୁ ନ କହିଥିଲେ ହୁଏତ ଭଲ ହୋଇଥାନ୍ତା । ଏତେ ଲୋକ ତୁମ ଘରକୁ ଆସିଥିଲେ, ଘର ଦେଖିଥିଲେ । କେହି କିଛି କହି ନଥିଲେ । ତୁମେ ଖୁସିରେ ଥିଲ, ଶାନ୍ତିରେ ଥିଲ । କିନ୍ତୁ କୌଣସି ବିପଦ ଆସିବା ପୂର୍ବରୁ ସତର୍କ କରାଇ ଦେବାଟା ପ୍ରକୃତ ବନ୍ଧୁର କର୍ତ୍ତବ୍ୟ ବୋଲି ଭାବି ମୁଁ ଯାହା ଜାଣିଥିଲି ତୁମକୁ କହିଲି । ଭଲ ସିମେଣ୍ଟ, ଭଲ ଇଟା, ଭଲ ବାଲି, ଭଲ ରଡ଼, ଭଲ କାଠ ଆଉ ଭଲ ମ୍ୟାଟେରିଆଲ୍‌ରେ ତିଆରି



Digitized by srujanika@gmail.com

ହେଲେ ଘରଟା ସୁନ୍ଦର ଆଉ ସୁଦୃଢ଼ ହୋଇଥାଏ । କିନ୍ତୁ ସେ ସୁନ୍ଦର ଓ ସୁଦୃଢ଼ ଘରେ ବାସ କରୁଥିବା ଲୋକମାନଙ୍କୁ ଯେ ସେ ଘର ଶାନ୍ତି ଦେବ, ସମୃଦ୍ଧି ଦେବ କି ଶୁଭଙ୍କର ହେବ ସେ କଥା କହିହେବ ନାହିଁ । ଅବଶ୍ୟ ବାସ୍ତୁଦୋଷର କିଛି ପ୍ରତିକାର ଅଛି ବୋଲି କିଛି ଲୋକ କୁହନ୍ତି । କିନ୍ତୁ ମୋ ଜାଣିବାରେ ସେସବୁ କେବଳ ନିଜ ମନକୁ ସାନ୍ତ୍ୱନା ଦେବାଛଡ଼ା ଆଉ କିଛି ନୁହଁ । ସେ ଦିଗରେ ଅଯଥା ପଇସା ଖର୍ଚ୍ଚ କରିବା ଉଚିତ ନୁହେଁ ।

ଫାଲ୍‌ଗୁନି ଫେରିଗଲା ପରେ କିଶୋର ଆଉ ସୁନନ୍ଦା ଅଜଣା ବିପଦ ଆଶଙ୍କାରେ ଭାଙ୍ଗିପଡ଼ିଲେ । ସୁନନ୍ଦା ସେଦିନ ରୋଷେଇ ନକରି ଖଟ ଉପରେ ତକିଆ ତଳେ ମୁହଁ ପୋତି ଶୋଇ ରହିଲେ । କିଶୋର ମଧ୍ୟ ମନ ଦୁଃଖରେ କିଛି ସମୟ ଖଟ ଉପରେ ବସିବା ଭିତରେ ତାଙ୍କୁ ନିଦ ଆସିଗଲା ।

ଉପରଓଳି ବାସନ ମାଜିବାକୁ ଆସୁଥିବା ବାସନ୍ତୀର କଲିଂବେଲ ଶବ୍ଦରେ ପ୍ରଥମେ ନିଦ ଭାଙ୍ଗିଲା ସୁନନ୍ଦାଙ୍କର । ଅପରାହ୍ନ ତିନିଟା ବାଜିଲାଣି । ଏ ପର୍ଯ୍ୟନ୍ତ ସିଏ ଗାଧୋଇ ନାହାଁନ୍ତି, ଠାକୁର ପୂଜା କରି ନାହାଁନ୍ତି କି ରୋଷେଇ କରି ନାହାଁନ୍ତି ।

ବାସନ୍ତୀକୁ ଫେରାଇ ଦେଇ ସ୍ୱାମୀଙ୍କୁ ନିଦରୁ ଉଠାଇଲେ ସୁନନ୍ଦା । ସେଦିନ ଗାଧୁଆ, ପାଧୁଆ ସାରି ଜଳଖିଆ ଖାଇବା ବେଳକୁ ସନ୍ଧ୍ୟା ପାଞ୍ଚଟା ବାଜିଗଲା । ରାତି ଖାଇବା ପାଇଁ ଡାଲମା ଆଉ ରୁଟି ପ୍ରସ୍ତୁତ କରିବା ବେଳେ ଭବିଷ୍ୟତ ବିପଦ ଆଶଙ୍କାର ବାଦଲ ଝରକା ଭିତର ଦେଇ ଘର ଭିତରକୁ ପଶି ଆସି ସୁନନ୍ଦାଙ୍କ ଆଖିରୁ ଲୁହ ନିଗାଡ଼ି ଦେଉଥିଲା । ଘରକାମ, ଠାକୁରପୂଜା, ରୋଷେଇ କରିବା, ଖାଇବା, ଟିଭି ଦେଖିବା, ଶୋଇବା ଇତ୍ୟାଦି କୌଣସି କାମ ପାଇଁ ତାଙ୍କର ଆଉ ଆଗ୍ରହ ନାହିଁ କି ଇଚ୍ଛା ନାହିଁ ।

କିଶୋର ନିଜକୁ ଅପରାଧୀ ଅପରାଧୀ ଅନୁଭବ କରୁଥିଲେ । ନିଜ ହାତରେ ଯେମିତି ସିଏ ନିଜ ପରିବାରର ମରଣ ଯନ୍ତା ତିଆରି କରିଛନ୍ତି, ଅନେକ ଟଙ୍କା ଖର୍ଚ୍ଚ କରି । ପୁଅ ରବୀନ୍ଦ୍ର ଏ ଘର ତିଆରି ପାଇଁ ଦଶ ଲକ୍ଷ ଟଙ୍କା ଦେଇଚି । ସିଏ ଯେତେବେଳେ ଜାଣିବ ଯେ ବାପା ଏତେଗୁଡ଼େ ଟଙ୍କା ଖର୍ଚ୍ଚ କରି ଏମିତି ଗୋଟେ ଅଶୁଭଙ୍କର, ବିପଦଯୁକ୍ତ, ଅଶାନ୍ତିକାରକ ଘର ତିଆରି କରିଛନ୍ତି, ସିଏ କ'ଣ ତାଙ୍କୁ କ୍ଷମା କରି ପାରିବ ? ବାପା ବୋଲି ମୁହଁ ଖୋଲି କିଛି ନ କହିଲେ ବି ମନେ ମନେ ଅନେକ କଥା ଚିନ୍ତା କରିବ । ଆଜି ପର୍ଯ୍ୟନ୍ତ ସିଏ ବାପାଙ୍କୁ ଦକ୍ଷ, ଅଭିଜ୍ଞ, ବିଜ୍ଞ ଆଉ ଜଣେ ଅନୁଭବି ଓ ବିଚାରଶୀଳ ମଣିଷ ଭାବେ ସମ୍ମାନ ଓ ସମ୍ଭ୍ରମ ଦେଖାଇ ଆସୁଥିଲା । ତା'ର ବାପା ପ୍ରତି ସେ ଧାରଣା ଆଉ ରହିବ କି ?

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ରାତି ରୋଷେଇ ସାରି ସୁନନ୍ଦା ଆସି ସ୍ୱାମୀଙ୍କ ପାଖରେ ଅନେକ ବେଳୁ ବସିଲେଣି, କିନ୍ତୁ ସେ ସୁନନ୍ଦାଙ୍କ ଉପସ୍ଥିତି ଅନୁଭବ କରିପାରି ନାହାଁନ୍ତି ।

ନିରବତା ଭାଙ୍ଗିବା ପାଇଁ ସୁନନ୍ଦା ସ୍ୱାମୀଙ୍କୁ ପ୍ରଶ୍ନ କଲେ- କ'ଣ ଏତେ ଭାବୁଛ ? ଭାବିଲେ କ'ଣ ହେବ ? ଯାହାତ ହେବାର ହୋଇଗଲାଣି । ତେବେ ତୁମେ ଏ ବିଷୟରେ ଆଉ କାହାକୁ ଟିକେ ପଚାର । ମୁଁ ଭାବୁଛି ଫାଲ୍‌ଗୁନି ଯାହା କହିଲେ ସେସବୁକୁ ଆମେ ବିଶ୍ୱାସ କରି ଏମିତି ମନ ଦୁଃଖରେ ବଞ୍ଚିବା ଠିକ୍ ହେବ ନାହିଁ ।

କିଶୋର ଚାହିଁଲେ ସୁନନ୍ଦାଙ୍କୁ । ସୁନନ୍ଦାଙ୍କ ମୁହଁର ମାନଚିତ୍ର ଦେଖି ତାଙ୍କୁ ଲାଗିଲା ସିଏ ଚାହୁଁଛନ୍ତି ଫାଲ୍‌ଗୁନିର କଥା ମିଛ ହେଉ । ଆଉ ଜଣେ କିଏ କହୁ ଫାଲ୍‌ଗୁନି ଯାହା କହିଚି ସବୁ ମନଗଢ଼ା । କିଛି ବାସ୍ତୁଶାସ୍ତ୍ର ଅନୁସାରେ ନୁହଁ । ସବୁ ମିଛ । ତାଙ୍କୁ ଏତେ ଦୁଃଖ, ବିପଦ, ଅଶାନ୍ତି ଭୋଗିବାକୁ ନପଡୁ ।

ତେବେ ଫାଲ୍‌ଗୁନି ତାଙ୍କର ଏକାନ୍ତ ଅନ୍ତରଙ୍ଗ ବନ୍ଧୁ । ତା କଥାଟା ମିଛ ହେବା ସମ୍ଭବ ନୁହଁ । ସିଏ ତାଙ୍କୁ କି ସୁନନ୍ଦାଙ୍କୁ କାହିଁକି ଏମିତି ମିଛକଥା କହିବ ?

ସୁନନ୍ଦା ବ୍ୟସ୍ତ ହେଲେ । ଆଉ ଜଣେ ବାସ୍ତୁଶାସ୍ତ୍ର ବିଶାରଦଙ୍କୁ କିଶୋର ସାକ୍ଷାତ କଲେ । ସବୁ କଥା କହିଲେ । ବାସ୍ତୁ ବିଶାରଦ ଦିନେ କିଶୋରଙ୍କ ଘରକୁ ଆସିଲେ । ଘରର ନକ୍ସାଠୁ ଆରମ୍ଭ କରି ସମୁଦାୟ ଜାଗା ଓ ତା' ଉପରେ ତିଆରି ଘରକୁ ବିଭିନ୍ନ ଦିଗରୁ ଦେଖିଲେ ଓ ତର୍ଜମା କରି କହିଲେ- ଘରଟି ବାସ୍ତୁଶାସ୍ତ୍ରକୁ ଦୃଷ୍ଟିରେ ରଖି ତିଆରି ହୋଇନାହିଁ । ଏ ଘରେ ରହିଲେ ଆର୍ଥିକ, ଶାରୀରିକ ଓ ମାନସିକ ଅସୁବିଧାର ସମ୍ମୁଖୀନ ହେବେ ।

ସୁନନ୍ଦା ଓ କିଶୋର ପରସ୍ପରଙ୍କ ମୁହଁକୁ ଚାହିଁଲେ । ଏମିତି ପରିସ୍ଥିତିରୁ ମୁକୁଳିବାର ବାଟ ଖୋଜି ପାଇବା ସହଜ ନୁହଁ କି ସମ୍ଭବ ନୁହଁ ।

ସୁନନ୍ଦା ନିଜର ଅସହାୟତା ପ୍ରକାଶ କଲେ – ଏଥିରୁ ବଞ୍ଚିବାର କିଛି ଉପାୟ କ'ଣ ନାହିଁ ? ମାନେ ଯାର କିଛି ପ୍ରତିକାର ବ୍ୟବସ୍ଥା ଥିଲେ କୁହନ୍ତୁ ।

ବାସ୍ତୁ ବିଶାରଦ ଟିକେ ଚିନ୍ତାକରି କହିଲେ- ନାହିଁ କାହିଁକି ? ଅଛି । କିନ୍ତୁ ତାହା ଆପଣମାନଙ୍କ ପକ୍ଷେ କେତେଦୂର ଗ୍ରହଣୀୟ ହେବ ସେଇଟା ଚିନ୍ତା କରିବା କଥା । ଘରଟି ତିଆରି ସରିବା ପରେ ତା'ର ବାସ୍ତୁଦୋଷ କାଟିବାର ଏକମାତ୍ର ବାଟ ହେଉଛି ଘରର କିଛି ଅଂଶ ଭଙ୍ଗାରୁଜା କରିବା ଓ ତାକୁ ବାସ୍ତୁ ଅନୁକୂଳ କରି ପୁଣି ତିଆରି କରିବା । ଏମିତି ଭଙ୍ଗାରୁଜା କରିବା ବହୁ ବ୍ୟୟ ସାପେକ୍ଷ । କେତେକ ଲୋକ ତାହା ଗ୍ରହଣ କରିବାକୁ ପ୍ରଥମେ ରାଜି ହୁଅନ୍ତି ନାହିଁ । ମାତ୍ର କିଛି ଦିନପରେ, ଯେତେବେଳେ ଅଧିକରୁ ଅଧିକ



Digitized by srujanika@gmail.com

ବିଘ୍ନ ଘଟେ ସେତେବେଳେ ବାଧ ହୁଅନ୍ତି ଭଙ୍ଗାରୁଜା କରି ବାସ୍ତୁଦୋଷ ଦୂର କରିବାକୁ ।

ସୁନନ୍ଦା ସ୍ୱାମୀଙ୍କ ମୁହଁକୁ ଚାହିଁଲେ । ପଚାରିଲେ- ତୁମେ କିଛି କହୁନା ଯେ ? ପ୍ରତିକାର ପାଇଁ ଆମ ଏ ନୂଆଘରର କିଛି ଅଂଶ ଭାଙ୍ଗିବା ପାଇଁ ତୁମେ ରାଜି ନା ରାଜି ନୁହଁ ?

ସୁନନ୍ଦାଙ୍କର ଏ ପ୍ରଶ୍ନର କିଛି ଉତ୍ତର ନ ଦେଇ କିଶୋର ବାସ୍ତୁଶାସ୍ତ୍ର ବିଶାରଦଙ୍କୁ ପ୍ରଶ୍ନକଲେ- କେତେ କ'ଣ ଭାଙ୍ଗିଲେ ବାସ୍ତୁଦୋଷ କଟିଯିବ ମୋତେ ଆଗ କୁହନ୍ତୁ । ତା'ପରେ ଆମେ ସେ ବିଷୟରେ ନିଷ୍ପତ୍ତି ନେବୁ ।

ବାସ୍ତୁ ବିଶାରଦ ଘରର ନକ୍ସାଟାକୁ ଖୋଲିକି ଟିପୟ ଉପରେ ପକାଇଲେ । ହାତରେ ଗୋଟେ ଡଟ୍‌ପେନ୍ ଧରି ଉତ୍ତର ଦିଗରେ ଘରର ମୁଖ୍ୟ ପ୍ରବେଶ ଦ୍ୱାରଟି ଆଙ୍କିଲେ ଓ ପଶ୍ଚିମ ପଟେ ଖୋଲା ଯାଇଥିବା ଦ୍ୱାରକୁ ବନ୍ଦ କରିବାକୁ କହିଲେ । ଟିକେ ଚିନ୍ତାକରି କହିଲେ- ରୋଷେଇ ଘରଟି ଐଶାନ୍ୟ କୋଣରେ ଅଛି । ତାକୁ ଅଗ୍ନି କୋଣକୁ ଆଣିବାକୁ ହେବ । ଟଏଲେଟ୍ ଏଠୁ ଉଠାଇ ନେଇ ଏଟାକୁ ଷ୍ଟୋର ରୁମ୍ କରନ୍ତୁ । ଟଏଲେଟ୍‌ରୁ ଗୋଟେ ଶିଡି ତଳେ କରନ୍ତୁ, ଅନ୍ୟଟି ପଶ୍ଚିମ ଦିଗରେ ଥିବା ଖୋଲା ସ୍ଥାନକୁ ବଢ଼ାଇକି କରନ୍ତୁ । ଅନ୍ୟ ଯାହା ତ୍ରୁଟି ରହିବ, ସେସବୁ ଚଳନୀୟ ।

କିଶୋରଙ୍କ ମୁହଁ ଶୁଖିଗଲା । ସୁନନ୍ଦାଙ୍କ ମୁହଁ କାନ୍ଦ କାନ୍ଦ ଦିଶିଲା । ଏତେ ସୁନ୍ଦର ଘରର ଏତେ ଅଂଶ ଭଙ୍ଗାରୁଜା କରିବା କଥା ଭାବି ସେମାନେ ଆତଙ୍କିତ ହେଲେ ।

ବାସ୍ତୁଶାସ୍ତ୍ର ବିଶାରଦ ବୁଝାଇବା କଣ୍ଠରେ କହିଲେ - ଆପଣମାନେ ଏ ଷ୍ଟେଜ୍‌ରେ ଏତେ ସବୁ ଭଙ୍ଗାରୁଜା କରିବାକୁ ପ୍ରସ୍ତୁତ ହେବେ ନାହିଁ ମୁଁ ଜାଣେ । ଆପଣମାନେ କେବଳ ନୁହଁ, କୌଣସି ଲୋକ ବି ରାଜି ହେବେ ନାହିଁ । ତେବେ ଶାସ୍ତ୍ର ସମ୍ମତ କଥା କହିବା ମୋର କର୍ତ୍ତବ୍ୟ । ହଁ, ଆଉ ଗୋଟେ ପ୍ରତିକାର ଅଛି । କିନ୍ତୁ ମୋର ସେଥିରେ ମୋତେ ବିଶ୍ୱାସ ନାହିଁ । ସେସବୁ ବ୍ୟବସ୍ଥା କେବଳ ମନକୁ ସାନ୍ତ୍ୱନା ଦେବାକୁ ଉଦ୍ଦିଷ୍ଟ ।

ସୁନନ୍ଦା ବ୍ୟାକୁଳ ହୋଇ ପଚାରିଲେ- କି ବ୍ୟବସ୍ଥା ଅଛି ଆପଣ କହନ୍ତୁ । ଆମର ଯଦି ବିଶ୍ୱାସ ହୁଏ ଆଉ ଆମ କ୍ଷମତା ଭିତରେ ସମ୍ଭବ ହୁଏ ଆମେ ନିଶ୍ଚୟ କରିବୁ ।

ବାସ୍ତୁଶାସ୍ତ୍ର ବିଶାରଦ ହାଲୁକା ଭାବେ ହସିଲେ ଓ କହିଲେ- ମୁଁ ଅବଶ୍ୟ ସେ ବିଦ୍ୟା ଜାଣି ନାହିଁ । ଫ୍ରେନ୍‌ସୁଇ ବ୍ୟବସ୍ଥା କଥା ଜାଣିଥିବେ । ସେମାନେ କୋଉଠି ଗୋଟେ ଘଣ୍ଟି ଝୁଲାଇ, ଠାକୁର, ଠାକୁରାଣୀ କିମ୍ବା ଲାଫିଙ୍ଗ୍ ବୁଦ୍ଧ ମୂର୍ତ୍ତି ଥୋଇ, ଦର୍ପଣ ଟାଙ୍ଗି କିମ୍ବା କି କି ରଙ୍ଗ ମାରିଦେଇ କହିବେ ସବୁ ବାସ୍ତୁଦୋଷ ଯା'ଦ୍ୱାରା ଦୂର ହୋଇଯିବ । ଆଉ



Digitized by srujanika@gmail.com

ଗୋଟେ ମତ ଅଛି । ତାକୁ ଆପଣ ଜ୍ୟୋତିଷ ଶାସ୍ତ୍ର ମତ କହିପାରନ୍ତି । କୌଣସି ବିଶିଷ୍ଟ ଜ୍ୟୋତିରବିଦ୍‌ଙ୍କୁ ପଚାରି କିଛି ଗ୍ରହ ଶାନ୍ତି କିମ୍ବା ହୋମ କଲେ କିମ୍ବା କିଛି ସୁନା ଦାନ କଲେ ଏ ବାସ୍ତୁଦୋଷ କଟିଯିବ ବୋଲି କେତେକ କୁହନ୍ତି । କିନ୍ତୁ ଏ ସବୁଥିରେ ମୋର ଆଦୌ ଆସ୍ଥା ନାହିଁ କି ବିଶ୍ୱାସ ନାହିଁ ।

ସେଦିନ କିଛି ବ୍ୟବସ୍ଥା କିମ୍ବା ସମାଧାନର ବାଟ ବାହାରି ପାରିଲା ନାହିଁ । ବାସ୍ତୁ ବିଶାରଦ ତାଙ୍କ ଫିସ୍ ନେଇ ଚାଲିଗଲେ । ସୁନନ୍ଦା ଓ କିଶୋର ଦୁହିଁଙ୍କ ମନ, ମୁଣ୍ଡ ଅଧିକ ବିଭ୍ରାନ୍ତ ଲାଗିଲା ।

କଥାଟା କାନରୁ ଦୁଇକାନ ହୋଇ ଆଠଦିନ ଭିତରେ ବହୁକାନ ମଧ ଦେଇ ସାଇ ପଡ଼ିଶା, ବନ୍ଧୁ ବାନ୍ଧବଙ୍କ କାନକୁ ଚାଲିଗଲା । ଅନେକ ଲୋକ ବାସ୍ତୁଦୋଷର କୁପ୍ରଭାବ ସଂପର୍କରେ ବିଭିନ୍ନ ଭୟଙ୍କର କଥା କହିଲେ ।

ଜଣେ ବନ୍ଧୁ କହିଲେ- ପଶ୍ଚିମ ଦିଗରେ ମୁଖ୍ୟ ପ୍ରବେଶ ଦ୍ୱାର ରଖିବା ଭାରି କ୍ଷତି କାରକ । ବାପୁଜୀନଗରର ରଘୁନାଥ ଜେନା ଘର କରିବାର ଚାରି ମାସ ପରେ ପକ୍ଷାଘାତ ରୋଗରେ ପଡ଼ିଲେ । ତାଙ୍କ ପୁଅ ବାସ୍ତୁ ବିଶାରଦଙ୍କୁ ଡକାଇ ବୁଝିଲେ ଯେ ତାଙ୍କ ନୂଆ ଘରର ମୁଖ୍ୟଦ୍ୱାର ପଶ୍ଚିମ ଦିଗରେ ରଖା ଯାଇଛି । ତେଣୁ ଏ ବିପଦ ପଡ଼ିଛି । ବାସ୍ତୁ ବିଶାରଦଙ୍କ ପରାମର୍ଶ ଅନୁସାରେ ତୁରନ୍ତ ପଶ୍ଚମ ପାଖରେ ଥିବା ମୁଖ୍ୟ ପ୍ରବେଶ ଦ୍ୱାର ବନ୍ଦ୍ କରି ଉତ୍ତର ଦିଗକୁ ବାଟ ଫିଟାଇଲେ । ଉତ୍ତର ପଟେ ଦ୍ୱାର ଖୋଲିବାର ଛ'ମାସ ପରେ ରଘୁବାବୁ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ବାଟ ଚାଲିଲେ । ମୁଁ ତାଙ୍କୁ ଗଲା କାଲି ମର୍ଣ୍ଣିଂୱାକ୍ ବେଳେ ଦେଖିଲି । ଏକଥା ସିଏ କହୁଥିଲେ । ତମରତ ଏଯାଏ କିଛି ଅନିଷ୍ଟ ହେଇନି, ତୁମ ଭାଗ୍ୟ ଭଲ । ଯଥା ଶୀଘ୍ର କିଛି ପ୍ରତିକାର ବ୍ୟବସ୍ଥା କର ।

ଆଉ ଜଣେ ପଡ଼ିଶା କହିଲେ- ଘରେ ବାସ୍ତୁଦୋଷ ରହିଲେ ମହା ଅନର୍ଥ ହୁଏ । କାହାର ଦେହ ଭଲ ରହେନାହିଁ, ଯେତେ ରୋଜଗାର କଲେ ଅଣ୍ଟେ ନାହିଁ । ବାପ, ପୁଅ, ଝିଅ, ସ୍ତ୍ରୀ ଇତ୍ୟାଦି ଅତି ଅନ୍ତରଙ୍ଗ ସମ୍ପର୍କ ଭିତରେ କଳହ ସୃଷ୍ଟିହୁଏ ।

ଆଉ ଦୁଇ, ତିନି ଜଣ ବାସ୍ତୁଶାସ୍ତ୍ର ବିଶାରଦଙ୍କୁ ଡାକି କିଶୋର ତାଙ୍କ ସହିତ ପରାମର୍ଶ କଲେ । ସମସ୍ତେ ସେଇ ଗୋଟିଏ କଥା କହିଲେ । ଏ ଘରେ ବାସ୍ତୁଦୋଷ ଅଛି । ଅନ୍ତତଃ ପକ୍ଷେ ଘରର ମୁଖ୍ୟ ପ୍ରବେଶ ଦ୍ୱାର, ରୋଷେଇ ଘର ଓ ଟଏଲେଟ୍‌ର ସ୍ଥାନ ପରିବର୍ତ୍ତନ କର । ତାହା ନ କରି ଏ ଘରେ ଅଧିକ ଦିନ ବାସ କରିବା ଧନ, ସ୍ୱାସ୍ଥ୍ୟ ଓ ଜୀବନ ପ୍ରତି ବିପଦଜନକ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ବାସ୍ତୁଶାସ୍ତ୍ର ବିଷୟକ ଅନେକ ଓଡ଼ିଆ, ହିନ୍ଦୀ ଓ ଇଂରାଜୀ ବହି କିଣି ପଢ଼ିଲେ କିଶୋର । ଖାଇବା, ପିଇବା, ଶୋଇବା କିଛି ଠିକ୍ ଠିକଣା ରହିଲା ନାହିଁ । ସୁନନ୍ଦା ବ୍ୟସ୍ତହେଲେ- ଏବେ ଏସବୁ ବହି ପଢ଼ି କାହିଁକି ନିଜ ମୁଣ୍ଡକୁ ଅଧିକ ବିଗାଡୁଚ ? ଘର ତିଆରି କରିବା ଆଗରୁ ଏସବୁ ବହି ପଢ଼ିଥିଲେ ଆଜି ଆମର ଏ ଦୁର୍ଦ୍ଦଶା ହେଇ ନଥାନ୍ତା । କୋଡ଼ିଏ ଲକ୍ଷ ଟଙ୍କା ଆମର ଏମିତି ପାଣିରେ ପଡ଼ି ନଥାନ୍ତା । ଯାହା ତ ଗଲାଣି ଗଲାଣି, ଆଉ ଦୁଇ, ତିନି ଲକ୍ଷ ଟଙ୍କା ଖର୍ଚ୍ଚ କରି ବାସ୍ତୁଶାସ୍ତ୍ର ଅନୁସାରେ ଘରର ମୁଖ୍ୟଦ୍ୱାର, ରୋଷେଇ ଘର ଆଉ ପାଇଖାନା ପରିବର୍ତ୍ତନ କରିଦିଅ । ତେଣିକି ଆମ ଭାଗ୍ୟରେ ଯାହାଥିବ ଆମେ ଭୋଗିବା । ଯେତେ ଅଧିକ ବହି ପଢ଼ିବ, ଶାସ୍ତ୍ର ଘାଣ୍ଟିବ କି ଯେତେ ଅଧିକ ଲୋକଙ୍କୁ ତମେ ଏ ବିଷୟ ପଚାରିବ ସେତେ ଅଧିକ ତୁମ ମୁଣ୍ଡ ଗୋଳମାଳ ହେବ ।

ସୁନନ୍ଦା ଓ କିଶୋରଙ୍କ ମଧରେ ଆଲୋଚନା ପରେ ସ୍ଥିର ହେଲା ପୁଅ, ଝିଅଙ୍କୁ ଏକଥା ଜଣାଇ ତାଙ୍କ ମୁଣ୍ଡ ବିଗାଡ଼ିବା ଉଚିତ ନୁହଁ । ସେମାନେ ଭୁବନେଶ୍ୱରଠୁ ବହୁ ଦୂରରେ; ଜଣେ ଅଛି ମୁମ୍ବେଇରେ ଆଉ ଜଣେ ଦିଲ୍ଲୀରେ । ତାଙ୍କ ମାନସିକ ଶାନ୍ତି ନଷ୍ଟ ନ କରି ମିସ୍ତ୍ରୀ, ମଜୁରିଆ ଡକାଇ ସର୍ବନିମ୍ନ ଆବଶ୍ୟକ ପରିବର୍ତ୍ତନ ଯାହା ପ୍ରଥମ ବାସ୍ତୁଶାସ୍ତ୍ର ବିଶାରଦ କହିଥିଲେ ସେତିକି କରାଯିବ ।

ତାଙ୍କ ଘର ତିଆରି କରିଥିବା ଲେବର କଣ୍ଟ୍ରାକ୍ଟର ଅର୍ଜ୍ଜୁନ ସାହୁଙ୍କୁ ଫୋନ୍ ଲଗାଇଲେ କିଶୋର - ହ୍ୟାଲୋ ଅର୍ଜ୍ଜୁନବାବୁ ! ହଁ ନମସ୍କାର । ଆପଣତ ଜାଣିଚନ୍ତି ଏଇ ବାସ୍ତୁଦୋଷ ପାଇଁ ମୁଁ କେତେ ଚିନ୍ତିତ । ହଁ, ହଁ କିଛି ପରିବର୍ତ୍ତନ କରିବା । କ'ଣ ପରିବର୍ତ୍ତନ ହବ ଆପଣ ଏଠିକି ଆସିଲେ ମୁଁ କହିବି । କାଲି ସକାଳ ଆଠଟା ବେଳେ ଆସନ୍ତୁ । ଜଣେ ମିସ୍ତ୍ରୀ ଆଉ ଚାରିଜଣ ମଜୁରିଆ ସାଙ୍ଗରେ ଆଣିଥିବେ । ଆମେ ଆଗ ଭାଙ୍ଗିବା କାମଟା କରିବା । ନିଶ୍ଚୟ ଆସିବେ ।

ପରଦିନ ସକାଳ ଆଠଟା ବେଳେ ଜଣେ ମିସ୍ତି ଆଉ ଚାରିଜଣ ମଜୁରିଆ ଧରି ଲେବର କଣ୍ଟ୍ରାକ୍ଟର ଅର୍ଜ୍ଜୁନ ସାହୁ ଆସି ପହଞ୍ଚିଲେ । ସେମାନେ ତାଙ୍କ ସାଙ୍ଗରେ ଆଣିଥିଲେ ବଡ଼ ବଡ଼ ଶାବଳ, ହାମର ଆଉ ଛେଣି ଆଉ କାନ୍ଥକଟା ଯନ୍ତ୍ର । କାନ୍ଥ ଭାଙ୍ଗିବା କିମ୍ବା କାଟିବା କାମରେ ସେସବୁ ବ୍ୟବହୃତ ହେବ ।

କିଶୋର ଖବର କାଗଜ ପଢ଼ା ଛାଡ଼ି ଲେବର କଣ୍ଟ୍ରାକ୍ଟରଙ୍କ ସହିତ କିଛି ସମୟ ଆଲୋଚନା କଲେ । ତାଙ୍କୁ ବୁଝେଇ ଦେଲେ - ପ୍ରଥମେ ଏଇ ଉତ୍ତର ପଟ କାନ୍ଥରେ ଏଇ ସ୍ଥାନରେ ସାଢ଼େ ତିନିଫୁଟ ଚଉଡ଼ା ଓ ସାତଫୁଟ ଉଚ୍ଚତାର ଗୋଟେ ବାଟ ଫିଟାଯିବ ।



Digitized by srujanika@gmail.com

ଏଇଟା ଘରର ମୁଖ୍ୟ ପ୍ରବେଶ ଦ୍ୱାର ହେବ । ପଶ୍ଚିମ ପଟେ ଥିବା ଦ୍ୱାରଟାରୁ ଚୌକାଠ ତାଡ଼ିଆଣି ଦ୍ୱାରଟାକୁ ଇଟାଦ୍ୱାରା ବନ୍ଦ୍ କରାଯିବ । ଯା'ପରେ ରୋଷେଇ ଘର ଓ ଟଏଲେଟ୍ ଭଙ୍ଗାଯିବ ।

ଅର୍ଜୁନ ତାଙ୍କ ମଜୁରିଆ ଓ ମିସ୍ତ୍ରିଙ୍କୁ ପାଖକୁ ଡାକିଲେ । ପକେଟ୍‌ରୁ ଗୋଟେ ମାପ ଫିତା ବାହାର କରି କାନ୍ଥରେ ସାଢ଼େ ତିନିଫୁଟ ଚଉଡ଼ା ଓ ସାତଫୁଟ ଉଚ୍ଚତାର ବାଟ ଫିଟାଇବା ପାଇଁ ରଙ୍ଗ ଖଡ଼ିରେ ଚିହ୍ନ ଦେଲେ ।

ଏଇ ସମୟରେ ସ୍କୁଟି ଷ୍ଟାଣ୍ଡ ମାରି ଖୁବ୍ ତରତର ହୋଇ ପଶି ଆସିଲେ ଫାଲ୍‌ଗୁନି । ସିଏ ଆସି ପହଞ୍ଚିବା ବେଳକୁ ମଜୁରିଆମାନେ ଶାବଳ ଓ ହାମର ଧରି କାନ୍ଥ ଭାଙ୍ଗିବାକୁ ପ୍ରସ୍ତୁତ ହେଉଥିଲେ । ଫାଲ୍‌ଗୁନି ପାଟିକଲେ- ଆରେ ଏ କ'ଣ କରୁଚ ? ତୁମ ମୁଣ୍ଡ ଫୁଣ୍ଡ ଖରାପ ହେଲାଣି ନା କ'ଣ ? ଏଡ଼େ ସୁନ୍ଦର ଘରଟାକୁ ଭାଙ୍ଗୁଛ କାହିଁକି ?

କିଶୋର, ସୁନନ୍ଦା, ଲେବର କଣ୍ଟ୍ରାକ୍ଟର, ମିସ୍ତ୍ରି ଓ ମଜୁରିଆ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଫାଲ୍‌ଗୁନିଙ୍କୁ ଚାହିଁଲେ ।

ଫାଲ୍‌ଗୁନି କହିଲେ- କିଶୋର ! ଏ ଭଙ୍ଗାରୁଜା ବନ୍ଦ୍‌କର । ମୋ କଥା ମୁଁ ଫେରାଇ ନେଉଛି । ଏମିତି ସୁନ୍ଦର, ଚମତ୍କାର ନୂଆ ଘରଟାକୁ ଯିଏ ଭାଙ୍ଗି ବିକୃତ କରିବ ତାକୁ ଲୋକେ ପାଗଳ ବୋଲି କହିବେ ।

କିଶୋର ଆଶ୍ଚର୍ଯ୍ୟ ହୋଇ କହିଲେ- କିରେ ତୁ ପୁଣି ଏମିତି ଓଲଟା କଥା କେମିତି କହୁଛୁ ? ତୁ ଏଇ ପନ୍ଦର ଦିନ ତଳେ ଆସି ଯାହାସବୁ କହିଥିଲୁ ସେସବୁ ଭୁଲ୍ ବୋଲି କେମିତି କହୁଛୁ ? ତୁ ସେଦିନ ଯାହା କହିଥିଲୁ ତା ପଛରେ ବାସ୍ତୁଶାସ୍ତ୍ରର ସୁଦୃଢ଼ ସମର୍ଥନ ଥିଲା । ମୁଁ ତିନି, ଚାରିଜଣ ବାସ୍ତୁଶାସ୍ତ୍ର ବିଶାରଦଙ୍କୁ ପଚାରିଲି, ସେମାନେ ତୋ କଥା ସହିତ ଏକମତ ହେଲେ ଆଉ ପରାମର୍ଶ ଦେଲେ କିଛିଟା ପରିବର୍ତ୍ତନ କରି ବାସ୍ତୁଦୋଷ ଦୂର କରିବାକୁ । ମୁଁ ତ ସେଇ ପରାମର୍ଶ ଅନୁସାରେ ମୁଖ୍ୟ ପ୍ରବେଶ ଦ୍ୱାର, ରୋଷେଇ ଘର, ଓ ଟଏଲଟ୍‌ର ସ୍ଥାନ ପରିବର୍ତ୍ତନ କରିବାକୁ ଯାଉଛି । ତୁ ଏଥିରେ କାହିଁକି ବାଧା ଦେଉଛୁ ?

ଫାଲ୍‌ଗୁନି ହସି ହସି କହିଲେ- ତୁମେ ଦୁହେଁ ଶିକ୍ଷିତ ଲୋକ ହୋଇ ମଧ୍ୟ ଏତେ ବୋକାମିର ପରିଚୟ ଦେବ ବୋଲି ମୋର ଧାରଣା ନ ଥିଲା ।

କିଛି ବୁଝି ନ ପାରିବା ମୁଦ୍ରାରେ କିଶୋର ଓ ସୁନନ୍ଦା ପରସ୍ପରଙ୍କ ମୁହଁକୁ ଚାହିଁଲେ ।

- ଏଥିରେ ବୋକାମିର ପ୍ରଶ୍ନ ଉଠୁଛି କାହିଁକି ? ଆମେତ ଆମ ଘରର ବାସ୍ତୁଦୋଷ



Digitized by srujanika@gmail.com

ଦୂର କରିବାକୁ ବ୍ୟବସ୍ଥା କରୁଛୁ ।

ଫାଲ୍‌ଗୁନି କହିଲେ- ଆଜି ଅପ୍ରେଲ ପନ୍ଦର ତାରିଖ । ମୁଁ ତୁମର ଏ ଘରକୁ ଆସିଥିବା ତାରିଖ ତୁମେ ହୁଏତ ଭୁଲି ଯାଇଥିବ । କିନ୍ତୁ ମୁଁ ଭୁଲିନାହିଁ । ସେଦିନ ଥିଲା ଅପ୍ରେଲ ପହିଲା ।

ସୁନନ୍ଦା ମନେ ପକାଇଲେ- ହଁ, ସେଦିନ ଅପ୍ରେଲ ପହିଲା ଥିଲା ।

ଫାଲ୍‌ଗୁନି ଆଉ ଟିକେ ବଡ଼ ପାଟିରେ ହସି ହସି କହିଲେ- ମୁଁ ସେଦିନ ତୁମକୁ ଅପ୍ରେଲ୍‌ଫୁଲ୍ କରିବା ପାଇଁ ତୁମ ଘରକୁ ଆସିଥିଲି ଆଉ ବାସ୍ତୁଶାସ୍ତ୍ରର ସାହାଯ୍ୟ ନେଇ ତୁମ ଦୁଇ ଜଣଙ୍କୁ ବୋକା କରିଥିଲି । ମୁଁ ସେଇଦିନଠୁ ତୁମ ବିଷୟରେ ସବୁ ଖବର ରଖିଛି । ତୁମେ ଦୁହେଁ ସେଇ ଦିନଠୁ ଆଜିଯାଏ ବୋକା ହୋଇ ରହିଛ । ସେ ବୋକାମିଟା ଏବେ ପାଗଳାମିର ରୂପ ନେବାକୁ ବସିଲାଣି ।

କିଶୋର ଯୁକ୍ତି ବାଢ଼ିଲେ- ନା, ଫାଲ୍‌ଗୁନି ! ତୁ ସେଦିନ ଆମକୁ ବୋକା ବନେଇ ନ ଥିଲୁ । ଯାହା କହିଥିଲୁ ବାସ୍ତୁଶାସ୍ତ୍ର ସମ୍ମତ କଥା କହିଥିଲୁ । ବରଂ ମୋର ଯାହା ମନେହୁଏ ତୁ ଆଜି ଆମ ଦୁଇ ଜଣଙ୍କୁ ବୋକା ବନେଇବାକୁ ଯୋଜନା କରି ଆସିଛୁ ।

ଫାଲ୍‌ଗୁନି ଠୋ ଠୋ ହୋଇ ହସିଲେ । ଏମିତି କିଛି ସମୟ ହସି ହସି ବେଦମ୍ ହେଲେ । ଲେବର କଣ୍ଟ୍ରାକ୍ଟର, ମିସ୍ତ୍ରି ଓ ମଜୁରିଆମାନେ ଫାଲ୍‌ଗୁନିଙ୍କର ଏମିତି ଅଜବ ଆଚରଣ ଦେଖି ଖୁବ୍ ଆଶ୍ଚର୍ଯ୍ୟ ହେଲେ । ଦୁଇ ବନ୍ଧୁଙ୍କ ଭିତରେ ଏ କି ନାଟକ ଚାଲିଛି ତାହା ବୁଝି ନ ପାରି ଚୁପ୍‌ଚାପ୍ ଠିଆ ହୋଇ ରହିଲେ । ଆଗକୁ କ'ଣ ଘଟିବ ତାହା ଦେଖିବାକୁ ସେମାନେ ଆଗ୍ରହର ସହିତ ଅପେକ୍ଷା କଲେ ।

ଫାଲ୍‌ଗୁନିଙ୍କର ହସ ବନ୍ଦ୍ ହେବାପରେ ସିଏ କହିଲେ- ଆଚ୍ଛା ଭାଉଜ ! ତୁମେ କ'ଣ କିଶୋର ପରି ବୋକା ? ତା' ଘର ଗଡ଼ଜାତ ଅଞ୍ଚଳରେ । ରାଜା ରାଜୁଡ଼ା ଶାସନର ଅତ୍ୟାଚାର ଆଉ ଉତ୍ପୀଡ଼ନ ଦ୍ୱାରା ଗଡ଼ଜାତର ପ୍ରଜାମାନେ ବୋକା ପାଲଟି ଯାଉଥିଲେ । ତେଣୁ କିଶୋର ଏମିତି ବୋକାମି କରିବାରେ ଅସ୍ୱାଭାବିକତା କିଛି ନାହିଁ । କିନ୍ତୁ ତୁମ ବାପଘରତ ଖୋଦ୍ କଟକ ସହରରେ, ତୁମେ ତା'ପରି ବୋକାମି କାହିଁକି କରୁଚ ? ସତ କହିବାକୁ ଗଲେ ବାସ୍ତୁଶାସ୍ତ୍ର ଅନୁସାରେ କୌଣସି ଗୋଟିଏ ଘର ବି ତିଆରି ହୋଇ ପାରିବ ନାହିଁ । ସହରର ଯେକୌଣସି ଘରକୁ ତମେ ନିଅ ଆଉ ବାସ୍ତୁଶାସ୍ତ୍ର ଅନୁସାରେ ମିଳାଅ । ସେଥିରେ କିଛିନା କିଛି ଦୋଷତ୍ରୁଟି ନିଶ୍ଚୟ ରହିବ । ତୁମେ ଏ ନୂଆଘରକୁ ଆସିବା ପୂର୍ବରୁ ସରକାରୀ କ୍ୱାର୍ଟରସ୍‌ରେ ରହୁଥିଲ । ସିଏ କୋଉ ବାସ୍ତୁଶାସ୍ତ୍ର



Digitized by srujanika@gmail.com

ଅନୁସାରେ ତିଆରି ହୋଇଥିଲା ? ତୁମର ସେ କ୍ୱାର୍ଟରସ୍‌ର ମୁଖ୍ୟଦ୍ୱାର କୋଉ ଦିଗକୁ ଥିଲା ? ପଶ୍ଚିମ ଦିଗକୁ ନା ? ବାସ୍ତୁଶାସ୍ତ୍ର ଅନୁସାରେ ଘରର ମୁଖ୍ୟଦ୍ୱାର ପଶ୍ଚିମ ଦିଗକୁ ରହିବା ଅଶୁଭ । ସେ ଘରେ ତମେ ପ୍ରାୟ ତିରିଶ ବର୍ଷ ରହିଛ । ସେ ଘରେ ରହିବା ଭିତରେ ତମରତ ଅନେକ ଉନ୍ନତି ହୋଇଛି । ଏ ନୂଆଘରେ ତମେ ରହିଲ ରଥଯାତ୍ରା ଦିନ, ମାନେ ଗତବର୍ଷ ଜୁଲାଇ ମାସରେ । ଏବେ ଏ ବର୍ଷର ଅପ୍ରେଲ୍ ପନ୍ଦର ତାରିଖ । ଇତି ମଧ୍ୟରେ ଏ ଘରେ ରହିବା ତୁମର ପ୍ରାୟ ଆଠ ମାସ ହେଲାଣି । କ'ଣ କ'ଣ ଅନିଷ୍ଟ ବା କ୍ଷତି ହେଇଚି ଆଉ କ'ଣ କ'ଣ ଭଲ ହେଇଚି ହିସାବ କର । ମୁଁ ଜାଣିବାରେ ଏଇ ଛ'ମାସ ଭିତରେ ତୁମର ଝିଅର ଚାକିରି ହେଇଚି । ତୁମ ଦୁଇ ଜଣଙ୍କ ଦେହ ସୁସ୍ଥ ଅଛି । ତେଣୁ ଅଯଥା କାହିଁକି ସେ ବାସ୍ତୁଦୋଷ କଥା ମୁଣ୍ଡରେ ପୂରାଇ ମିଛରେ ବିଭ୍ରାନ୍ତ ହେଉଛ ?

କିଶୋର ଆପତ୍ତି ଉଠାଇଲେ- ଦେଖ୍ ଫାଲଗୁନି ! ବାସ୍ତୁଶାସ୍ତ୍ର ଅନୁସାରେ ଯାହା ଯାହା ପରିବର୍ତ୍ତନ ଦରକାର ସେତକ କରିଦେଲେ ମୁଁ ଆଉ ସୁନନ୍ଦା ସବୁଦିନ ପାଇଁ ସବୁ ଦିଗରୁ ନିଶ୍ଚିନ୍ତ ହୋଇଯିବୁ । ଲୋକ ଡାକିଚି । ଆଜି ସେ କାମଟା ସାରିଦେବି । ତୁ ଏଥିରେ ବାଧା ଦେବାଟା ଠିକ୍ ହେଉନାହିଁ ।

ଫାଲଗୁନି ଯୁକ୍ତି କଲେ- ନିଜ ଜାଗା ଆଉ ତା'ର ଅବସ୍ଥିତିକୁ ଆଖିରେ ରଖି ଘରର ମୁଖ୍ୟ ପ୍ରବେଶ ଦ୍ୱାର କେଉଁ ଦିଗରେ ରଖାଯିବ ତାହା ସ୍ଥିର ହୁଏ । ତୋର ଏ ଘରର ପଶ୍ଚିମ ଦିଗରେ ତିରିଶ ଫୁଟ ଚଉଡ଼ାର ରାସ୍ତା ଅଛି । ରାସ୍ତା ସାମ୍ନାଟା ଫାଙ୍କା ରଖା ଯାଇଛି ଭବିଷ୍ୟତ ପାର୍କ ପାଇଁ । ତେଣୁ ତୋ ଘରର ମୁଖ୍ୟ ପ୍ରବେଶ ଦ୍ୱାର ପଶ୍ଚିମ ପାଖ ବ୍ୟତୀତ ଅନ୍ୟ କୌଣସି ଦିଗକୁ ରଖାଯାଇ ପାରିବ ନାହିଁ । ତୁ ଯଦି ଏବେ ଉତ୍ତର ଦିଗରେ ମୁଖ୍ୟ ପ୍ରବେଶ ଦ୍ୱାର ଫିଟାଉ ତା'ହେଲେ ଘରୁ ବାହାରି ବୁଲିବୁଲି ପଶ୍ଚିମ ପାଖରେ ଥିବା ତିରିଶ ଫୁଟିଆ ରାସ୍ତାକୁ ବାହାରିବୁ । ଆଉ ଅନ୍ୟ ଯେଉଁ ବାସ୍ତୁଦୋଷ ଅଛି ବୋଲି ସମସ୍ତେ କହୁଛନ୍ତି, ସେସବୁ ମଧ୍ୟ ସେହିପରି । ଅବସ୍ଥିତି ଅନୁସାରେ ଯାହା ଯେଉଁଠି ରହିବା କଥା, ସବୁ ଠିକ୍ ସ୍ଥାନରେ ଅଛି । ଘରର ନକ୍ସା ପ୍ରସ୍ତୁତ କଲାବେଳେ ମୁଖ୍ୟତଃ ଦେଖିବା କଥା, ଘରଟି ଏପରି ତିଆରି ହେବ ଯେମିତି ଘର ଭିତରକୁ ପ୍ରଚୁର ଆଲୋକ ଓ ପବନ ଆତଯାତ କରି ପାରୁଥିବ । ସେ ଦୃଷ୍ଟିରୁ ଦେଖିଲେ ତୋ ଘର ଏକଦମ୍ ଠିକ୍ ଅଛି । ବାୟୁର ଅବାଧ ଚଳାଚଳ ପାଇଁ ସାମ୍ନା ସାମ୍ନି ବଡ଼ ବଡ଼ ଝରକା ରହିଛି । ହେଇ ଦେଖ ସକାଳର ଖରା ତୋ ଘର ଭିତରେ ଭଲ ଭାବରେ ପଡ଼ୁଛି । ସବୁଠୁ ବଡ଼କଥା ହେଲା ତମେ ଏ କିଛି ମାସର ରହଣି ଭିତରେ କେବେ କ'ଣ କିଛି ଅସୁବିଧା ଅନୁଭବ କରିଛ ? ଏଇ ଯେମିତି



Digitized by srujanika@gmail.com

ଘରଟା ଅନ୍ଧାରୁଆ, ଅନ୍ଧାରୁଆ ଲାଗୁଛି କି ? ଗ୍ରୀଷ୍ମ ଋତୁରେ ଘର ଭିତରେ ପବନ ଚଳାଚଳ ଭଲ ହେଉ ନାହିଁକି ? ବର୍ଷାଦିନେ ଘର ଚଟାଣରୁ ପାଣି ଝରାଉଛ କି ? ଏମିତି ଆଉ କିଛି ଅସୁବିଧା ତୁମେ ଯା'ଭିତରେ ଅନୁଭବ କରିଛକି ?

କିଶୋର ଓ ସୁନନ୍ଦା ପରସ୍ପରଙ୍କ ମୁହଁକୁ ଚାହିଁଲେ । ତାଙ୍କ ମୁହଁରୁ ସ୍ପଷ୍ଟ ପଢ଼ି ହେଉଥିଲା ଯେ ଏ ଘରେ ଏତେ ଦିନ ରହିବା ଭିତରେ ଏମିତି କିଛି ଅସୁବିଧା ସେମାନେ ଅନୁଭବ କରି ନାହାଁନ୍ତି ।

ଫାଲ୍‌ଗୁନି ପୁଣି କହିଲେ- ମୁଁ ଜାଣେ ତୁମର ସେମିତି କିଛି ଅସୁବିଧା ଏବେ ନାହିଁ କି ନଥିଲା । ତୁମକୁ ଅପ୍ରେଲ୍ ଫୁଲ କରିବାପାଇଁ ଏସବୁ ମୁଁ ତୁମ ମୁଣ୍ଡରେ ପୂରାଇଥିଲି । ମୁଁ ଏବେ ତୁମ ମୁଣ୍ଡରୁ ସେ ଭୂତକୁ ତଡ଼ି ଦେଇଚି । ମୁଁ ଆଶାକରେ ତୁମେ ଆଉ ଏ ଘରର ଭଙ୍ଗାରୁଜା କାମ କରିବ ନାହିଁ । ମୁଁ ଏବେ ଆସୁଚି ।

ଫାଲ୍‌ଗୁନି ଫେରିଯିବାକୁ ସ୍କୁଟର ଷ୍ଟାର୍ଟ କଲେ । କିଶୋର ଓ ସୁନନ୍ଦା ସେଇଠି ସେମିତି ଠିଆ ହୋଇଥିଲେ ।

ଫାଲ୍‌ଗୁନି ସ୍କୁଟର ବନ୍ଦ କରି ପୁଣି ଠିଆ ହେଲେ ଓ କହିଲେ- ମୋ ଜାଣିବାରେ ତୁମ ମନରୁ ସନ୍ଦେହଟା ସଂପୂର୍ଣ୍ଣ ଅପସରି ଯାଇ ନାହିଁ । ତୁମେ ଗୋଟେ କାମ କର ଭାଉଜ । କିଶୋର ଏଇଠି ଥାଉ, ତୁମେ ଯାଇ ତୁମ କାନ୍ଥରେ ଟଙ୍ଗା ଯାଇଥିବା କ୍ୟାଲେଣ୍ଡରଟା ଆଣ । ତୁମର ସନ୍ଦେହ ଦୂର ହେବ ।

ସୁନନ୍ଦା ତରତର ହୋଇ ଘର ଭିତରକୁ ଗଲେ ଓ କ୍ୟାଲେଣ୍ଡରଟା ଆଣିକି ଫେରିଲେ । ଫାଲ୍‌ଗୁନି କହିଲେ- ଅପ୍ରେଲ୍ ମାସ କ୍ୟାଲେଣ୍ଡରର ପଛ ପାଖ ଦେଖ । କ'ଣ ଲେଖା ଅଛି ପଢ଼ । ମୁଁ ସେଇ ଦିନ ହିଁ ଲେଖିଥିଲି ।

କିଶୋର ପଢ଼ିଲେ- ଆଜି ଅପ୍ରେଲ୍ ପହିଲା । କିଶୋର ଓ ସୁନନ୍ଦା ଭାଉଜଙ୍କୁ ଅପ୍ରେଲ୍ ଫୁଲ୍ ବନାଇ କରି ଯିବି । ଫାଲ୍‌ଗୁନି ।

ଫାଲ୍‌ଗୁନି, କିଶୋର ଓ ସୁନନ୍ଦା ତିନି ଜଣଯାକ ହୋ ହୋ ହୋଇ ହସି ଉଠିଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଧଳା ଦୁବ

ସୀମା ଆଉ ସାଗରିକା ରାସ୍ତାର ଗୋଟେ କଡ଼କୁ କାର୍ ପାର୍କିଙ୍ଗ୍ କଲେ । ସାମ୍ନାରେ ବିଶିଷ୍ଟ କଥାକାର ଶୀତାଂଶୁ ତ୍ରିପାଠୀଙ୍କ ଘର । ଏକ ମହଲା ପକ୍କାଘର । ଆଗରେ ପୋର୍ଟିକୋ । ପୋର୍ଟିକୋର ଦୁଇ କଡ଼ରେ ଅନେକ ସୁନ୍ଦର ଫୁଲକୁଣ୍ଡ ଓ କିଛି ଡେକୋରିଟିଭ୍ ପ୍ଲାଣ୍ଟର କୁଣ୍ଡ ଧାଡ଼ି ଧାଡ଼ି ହୋଇ ଥୁଆ ହୋଇଛି ।

ଜଣେ କଥାକାରଙ୍କ ରୁଚିପୂର୍ଣ୍ଣ ସ୍ପର୍ଶରେ ଘରଟି ଆକର୍ଷଣୀୟ ଦିଶୁଚି । ଶୀତାଂଶୁ ତ୍ରିପାଠୀଙ୍କ ଠିକ୍ ନେମ୍‌ପ୍ଲେଟ୍ ତଳକୁ ଲାଗିଛି କଲିଂବେଲ୍ । କଲିଂବେଲ୍‌ରେ ହାତ ଥାପିଲେ ସୀମା । ସୀମା ଓ ସାଗରିକା ନିଜ ନିଜର ଶାଢ଼ିକୁ ସାମାନ୍ୟ ସଜାଡ଼ି ନେଲେ ।

କିଛି ସମୟ ଅପେକ୍ଷା କରିବା ଭିତରେ ସ୍ତ୍ରୀ ଲୋକଟିଏ ଘରର କବାଟ ଖୋଲି ସୀମା ଓ ସାଗରିକାଙ୍କୁ ଡ୍ରଇଂରୁମ୍‌କୁ ପାଛୋଟି ନେଲା । ସ୍ତ୍ରୀ ଲୋକଟିର ଶାଢ଼ି ଆଉ ବେଶ ବିନ୍ୟାସରୁ ଜଣା ପଡୁଥିଲା ସିଏ ଏ ଘରର ଚାକରାଣୀ । ସାଧାରଣ ଘରର ଚାକରାଣୀଠାରୁ ତା'ର ଶାଢ଼ି ଓ ପରିଚ୍ଛନ୍ନତା ବେଶ୍ ଉନ୍ନତ ଥିଲା ।

ଡ୍ରଇଂରୁମ୍‌ର ସାଜସଜ୍ଜା ଖୁବ୍ ସୃଜନଶୀଳ, କଳାତ୍ମକ ଓ ସମ୍ଭ୍ରାନ୍ତ ଲାଗୁଥିଲା । ଗୋଟେ ପଟେ କାନ୍ଥରେ ଦୁଇଟି ଆଧୁନିକ ଆର୍ଟର ପେଣ୍ଟିଂ । ଆଉ ଗୋଟେ ପଟେ ଗୋଟିଏ କାଚ ଆଲମାରିରେ ଶୀତାଂଶୁବାବୁଙ୍କ ବିଭିନ୍ନ ଗଳ୍ପ, ଉପନ୍ୟାସ ପୁସ୍ତକ ସହିତ ଓଡ଼ିଶା ସାହିତ୍ୟ ଏକାଡ଼େମୀ, କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ସାରଳା ପୁରସ୍କାର ଇତ୍ୟାଦିର ତାମ୍ର ଫଳକ । ସାମ୍ନା କାନ୍ଥରେ ବିଭିନ୍ନ ସ୍ଥାନରୁ ପୁରସ୍କାର ଓ ସମ୍ମାନ ଗ୍ରହଣ କଲାବେଳର ଏନ୍‌ଲାର୍ଜଡ୍ କଲର୍ଡ଼ ଫଟୋ ଟଙ୍ଗାଯାଇଛି । କାନ୍ଥରେ ଗୋଟିଏ ବିରାଟ ଥାକରେ ପ୍ରାୟ ପଚାଶ ଷାଠିଏ ବଡ, ଛୋଟ ପିତଳ ସିଲ୍ଡ ,କପ୍ ସଜାହୋଇ ରଖା ଯାଇଛି । ମାର୍ବଲ ଚଟାଣ ଉପରେ ଇଞ୍ଚେ ବହଳର ଭେଲ୍‌ଭେଟ୍ କାର୍ପେଟ ବିଛାଯାଇଛି ।

ହଠାତ୍ ସ୍କ୍ରିନ୍ ଠେଲି ଡ୍ରଇଙ୍ଗ୍ ରୁମ୍ ଭିତରକୁ ପ୍ରବେଶ କଲେ ଜଣେ ପ୍ରୌଢ଼ା । ସୁନ୍ଦର ଗଢ଼ଣ, ଉଚ୍ଚତା ୫ ଫୁଟ ୮ ଇଞ୍ଚ ହେବ । ରଙ୍ଗ ତମ୍ବା ପରି ଉଜ୍ଜ୍ୱଳ ଗୋରା । ଧାର ମୁହଁ । ଠିଆ ନାକ । ଆକର୍ଷିତ କଲାପରି ଚେହେରାର ଏଇ ପ୍ରୋଢ଼ା ନିଶ୍ଚୟ ଶ୍ରୀମତୀ ତ୍ରିପାଠୀ । ବସିବା ସ୍ଥାନରେ ଠିଆହୋଇ ସୀମା ଓ ସାଗରିକା ତାଙ୍କୁ ନମସ୍କାର କଲେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ପ୍ରତି ନମସ୍କାର ଜଣାଇ ବସୁ ବସୁ ଭଦ୍ରମହିଳା କହିଲେ- ମୁଁ ମିସେସ୍ ତ୍ରିପାଠୀ । ଆପଣମାନେ ମୋତେ ମୋ ପିତୃଦତ୍ତ ନାମ ତନିମା ବୋଲି ସମ୍ବୋଧନ କରି ପାରନ୍ତି ।

ସୀମା ନିଜର ପରିଚୟ ଦେଲେ- ମୁଁ ସୀମା ଆଉ ଇଏ ସାଗରିକା । ଆମେ ଏଇ ଭୁବନେଶ୍ୱର ସହରର ପ୍ରଗତିଶୀଳ ମହିଳା କ୍ଲବ 'ଚନ୍ଦ୍ରିକା'ର ସଭାନେତ୍ରୀ ଆଉ ସମ୍ପାଦିକା ।

ଏଇ ସମୟରେ ଗୋଟିଏ ଟ୍ରେରେ ସର୍ବତ ଆଣି ଘରର ଚାକରାଣୀ ଟିପୟ ଉପରେ ଥୋଇଦେଇ ଚାଲିଗଲା । ତନିମା ଦୁଇଟି ସର୍ବତ ଗ୍ଲାସ୍ ସୀମା ଆଉ ସାଗରିକାଙ୍କ ହାତକୁ ବଢ଼ାଇ ଦେଇ ନିଜ ପାଇଁ ଗୋଟିଏ ଗ୍ଲାସ୍ ଉଠାଇ ଆଣିଲେ ।

ସର୍ବତ ପିଇବା ଭିତରେ ତନିମା ପଚାରିଲେ- ଆପଣମାନେ କ'ଣ ତ୍ରିପାଠୀବାବୁଙ୍କ ପାଖକୁ ଆସିଚନ୍ତି ? କିନ୍ତୁ ସିଏତ ଦିଲ୍ଲୀ ଯାଇଛନ୍ତି । ଫେରୁ ଫେରୁ ଆହୁରି ଦୁଇ ଦିନ । ଠିକ୍ ଅଛି କ'ଣ ପାଇଁ ଆସିଥିଲେ କୁହନ୍ତୁ ମୁଁ ତାଙ୍କୁ କହିଦେବି ।

ସାଗରିକା କହିଲେ- ଆମ କ୍ଲବ 'ଚନ୍ଦ୍ରିକା'ର ବାର୍ଷିକୋତ୍ସବ ଆଜିକି ଆଉ ୧୫ଦିନ ରହିଲା । ଆମେ ଆସିଥିଲୁ ସାର୍‌ଙ୍କୁ ସେଇ ଉତ୍ସବକୁ ମୁଖ୍ୟଅତିଥି କରିନେବା ପାଇଁ । ଆଜି ତ ସାର୍ ନାହାଁନ୍ତି, ସାର୍ ଦିଲ୍ଲୀରୁ ଫେରିବା ପରେ ଆମେ ଆଉ ଥରେ ଆସିବୁ । ସାର୍‌ଙ୍କୁ କହିଥିବେ ଏ ମାସ ୩୦ ତାରିଖ ଦିନ ଆମ କ୍ଲବ୍‌ର ଫଙ୍କ୍‌ସନ୍ । ସେଦିନକୁ ଆଉ କୁଆଡ଼େ ପ୍ରୋଗ୍ରାମ ରଖିବେ ନାହିଁ ।

ତନିମା ଏଥିରେ ସମ୍ମତି ଜଣାଇଲେ । ସାଗରିକା ଯିବା ପାଇଁ ଉଠିବା ବେଳେ ଦେଖିଲେ କାନ୍ଥଥାକରେ ଥୁଆ ହୋଇଥିବା ବଡ଼ ବଡ଼ ସିଲ୍‌ଡ଼ ଓ କପ୍‌କୁ ସୀମା ଖୁବ୍ ପାଖରୁ ଅନେଇଛନ୍ତି । ସେଇ ଥାକ ପାଖରେ ଠିଆ ହୋଇ ସୀମା ପ୍ରଶ୍ନ କଲେ- ମ୍ୟାଡ଼ମ୍ ! ସେ କାଚ ଆଲମିରାରେ ଥିବା ପୁରସ୍କାର ଆଉ ତାମ୍ରଫଳକ ସବୁତ ଶୀତାଂଶୁ ସାର୍‌ଙ୍କ ସାରସ୍ୱତ କୃତି ପାଇଁ ମିଳିଛି, କିନ୍ତୁ ଏଇ କାନ୍ଥ ଥାକରେ ଥିବା ଏତେ ବଡ଼ ବଡ଼ ଏତେ ସଂଖ୍ୟାରେ ସିଲ୍‌ଡ଼ କପ୍ କିଏ ପାଇଛନ୍ତି ? ସାର୍ କ'ଣ ତାଙ୍କ ଛାତ୍ର ଜୀବନରେ ଏସବୁ ପାଇଥିଲେ ?

ଏ ପ୍ରଶ୍ନ ଶୁଣି ତନିମା କିଛି ସମୟ ନିରବ ରହିଲେ । ଏପ୍ରଶ୍ନ ତାଙ୍କ ଭିତରେ ଗୋଟେ ଝଡ଼ ସୃଷ୍ଟି କରିଛି । ତଥାପି ନିଜକୁ କିଛି ସମୟ ଚୁପ୍ ରଖିଲେ । ଯେମିତି ସେ ପ୍ରଶ୍ନଟା ଶୁଣି ପାରି ନାହାନ୍ତି ସେମିତି ଅନ୍ୟଆଡ଼େ ଚାହିଁଲେ ।

ସୀମା ଆଉ ଥରେ ପ୍ରଶ୍ନ କଲେ- କିଛି କହିଲେ ନାହିଁ ଯେ ମ୍ୟାଡ଼ମ୍ ?

ତନିମାଙ୍କ ମୁହଁର ରଙ୍ଗ ବଦଳି ବଦଳି ଯାଉଥିଲା, ଯେମିତି କିଛି କଥାକୁ ସେ ଜବରଦସ୍ତ ପେଟ ଭିତରେ ମାଡ଼ି ବସୁଚନ୍ତି ।

ଆନନ୍ଦ ଚନ୍ଦ୍ର ପତି

Digitized by srujanika@gmail.com

ସାଗରିକା ପ୍ରଶ୍ନ କଲେ- ଏ ସବୁ ସିଲ୍ଡ,କପ୍ କ'ଣ ଆପଣଙ୍କ ପୁଅ, ଝିଅଙ୍କର ?

ତନିମା ଛେପ ଢୋକି ଉତ୍ତର ଦେଲେ- ନା ।

ସାଗରିକା ପୁଣି ପଚାରିଲେ-ଏସବୁ ତା'ହେଲେ ଆଉ କାହାର ? ସାର୍‌ଙ୍କର ତ ?

ତନିମା ଏତେସବୁ ପ୍ରଶ୍ନରୁ ରକ୍ଷା ପାଇବା ପାଇଁ ହଁ କରିବା ଭଙ୍ଗିରେ ମୁଣ୍ଡ ହଲାଇଲେ ।

ସୀମା ଥାକରୁ ଗୋଟିଏ ମୂର୍ତ୍ତି ଉଠାଇଆଣି ତା' ଚାରିକଡ଼ ବୁଲାଇ ଦେଖୁ ଦେଖୁ ତାଙ୍କ ଆଖି ଗୋଟିଏ ସ୍ଥାନରେ ସ୍ଥିର ହୋଇଗଲା । ସାଗରିକା ମଧ୍ୟ ସେ ଆଡ଼କୁ ଝୁଙ୍କି ପଡ଼ିଲେ ।

ତନିମାଙ୍କ ମୁହଁ ଲାଲ ପଡ଼ିଗଲା ।

ସୀମା ଓ ସାଗରିକା ଏଥର ଗୋଟି ଗୋଟିକି ପ୍ରତ୍ୟେକ ସିଲ୍ଡ଼ କପ୍‌କୁ ଥାକରୁ ଉଠାଇ ଆଣି ଦେଖିଲେ । ପ୍ରତ୍ୟେକଟିରେ ଲେଖାଅଛି ତନିମା ମିଶ୍ର । ଏତେ ଛୋଟ ଅକ୍ଷରରେ ଲେଖା ଅଛି ଯେ ତାହା ସହଜରେ ପଢ଼ି ହେଉନାହିଁ ।

ସାଗରିକା ପ୍ରଶ୍ନକଲେ- ମ୍ୟାଡ଼ମ୍ । ଏ ତନିମା ମିଶ୍ରଟି କିଏ ? ଏ ତନିମା ମିଶ୍ରଟି ନିଶ୍ଚୟ ଆଜିର ବରିଷ୍ଠ ସାହିତ୍ୟିକ ଶିତାଂଶୁ ତ୍ରିପାଠୀଙ୍କ ପତ୍ନୀ ତନିମା ତ୍ରିପାଠୀ ?

ତଥାପି ତନିମା ନିରବ ରହିଲେ । ତାଙ୍କ ଭିତରେ ଅନେକ ଆଲୋଡ଼ନ, କିନ୍ତୁ ସେସବୁକୁ ଚାପିରଖି ସେ ଚୁପ୍‌ଚାପ୍ ଠିଆ ହୋଇଚନ୍ତି । କିଛି ଲୁଚାଇଥିବା କିଶୋରୀଟିଏ ଧରାପଡ଼ି ଯାଇଥିବା ଲଜ୍ଜାରେ ଅପ୍ରସ୍ତୁତ ହେବା ଅବସ୍ଥା ତାଙ୍କର ।

ସୀମା ପଚାରିଲେ- ଏତେ କୁଣ୍ଠା କାହିଁକି ମ୍ୟାଡ଼ମ୍ ? ନିଜର ଏ ଉଜ୍ଜ୍ୱଳ କୃତିକୁ ଆଉ କାହାର ପୌରୁଷର ପାହାଡ଼ ତଳେ ଢାଙ୍କି ରଖିବାର ଏ ଅପଚେଷ୍ଟା କାହିଁକି ? ଜଣେ ଅଭିଆଡ଼ି ଝିଅ ନିଜ ଘର ଛାଡ଼ି ନିଜ ସ୍ୱାମୀ ଘରକୁ ଗ୍ରହଣ କରେ, ନିଜର ଟାଇଟେଲ୍ ଛାଡ଼ି ସ୍ୱାମୀଙ୍କ ଟାଇଟେଲ୍ ଗ୍ରହଣ କରେ, ନିଜର ବୃତ୍ତିଛାଡ଼ି ସ୍ୱାମୀଙ୍କ ଘର ସମ୍ଭାଳେ, ନିଜେ ପିଲା ଜନ୍ମକରି ସ୍ୱାମୀଙ୍କ ନାମରେ ତାକୁ ଜଗତରେ ପରିଚିତ କରାଏ; ତା ବୋଲି ନିଜର କୃତିକୁ ସ୍ୱାମୀଙ୍କ ନାମରେ ପରିଚିତ କରାଇବ ?ଏଇଟା ନିହାତି ଅନ୍ୟାୟ ମ୍ୟାଡ଼ମ!

ଆପଣ ଏସବୁ ସିଲ୍ଡ଼ କପ୍ ନିଜ କୃତି ପାଇଁ ପାଇଛନ୍ତି; ଲୁଚାଉଛନ୍ତି କାହିଁକି ? କ'ଣ ଏଥିପାଇଁ କିଛି ବାଧ୍ୟ ବାଧକତା ଅଛି ?

ସାଗରିକା ପଚାରିଲେ- ଏସବୁ ଆପଣ ସ୍କୁଲ ଜୀବନରେ ନା କଲେଜ ଜୀବନରେ ପାଇଥିଲେ ? ଆପଣ କ'ଣ ଛାତ୍ର ଜୀବନରେ ଖୁବ୍ ମେଧାବୀ ଥିଲେ ?



Digitized by srujanika@gmail.com

ତନିମା ଏଥର ଉତ୍ତର ଦେଲେ- ହଁ, ମୋ କ୍ୟାରିଅର ଫାଷ୍ଟକ୍ଲାସ୍ ଥିଲା । କିନ୍ତୁ ମେଧାବୀ ଛାତ୍ରୀ ହିସାବରେ ମୁଁ ଏସବୁ ସିଲ୍ଡ଼ କପ୍ ପାଇ ନ ଥିଲି । ପାଇଥିଲି ଜଣେ ଆଥେଲେଟ୍ ଭାବେ । ଶହେ ମିଟର, ଦୁଇଶହ ମିଟର ରନ୍‌ରେ ମହାବିଦ୍ୟାଳୟ ଆଉ ବିଶ୍ୱବିଦ୍ୟାଳୟ ସ୍ତରରେ ମୁଁ ବହୁବାର ଓଡ଼ିଶାକୁ ପ୍ରତିନିଧିତ୍ୱ କରିଛି । ଏମିତି କି ମୋ ବାହାଘର ପୂର୍ବ ବର୍ଷ ମୁଁ ଜାତୀୟ ସ୍ତରରେ ମଧ୍ୟ ଶହେ ମିଟର ଦୌଡ଼ରେ ଶ୍ରେଷ୍ଠ ଧାବିକା ସିଲ୍ଡ଼ ପାଇଥିଲି ।

ସୀମା ଓ ସାଗରିକା ଦୁହେଁ ଆଉ ଥରେ ତନିମାଙ୍କୁ ଚାହିଁଲେ । ପ୍ରୌଢ଼ ବୟସରେ ମଧ୍ୟ ଜଣେ ଆଥେଲେଟ୍ ପରି ସେ ସ୍ମାର୍ଟ ଦିଶୁଥିଲେ ।

ସୀମା କହିଲେ- ମୁଁ ସାର୍‌ଙ୍କର ଅନେକ ସାକ୍ଷାତକାର ବିଭିନ୍ନ ସାହିତ୍ୟ ପତ୍ରିକାରେ ପଢ଼ିଛି, ଦୂରଦର୍ଶନ ପର୍ଦ୍ଦାରେ ଦେଖିଛି । କିନ୍ତୁ କାହିଁ କେଉଁଠି ହେଲେତ ସିଏ ଆପଣଙ୍କ ଏ ପ୍ରତିଭା ସମ୍ପର୍କରେ କିଛି ହେଲେ ସୂଚନା ଦେଇ ନାହାନ୍ତି । ଆପଣ କ'ଣ ତାଙ୍କୁ ଅନୁରୋଧ କରିଥିଲେ ଆପଣଙ୍କ ବିଷୟ ଗୋପନ ରଖିବାକୁ ?

ତନିମା ହସି ହସି କହିଲେ- ମିଷ୍ଟର ତ୍ରିପାଠୀ ବିବାହ ପୂର୍ବରୁ ମତେ ଯେତେବେଳେ ଦେଖିବାକୁ ଆମ ଘରକୁ ଯାଇଥିଲେ, ସେତେବେଳେ ସିଏ ମତେ ଗୋଟିଏ ପ୍ରଶ୍ନ ପଚାରିଥିଲେ । ସେ ପ୍ରଶ୍ନଟି ଅତି ସହଜ ଆଉ ମାମୁଲି ଥିଲା । ସେ ପ୍ରଶ୍ନଟି ଥିଲା- ତୁମର ହବି କ'ଣ ? ମୋର ଏ ଆଥ୍‌ଲେଟିକ ହବି କଥା କହିବାକୁ ମୁଁ ପ୍ରସ୍ତୁତ ହେଉଥିବା ବେଳେ ମୋ ବାପା ଓ ଭାଇ ହାତରେ ଠାରି ମୋତେ ମନାକଲେ । ତାଙ୍କର ସେ ପ୍ରଶ୍ନର କିଛି ଉତ୍ତର ନଦେଇ ନିରବ ରହିଲି । ସିଏ ମୋତେ ଆଉ ସେ ପ୍ରଶ୍ନ ନ ଦୋହରାଇ, ନିଜ ତରଫରୁ ଆଉ ଗୋଟିଏ ପ୍ରଶ୍ନ ପଚାରିଲେ । ସେ ପ୍ରଶ୍ନଟି ଥିଲା- ତୁମର ସାହିତ୍ୟ ପଢ଼ାରେ ରୁଚି ଅଛି କି ? ମୋ ଉତ୍ତର ଥିଲା- ହଁ, ମୁଁ କେବେ କେମିତି ସାହିତ୍ୟ ପତ୍ର ପତ୍ରିକା ପଢେ । ତେବେ ମୋର ସେଥିପ୍ରତି ସେତେ ଝୁଙ୍କ୍ ନାହିଁ ।

ଏଇ କଥାକୁ ନେଇ ପରେ ଆମ ବିବାହିତ ଜୀବନରେ ଝଡ଼ ଉଠିଛି । ସିଏ ମୋତେ ଅନେକ ଥର କହିଛନ୍ତି- ତମେ ସେଦିନ ମୋ ପ୍ରଶ୍ନର ସଠିକ୍ ଉତ୍ତର ନଦେଇ ଠିକ୍ କରିନ । ତୁମେ ମୋ ସହିତ ଫାଉଲ୍ ଗେମ୍ ଖେଳିଛ । ତୁମ ପରି ଜଣେ ଆଥଲେଟ୍ ପକ୍ଷରୁ ଏମିତି ଫାଉଲ୍ ଖେଳ ଜମା ଆଶା କରାଯାଏ ନା । ତା ଛଡ଼ା ତୁମ ସମଗ୍ର ଶିକ୍ଷା କ୍ୟାରିଅର୍‌ରେ ତୁମେ ଫାଷ୍ଟକ୍ଲାସ୍ ପାଇବି ମ୍ୟାରେଜ୍ ଇଣ୍ଟରଭ୍ୟୁରେ ତୁମେ ଉତ୍ତୀର୍ଣ୍ଣ ହେବା ପାଇଁ ତୁମ ବାପା ଓ ଭାଇଙ୍କଠୁ କପି ଗ୍ରହଣ କରିଛ । ସେଦିନ ତୁମେ ଯଦି ମୋ ପ୍ରଶ୍ନର



Digitized by srujanika@gmail.com

ସଠିକ୍ ଉତ୍ତର ଦେଇଥାନ୍ତ, ତା'ହେଲେ ଜଣେ ଆଥ୍‌ଲେଟ୍‌ଙ୍କୁ ବିବାହ କରିବା ପାଇଁ ମୁଁ କେବେ ମୋ ସ୍ୱୀକୃତି ଦେଇ ନଥାନ୍ତି । ମୁଁ ଆଶା କରିଥିଲି ମୋ ସ୍ତ୍ରୀ ଜଣେ ସାହିତ୍ୟିକା କିମ୍ବା ସାହିତ୍ୟାନୁରାଗୀ ହୋଇଥିବେ ।

ମୋ ସ୍ୱାମୀଙ୍କର ମୋ ପ୍ରତି ଅନୁରୋଧ ନୁହଁ ଅଲିଖିତ ଆଦେଶ ଥିଲା ଏଣିକି ନିୟମିତ ସାହିତ୍ୟ ବହି ଆଉ ସାହିତ୍ୟ ପତ୍ରିକା ପଢ଼ିବାକୁ । ମୋ ଇଚ୍ଛା ଅନିଚ୍ଛା ପ୍ରତି ଖାତିର ନ କରି ସିଏ ପ୍ରତିମାସରେ କିଛି ସାହିତ୍ୟ ବହି ଓ ପତ୍ର ପତ୍ରିକା ମତେ ଦିଅନ୍ତି ଏବଂ ତାକୁ ପଢ଼ି ତା ଉପରେ ତାଙ୍କ ସହିତ ଆଲୋଚନା କରିବାକୁ ବାଧ୍ୟ କରନ୍ତି ।

ସାଗରିକା ପଚାରିଲେ- ଆପଣ ତା'ହେଲେ ବିଭାଘର ପରଠୁ ଆଥେଲେଟିକ ସହିତ ସବୁ ସମ୍ପର୍କ ତୁଟାଇ ଦେଇଛନ୍ତି ।

ତନିମା ଆଖିରୁ ଲୁହ ପୋଛୁ ପୋଛୁ ଉତ୍ତର ଦେଲେ- ମୋର ସ୍ପୋର୍ଟସ୍ ପୋଷାକ ସବୁ ମୁଁ ଆମଘରେ ଛାଡ଼ି ଆସିଛି । ଗୋଟେ ବଡ଼ ଟ୍ରଙ୍କରେ ସେସବୁ ଆଜିଯାଏ ତାଲାପଡ଼ି ରହିଛି । ଗେମ୍‌ସ, ସ୍ପୋର୍ଟସ୍ ମାଗାଜିନ୍ କେବେ କେମିତି ମୁଁ ଲୁଚାଇ ଲୁଚାଇ ପଢ଼େ । ଟି.ଭି.ରୁ ସେସବୁ ଦେଖେ । କିନ୍ତୁ ତ୍ରିପାଠୀବାବୁ ଆସିଲେ ପତ୍ରିକା ଲୁଚାଇ ଦିଏ, ଟି.ଭି.ର ଚ୍ୟାନେଲ୍ ଚେଞ୍ଜ କରିଦିଏ ।

- ତେବେ ଏସବୁ ସିଲ୍‌ଡ଼ କପ୍ କେମିତି ଏ ଡ୍ରଇଂରୁମ୍‌ରେ ରହିବାର ଅନୁମତି ପାଇଲା ? ନିଶ୍ଚୟ ଏସବୁକୁ ସାର୍ ବିରୋଧ କରୁଥିବେ । - ଇଏ ଥିଲା ସୀମାଙ୍କ ପ୍ରଶ୍ନ ।

ତନିମା କହିଲେ- ତା' ପଛରେ ମଧ୍ୟ ଗୋଟିଏ ଛୋଟ କାହାଣୀ ଅଛି । ଆମ ବିଭାଘରର ବର୍ଷକ ପରେ ଗୋଟେ ବଡ଼ କାଠବାକ୍ସରେ ମୋର ସମସ୍ତ ସିଲ୍‌ଡ଼ କପ୍ ପୂରାଇ ମୋ ବାପା ଆଣି ଏଠି ଦେଇଯାଇ କହିଲେ- 'ଏସବୁ ଜିନିଷ ତୁ ରଖ' ।

ମୁଁ ସେ କାଠପେଟିକୁ ମାସେ କାଳ ଏଠି ସେଠି କରି ଲୁଚାଇ ରଖିଥିଲି । କିନ୍ତୁ ଦିନେ କାଠ ପେଟିଟି ତାଙ୍କ ଆଖିରେ ଧରା ପଡ଼ିଲା । ସେ କାଠ ପେଟିଟିକୁ ଖୋଲିଲେ । ତା' ଭିତରେ ଏତେଗୁଡ଼େ ସିଲ୍‌ଡ଼ କପ୍ ଦେଖି ସିଏ ବିସ୍ମିତ ହେଲେ । କାଠ ପେଟିକୁ ପୁନଶ୍ଚ ବନ୍ଦ କରି ସିଡ଼ି ଘର ପାହାଚ ତଳେ ଥୋଇ ଦେଲେ । ତାଙ୍କର ଯୁକ୍ତି ଥିଲା ସିଏ ଜଣେ ସାହିତ୍ୟିକ, ବୁଦ୍ଧିଜୀବୀ, ବିଜ୍ଞ ମଣିଷ । ସିଏ ଚାହାନ୍ତି ତାଙ୍କ ଭବିଷ୍ୟତ ସନ୍ତାନମାନେ ଏ ସିଲ୍‌ଡ଼ କପ୍ ଦେଖି ମାଆଙ୍କ ପରି ଆଥ୍‌ଲେଟ୍ ହେବାକୁ ଆଗ୍ରହୀ କି ଆକର୍ଷିତ ନ ହୁଅନ୍ତୁ । ପିଲାମାନଙ୍କୁ ତାଙ୍କ ଛାଞ୍ଚରେ ଗଢ଼ିବା ତାଙ୍କର ଇଚ୍ଛା । ପିଲାମାନଙ୍କ ଉପରେ ତାଙ୍କ ପ୍ରଭାବ ପଡୁ, ମୋ ପ୍ରଭାବ ନ ପଡୁ ।

ଆନନ୍ଦ ଚନ୍ଦ୍ର ପଣ୍ଡା

Digitized by srujanika@gmail.com

ମୋ ପୁଅ ଦେବାଶୀଷ ତା'ର ବାହାଘର ପର୍ଯ୍ୟନ୍ତ ଜାଣି ନଥିଲା ଯେ ତା'ର ମାଆ ଜଣେ ଜାତୀୟସ୍ତରର ଆଥେଲେଟ୍ ବୋଲି । ବୋହୂକୁ ଧରି ସିଏ ଆମେରିକା ଯିବାବେଳେ ଖୋଜିଲା ଗୋଟେ ହାଲୁକା କାଠପେଟି ଯେଉଁଥିରେ ତା'ର କିଛି ଜିନିଷ ପ୍ୟାକିଂ କରି ଉଡ଼ାଜାହାଜରେ ନେବ । ତା'ର ନଜର ପଡ଼ିଲା ଶିଡ଼ିଘର ପାହାଚ ତଳେ ଥିବା ଏଇ କାଠପେଟି ଉପରେ । ସେ ପେଟି ଖୋଲି ଏ ସିଲ୍‌ଡ଼ କପ୍‌ଗୁଡ଼ିକୁ ତା' ଭିତରୁ ଆବିଷ୍କାର କଲା । ମୋଠୁ ଜାଣିଲା ଏସବୁ ସିଲ୍‌ଡ଼ କପ୍‌ର ଇତିହାସ । ତା' ବାପାଙ୍କ ପ୍ରତିରୋଧ ସତ୍ତ୍ୱେ ଦେବାଶୀଷ ମୋର ଏ ସିଲ୍‌ଡ଼ କପ୍‌କୁ ଡ୍ରଇଂରୁମ୍‌ର ଏଇ ଥାକରେ ସଜାଇ ରଖିଲା ।

ମୁଁ ଜାଣିଥିଲି ଦେବାଶୀଷ ଆମେରିକା ଯିବାପରେ ଏସବୁକୁ ତା' ବାପା ପୁନଶ୍ଚ ଗୋଟିଏ ବାକ୍ସରେ ପୂରାଇ ଶିଡ଼ିଘର ପାହାଚ ତଳେ ପୂର୍ବପରି ଥୋଇଦେବେ । କିନ୍ତୁ ନା ସେ ସେମିତି କିଛି କଲେ ନାହିଁ । କାରଣ ପରେ ସିଏ ଜାଣି ଖୁସିହେଲେ ଯେ, ଏସବୁ କୃତି ଫଳକ ତାଙ୍କର ବୋଲି ସମସ୍ତେ ଧାରଣା କରୁଛନ୍ତି । ଏସବୁ ତାଙ୍କ ବ୍ୟକ୍ତିତ୍ୱକୁ ସମୃଦ୍ଧ କରିବାରେ ସହାୟକ ହୋଇଛି । ତେଣୁ ସିଏ ଆଉ କେବେ ଏସବୁ ଏ ଘର ଥାକରେ ରଖିବା ବିଷୟରେ ଆପତ୍ତି ଉଠାଇ ନାହାନ୍ତି ।

ଏଇ ଆଜି ଯେମିତି ଆପଣମାନେ ପ୍ରଥମେ ଧାରଣା କରି ନେଇଥିଲେ ଯେ ଏସବୁ କୃତିଫଳକ ମୋ ସ୍ୱାମୀଙ୍କର ବୋଲି ।

ସେଦିନ ସେତିକି ଆଲୋଚନା ପରେ ସୀମା ଓ ସାଗରିକା ଫେରିଯାଉଥିଲେ । ପଛକୁ ଫେରି ସୀମା ପଚାରିଲେ- ମ୍ୟାଡ଼ମ୍ ! ଏସବୁ ସିଲ୍‌ଡ଼ କପ୍ ପାଇବା ବେଳର କିଛି ଫଟୋ କିମ୍ବା ଆପଣଙ୍କ ଆଥ୍‌ଲେଟ୍ ଜୀବନ ସମ୍ବଳିତ କିଛି ଫଟୋ ଆପଣଙ୍କ ପାଖରେ ଅଛି କି ? ସେସବୁ ଦେଖିବାକୁ ମୋର ଭାରି ଆଗ୍ରହ । ଥିଲେ ଟିକେ ଦେଖାଇବାକୁ ଅନୁରୋଧ ।

ତନିମା କହିଲେ- ଆପଣମାନେ ଟିକେ ବସନ୍ତୁ । ସେସବୁର ଗୋଟିଏ ଆଲ୍‌ବମ୍ ଅଛି । କିନ୍ତୁ ତାକୁ ମୋ ସ୍ୱାମୀଙ୍କ ଦୃଷ୍ଟି ନ ପଡ଼ିବା ପରି ମୋ ଶାଢ଼ି ଆଲ୍‌ମିରା ଭିତରେ ମୁଁ ଲୁଚାଇ ରଖିଛି । ବେଳେ ବେଳେ ମୁଁ ତାକୁ ଏକୁଟିଆ ଏକୁଟିଆ ଦେଖି ଖୁସିହୁଏ । ପଛ ଦିନକୁ ମନେ ପକାଏ । ସ୍ମୃତିକୁ ତାଜା କରେ । ଆପଣ ଅପେକ୍ଷା କରନ୍ତୁ, ଏଇ ସଙ୍ଗେ ସଙ୍ଗେ ଆଣୁଚି ।

ପାଞ୍ଚମିନିଟ୍ ଭିତରେ ଖୁବ୍ ସୁନ୍ଦର ଆଲ୍‌ବମ୍‌ଟିଏ ଆଣି ଥୋଇଲେ ତନିମା । ଆଲ୍‌ବମ୍‌ର ପୃଷ୍ଠା ପୃଷ୍ଠାକି ଆଡ଼େଇ ଦେଖିଲେ ସୀମା ଓ ସାଗରିକା । ତାଙ୍କ ପାଖରେ ବସି ପ୍ରତି ଫଟୋର ଇତିହାସ ବର୍ଣ୍ଣନା କଲେ ତନିମା । ଆଲ୍‌ବମ୍‌ରେ ତାଙ୍କ ସ୍କୁଲ ଜୀବନଠୁ



Digitized by srujanika@gmail.com

କଲେଜ ଓ ୟୁନିଭରସିଟି ସମୟ ଯାଏ ଅନେକ ଆଥିଲେଟିକ୍ ଇଭେଣ୍ଟର ଫଟୋ । ବିଭିନ୍ନ ସ୍ଥାନରୁ, ବିଭିନ୍ନ ପୁରସ୍କାର ଗ୍ରହଣ କରୁଥିବାର ଫଟୋ ।

ଖୁବ୍ ଖୁସୀ ଖୁସୀ ଭାବ ନେଇ ଫେରିଗଲେ ସୀମା ଓ ସାଗରିକା । ସେମାନଙ୍କ ଯିବାପରେ ଅତୀତର ସ୍ମୃତିକୁ ନେଇ ଅନେକ ସମୟ ପର୍ଯ୍ୟନ୍ତ ବିଭୋର ହୋଇ ବସି ରହିଥିଲେ ତନିମା ।

ଆଠ ଦିନ ପରେ ଆଉ ଏକ ସନ୍ଧ୍ୟାରେ ପୁଣି ଆସିଥିଲେ ସାଗରିକା ଓ ସୀମା । ତାଙ୍କ ହାତରେ ଥିଲା କିଛି ନିମନ୍ତ୍ରଣ ପତ୍ର । ସେଦିନ ଘରେ ଉପସ୍ଥିତ ଥିଲେ ବିଶିଷ୍ଟ କଥାକାର ଶିତାଂଶୁ ତ୍ରିପାଠୀ ।

ଶିତାଂଶୁବାବୁ ଓ ତନିମାଦେବୀଙ୍କୁ ନମସ୍କାର କରି ଆସନ ଗ୍ରହଣ କଲେ ସୀମା ଓ ସାଗରିକା । ତନିମା ସେ ଦୁଇଜଣଙ୍କ ପରିଚୟ ପ୍ରଦାନ କଲେ । ଆଠଦିନ ତଳେ ଆସି ଫେରିଯାଇଥିବା କଥା ମଧ୍ୟ ସୂଚାଇ ଦେଲେ ।

ଶିତାଂଶୁ କହିଲେ- ହଁ, ଆପଣ ଦୁଇ ଜଣ ଆଗରୁ ଆସିଥିବା କଥା ମୁଁ ତିନିମାଙ୍କଠୁ ଶୁଣିଛି । ଆପଣଙ୍କ ଅନୁଷ୍ଠାନର ବାର୍ଷିକୋତ୍ସବ ଏ ମାସ ୩୦ ତାରିଖରେ ପଡୁଛି, ଏକଥା ସିଏ ମୋତେ କହିଛନ୍ତି । ମୁଁ ସେଦିନପାଇଁ ଆଉ କେଉଁଠି କିଛି କାର୍ଯ୍ୟକ୍ରମ ରଖିନାହିଁ ।

ଏତିକିବେଳେ ତନିମା ଘର ଭିତରକୁ ଯିବାକୁ ବାହାରିଲେ । ସୀମା ଅଟକାଇଲେ- ମ୍ୟାଡ଼ମ୍ ! ଆପଣ ବସନ୍ତୁ । ଆମର ଚା', ଜଳଖିଆ କିମ୍ବା ସର୍ବତ କିଛି ଦରକାର ନାହିଁ ।

ନିଜର ଅନିଚ୍ଛାସତ୍ତ୍ୱେ ଉଠିବା ସ୍ଥାନରେ ପୁଣି ବସିଲେ ତନିମା । ସାଗରିକା ନିମନ୍ତ୍ରଣ କାର୍ଡ଼ ପ୍ୟାକେଟ୍ ମଧ୍ୟରୁ ଖୋଜି ଖୋଜି ଦୁଇଟା ନିମନ୍ତ୍ରଣପତ୍ର ବାହାର କରି ଗୋଟିଏ ତନିମାଙ୍କୁ ଓ ଆଉ ଗୋଟିଏ ଶିତାଂଶୁବାବୁଙ୍କୁ ଦେଲେ ।

ନିମନ୍ତ୍ରଣପତ୍ରଟି ପାଇବାମାତ୍ରେ ଶିତାଂଶୁବାବୁ ଲଫାପାକୁ ଖୋଲି ହାଲୁକା ଭାବେ ଥରଟେ ଦୃଷ୍ଟି ପହଁରାଇ ଆଣିଲେ । କିନ୍ତୁ ନିମନ୍ତ୍ରଣପତ୍ରରେ ମୁଖ୍ୟ ଅତିଥି କିମ୍ବା ମୁଖ୍ୟବକ୍ତାଙ୍କ ସ୍ଥାନରେ ତାଙ୍କ ନାମ ନାହିଁ । ତାଙ୍କ ବିସ୍ମିତ ଆଖି ଦୁଇଟା ଆଉଥରେ ନିମନ୍ତ୍ରଣ କାର୍ଡ଼ ଉପରେ ବୁଲି ଆସିଲା ଏବଂ ମୁଖ୍ୟ ଅତିଥି ଭାବେ ଛପା ହୋଇଥିବା ତନିମା ତ୍ରିପାଠୀଙ୍କ ନାମ ପାଖରେ ସ୍ଥିର ହୋଇଗଲା । ଶିତାଂଶୁବାବୁ ଚିତ୍କାର କଲେ- ନିମନ୍ତ୍ରଣପତ୍ର ଏମିତି ଭୁଲ୍‌ଭାଲ ଛପା ଯାଇଛି, ଆପଣମାନେ ତାକୁ ବାଣ୍ଟିବା ପୂର୍ବରୁ ଥରଟେ ବି ଭଲ ଭାବରେ ପଢୁନାହାନ୍ତି ?

ତନିମା ଚଞ୍ଚଳ ହାତରେ ତାଙ୍କ ଲଫାପାଟା ଖୋଲି ଦେଖିଲେ । ମୁଖ୍ୟ ଅତିଥି



Digitized by srujanika@gmail.com

ସ୍ଥାନରେ ତାଙ୍କ ନିଜ ନାଆଁଟା ଛପା ଯାଇଛି ଦେଖି ଚମକି ପଡ଼ିଲେ । ତନିମାଙ୍କ ମୁହଁ ଆତଙ୍କିତ ଦିଶିଲା । ଏତେ ବଡ଼ ଭୁଲ୍ ଏମାନେ କଲେ କାହିଁକି ବୋଲି ମନେ ମନେ ଉଚ୍ଚାରଣ କଲେ ।

ସାଗରିକା ସଫାଇ ଦେଲେ- ନା, ସାର୍ ! ନିମନ୍ତ୍ରଣପତ୍ର ଠିକ୍ ଛପା ଯାଇଛି ।

ଶିତାଂଶୁ ପୁଣିଥରେ ଚିତ୍କାର କଲେ- ଆପଣ କାର୍ଡ଼ଟା ପଢ଼ିକି କହୁଛନ୍ତି ନା, ନ ପଢ଼ିକି ? ଆପଣ ଦେଖନ୍ତୁ ମୁଖ୍ୟ ଅତିଥି ସ୍ଥାନରେ କାହା ନାଁ ଲେଖା ଯାଇଛି ? ଶିତାଂଶୁ ତ୍ରିପାଠୀ ନା ତନିମା ତ୍ରିପାଠୀ ।

ସାଗରିକା ବିନୀତ ଭାବେ ଉତ୍ତର ଦେଲେ- ଦେଖନ୍ତୁ ସାର୍ ! ଆମେ ପ୍ରଥମେ ସ୍ଥିର କରିଥିଲୁ ଆପଣଙ୍କୁ ଆମ କ୍ଲବ୍‌ର ବାର୍ଷିକୋତ୍ସବ ପାଇଁ ମୁଖ୍ୟଅତିଥି ଭାବେ ନେବାକୁ । କିନ୍ତୁ ସେଦିନ ଆପଣଙ୍କ ଘରକୁ ଆସି ଆପଣଙ୍କ ପତ୍ନୀ ତନିମାଦେବୀଙ୍କ ଅସାଧାରଣ ପ୍ରତିଭାର ପରିଚୟ ପାଇଲୁ । ଆଜିକୁ ତିରିଶ ବର୍ଷ ତଳେ ସେ ଜଣେ ଜାତୀୟସ୍ତରର ମହିଳା ଆଥ୍‌ଲେଟ୍ ଭାବେ ସମ୍ମାନିତା । ତାଙ୍କୁ ମିଳିଥିବା ଏସବୁ ସିଲ୍‌ଡ଼, କପ୍ ତାଙ୍କ ଅନନ୍ୟ ପ୍ରତିଭାର ପ୍ରମାଣ । ତାଙ୍କୁ ଏ ବର୍ଷ ଆମ ଚନ୍ଦ୍ରିକା କ୍ଲବ ବାର୍ଷିକୋତ୍ସବରେ ମୁଖ୍ୟ ଅତିଥି ଭାବେ ପାଇଲେ ଆମ କ୍ଲବ୍ ଧନ୍ୟ ହେବ । ତାଙ୍କ ମୁହଁରୁ ଆମେ ତାଙ୍କ ଆଥ୍‌ଲେଟ୍ ଜୀବନ ସମ୍ପର୍କରେ ଶୁଣିବୁ । ତାଙ୍କ ପ୍ରତିଭାରେ ପ୍ରଭାବିତ ଓ ଅନୁପ୍ରାଣିତ ହେବୁ ।

ସୀମା କହିଲେ- ଆପଣଙ୍କ ପରି ବିରାଟ ବରଗଛ ତଳେ ତାଙ୍କ ପ୍ରତିଭା ଯଥେଷ୍ଟ ସୂର୍ଯ୍ୟାଲୋକ ନପାଇ ଦୀପ୍ତିହୀନ ହୋଇଯାଉଛି । ଗୋଟିଏ ସବୁଜ ଦୁବଘାସ ଉପରେ ନିବୁଜ ନିରନ୍ଧ୍ର ଆଟିକାଟିଏ ଘୋଡ଼ାଇଦେଲେ ତାହା ବାହାର ଆଲୋକ ଓ ପବନ ନ ପାଇ ସମ୍ପୂର୍ଣ୍ଣ ଧଳା ହୋଇଯାଏ । ଆମେ ସେ ଧଳାଦୁବକୁ ପୁଣି ମୁକ୍ତ ସୂର୍ଯ୍ୟାଲୋକ ଓ ବାୟୁକୁ ଆଣିବାକୁ ଉଦ୍ୟମ କରୁଛୁ । ଆମ ଚନ୍ଦ୍ରିକା ମହିଳା କ୍ଲବ ଉଦ୍ୟମ କରୁଛି ତନିମା ଦେବୀଙ୍କ ପରି ନାରୀ ପ୍ରତିଭା ଯେଉଁମାନେ ଘରକୋଣରେ ଓ ମୋମାନଙ୍କ ସ୍ୱାମୀମାନଙ୍କ ଆଢୁଆଳରେ ଲୁଚି ଯାଉଛନ୍ତି ସେମାନଙ୍କୁ ଲୋକ ଲୋଚନକୁ ଆଣିବାକୁ । ଆଶା ଓ ବିଶ୍ୱାସ ଏ ଦିଗରେ ଆପଣଙ୍କ ସାହାଯ୍ୟ ଓ ସହଯୋଗ ଆମକୁ ମିଳିବ ।

ଶିତାଂଶୁବାବୁ କୃତ୍ରିମ ହସ ହସି ଉତ୍ତର ଦେଲେ- ନିଶ୍ଚୟ, ନିଶ୍ଚୟ । ମୁଁ ସେଦିନ ଠିକ୍ ସମୟରେ ଆପଣଙ୍କ ଫଙ୍କସନ୍‌ର ମୁଖ୍ୟ ଅତିଥି ତନିମାଙ୍କୁ ସାଙ୍ଗରେ ନେଇ ପହଞ୍ଚିବି ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଛିଣ୍ଡା ଫୁଲରେ ଫଗୁଣ

ଅଲିଭା ଯେଉଁଦିନ ଅଫିସ୍‌ରେ ଜଏନ୍ କଲା ସେ ଦିନସାରା ଅଫିସ୍‌ର ଲୋକ ତାକୁ ଘୂରି ଘୂରି ଚାହିଁଲେ । ଅଲିଭାର ବୟସ ମାତ୍ର ୨୭ ବର୍ଷ । ଅତି ଆକର୍ଷଣୀୟ ଗୋରା ରଙ୍ଗ । ଉଚ୍ଚତା ପାଞ୍ଚ ଫୁଟ, ଛଅ ଇଞ୍ଚ । ନାକ ଖଣ୍ଡା ପରି ଧାର । ମୁହଁ ପାନପତ୍ର ପରି ସୁନ୍ଦର । ଆଖି ଖୁବ୍ ଆକର୍ଷଣୀୟ । ଦେହ ମୋଟା ନୁହଁ ବି ପତଳା ନୁହଁ । ଏୟାର ହୋଷ୍ଟେସ୍ ପରି ସୁନ୍ଦର ଚେହେରା । ଅଲିଭା ଯେଉଁଆଡେ ଚାହିଁ ଦେଉଥିଲା ସେଆଡ଼େ ଫୁଲ ବୃଷ୍ଟି ହୋଇ ଯାଉଥିଲା ।

ସ୍ୱାମୀ ସୁଧାମୟଙ୍କର ଦୁର୍ଘଟଣା ଜନିତ ମୃତ୍ୟୁପରେ ରିହାବିଲିଟେସନ ସ୍କିମ୍‌ରେ ଅଲିଭା ଚାକିରିରେ ଜଏନ୍ କରିଥିଲା । ସୁଧାମୟ ଥିଲେ ଜଣେ ଡାକ୍ତର । ଅଲିଭା ସ୍ୱାସ୍ଥ୍ୟ ନର୍ଦ୍ଦେଶାଳୟରେ ଜଣେ ଜୁନିୟର ଆସିଷ୍ଟାଣ୍ଟ ଭାବେ ଜଏନ୍ କରିଥିଲା । ଏବେ ସବୁ ଅଫିସ୍‌ରେ କିଛି ମହିଳା କର୍ମଚାରୀ କାମ କରୁଛନ୍ତି । ସେ ଅଫିସ୍‌ରେ ମଧ୍ୟ କିଛି ମହିଳା କର୍ମଚାରୀ ଥିଲେ । ସେ ଅଫିସ୍‌ରେ ଥିଲେ ଜଣେ ମଧ୍ୟବୟସ୍କା ସିନିୟର ଆସିଷ୍ଟାଣ୍ଟ, ଦୁଇ ଜଣ ଟାଇପିଷ୍ଟ, ଜଣେ ଡାଇରିଷ୍ଟ । ସେମାନେ କେହି ସୁନ୍ଦରୀ ନୁହଁନ୍ତି । ମାତ୍ର ସମସ୍ତେ ସୁନ୍ଦରୀ ଦିଶିବାକୁ ସଜେଇ ହୋଇ ଅଫିସ୍ ଆସନ୍ତି ।

ଏଇ ମହିଳା କର୍ମଚାରୀଙ୍କ ମେଳରେ ଅଲିଭା ପ୍ରଥମ ଦିନ ବସିଲା । ତେବେ ସେ ଅଫିସ୍‌ର କେଉଁ ସେକ୍‌ସନ୍‌ରେ ଅଲିଭା କାମ କରିବ ସେ ନେଇ ବିଭିନ୍ନ ସେକ୍‌ସନ୍ ଭିତରେ ପ୍ରତିଯୋଗିତା ଆରମ୍ଭ ହୋଇଗଲା । କିନ୍ତୁ ଏଷ୍ଟାବ୍ଲିସ୍‌ମେଣ୍ଟ ଦାୟିତ୍ୱରେ ଥିବା ଅତିରିକ୍ତ ନିର୍ଦ୍ଦେଶକ ତାଙ୍କ ଅଧିନସ୍ଥ ଗୋଟିଏ ସେକସନ୍‌ରେ ଅଲିଭାର ପୋଷ୍ଟିଙ୍ଗ୍ କଲେ ।

ଅଲିଭା ଅସମୟରେ ସ୍ୱାମୀଙ୍କୁ ହରାଇବା ପରେ ଭୁବନେଶ୍ୱରରେ ତାର ଏକମାତ୍ର ଶିଶୁପୁତ୍ର ଶୀତାଂଶୁର ଦାୟିତ୍ୱ ନେବାପାଇଁ ଅଲିଭାର ମାଆ ଆସି ତା' ପାଖରେ ରହିଲେ । ଅଲିଭାର ଶିକ୍ଷିତ ବେକାର ସାନଭାଇ ଅଭୟ ମଧ୍ୟ ଅଲିଭାର ସରକାରୀ କ୍ୱାର୍ଟରସ୍‌ରେ ଆସ୍ଥାନ ଜମାଇ ବସିଲା । ଅଲିଭାର ବାପା ମଝିରେ ମଝିରେ ଗାଆଁରୁ ଆସି ଅଲିଭାର ଭଲ ମନ୍ଦ କଥା ବୁଝିଲେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଅଲିଭାର ଶାଶୂଘର ବାଲେଶ୍ୱରର ଗୋଟେ ମଫସଲ ଗାଁ । ଶାଶୂ ପାଞ୍ଚ ବର୍ଷ ତଳେ କର୍କଟ ରୋଗରେ ମୃତ୍ୟୁବରଣ କରିଥିଲେ । ଶ୍ୱଶୁର ଦିବାକର ପୁଅ ମରିବା ସମୟରେ ଭୁବନେଶ୍ୱରରେ ତା' କ୍ୱାର୍ଟରସ୍‌ରେ ରହୁଥିଲେ, କିନ୍ତୁ ଏବେ ବୋହୂ ଚାରିପଟେ ଥିବା ତା' ବାପା, ମାଆ, ଭାଇଙ୍କ ଘେର ଭେଦକରି ନପାରି କାନମୁଣ୍ଡ ଆଉଁଶି ବାଲେଶ୍ୱର ଫେରିଯିବାକୁ ବାଧ୍ୟ ହେଲେ ।

ଅଲିଭାକୁ ଅଫିସ୍‌ଟା ଖୁବ୍ ଅଡୁଆ ଲାଗୁଥିଲା । ସମସ୍ତ ପୁରୁଷ କର୍ମଚାରୀ ତାକୁ କେମିତି ଡାଆଣା ଆଖିରେ ଚାହୁଁଥିଲେ । ସିଏ ତା' ଦେହଟାକୁ ଶାଢି ଭିତରେ ଗୁଡେଇ ରଖିଥିଲେ ବି ସମସ୍ତଙ୍କ, ଆଖି ତା ଭିତରକୁ ଭେଦକରି ଯାଉଥିବା ପରି ତାକୁ ମନେ ହେଉଥିଲା । ଟୋକା, ଦରବୁଢ଼ା, ବୁଢ଼ା ସମସ୍ତେ ବିଭିନ୍ନ ଆଳରେ ଅଲିଭା ସହିତ ଗପ କରୁଥିଲେ । ତାର ଅନ୍ତରଙ୍ଗ ହେବାକୁ ଚେଷ୍ଟା କରୁଥିଲେ ।

ଫାଇଲ୍ କାମ ଅଲିଭାକୁ କିଛି ଜଣା ନଥିଲା । ସେକସନ୍‌ର ବଡ଼ବାବୁ ତାଙ୍କ ପାଖ ଚେୟାରରେ ଅଲିଭାକୁ ବସାଇ ଫାଇଲ୍‌ରେ କ'ଣ ଲେଖିବାକୁ ହେବ ତାହା ଡାକି ଦେଉଥିଲେ । ବଡ଼ବାବୁ ଅଲିଭାକୁ ଫାଇଲ୍‌ର ନୋଟ୍ ଡାକିବା ବେଳେ ବାରମ୍ବାର ଅଲିଭାର ମୁହଁ ଦେହକୁ ନିଠେଇ ନିଠେଇ ଚାହୁଁଥିଲେ ।

ଅଲିଭା ଏମିତି ବଡ଼ବାବୁଙ୍କ ପାଖରେ ବସି ଡିକ୍ଟେସନ୍ ନେବାଟା ସେ ଅଫିସ୍‌ର ଅବଶିଷ୍ଟ ପୁରୁଷ ସହକର୍ମୀମାନଙ୍କୁ ଈର୍ଷାନ୍ୱିତ କରିଥିଲା । ସେମାନେ ଅଫିସ୍‌ର କାନ୍ଥ, ବାଡ଼ରେ ଅଲିଭା ଓ ବଡ଼ବାବୁଙ୍କ ବିଷୟରେ ବଜେକଥା ସବୁ ଲେଖିଲେ ।

ଅଲିଭା ଏସବୁ ପଢ଼ିବା ପରେ ବିଚଳିତ ହେଲା । ଅଫିସ୍ ନଆସି ଛୁଟି ଦରଖାସ୍ତ ଦେଇ ଘରେ ରହିଲା । କଥାଟା ଅଫିସ୍ ସାରା ଆଲୋଚିତ ହେଲା ଓ ଶେଷରେ ଅତିରିକ୍ତ ନିର୍ଦ୍ଦେଶକଙ୍କ କାନକୁ ଗଲା । ସେ ଷ୍ଟାଫ୍‌ମାନଙ୍କୁ ତାଗିଦ କଲେ ଏବଂ ବଡ଼ବାବୁଙ୍କୁ ବାରଣ କଲେ ଅଲିଭାକୁ ଏମିତି ପାଖରେ ବସାଇ ଡିକ୍ଟେସନ୍ ଦେବାକୁ । ଲୋକ ଲଗାଇ ଅଫିସ୍ କାନ୍ଥ, ବାଡ଼ରୁ ବାଜେ ଲେଖାସବୁ ଲିଭାଇବାର ମଧ୍ୟ ବ୍ୟବସ୍ଥା କଲେ ।

ଅତିରିକ୍ତ ନିର୍ଦ୍ଦେଶକ ଅଲିଭାକୁ ତାଙ୍କ ରୁମ୍‌କୁ ଡାକି ଉପଦେଶ ଦେଲେ- ଦେଖ ଅଲିଭା ! ତୁମର ଯେତେବେଳେ ଯାହା ଅସୁବିଧା ହେବ ମତେ ଦେଖାକରି ଜଣାଇବ । ଲାଜ କଲେ ଚଳିବ ନାହିଁ । ସମସ୍ତେ ସୁନ୍ଦରୀ ନାରୀଟିଏ ଦେଖିଲେ ବିଭିନ୍ନ ଆଳରେ ଅନ୍ତରଙ୍ଗ ହେବାକୁ ଚାହିଁବେ । ଏଇଟା ସରକାରୀ ଅଫିସ୍ । ଏଠିକୁ ଆମେ ସମସ୍ତେ କାମ କରିବାକୁ ଆସିଛେ । ଅଫିସ୍‌ରେ କାମ କରିବା ପାଇଁ ସୁସ୍ଥ ପରିବେଶ ରହିବା ଉଚିତ ।



Digitized by srujanika@gmail.com

ସେଟା ଦେଖିବା ମୋ କାମ । ତୁମେ ନିୟମିତ ଅଫିସ୍ ଆସ । ଚୁପ୍‌ଚାପ୍ କାମକର ।

ଅଲିଭାକୁ ସଂକୋଚ ଲାଗିଲା ଅତିରିକ୍ତ ନିର୍ଦ୍ଦେଶକଙ୍କ ବନ୍ଦ କୋଠରି ଭିତରେ ଏତେ ସମୟ ରହିବା ପାଇଁ । ସେ ମଧ୍ୟ ବାରମ୍ବାର ଅଲିଭାର ପାଦଠୁ ମୁହଁ ପର୍ଯ୍ୟନ୍ତ କେମିତି ଗୋଟେ ଦୁଷ୍ଟ ଆଖିରେ ଦେଖୁଥାନ୍ତି । କିଛି ନକହି ରୁମ୍ ଭିତରୁ ବାହରକୁ ବାହାରି ଆସିଲା ଅଲିଭା ।

ଅଲିଭାକୁ ଅତିରିକ୍ତ ନିର୍ଦ୍ଦେଶକଙ୍କ ରୁମ୍ ବାହାରେ ଅପେକ୍ଷା କରିଥିବା ଅଫିସ୍ ଷ୍ଟାଫ୍‌ମାନଙ୍କ ଆଖିରେ ସନ୍ଦେହ ବୋଲି ହୋଇଗଲା । ଅଫିସରଙ୍କ ବନ୍ଦ୍ କୋଠରି ଭିତରେ ଅଲିଭା ଏତେ ସମୟ ରହିବାଟା ସମସ୍ତଙ୍କ ଆଖିକୁ ଅସୁନ୍ଦର ଦିଶିଛି ।

ଅଲିଭା ମଧ୍ୟ କଥାଟା ଜାଣି ସାରିଥିଲା । ଅତିରିକ୍ତ ନିର୍ଦ୍ଦେଶକ ତାଙ୍କ ରୁମ୍‌ରେ ଅଧଘଣ୍ଟାଏରୁ ଅଧିକ ସମୟ ବସାଇ ହିତୋପଦେଶ ଦେବା ଅବସରରେ ତା' ରୂପ ଦର୍ଶନର ମଜା ନେଇଛନ୍ତି । ସେ ସମୟତକ ଅଲିଭାକୁ ଖୁବ୍ ଅସ୍ୱାସ୍ଥ୍ୟକର ଲାଗିଥିଲେ ବି କଥା ମଝିରେ ରୁମ୍ ଛାଡି ଚାଲି ଆସିବାଟା ଅଶିଷ୍ଟାଚର ହୋଇଥାନ୍ତା ।

ଷ୍ଟାଫ୍‌ଙ୍କ ଧାରୁଆ ଆଖିରେ ଅଲିଭାର ମୁହଁ ଲାଜ ଆଉ ସଂକୋଚରେ ଲାଲ ଦିଶିଲା । କେତେକ କର୍ମଚାରୀ ଶୁଣେଇ ଶୁଣେଇ କିଛି ଅସୁସ୍ଥ କମେଣ୍ଟସ୍ ଦେଲେ । ଅଲିଭା ସେସବୁକୁ ମୁହଁ ବକ୍ରତ କରି ଗିଳି ପକାଇ ଦୁଇ ଗ୍ଲାସ ପାଣି ପିଇଥିଲା ।

ଅଲିଭା ସଂଧ୍ୟାରେ ଘରକୁ ଫେରି ଡ୍ରେସିଙ୍ଗ୍ ଟେବୁଲ୍ ମିରର୍‌ରେ ନିଜ ମୁହଁକୁ ଅନେକ ସମୟଯାଏ ଚାହିଁ ରହିଥିଲା । ତା' ଦେହର ରଙ୍ଗ ଆଉ ମୁହଁର ଗଢ଼ଣ ଯୋଗୁ ସିଏ ଯେତିକି ପ୍ରଶଂସିତ , ତାଠୁ ବେଶି ଅପଦସ୍ତ । ଅଲିଭା ପରି ସୁନ୍ଦରୀ ସ୍ତ୍ରୀଲୋକଟିଏ ଦେଖିଲେ ପ୍ରତ୍ୟେକ ପୁରୁଷ ଆକର୍ଷିତ ହେବେ । ବିଭିନ୍ନ ବାହାନା କରି ତା' ସହିତ ପଦେ କଥା ହେବାପାଇଁ ବ୍ୟାକୁଳ ହେବେ । ଏଟା ସେମାନଙ୍କ ଦୋଷ ନୁହଁ, ବରଂ ଏଟା ସେମାନଙ୍କର ସ୍ୱାଭାବିକ ପ୍ରତିକ୍ରିୟା । ଏତେ ସୁନ୍ଦର ହେବା ତାର ଦୋଷ । ତାଠୁ ଅଧିକ ଦୁର୍ଭାଗ୍ୟ ସିଏ ବିଧବା ହେବା । ସୁନ୍ଦରୀ ବିଧବାଟିଏ ଦେଖିଲେ ପ୍ରତ୍ୟେକ ପୁରୁଷଙ୍କ ମନରେ ଇଚ୍ଛା ଜନ୍ମେ ତାକୁ ଅଧିକାର କରିବାକୁ । କିନ୍ତୁ ଅଲିଭା ଜାଣେ ଯେ ଏକ ଅପେକ୍ଷା ଅନେକ ପୁରୁଷଙ୍କ ପାଖରେ ନାରୀ ଅଧିକ ନିରାପଦ । ପ୍ରତ୍ୟେକ ପୁରୁଷ ପ୍ରତ୍ୟେକ ପୁରୁଷଙ୍କୁ ଜଗିବେ । ଅଲିଭାର ଭୟ କରିବାର କିଛି ନାହିଁ । ଅଫିସ୍‌ର ପ୍ରତ୍ୟେକ ପୁରୁଷ କର୍ମଚାରୀ ତାକୁ ସୁରକ୍ଷା ଦେବେ । କାରଣ ପ୍ରତ୍ୟେକ ଅଲିଭାର ରୂପରେ ଆକର୍ଷିତ ।

ଅବଶ୍ୟ ଅଲିଭା କିଛି ଦିନ ଅଫିସ୍ ଗଲାପରେ ସବୁ ସାଧାରଣ ଓ ସ୍ୱାଭାବିକ



Digitized by srujanika@gmail.com

ହୋଇଯିବ । ଅଫିସ୍‌ର ପୁରୁଷ କର୍ମଚାରୀମାନଙ୍କ ଦୃଷ୍ଟିର ଧାର ମରିଯିବ, ଆଉ ଅଲିଭାର ରୂପର ତେଜ ସେମାନଙ୍କ ଆଖିରେ ଧୀରେ ସାଧାରଣ ହୋଇଯିବ । ଅତିରିକ୍ତ ନିର୍ଦ୍ଦେଶକ ମଧ୍ୟ ନିଜଆଡୁ ନିଜେ ଜବତ୍ ହୋଇଯିବେ । ଅଲିଭା ଏମିତି ସାନ୍ତ୍ୱନା ଦେଇ ତା ମନକୁ ଥାପୁଡାଇଲା । ସବୁ ସାଧାରଣ ଓ ସ୍ୱଭାବିକ ହେବାକୁ ମାସ ଦୁଇଟା ସମୟ ଲାଗିବ । ଏହା ଭାବି ତାପର ଦିନଠୁ ଅଲିଭା ଅଫିସ୍‌କୁ ନିୟମିତ ଗଲା ଏବଂ ଅଫିସ୍‌ରେ ଅଯଥା ଟେନ୍‌ସନ୍ ନନେଇ ସ୍ୱଭାବିକ ହେବାକୁ ଚେଷ୍ଟାକଲା । ତାକୁ ଲୋଭିଲା ଦୃଷ୍ଟିରେ ଚାହୁଁଥିବା ପୁରୁଷ କର୍ମଚାରୀମାନଙ୍କ ସହିତ ସହଜ ଭାବରେ କଥାବାର୍ତ୍ତା କଲା । ସେମାନଙ୍କ ସହିତ ମିଶିବାକୁ ଚେଷ୍ଟାକଲା । ଅଫିସ୍ ସମୟ ଅଲିଭାକୁ ଆଉ କଷ୍ଟଦେଲା ନାହିଁ, ବରଂ ଘରକୁ ଫେରିବା ପରେ ଘରେ ତା' ନିଜ ମାଆ ଆଉ ସାନଭାଇ ଅଭୟର ବ୍ୟବହାରରେ ଅଲିଭା ଅତିଷ୍ଠ ହେଲା । ସେମାନେ ତା' ଶିଶୁ ପୁଅ ଶୀତାଂଶୁର ଦାୟିତ୍ୱ ନନେଇ ନିଜ ନିଜର ଦାୟିତ୍ୱ ଅଧିକ ନେଲେ । ଅଭୟ ଚାକିରି ଖୋଜିବା ନାଆଁରେ ସକାଳ ଦଶଟାରୁ ଘରୁ ବାହାରି ଯାଉଛି, ଫେରୁଛି ଖୁବ୍ ବିଳମ୍ୱ ରାତିରେ । ତା' ମାଆ ଶୀତାଂଶୁକୁ ଘରେ ତାଲା ପକେଇ ଦେଇ ବିଭିନ୍ନ ସ୍ତ୍ରୀଲୋକଙ୍କ ଘରକୁ ଯାଇ ଗପୁଛି । ବଜାର ଯାଇ ବିଭିନ୍ନ ଜିନିଷ କିଣି ତାଙ୍କ ଗାଆଁ ଘର ପାଇଁ ଗାଆଁବସ୍‌ର ଡ୍ରାଇଭର ହାତରେ ପଠାଉଛି ।

ଅଭୟ ଏତେ ରାତିରେ ଘରକୁ ଫେରିବାଟା ଅଲିଭାକୁ ଭଲଲାଗୁ ନଥିଲା । ତେଣୁ ସିଏ ଅଭୟ ଉପରେ ଅନେକ ଥର ବିରକ୍ତ ହୋଇଥିଲା । କିନ୍ତୁ ମାଆ ଆଉ ଅଭୟ ଦୁହେଁ ସଫେଇ ଦେଇଥିଲେ ଆଜି କାଲି ଚାକିରି ମିଳିବା ସହଜ ନୁହଁ । ତେଣୁ ଚାକିରି ଖୋଜା ଖୋଜି କରି ଏମିତି ବିଳମ୍ୱ ରାତିରେ ଘରକୁ ଫେରିବାରେ କିଛି ଅସ୍ୱଭାବିକତା ନାହିଁ ।

ଶୀତାଂଶୁ ତାର ଅସ୍ପଷ୍ଟ ଦରୋଟି ଭାଷାରେ ଆଇଙ୍କ ବିରୁଦ୍ଧରେ ଅଲିଭା ପାଖରେ ଅଭିଯୋଗ କଲା - ମାଆ ! ତୁ ଅଫିସ୍ ଗଲାପରେ ଆଈ ମତେ ଘରେ ତାଲା ପକାଇ କୁଆଡ଼େ ଚାଲି ଯାଉଛି ।

ଅଲିଭା ସେଦିନ ତା'ମାଆଙ୍କ ମୁହଁକୁ ଅବାକ୍ ଆଖିରେ ଚାହିଁଥିଲା । ତା'ମାଆ ଚିତ୍କାର କରିଥିଲେ- ଏତେଟିକେ ଛୁଆ କଞ୍ଚାମିଛ କଥାଗୁଡା କହିଯାଉଛି । ମୁଁ ଘରୁ କୁଆଡେ ଯାଉନି । ତୋ ପୁଅକୁ ଦିନରାତି ଜଗିଚି । ଏ ମିଛୁଆଟାର କଥା ତୁ ଜମା ଶୁଣନା ।

ଅଲିଭା ସେଦିନ ମାଆକୁ କିଛିବି କହି ନଥିଲା । କିନ୍ତୁ ଦୁଇ ଦିନ ପରେ ଦିନ ବାରଟା ବେଳେ ଅଲିଭା ଅଫିସ୍‌ରୁ ଘରକୁ ଫେରିଆସି ଦେଖିଲା ତାଙ୍କ ଘର ଦରଜାରେ ତାଲା ଝୁଲୁଚି । କବାଟ ବାଡ଼େଇଲା । ଝରକା ବାଟେ ଶୀତାଂଶୁ ଡାକ ପକେଇଲା- ମାଆ



Digitized by srujanika@gmail.com

ମୁଁ ଏଇଠି ଅଛି ।

ଅଲିଭା ଶୀତାଂଶୁକୁ କହି ଟେବୁଲ ଡ୍ରୟରୁ ଡୁପ୍ଲିକେଟ୍ କି ଆଣି ତାଲା ଖୋଲି ଘରେ ପଶିଲା । ଶୀତାଂଶୁକୁ କୋଳରେ ପୂରାଇ ଅନେକ ସମୟ ପର୍ଯ୍ୟନ୍ତ କାନ୍ଦିଲା । ପଡ଼ିଶା ଘରେ ପଚାରି ବୁଝିଲା ସବୁଦିନ ନ ହେଲେବି ସପ୍ତାହରେ ତିନି, ଚାରି ଥର ମାଆ ଏମିତି ଘରେ ଶୀତାଂଶୁକୁ ତାଲା ପକାଇ ବାହାରକୁ ଯାଏ ।

ସେ ଦିନ ଅଲିଭା ଘର ଦୁଆର ମୁହଁରେ ଚେୟାରଟେ ପକାଇ ଜଗି ବସିଲା । ତା' ମାଆ ଫେରିଲେ ପ୍ରାୟ ସଂଧ୍ୟା ପାଞ୍ଚଟା ବେଳକୁ । ହାତରେ ଅନେକ କିଛି ଜିନିଷ । ହୁଏତ ବଜାର କରି ଫେରିଛନ୍ତି । ଅଲିଭାକୁ ଦେଖି ତା' ମାଆ ଚମକି ପଡ଼ିଲେ । ଲୁଗାକାନି ତଳେ ଜିନିଷତକ ଲୁଚାଇବାକୁ ଚେଷ୍ଟାକଲେ ।

ଅଲିଭା ସେଦିନ ମାଆକୁ କିଛି ନକହି ଗମ୍ଭୀର ରହିଲା । ତା' ମାଆ ମଧ୍ୟ ଅଲିଭାକୁ ଭୟକରି ମୁହଁ ଖୋଲିଲେ ନାହିଁ ।

ଅଲିଭା ଏଣିକି ପ୍ରତିଦିନ ମାଆ ଉପରେ ସତର୍କ ଦୃଷ୍ଟି ରଖିଲା । ଶୀତାଂଶୁକୁ କହିଲା- ଆଈ ଯୋଉଦିନ ତତେ ଘରେ ତାଲା ପକାଇ ବାହାରକୁ ଯିବ, ସେଦିନ ତୁ ମତେ କହିବୁ ।

ଚାରି ବର୍ଷର ପୁଅ ଶୀତାଂଶୁ ହଁ କରିବା ମୁଦ୍ରାରେ ମୁଣ୍ଡ ହଲାଇଲା ।

ଆଉ ଦିନେ ଗୋଟେ ଅତ୍ୟନ୍ତ ଅଶୋଭନୀୟ ଘଟଣା ଅଲିଭାକୁ ବିସ୍ମିତ କରିଦେଲା । ତାର ସାନଭାଇ ଅଭୟ ଖୁବ୍ ବିଳମ୍ବ ରାତିରେ ମଦ ପିଇ ଘରକୁ ଫେରିଲା । ପାଦ ଟଳମଳ, କଥାବାର୍ତ୍ତା ଅସଂଜତ ।

ସେଇଦିନ ଅଲିଭାର ଧୈର୍ଯ୍ୟଚ୍ୟୁତି ଘଟିଲା । ଅଲିଭାର କଷ୍ଟାର୍ଜିତ ପଇସାକୁ ତାର ବେକାର ସାନଭାଇ ଅଭୟ ଏମିତି ମଦପିଇ ଉଡାଇବ ଆଉ ସିଏ ତାକୁ ନିରବ ଦ୍ରଷ୍ଟାଭାବେ ସହିଯିବ ? ନା, ଯଥେଷ୍ଟ ହୋଇଗଲା । ମାଆ ଆଉ ଭାଇଙ୍କ ବିନା ଏଠି ସିଏ ଚଳିପାରିବ । ଅଲିଭା ଅଫିସ୍ ଗଲାବେଳେ ଶୀତାଂଶୁକୁ ନିକଟସ୍ଥ କେ.ଜି ସ୍କୁଲରେ ଛାଡି ଦେଇଗଲେ, ସେମାନେ ତାକୁ ଅଲିଭା ଅଫିସ୍‌ରୁ ଫେରିବା ପର୍ଯ୍ୟନ୍ତ ସମ୍ଭାଳି ନେବେ । ଏମିତି ବ୍ୟବସ୍ଥା ସେ ସ୍କୁଲରେ ଅଛି । ଅବଶ୍ୟ ଏଥିପାଇଁ ପ୍ରତିମାସରେ ବେଶ୍ କିଛି ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । କିନ୍ତୁ ମାଆ ଆଉ ସାନଭାଇ କରୁଥିବା ଖର୍ଚ୍ଚଠୁ ଏ ଖର୍ଚ୍ଚ ଯଥେଷ୍ଟ କମ୍ ହେବ ।

ଅଲିଭା ତା'ପର ଦିନ ସେ ସ୍କୁଲ୍‌କୁ ଗଲା । ତାଙ୍କ ପ୍ରଧାନ ଶିକ୍ଷକଙ୍କ ସହିତ ଆଲୋଚନା କଲା । ସ୍ଥିର ହେଲା ଆସନ୍ତା କାଲିଠୁ ଅଲିଭା ଅଫିସ୍ ଯିବାବେଳେ ଶୀତାଂଶୁକୁ ସ୍କୁଲ୍‌ରେ ଛାଡିଦେଇ ଯିବ । ଅଫିସ୍‌ରୁ ଫେରିବା ବେଳେ ସ୍କୁଲ୍‌ରୁ ଶୀତାଶୁଂକୁ ନେଇ ଆସିବ ।



Digitized by srujanika@gmail.com

ସେଦିନ ସ୍କୁଲ୍‌ରୁ ଫେରି ଅଲିଭା ମାଆ ଆଉ ସାନଭାଇକୁ କଡା କଣ୍ଠରେ ଜଣାଇ ଦେଲା- କାଲିଠୁ ଶୀତାଂଶୁ ସ୍କୁଲଯିବ । ତେଣୁ ମୁଁ ଅଫିସ୍ ଯିବାବେଳେ ଘରେ ତାଲା ପକାଇ ଦେଇ ଯିବି । ତୁମେ ଦୁହେଁ କାଲି ଗାଆଁକୁ ଫେରି ଯିବାଟା ଠିକ୍ ହେବ ।

ଅଲିଭାର ମାଆ କିଛି କହିବାକୁ ଚେଷ୍ଟାକରୁଥିଲେ । ତାକୁ କିଛି କହିବାକୁ ନଦେଇ ଅଲିଭା କହିଲା – ତୁ ଯା ଭିତେର କେତେ କ'ଣ ଜିନିଷ ବସ୍‌ବାଲା ହାତରେ ଗାଆଁକୁ ପଠାଇଛୁ ତା ହିସାବ ମୁଁ ପାଇ ସାରିଛି । ବାପା ମଧ୍ୟ ମୋ ସ୍ୱାମୀଙ୍କ ଗ୍ରାଚ୍ୟୁଇଟି ପଇସାରୁ ୫୦ ହଜାର ଟଙ୍କା ନେଇଥିଲେ, ଏପର୍ଯ୍ୟନ୍ତ ସେ ଟଙ୍କା ଫେରାଇଲେ ନାହିଁ । ସେ ଟଙ୍କା ନେବା ଦିନଠୁଁ ସିଏ ଆଉ ଏଠିକି ଆସୁ ନାହାନ୍ତି । ମୁଁ ଶୁଣୁଚି ସେ ଟଙ୍କାରେ ବାପା କୁଆଡେ ଗାଆଁ କୋଠାଘର ମରାମତି କରିଛନ୍ତି । ଅଭୟ ତାର ବିଧବା ଭଉଣୀର ଦରମା ଟଙ୍କାରେ ମଦ କିଣି ପିଉଚି । ତୁମେ ଏଠି ରହି ମତେ ଆଉ ମୋ ପୁଅକୁ ସୁରକ୍ଷା ଯୋଗାଉଛ ନା ଆମକୁ ଅଧିକ ଅସୁରକ୍ଷିତ କରୁଛ ?

ମାଆ ଆଉ ଭାଇଙ୍କୁ ଅଲିଭା ଜୋର୍ କରି ଗାଆଁକୁ ପଠାଇ ଦେଲା । ଅଲିଭା ନିଜେ ଏତେ କଠୋର ଆଉ ରୁକ୍ଷ ହୋଇପାରେ ବୋଲି ସିଏ ନିଜେ ଜାଣି ନଥିଲା । ଏମିତି କଠୋର ହେବାକୁ ପରିସ୍ଥିତି ତାକୁ ବାଧ୍ୟ କରିଛି ।

ତାପର ଦିନ ଅଲିଭାର ବାପା ଆସି ପହଞ୍ଚି ଥିଲେ । ସେ ଅଲିଭାକୁ କହିଲେ- ତୁ ଯାହା କଲୁ କିଛି ଠିକ୍ କଲୁନାହୁଁ । ତୁ ଅଭୟର ବଡ଼ ଭଉଣୀ । ସିଏ ବେକାର ଜୀବନ କାଟୁଚି । ଚାକିରି ନ ପାଇ ହତାଶ ହୋଇ ଗୋଟେ ଦିନ ମଦ ପିଇଦେଲା । ତାକୁ ଶାସନ କରିବାର ଅଧିକାର ତୋର ଅଛି । ଆଉ ତୋ ମାଆ କ'ଣ ଦୋଷ କଲା ? ତୋ ସାଇପଡ଼ିଶା ତା' ନାଆଁରେ ମିଛ କହିଛନ୍ତି । କୋଉ ମାଆ କ'ଣ ନିଜ ଝିଅର ଘର ଉଜାଡ଼ି ଦିଏ ?

ଅଲିଭା ସବୁ ଶୁଣି କେବଳ ଗୋଟିଏ ପ୍ରଶ୍ନ ତା' ବାପାଙ୍କୁ ପଚାରିଲା- ତୁମେ ମୋଠୁ ୫୦ ହଜାର ଟଙ୍କା ନେଇଥିଲ, ସେ ଟଙ୍କା କେବେ ଫେରାଇବ ?

ଅଲିଭାର ବାପା ରାଗିଯାଇ କହିଲେ- ତୁ ତାହେଲେ ସବୁକଥାକୁ ଟଙ୍କା ପଇସା ଦୃଷ୍ଟିରୁ ଦେଖୁଛୁ ? ଠିକ୍ ଅଛି । ମୁଁ ଆଜି ଯାଉଚି, ତୋ ଟଙ୍କା ଯୋଗାଡ଼ କରି ସାରିଲେ ଆସିବି ।

ଅଲିଭାର ବାପା ଗେଟ୍ ଖୋଲି ଗାଆଁକୁ ଫେରିଗଲା ବେଳେ ଅଲିଭା ଅନୁରୋଧ କଲା- ରୋଷେଇ ସରିଛି, ଖାଇ ଦେଇ ଯାଅ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ତା' ବାପା କିନ୍ତୁ ଫେରି ନ ଚାହିଁ ଗାଆଁକୁ ଚାଲିଗଲେ । ଅଲିଭାର ବାପା ଫେରିଯିବା ବର୍ଷଟିଏ କଟିଯାଇଥିଲେ ବି ଆଉ ସିଏ କେବେ ଭୁବନେଶ୍ୱର ଆସି ନାହାଁନ୍ତି । ଟଙ୍କା ବି ଫେରାଇ ନାହାଁନ୍ତି ।

ଶୀତାଂଶୁକୁ ନେଇ ଅଲିଭାର ଆଉ କିଛି ସମସ୍ୟା ନାହିଁ । ଅଲିଭା ତାକୁ ନିୟମିତ ସ୍କୁଲରେ ଛାଡୁଛି, ସ୍କୁଲରୁ ଆଣୁଛି । ଅଲିଭା ଅଫିସ୍‌ରେ କାମ କରୁଥିବା ସମୟଟା ଶୀତାଂଶୁ ପାଠ ପଢୁଛି ଆଉ ଶିକ୍ଷୟିତ୍ରୀଙ୍କ ତତ୍ତ୍ୱାବଧାନରେ ଖେଳୁଛି ।

କିନ୍ତୁ ହଠାତ୍ ଦିନେ ଅଫିସ୍ ସାରା ପ୍ରଚାର ହୋଇଗଲା ଯେ ଅଲିଭା ଘରକୁ ଅନେକ ପୁରୁଷ ବନ୍ଧୁ ଯାଉଛନ୍ତି । ସେଥିପାଇଁ ସିଏ ତା' ନିଜ ମାଆ ଆଉ ଭାଇଙ୍କୁ ତା'ଘରୁ ଗାଆଁକୁ ତଡି ଦେଇଚି । ଏଇ ପୁରୁଷବନ୍ଧୁଙ୍କ ତାଲିକାରେ ତାଙ୍କ ଅଫିସ୍‌ରେ ଅନେକ ପୁରୁଷ କର୍ମଚାରୀଙ୍କ ନାଆଁ ଆଲୋଚିତ ହେଲା । ଚାଳିଶ ବର୍ଷ ବୟସ ପର୍ଯ୍ୟନ୍ତ ବ୍ୟାଚେଲର ଥିବା ବରିଷ୍ଠ ସହାୟକ ବିଜୟ ଦାସ, ଅଳ୍ପ ଦିନ ତଳେ ବିପତ୍ନୀକ ହୋଇଥିବା ଆକାଉଣ୍ଟାଣ୍ଟ ନିରଂଜନ ସ୍ୱାଇଁ, ଦୁଇବର୍ଷ ତଳେ ଜଏନ୍ କରିଥିବା କନିଷ୍ଠ ସହାୟକ ମନୋଜ ମହାନ୍ତି ଏବଂ ଅଫିସ୍‌ର ତରୁଣ ଅଫିସର ଅନୁପମ ଗୋସ୍ୱାମୀ- ଏ ସମସ୍ତଙ୍କ ନାଆଁକୁ ଅଲିଭା ସହିତ ଯୋଡି ଆଲୋଚନା ଚାଲିଲା ।

ଏ କଥାଟା ଦୁଇ ତିନି ଦିନ ମଧ୍ୟରେ କାନକୁ କାନ ହୋଇ ଅଲିଭା କାନରେ ପହଞ୍ଚିଲା । ଅଲିଭା ଏ ଦୁର୍ନାମରୁ କେମିତି ବର୍ତ୍ତିବ ତାର କିଛି ବାଟ ପାଇଲା ନାହିଁ । ଏମିତି ଗୁଜବ କିଏ ସୃଷ୍ଟି କରି ଥାଇପାରେ ବୋଲି ଭାବି ଭାବି କିଛି ସ୍ଥିର କରି ପାରିଲା ନାହିଁ । ସାରା ଅଫିସ୍‌ର ଲୋକ ତାକୁ କେମିତି ଗୋଟେ ଭିନ୍ନ ଦୃଷ୍ଟିରେ ଦେଖୁଚନ୍ତି । ନିଜ ନିଜ ଭିତରେ କଥାବାର୍ତ୍ତା ଆଉ ଠରାଠରି ହୋଇ ହସାହସି ହେଉଚନ୍ତି ।

କଥାଟାର ମୂଳସୂତ୍ର ଜାଣିବା ପାଇଁ ଅଲିଭା ଯଦି ଅଫିସ୍‌ରେ କାହାକୁ କିଛି ପଚାରେ ତା'ହେଲେ ହୁଏତ କଥାଟା ଅଧିକ ଅଡୁଆ ଧରିବ । ବହୁତ ଭାବିଚିନ୍ତି ଅଲିଭା ସ୍ଥିର କଲା- ସିଏ ତା' ଶ୍ୱଶୁରଙ୍କୁ ତାଙ୍କ ଗାଆଁରୁ ନେଇ ଆସି ନିଜ ପାଖରେ ରଖିବ । ଘରେ ଶ୍ୱଶୁର ରହିଲେ ହୁଏତ କଥାଟା ଚପିଯିବ । ମୁରବି ଥିବା ଘରେ ଦୁର୍ନାମ ପଶିବାକୁ ସାହସ କରେନା । ତା'ଛଡ଼ା ତା' ଶ୍ୱଶୁରଙ୍କ ପ୍ରତି ତାର ଗୋଟେ କର୍ତ୍ତବ୍ୟ ଅଛି । ଯେଉଁ ବାପ ପୁଅକୁ ପାଠ ପଢ଼ାଇ ଡାକ୍ତର କରିଥିଲେ ବୁଢ଼ାଦିନେ ସିଏ ଅଯତ୍ନରେ ଗାଆଁରେ ରହିବା ଠିକ୍ ନୁହଁ । ନିଜ ବାପା ମାଆ ଆଉ ଭାଇ ଅଲିଭାର ଚାରିକଡ଼େ ଏମିତି ଘେରିକି ରହିଥିଲେ ଯେ ତା' ଦୃଷ୍ଟି ଶ୍ୱଶୁରଙ୍କ ଉପରେ ପଡୁ ନଥିଲା । ସିଏ ଅପଦସ୍ତ ହୋଇ ଫେରି ଯାଇଛନ୍ତି ।



Digitized by srujanika@gmail.com

ଅଲିଭା ତା' ଶ୍ୱଶୁର ମାଧବାନନ୍ଦଙ୍କ ପାଖରେ ପହଞ୍ଚି ତାଙ୍କୁ ଅନୁରୋଧ କଲା- ବାପା ! ଆପଣଙ୍କ ବୋହୂ ଥାଉଁ ଥାଉଁ ଆପଣ ଏଠି ଏମିତି ଅଯତ୍ନରେ ରହିବା ଠିକ୍ ନୁହଁ। ଆପଣଙ୍କ ନାତି ଶିତାଂଶୁ ଆପଣଙ୍କୁ ଦେଖିବାକୁ, ଆପଣଙ୍କଠୁ ଗପ ଶୁଣିବାକୁ ଆଉ ଆପଣଙ୍କ ସାଙ୍ଗରେ ଖେଳିବାକୁ ଅନେଇଁ ବସିଚି । ଆପଣ ମୋ ସାଙ୍ଗରେ ଭୁବନେଶ୍ୱର ଚାଲନ୍ତୁ ।

ମାଧବାନନ୍ଦ ସତେ ଯେମିତି ଅପେକ୍ଷା କରିଥିଲେ, ତାଙ୍କ ବୋହୂ ଅଲିଭା ଆସିବ ଆଉ ସିଏ ତା' ସାଙ୍ଗରେ ଯିବେ । ନାତିକୁ କୋଳରେ ଧରି ଗେଲ କରିବେ ।

ଘଣ୍ଟାଏ ଭିତରେ ଶ୍ୱଶୁର ବୋହୂ ପ୍ରସ୍ତୁତ ହୋଇ ଭୁବନେଶ୍ୱର ବସ୍ ଧରିଲେ । ସଂଧ୍ୟା ପୂର୍ବରୁ ଭୁବନେଶ୍ୱରରେ ପହଞ୍ଚିଗଲେ । ସେମାନଙ୍କୁ ଅପେକ୍ଷା କରି ଶିତାଂଶୁ ଗେଟ୍ ପାଖରେ ଠିଆ ହୋଇଥିଲା । ମାନବାନନ୍ଦଙ୍କ କୋଳକୁ ଖପ୍ କରି ଡେଇଁ ପଡିଲା ।

ତାପର ଦିନ ଅଲିଭା ତା' ଅଫିସ୍‌ରେ ସମସ୍ତଙ୍କୁ ଶୁଣେଇ ଶୁଣେଇ ତା' ଶ୍ୱଶୁର ଗାଆଁରୁ ଆସି ତା'ପାଖରେ ରହିବା କଥା କହି ଦେଇଥିଲା । ଅବଶ୍ୟ ଦୁର୍ନାମକୁ ପ୍ରତିହତ କରିବାକୁ ଅଲିଭାର ଏଇଟା ଗୋଟେ ଟାଣୁଆ ତୀର ଥିଲା । ଗୁଜବ ସୃଷ୍ଟି କରିଥିବା ଅଫିସ୍ ଲୋକମାନେ କିଛି ଦିନ ପାଇଁ ଚୁପ୍ ହୋଇଗଲେ । ସେଇ ଚୁପ୍ ରହିବା ଭିତରେ ସେମାନେ ନୂଆ ବାଗରେ ଗୁଜବ ସୃଷ୍ଟି କରିବା ନିମନ୍ତେ ପ୍ରସ୍ତୁତି ଚଳେଇ ଥିଲେ ।

ଅଲିଭା କିନ୍ତୁ ଆଶ୍ୱସ୍ତ ହେଲା ଯେ ନିଆଁରେ ପାଣି ପଡ଼ିବା ପରି ଗୁଜବଟା ବନ୍ଦ ହୋଇ ଯାଇଚି । ଆଉ କେହି ତା' ଆଗରେ କି ପଛରେ କିଛି କହୁ ନାହାଁନ୍ତି ।

କିନ୍ତୁ ଦିନେ ହଠାତ୍ ରବିବାର ସକାଳ ଆଠଟା ବେଳେ ଅଲିଭା ଘରର କଲିଙ୍ଗ ବେଲ୍ ବାଜିଲା । ଅଲିଭା କବାଟ ଖୋଲି ଆଗରେ ଯାହାକୁ ଦେଖିଲା ସିଏ ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ତାଙ୍କ ଅଫିସ୍‌ର ବୟସ୍କ ବ୍ୟାଚେଲର ବିଜୟ ଦାସ । ଭଲ ପୋଷାକରେ ନିଜକୁ ସଜାଇ ହସ ହସ ମୁହଁରେ ସାମନାରେ ଠିଆ ହୋଇଚନ୍ତି । ତାଙ୍କ ହାତରେ ଗୋଟେ ବ୍ୟାଗ୍ । ସେଥିରେ ଅଛି କିଛି ଟଟକା ଫଳ ।

ଅଲିଭା ବଡ଼ ବଡ଼ ଆଖି କାଢ଼ି ବିଜୟ ଦାସଙ୍କୁ ଚାହିଁଲା । ବିଜୟ ଦାସ ଥରିଲା ହାତରେ ବ୍ୟାଗଟାକୁ ଅଲିଭା ଆଗରେ ଟେକିଧରି କଂପିତ କଣ୍ଠରେ କହିଲେ- ମଉସା ମାନେ.. ଆପଣଙ୍କ ଶ୍ୱଶୁର ଗାଆଁରୁ ଆସିଚନ୍ତି ବୋଲି ଶୁଣିଲି । ତାଙ୍କ ପାଇଁ ସାମାନ୍ୟ କିଛି ଫଳ....।

ଅଲିଭା ତାଙ୍କୁ ଭଦ୍ର ଅପମାନ ଦେଇ ବାହାରୁ ବାହାରୁ ତାଙ୍କ ଫଳବ୍ୟାଗ୍ ସହିତ ଫେରାଇ ଦେଲା । କିନ୍ତୁ ତାପର ଦିନ କଥାଟା ଅଫିସ୍‌ରେ ପ୍ରଚାର ହୋଇଗଲା । ଜଣେ



Digitized by srujanika@gmail.com

ପିଅନ ଅଫିସ୍‌ରେ ପ୍ରଚାର କରିଦେଲା- ବିଜୟ ଦାସ ଏଇ କିଛି ଦିନ ହେଲା କିଛିନା କିଛି ଉପହାର ଧରି ଅଲିଭା ଦିଦିଙ୍କ ଘରକୁ ଯାଉଚନ୍ତି । ତାଙ୍କ ଦୁହିଁଙ୍କ ସଂପର୍କ ଏବେ ଖୁବ୍ ମଧୁର ।

ବିପତ୍ନିକ ନିରଂଜନ ସ୍ୱାଇଁ ଗୋଟେ ରବିବାର ସଂଧ୍ୟାରେ ମିଠା ପ୍ୟାକେଟ ଧରି ଅଲିଭା ଘରର କଲିଂବେଲ୍ ମାରିଲେ । ନିରଂଜନଙ୍କର ମଧ୍ୟ ସେଇ ଏକା ବାହାନା- ସିଏ ଅଲିଭାର ବୃଦ୍ଧ ଶ୍ୱଶୁରଙ୍କୁ ଦେଖା କରିବାକୁ ଆସିଚନ୍ତି ।

ଅଲିଭା ନିରଂଜନଙ୍କ ମୁହଁ ଉପରେ କବାଟକୁ ଧଡ୍‌ଧାଡ ବନ୍ଦ କରିଦେଇଥିଲା । ନିରଂଜନ ମୁହଁକୁ ଆମ୍ବିଳା କରି ଫେରିଯିବାକୁ ବାଧ୍ୟ ହୋଇଥିଲେ ।

ଅଫିସ୍‌ର ଅନ୍ୟ କିଛି କର୍ମଚାରୀ ଅଫିସ୍ ଫେରନ୍ତା ବାଟରେ ଅଟକାଇ ଅଲିଭାକୁ ବିବାହ ପ୍ରସ୍ତାବ ଦେଇଛନ୍ତି । ସେମାନଙ୍କ ଭିତରୁ କେହି କେହି ଧମକ ଦେଇଚନ୍ତି- ତମେ କେତେଦିନ ଏତେ ରୂପଧରି ଏକୁଟିଆ ରହିପାରିବ ? ତମେ କାହାକୁ ଜଣକୁ ବିବାହ କରିଯାଅ । ଯୌବନବତୀ ବିଧବା ନାରୀକୁ ପାଇବାକୁ ସମସ୍ତେ ହାତ ବଢ଼ାନ୍ତି । ତୁମେ ତ ପୁଣି ଅନୁପମ ସୌନ୍ଦର୍ଯ୍ୟର ଅଧିକାରିଣୀ । ତୁମ ପ୍ରତି ସବୁଠି ବିପଦ ଅପେକ୍ଷା କରି ରହିଛି । ଅଫିସ୍‌ରେ ବିପଦ, ଘରେ ବିପଦ, ବାଟରେ ବିପଦ, ବଜାରରେ ବିପଦ । ଅନ୍ଧାରରେ ବିପଦ, ଆଲୁଅରେ ବିପଦ । ଦିନରେ ବିପଦ ରାତିରେ ବିପଦ । କେହି ଜଣେ ତୁମ ଅସତର୍କତାର ସୁଯୋଗ ନେଇ ତୁମକୁ ଜୋରକରି ଅଧିକାର କରିବା ପୂର୍ବରୁ ତୁମେ ବରଂ ନିଜ ପସନ୍ଦରେ କାହାକୁ ନିଜେ ବାଛ ନିଅ । ତୁମ ପୁଅ ଶୀତାଂଶୁ ସହିତ ତୁମକୁ ଗ୍ରହଣ କରିବାକୁ ଅନେକ ଅବିବାହିତ ଯୁବକ ମଧ୍ୟ ଆଗେଇ ଆସିବେ ।

ଏଇ ଧମକର ଧମାକା ଅଲିଭାର ମନକୁ ଦୋହଲାଇ ଦେଇଥିଲା । ପ୍ରତିଦିନ ଏମିତି କିଛିନା କିଛି ସମସ୍ୟାକୁ ସାମନା କରି କରି ଅଲିଭା ଅତିଷ୍ଠ ହୋଇ ଗଲାଣି । ତା' ପାଇଁ କୋଉଠି କି ବିପଦ ଅପେକ୍ଷା କରି ରହିଛି ତାକୁ ଜଣାନାହିଁ । କିନ୍ତୁ ବିପଦ ଅଛି ନିଶ୍ଚୟ । ତା'ର ଯଦି କିଛି ହୋଇଯାଏ, ତାହେଲେ ତା' ପୁଅ ଶୀତାଂଶୁର କଣ ହେବ ? ଏତେ ଛୋଟ ଛୁଆଟା ଏ ପୃଥିବୀରେ କେମିତି ବଞ୍ଚିବ ?

ଅଲିଭା ଏବେ ପ୍ରତି ମୁହୂର୍ତ୍ତରେ ଆଉ ଗୋଟେ ପୁରୁଷକୁ ନେଇ ସଂସାର ଯୋଡିବା କଥା ଚିନ୍ତା କରିବାକୁ ଆରମ୍ଭ କରିଛି । ଅଫିସ୍‌ରେ ଓ ବାହାରେ ଏତେ ପୁରୁଷଙ୍କ ଆଖିରୁ ତା' ନିଜ ଶରୀର, ସୌନ୍ଦର୍ଯ୍ୟ ଓ ଇଜ୍ଜତକୁ ସୁରକ୍ଷା ଦେବାପାଇଁ ତାକୁ କୌଣସି ଜଣେ ପୁରୁଷର ହାତ ଧରିବାକୁ ପଡ଼ିବ । ଜଣେ ପୁରୁଷକୁ ନିଜର କରିବାକୁ ପଡ଼ିବ । କିନ୍ତୁ ସେ



Digitized by srujanika@gmail.com

ପୁରୁଷ ଜଣକ କିଏ ? ତା ଅଫିସ୍‌ର ବ୍ୟାଚେଲର ବିଜୟ ଦାସ ? ନା ବିପତ୍ନୀକ ନିରଂଜନ ସ୍ୱାଇଁ ? କନିଷ୍ଠ ସହାୟକ ନିହାର ପଟ୍ଟନାୟକ ?

ନା, ଏମାନଙ୍କ ଭିତରୁ କେହି ନୁହଁ । ଏମାନେ ସମସ୍ତେ କେବଳ ତାର ଏଇ ସୁନ୍ଦର ଦେହ ପାଇଁ ଆକର୍ଷିତ । ତାର ଭବିଷ୍ୟତ, ତାର ପୁଅର ଭବିଷ୍ୟତ ପ୍ରତି କେହି ସଚେତନ ନୁହଁନ୍ତି । ତାଛଡ଼ା ଅଲିଭାର ଦେହ ଓ ରୂପ ପାଇଁ ତା' ଅଫିସ୍‌ର ଅନେକ ପୁରୁଷ ନିଜ ନିଜ ଭିତରେ ପ୍ରତିଦ୍ୱନ୍ଦ୍ୱିତାରେ ମାତିଛନ୍ତି । ସେମାନଙ୍କ ଭିତରୁ କେହି ଜଣେ ଯଦି ଅଲିଭା ଉପରେ ଅଧିକାର ସାବ୍ୟସ୍ତ କରିବାକୁ ଆଗେଇ ଆସେ ତାହେଲେ ଅବଶିଷ୍ଟ ସମସ୍ତେ ତା' ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଦେବେ ।

ଏମିତି ଗୋଟେ ମାନସିକ ଦ୍ୱନ୍ଦ୍ୱ ଭିତରେ ଦିନ କାଟୁଥିବା ସମୟରେ ହଠାତ୍ ବଜାରରେ ଗୋଟେ ଶାଢ଼ି ଦୋକାନରେ ଅଲିଭାର ଦେଖା ହୋଇଗଲା ଅବିନାଶଙ୍କ ସହିତ । ଦୁହେଁ ଦୁହିଁଙ୍କୁ କିଛି ସମୟ ଅବାକ୍ ଆଖିରେ ଅନାଇଁ ରହିଲେ । ଗାଁ ପ୍ରାଇମେରୀ ସ୍କୁଲରୁ ହାଇସ୍କୁଲ ପର୍ଯ୍ୟନ୍ତ ଦୁହେଁ ସାଙ୍ଗ ହୋଇ ପଢ଼ିଥିଲେ । କିନ୍ତୁ କଲେଜ ଲାଇଫ୍‌ରେ ଦୁହେଁ ଅଲଗା ହୋଇଗଲେ । ଅବିନାଶ ନିଜ ମାମୁଙ୍କ ପାଖକୁ ଯାଇ ରାଉରକେଲାରୁ ପ୍ଲସଟୁ ସାଇନ୍‌ସ ପାଶ୍ କରି ସେଇଠି ଇଂଜିନିୟରିଂ ପଢ଼ିଲେ । ଅଲିଭା କଲେଜ ପାଠ ପଢ଼ିବାକୁ ଭୁବନେଶ୍ୱର ଆସିଥିଲେ । କଲେଜ ପଢ଼ା ସରୁ ସରୁ ବାହାଘର ।

ହାଇସ୍କୁଲ ଛାଡିବା ପରଠୁ ଅଲିଭା ଓ ଅବିନାଶ କେହି କାହାକୁ ଦେଖି ନାହାଁନ୍ତି । ଆଜି ଏମିତି ଅପ୍ରତ୍ୟାଶିତ ଭାବେ ପରସ୍ପରକୁ ଭେଟିବା ପରେ ଦୁହେଁ ଖୁବ୍ ଖୁସି ହୋଇଯାଇଥିଲେ । ପାଖ ଜଳଖିଆ ଦୋକାନରେ କିଛି ସମୟ ଚା' ପିଇବା ଭିତରେ ଅତୀତ କଥାରୁ ଆରମ୍ଭ କରି ବର୍ତ୍ତମାନ ସମୟର କିଛି କଥା ଦୁହେଁ ଦୁହିଁଙ୍କୁ କହିଦେଇ ନିଜକୁ ହାଲ୍‌କା କରିନେଇଥିଲେ ।

ଅବିନାଶ ଏବେ ଭୁବନେଶ୍ୱରରେ ଗୃହ ନିର୍ମାଣ ନିର୍ଦ୍ଦେଶାଳୟରେ ଆସିଷ୍ଟାଣ୍ଟ୍ ଇଂଜିନିୟର । ଅବିନାଶ ବିବାହ କରିଥିବା କଥା ଅଲିଭା ଗାଆଁରୁ ଶୁଣିଥିଲା । ତାଙ୍କ ସ୍ତ୍ରୀ କୌଣସି ଗୋଟେ କଲେଜରେ ଅଧ୍ୟାପିକା । ପିଲାଛୁଆଙ୍କ କଥା ଜାଣି ନଥିଲା । ସେ ସବୁ କଥା ଅବିନାଶଙ୍କୁ ଏ ପବ୍ଲିକ ପ୍ଲେସ୍‌ରେ ପଚାରିବା ଅସୁନ୍ଦର, ଅଶାଳୀନ ହେବ ଭାବି ଅଲିଭା କହିଥିଲା ଅବିନାଶ, ତୁମେ ମିସେସ୍‌ଙ୍କୁ ଧରି ଆସନ୍ତା ରବିବାର ଦିନ ମୋ କ୍ୱାର୍ଟରସ୍‌କୁ ଆସ । ସେଇଠି ଆମେ ଅବଶିଷ୍ଟ କଥା ଗପିବା ।

ଅଲିଭା ଗୋଟେ କାଗଜରେ ନିଜ କ୍ୱାର୍ଟରସ୍ ନମ୍ବରଟା ଲେଖି ଅବିନାଶଙ୍କ ହାତକୁ



Digitized by srujanika@gmail.com

ବଢ଼ାଇ ଦେଇ କହିଥିଲା- ନିଶ୍ଚୟ ଆସିବ । ଆସନ୍ତା ରବିବାର ସଂଧ୍ୟା ୬ଟା ବେଳକୁ ମୁଁ ଅପେକ୍ଷା କରିଥିବି ।

ଅବିନାଶ କିଛି ଉତ୍ତର ଦେବା ଆଗରୁ ଅଲିଭା ତରବର ହୋଇ ଫେରିଯାଇ ଥିଲା । ଘରେ ତାଙ୍କୁ ଶୀତାଂଶୁ ଅପେକ୍ଷା କରିଥିବ ।

ନିର୍ଦ୍ଧିଷ୍ଟ ରବିବାର ସଂଧ୍ୟାରେ ଅବିନାଶ ତାଙ୍କ କାର୍ ଚଢ଼ି ଅଲିଭାର କ୍ୱାର୍ଟରସ୍‌ରେ ପହଞ୍ଚି କଲିଙ୍ଗ ବେଲ୍ ଚିପିଲେ ।

ଅଲିଭା ହସ ହସ ମୁହଁରେ ଅବିନାଶଙ୍କୁ ସ୍ୱାଗତ କରିବା ମଝିରେ ହଠାତ୍ ତାର ଆଖି ଦୁଇଟା ବିସ୍ମୟରେ ବଡ଼ ବଡ଼ ହୋଇଗଲା । ସିଏ ପ୍ରଶ୍ନକଲା- ଆଚ୍ଛା ଅବିନାଶ, ତୁମ ମିସେସ୍‌କୁ ସାଙ୍ଗରେ ଆଣିନ ଯେ ?

-ମୋର ମିସେସ୍ ଥିଲେ ଆଣିଥାନ୍ତି ନିଶ୍ଚୟ ।

-ସିଏ କୁଆଡ଼େ ଯାଇଚନ୍ତି ? ତାଙ୍କର ପୋଷ୍ଟିଙ୍ଗ କ'ଣ ଅନ୍ୟ କୌଣସି ସହରରେ ନା ସିଏ ତାଙ୍କ ବାପଘରକୁ ଯାଇଚନ୍ତି ?

-ନା, ସେ ଦୁଇଟା ଯାକରୁ କୌଣସି ଗୋଟିଏ କଥା ବି ସତ୍ୟ ନୁହଁ ।

-ଆଉ ତେବେ ସତ୍ୟଟା କ'ଣ ?

-ସତ୍ୟଟା ହେଲା ମୋର ମିସେସ୍ ନାହାଁନ୍ତି ।

ଅଲିଭା ଚମକି ଉଠି କହିଲା- ତମେ ନିଶ୍ଚୟ ମଜାରେ ଏମିତି ମିଛ କଥା କହୁଛ । କିନ୍ତୁ ମୁଁ ଜାଣିଛି, ତୁମର ବିଭାଘର ହୋଇଥିଲା । ମୁଁ ଶୁଣିଥିବା କଥା ଯଦି ସତ ହେଇଥାଏ, ତେବେ ସେ କୌଣସି କଲେଜରେ ଅଧ୍ୟାପିକା ଥିଲେ ।

ଅବିନାଶଙ୍କ ମୁହଁ ଗମ୍ଭୀର ଦିଶିଲା । ସେ କହିଲେ,- ତୁମେ ଯାହା ଶୁଣିଥିଲ ସେ ସବୁ ଶତ ପ୍ରତିଶତ ସତ୍ୟ ଥିଲା । କିନ୍ତୁ ଆମ ବିଭାଘରର ପନ୍ଦର ଦିନ ପରେ ସିଏ ତାଙ୍କ କର୍ମସ୍ଥଳ ବଲାଙ୍ଗୀରର ରାଜେନ୍ଦ୍ର ନାରାୟଣ ମହାବିଦ୍ୟାଳୟକୁ ଜଏନ କରିବାକୁ ଯାଇ ସେଠୁ ଆଉ ଫେରିଲେ ନାହିଁ । ସେଇ ମହାବିଦ୍ୟାଳୟର ଜଣେ ଅଧ୍ୟାପକଙ୍କୁ ମନ୍ଦିରରେ ବିବାହ କରି ତାଙ୍କ ସହିତ ରହିଲେ, ମୁଁ ବାଧ୍ୟ ହୋଇ ତାଙ୍କୁ ଛାଡପତ୍ର ଦେଲି ।

ଅଲିଭା ପ୍ରଶ୍ନ କଲେ- କିନ୍ତୁ ଏମିତି କାହିଁକି ହେଲା ? ତାଙ୍କର କ'ଣ ସେ ଅଧ୍ୟାପକଙ୍କ ସହିତ ପୂର୍ବ ପ୍ରେମ ସଂପର୍କ ଥିଲା ? ଥିଲା ଯଦି ଜଣେ ଉଚ୍ଚ ଶିକ୍ଷିତା ମହିଳା ହୋଇ ବାପାମାଆଙ୍କୁ ସବୁକଥା ଖୋଲିକି ନ କହିଲେ କାହିଁକି ?

ଅବିନାଶ ସହଜ କଣ୍ଠରେ ଉତ୍ତର ଦେଲେ- ତାଙ୍କ ପ୍ରେମିକ ଜଣକ ତାଙ୍କ ଛାତିର



Digitized by srujanika@gmail.com

ନଥିଲେ । ସେଥିପାଇଁ ଝିଅର ଅନିଚ୍ଛାସତ୍ତ୍ୱେ ତାଙ୍କ ବାପାମାଆ ତାଙ୍କୁ ମୋ ସହିତ ବିବାହ କରାଇ ଦେଲେ । ତାଙ୍କର ଧାରଣା ଥିଲା, ବିଭାଘର ପରେ ସବୁ ଠିକ୍ ହୋଇଯିବ । କିନ୍ତୁ ଘଟଣାଟା ତାଙ୍କ ଆଶାର ବିପରୀତ ଘଟିଲା ।

ଅବିନାଶ ଓ ଅଲିଭା ଦୁହେଁ କିଛି ସମୟ ନିରବରେ ବସି ରହିବା ପରେ ଦୁହେଁ ନିଜକୁ ସହଜ କଲେ । ଚା, ଜଳଖିଆ ପର୍ବ ସରିଲା । ଅବିନାଶ ଅଲିଭାର ଶ୍ୱଶୁରଙ୍କୁ ନମସ୍କାର କଲେ । ପଚସ୍ତରୀ ବର୍ଷର ବୃଦ୍ଧ । ଶରୀର ଦୁର୍ବଳ । ଆଖିକୁ କମ୍ ଦିଶୁଚି, କାନକୁ କମ୍ ଶୁଭୁଛି । ଅବିନାଶ ତାଙ୍କ ବାପା ଓ ମାଆଙ୍କୁ ସ୍କୁଲ ଜୀବନରୁ ହରାଇଚନ୍ତି । ତେଣୁ ଅନ୍ୟର ବାପା, ମାଆଙ୍କ ଭିତରେ ସିଏ ନିଜ ବାପା ମାଆଙ୍କୁ ଦେଖନ୍ତି । ଅଲିଭାର ଶ୍ୱଶୁରଙ୍କ ସହିତ ଅବିନାଶ କିଛି ସମୟ ତାଙ୍କ ସ୍ୱାସ୍ଥ୍ୟ ବିଷୟରେ କଥାବାର୍ତ୍ତା ହେଲେ । ଅଲିଭାର ପୁଅ ଶୀତାଂଶୁ ସହିତ କିଛି ମଜ୍ଜାଗପ କଲେ ।

ଅନ୍ଧାର ଆସିବା ଆଗରୁ ଅବିନାଶ ଫେରିଯିବାକୁ ବାହାରିବା ବେଳେ ଅଲିଭାର ଶ୍ୱଶୁର କହିଲେ- ମଝିରେ ମଝିରେ ଆସୁଥିବ ପୁଅ । ତୁମକୁ ଦେଖିଲେ ଆଉ ତୁମ ସହିତ କଥାହେଲେ ମତେ ଖୁବ୍ ଭଲ ଲାଗୁଛି ।

ଶୀତାଂଶୁ କହିଲା- ଅଙ୍କଲ, ଆର ରବିବାର ଦିନ ନିଶ୍ଚୟ ଆସିବ । ମତେ ମଜାଗପ କହିବ ।

ଅଲିଭା କିଛି ନ କହି ଅବିନାଶକୁ ଅନାଇଁ କବାଟ ପାଖରେ ଠିଆ ହୋଇ ରହିଲା । ତାଙ୍କ ତାଙ୍କ କାର୍ ସହିତ ସିଏ ଅଦୃଶ୍ୟ ହେବାପରେ ଘରକୁ ଫେରିଲା ।

ରାତି ବାରଟା ସମୟ । ଶୀତାଂଶୁକୁ ଧରି ଖଟ ଉପରେ ଶୋଇଚି ଅଲିଭା । ଆର ଘରେ ଶ୍ୱଶୁର ମାଧବାନନ୍ଦ ଶୋଇଛନ୍ତି । ବାହାରେ କଲିଙ୍ଗ୍ ବେଲ୍ ବାଜିଲା । ଏତେ ରାତିରେ କିଏ ଡାକୁଚି ? ଅଲିଭାର ଦେହ ଭୟରେ ଥରିଲା । ବେଲ୍‌ଟା ବାରମ୍ବାର ବାଜିଲା । ମାଧବାନନ୍ଦ ମଧ୍ୟ ଉଠି ବସିଲେ ।

ଅଲିଭା ବିଛଣା ଛାଡି ଆସିଲା । ତା'ପଛେ ପଛେ ଆସିଲେ ମାଧବାନନ୍ଦ । ମାଧବାନନ୍ଦ କବାଟ ନ ଖୋଲି ବଡ଼ ପାଟିରେ ପଚାରିଲେ- ଏତେ ରାତରେ କିଏ ?

ବାହାରେ ଦୁଇ ତିନି ଜଣ ଯୁବକ ଠିଆ ହୋଇ ଚିତ୍କାର କଲେ- କବାଟ ଖୋଲ, ଦେଖିବ ଆମେ କିଏ ।

ଅଲିଭା ଡରିଗଲା । ମାଧବାନନ୍ଦ ମଧ୍ୟ ଡରରେ ଥରିଲେ । ବାହାରେ ଥିବା ଟୋକାମାନେ କବାଟ ପିଟିଲେ । ଏକ ସମୟରେ ଛଅଟା ହାତର ପ୍ରହାର କବାଟରେ



Digitized by srujanika@gmail.com

ବସୁଥିଲା । କବାଟ ସହିତ ଘରର କାନ୍ଥ ମଧ୍ୟ ସେ ପ୍ରହାରରେ ଥରି ଯାଉଥିଲା । ଅଲିଭା ଡରିଯାଇ ଶ୍ୱଶୁରଙ୍କୁ ଜାବୁଡ଼ି ଧରିଲା ।

ଟୋକାମାନଙ୍କ ଉତ୍ତେଜିତ କଣ୍ଠସ୍ୱର ଶୁଭିଲା- ଅନ୍ୟମାନଙ୍କ ପାଇଁ ତମେ କବାଟ ଖୋଲୁଚ । ଆମେ ଦେଖୁଚୁ ଏ ଘର ଆଗରେ ଘଣ୍ଟାଘଣ୍ଟା ଧରି ମଟର ସାଇକେଲ, ସ୍କୁଟର ଆଉ କାର୍ ରହୁଛି । ଆମ ପାଇଁ ଯଦି ତମେ କବାଟ ନ ଖୋଲ ତାହେଲେ ଆମେ କବାଟ ଭାଙ୍ଗି ଘର ଭିତରେ ପଶିବୁ ।

କବାଟକୁ ପିଟିବା ଶବ୍ଦ ବେଳକୁ ବେଳ ବଢ଼ିବାକୁ ଲାଗିଲା । ଅଲିଭା ଘର ଭିତରେ କାନ୍ଦି ଉଠିଲା । ବୃଦ୍ଧ ମାଧବାନନ୍ଦ ପାଟିକଲେ- ଏଟା ଭଦ୍ରଲୋକର ଘର । ଏତେ ରାତିରେ ତୁମେ ଏଠି ଗଣ୍ଡଗୋଳ ନ କରି ଚୁପ୍ ଚାପ୍ ଚାଲିଯା । ନ ହେଲେ କଥାଟା ଭଲ ହେବନାହିଁ ।

ଟୋକା ତିନିଟା ହୋ ହୋ ହୋଇ ହସିଲେ ଆଉ କହିଲେ, ଆମେ ଅଲବତ ଘରେ ପଶିବୁ । ତୁ ଶଳା ବୁଢ଼ା ଆମର କ'ଣ କରିବୁ ?

ଏଇ ସମୟରେ ରାତି ଡିଉଟି କରୁଥିବା ପୋଲିସ୍‌ର ହ୍ୱିସିଲ୍ ବାଜିଲା । ଟୋକା ତିନିଟା ସ୍ଥାନ ଛାଡ଼ି ଦଉଡ଼ି ଦଉଡ଼ି ପଳାଇ ଗଲେ ।

ଅଲିଭା ଆଶ୍ୱସ୍ତ ହେଲା । ବର୍ତ୍ତମାନ ପାଇଁ ବିପଦ ଟଳି ଗଲା । କିନ୍ତୁ ପରକ୍ଷଣରେ ପୋଲିସ୍ କନେଷ୍ଟବଳ ଦୁଇଜଣ ଆସି କଲିଙ୍ଗବେଲ୍ ବଜାଇଲେ । ଅଲିଭା କବାଟ ଖୋଲିବ କି ନାହିଁ ଶ୍ୱଶୁରଙ୍କୁ ପଚାରିଲା । ମାଧବାନନ୍ଦ କହିଲେ- ଏମାନେ ବୋଧହୁଏ ପୋଲିସ୍ ।

ବାହାରୁ ପୋଲିସ୍‌ବାଲା କହିଲେ- ଭୟ କରନ୍ତୁ ନାହିଁ । ସେ ବଦମାସ୍ ଟୋକାଗୁଡ଼ାକ ପଳେଇଗଲେଣି । ଆମେ ପୋଲିସ୍ ।

ଅଲିଭା କବାଟ ଖୋଲି ଦେଲା । ପୋଲିସ୍ କନେଷ୍ଟବଳ ଦୁଇଜଣ ଅଲିଭାକୁ ନାନା କଥା ପଚାରିଲେ । ଏଇ ଯେମିତି- ତୁମ ସ୍ୱାମୀ କେତେ ବର୍ଷ ହେଲା ମଲେଣି ? ତୁମେ ଆଉ ଥରେ ବିବାହ କରୁନା କାହିଁକି ? ତୁମ ଘରକୁ ଆଉ କିଏ କିଏ ପୁରୁଷବନ୍ଧୁ ଆସନ୍ତି ? ତୁମର ଏ ବୁଢ଼ା ଶ୍ୱଶୁର ବ୍ୟତୀତ ତୁମ ପାଖରେ ଆଉ କିଏ କିଏ ରୁହନ୍ତି ? ଏ ଟୋକା ତିନିଟା ତୁମକୁ କେତେଦିନ ହେଲା ଏମିତି ହଇରାଣ କରୁଛନ୍ତି ?

ଏ ସବୁ ପ୍ରଶ୍ନର ସଠିକ୍ ଉତ୍ତର ଦେଲା ଅଲିଭା । କନେଷ୍ଟବଳ ଦୁଇ ଜଣ ସେଦିନ ଚାଲିଗଲେ । ସେମାନେ ଯିବାପୂର୍ବରୁ କହିଗଲେ- ଠିକ୍ ଅଛି । ତୁମେ ଭୟ କରିବାର କିଛି ନାହିଁ । ଏଣିକି ପ୍ରତି ରାତିରେ ଆମେ ଆସିବୁ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଅଲିଭାର ବିପଦ ଆହୁରି ବଢ଼ିଗଲା । ତାପର ଦିନଠୁ ସେ ଟୋକାମାନେ ସିନା ଆସିଲେ ନାହିଁ, କିନ୍ତୁ ଆସିଲେ ସେଇ କନେଷ୍ଟବଳ ଦୁଇଜଣ ଆଉ ତାଙ୍କର ଟୋକା ସବ୍ ଇନିସ୍ପେକ୍ଟର । ରାତି ଗୋଟାଏ ଦୁଇଟା ବେଳେ କଲିଙ୍ଗବେଲ୍ ମାରିଲେ । ବିଭିନ୍ନ କଥା ପଚାରିଲେ । କଟମଟ କରି ଅଲିଭାର ଦେହ, ମୁହଁ ଓ ଛାତିକୁ ଚାହିଁଲେ । ଚା' କରିଦେବାକୁ କହିଲେ ।

ଏ ପୋଲିସ୍‌ମାନଙ୍କ ଦୌରାତ୍ମ୍ୟ ଦିନକୁ ଦିନ ବଢ଼ିଲା । ଅଲିଭାଠୁ ଲଙ୍ଗ୍‌ବେଞ୍ଚଟା ନେଇ ତା' ଘର ଆଗରେ ପକାଇ ରାତିଯାକ ବସିଲେ । କେତେବେଳେ ଚା, କେତେବେଳେ ପାଣି, କେତେବେଳେ ଦିଆସିଲି ମାଗିଲେ ତ ଆଉ କେବେ କେମିତି ଅଲିଭାକୁ ଅଟକାଇ ତା ସହିତ ଖୁସୀଗପ କଲେ ।

ଅଲିଭା ଦିନେ ଅବିନାଶ ଆଗରେ ଏ ସବୁ କଥା କହି ସମାଧାନର ବାଟ କଥା ପଚାରିଲା । ଅବିନାଶ କିଛି ସମୟ ଚିନ୍ତାକଲା ପରେ କହିଲେ- ଦେଖ ଅଲିଭା ! ଏସବୁ ମୂଳରେ ଗୋଟିଏ କାରଣ ଅଛି ।

ଅଲିଭା ପ୍ରଶ୍ନ କଲା- କି କାରଣ ?

ଅବିନାଶ ଶାନ୍ତ କଣ୍ଠରେ ଉତ୍ତର ଦେଲେ- ତୁମେ ସ୍ୱାମୀହୀନା ଆଉ ସୁନ୍ଦରୀ । ସ୍ୱାମୀ ନଥିବା ସୁନ୍ଦରୀ ସ୍ତ୍ରୀଲୋକଟିଏ ଦେଖିଲେ ସବୁ ପୁରୁଷଙ୍କ ଜିଭରୁ ଲାଳ ଗଡ଼େ ।

ଅଲିଭା ମୁଣ୍ଡ ପୋତି ନିରବ ରହିଲା ।

ଅବିନାଶ କହିଲେ- ତାଛଡ଼ା ତୁମର ବୟସ ଅଛି । ତୁମକୁ ଏବେ ଅତି ବେଶିରେ ସତେଇଶ କି ଅଠେଇଶ ବର୍ଷ ହେବ ।

ଅଲିଭା ସେମିତି ମୁଣ୍ଡ ତଳକୁ କରି ପ୍ରଶ୍ନ କଲେ- ମୁଁ ଏବେ କ'ଣ କରିବି ?

-ତୁମେ ଅନ୍ୟକାହାକୁ ବିବାହ କର ଅଲିଭା । ସବୁ ସମସ୍ୟାର ସହଜ ସମାଧାନ ହୋଇଯିବ ।

- କିନ୍ତୁ...

- କିନ୍ତୁ କ'ଣ ଅଲିଭା ? ତୁମକୁ ଗ୍ରହଣ କରିବାକୁ ଲୋକ ଆଗ୍ରହରେ ଆଗେଇ ଆସିବେ ।

-କିନ୍ତୁ ଅବିନାଶ ! ଏ ସମାଜ ଗ୍ରହଣ କରିବ ନାହିଁ ।

-ବିଧବା ବିବାହକୁ ସମାଜ ଅନେକ ଦିନ ହେଲା ଗ୍ରହଣ କଲାଣି । ଏବେ ଏଟା ନୂଆ କଥା କିଛି ନୁହଁ । ଏକୁଟିଆ ତୁମେ ନୁହଁ ତୁମ ପରି ଅନେକ ବିଧବା ଯେଉଁମାନଙ୍କର



Digitized by srujanika@gmail.com

ବୟସ ଅଛି, ସେମାନେ ବିବାହ କରି ଆମ ଏଇ ସମାଜରେ ସମ୍ମାନର ସହିତ ଘର ସଂସାର କରୁଛନ୍ତି । ବରଂ ମୁଁ କହିବି ଯେଉଁମାନେ ବିବାହ କରୁ ନାହାଁନ୍ତି ସେମାନେ ସମାଜ ପାଇଁ ସମସ୍ୟା ସୃଷ୍ଟି କରୁଛନ୍ତି । ସେଇ ସମସ୍ୟା ଜାଲରେ ନିଜେ ପଡ଼ି ଛଟପଟ ହେଉଚନ୍ତି ।

- କିନ୍ତୁ...

- କିନ୍ତୁ କ'ଣ ଅଲିଭା ? ତୁମ ଅଫିସ୍ ଲୋକ, କଲୋନୀର ବାଜେ ଟୋକା, କିମ୍ବା ଏ ପୋଲିସବାଲା ଏମିତି ଆହୁରି ଅନେକ ଲୋକ ତୁମ ଏକାକୀତ୍ୱର ସୁଯୋଗ ନେଇ ତୁମକୁ ହଇରାଣ କରିବେ। ତମେ ସେମାନଙ୍କ ସହିତ କେମିତି ଆଉ କେତେଦିନ ଲଢ଼ିବ ?

ଅଲିଭା କିଛି ଠିକ୍ କରି ପାରୁ ନଥିଲା । ତା' ଅସହାୟତାର ଦୀର୍ଘ ଛାଇ ତା ଅସ୍ତିତ୍ୱକୁ ଅସ୍ତବ୍ୟସ୍ତ କରୁଥିଲା । ଅଲିଭା ଗୋଟିଏ ଅସହାୟା ଶିଶୁ ପରି ଲୁହ ଡବ ଡବ ଆଖିରେ ଅବିନାଶକୁ ଚାହିଁଥିଲା ।

ପାଖ ଘରେ ଥାଇ ମାଧବାନନ୍ଦ ସବୁ ଶୁଣୁଥିଲେ। ସିଏ ହଠାତ୍ ପଶିଆସି ଅଲିଭା ଓ ଅବିନାଶଙ୍କ ମଝିରେ ଠିଆ ହେଲେ । ଦୁହିଁଙ୍କ ମୁହଁକୁ କିଛି ସମୟ ଚାହିଁବା ପରେ କହିଲେ- ତୁମେ ଦୁହେଁ ଯଦି ଗ୍ରହଣ କରିବ ମୁଁ ଗୋଟେ ପ୍ରସ୍ତାବ ଦେବି ।

ଅଲିଭା ଓ ଅବିନାଶ ବୃଦ୍ଧଙ୍କ ମୁହଁକୁ ଚାହିଁଲେ । ତାଙ୍କ ମୁହଁରେ ଗଭୀର ଆତ୍ମ ବିଶ୍ୱାସର ଉଜ୍ଜ୍ୱଳ ଆଲୋକ ।ମାଧବାନନ୍ଦ କହିଲେ- ଅବିନାଶ ! ତୁମ ବାପା ଅନେକ ଦିନରୁ ମରି ଯାଇଛନ୍ତି । ମୋ ପୁଅ ବି ଅକାଳରେ ଚାଲି ଯାଇଛି । ଆମ ଶୀତାଂଶୁର ବାପା ନାହିଁ । ତୁମେ ମୋ କୋଳକୁ ମୋ ପୁଅ ହୋଇ ଫେରି ଆସ । ମୁଁ ମୋ ପୁଅକୁ ପାଇବି, ତୁମେ ତୁମ ବାପାକୁ ପାଇବ ଆଉ ଶୀତାଂଶୁ ତାର ବାପାକୁ ପାଇବ । କ'ଣ କହୁଛ ? ତୁମେ ମୋର ପୁଅ ହେବ ତ ?

ଅବିନାଶ ମୁହଁ ଉଠାଇ ଅଲିଭାର ମୁହଁକୁ ଚାହିଁଲେ । ଅଲିଭା ଲାଜରେ ମୁହଁ ତଳକୁ କରିନେଇ ନିରବରେ ଠିଆହେଲା । କିନ୍ତୁ କିଛି ପ୍ରତିବାଦ କଲାନାହିଁ। ବରଂ ନିରବ ସମ୍ମତିର ମୁଦ୍ରା ତା' ମୁହଁରେ ସ୍ପଷ୍ଟ ବାରିହୋଇ ପଡୁଥିଲା ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଜଣେ ଲେଖକର ମୃତ୍ୟୁ

**ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ରାଜ୍ୟ ସୂଚନା ଭବନରେ ସକାଳ ନଅଟା ବେଳେ ଅନୁଷ୍ଠିତ ହେଉଥିଲା ଏକ ସାହିତ୍ୟ ସଭା ଯେଉଁଥିରେ ମୁଖ୍ୟ ଅତିଥି ଭବେ ଉଦ୍‌ବୋଧନ ଦେବା ପାଇଁ ନିମନ୍ତ୍ରିତ ହୋଇଥିଲେ ବିଶିଷ୍ଟ କଥାକାର** ଅନୁପମ ବିଶ୍ୱାଳ । ତାଙ୍କ ସାହିତ୍ୟ ପ୍ରତିଭା ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ଶାରଳା ପୁରସ୍କାର ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇ ସାରିଛନ୍ତି । ଭାରତର ସର୍ବୋଚ୍ଚ ସାହିତ୍ୟ ପୁରସ୍କାର ଜ୍ଞାନପୀଠ ପାଇବା ପାଇଁ ବର୍ତ୍ତମାନ ସେ ସବୁଠୁ ଯୋଗ୍ୟ ବ୍ୟକ୍ତି । ଅନୁପମବାବୁ ଲିଖେ ଯେମିତି ବଗ୍ମୀ ସେମିତି । ସେ ଅତି ଉଚ୍ଚକୋଟୀର ଭାଷଣ ବି ଦିଅନ୍ତି ।

ସେ ଦିନ ଆଲୋଚନାର ବିଷୟବସ୍ତୁ ଥିଲା ମୁଁ କାହିଁକି ଲେଖେ ? ସଭାରେ ଓଡ଼ିଶାର ବହୁ ବିଶିଷ୍ଟ ଗାଳ୍ପିକ, ଔପନାସିକ, କବି, ନାଟ୍ୟକାର, ପ୍ରାବନ୍ଧିକ, ଶିଶୁ ସାହିତ୍ୟିକ ଉପସ୍ଥିତ ଥିଲେ । ସାହିତ୍ୟିକ ଯେତିକି ଥିଲେ ତାଠୁ ଅଧିକ ସଂଖ୍ୟାରେ ଉପସ୍ଥିତ ଥିଲେ ସାଧାରଣ ପାଠକ । ସୂଚନାଭବନ ଭରପୂର ଥିଲା । ଉପସ୍ଥିତ ସାହିତ୍ୟିକ ଓ ଶ୍ରୋତାମାନଙ୍କ ମଧ୍ୟରେ ଅନୁପମଙ୍କ ଭାଷଣ ଶୁଣିବା ପାଇଁ ଖୁବ୍ ବ୍ୟଗ୍ରତା ଥିଲା ।

ସାହିତ୍ୟ ଏକାଡ଼େମୀ ସଂପାଦକଙ୍କ ସ୍ୱାଗତ ଅଭିଭାଷଣ ପରେ ବିଶିଷ୍ଟ କଥାକାର ଅନୁପମ ବିଶ୍ୱାଳ ତାଙ୍କ ଅଭିଭାଷଣ ପ୍ରଦାନ କରିବାକୁ ଠିଆହେଲେ । କିନ୍ତୁ ସିଏ କିଛି କହିବାକୁ ଆରମ୍ଭ କରିବା ମାତ୍ରେ ଠିଆ ହୋଇଥିବା ସ୍ଥାନରେ ହଠାତ୍ ଟଳି ପଡ଼ିଲେ ।

ସଭାରେ ଉପସ୍ଥିତ ଥିବା ଲୋକମାନେ ଅନୁପମଙ୍କୁ ଧରା ଧରି କରି ଉଠାଇଲେ । ତାଙ୍କର ଅଚେତ ଶରୀରକୁ ସାହିତ୍ୟ ଏକାଡ଼େମୀ ଗାଡ଼ିରେ କ୍ୟାପିଟାଲ୍ ହସପିଟାଲକୁ ନିଆଗଲା । ଡାକ୍ତର ପରୀକ୍ଷା କରି ଘୋଷଣା କଲେ ଅନୁପମବାବୁ ଆଉ ନାହାଁନ୍ତି । ହୃଦଘାତରେ ତାଙ୍କର ପ୍ରାଣବାୟୁ ଉଡ଼ି ଯାଇଛି । ଏହାଥିଲା ତାଙ୍କର ପ୍ରଥମ ଷ୍ଟ୍ରୋକ୍ ଓ ସିଏ ପ୍ରଥମ ଷ୍ଟ୍ରୋକ୍ ସମ୍ଭାଳି ନପାରି ଚାଲିଗଲେ ।

ଖବର ପାଇ ତାଙ୍କ ସ୍ତ୍ରୀ ଅନିମା ଆସି ପହଞ୍ଚିଲେ । ସିଏ ଜମା ବିଶ୍ୱାସ କରି ପାରିଲେ ନାହିଁ ଯେ ତାଙ୍କ ସ୍ୱାମୀ ଯିଏ ଅଧ ଘଣ୍ଟାଏ ପୂର୍ବରୁ ସଂପୂର୍ଣ୍ଣ ସୁସ୍ଥ ଥିଲେ, ସାହିତ୍ୟ ସଭାରେ

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଯୋଗଦେବା ପାଇଁ ନିଜେ ଗାଡ଼ି ଚଳାଇ ସୂଚନା ଭବନକୁ ଆସିଥିଲେ ତାଙ୍କର ଏ ଅବସ୍ଥା କେମିତି ହେଲା ?

ପୁଅ ଅନିକେତ, ବୋହୂ ଅସୀମା, ଝିଅ ବର୍ଷା ଆଉ ଜ୍ୱାଇଁ ଅବିନାଶଙ୍କ ପାଖକୁ ଫୋନ୍ କରାଗଲା । ପୁଅ ବୋହୂ ମୁମ୍ବାଇରୁ ଆଉ ଝିଅ ଜ୍ୱାଇଁ ଦିଲ୍ଲୀରୁ ଉଡାଜାହାଜ ଚଢ଼ି ଅପରାହ୍ନ ଚାରିଟା ସୁଦ୍ଧା ଭୁବନେଶ୍ୱରରେ ପହଞ୍ଚିଲେ ।

ବିଶିଷ୍ଟ ଗାଳ୍ପିକ ଅନୁପମଙ୍କ ଶବାଧାରରେ ମୁଖ୍ୟମନ୍ତ୍ରୀ, ସଂସ୍କୃତି ମନ୍ତ୍ରୀ,ସାହିତ୍ୟ ଏକାଡ଼େମୀର ସଭାପତି, ସଂପାଦକ,ବହୁ ବିଶିଷ୍ଟ, ବରିଷ୍ଠ ଓ ତାଙ୍କ ଚିହ୍ନା ଜଣା ଅନେକ ସାହିତ୍ୟିକ, କିଛି ସାହିତ୍ୟ ଅନୁଷ୍ଠାନର କର୍ମକର୍ତ୍ତା ଓ ପାଠକ ପୁଷ୍ପଗୁଚ୍ଛ ଦେଇ ତାଙ୍କର ଶେଷ ଦର୍ଶନ କରି ଚାଲିଗଲା ପରେ ପୁରୀର ସ୍ୱର୍ଗଦ୍ୱାର ଠାରେ ପୁଅ ଅନିକେତଙ୍କ ହାତରେ ତାଙ୍କର ମୁଖାଗ୍ନି ଦିଆଗଲା ।

ମୃତ୍ୟୁବେଳକୁ ଅନୁପମଙ୍କୁ ସେମିତି ବେଶିକିଛି ବୟସ ହୋଇ ନଥିଲା ।ମାତ୍ର ପଞ୍ଚଷଠି ବର୍ଷ ବୟସରେ ସେ ଦେହ ତ୍ୟାଗକଲେ । ତାଙ୍କଠୁ ପନ୍ଦର ବର୍ଷ ଅଧିକ ବୟସର ଲେଖକ ବନ୍ଧୁ ଗୌର ପ୍ରସାଦ, ଏଗାର ବର୍ଷ ଅଧିକ ବୟସର ହରିହର ଦାସ ଏବେ ମଧ ବଞ୍ଚିଛନ୍ତି ।

ଅନୁପମଙ୍କ ମୃତ୍ୟୁ ଖବର ସେଇଦିନ ଦୂରଦର୍ଶନ ଓ ରେଡିଓ ସଂବାଦରେ ପ୍ରକାଶିତ ହେଲା । ଓଟିଭି ଏବଂ ଇ.ଟିଭି ଚ୍ୟାନେଲରେ ତାଙ୍କ ଶବ ଉପରେ ପୁଷ୍ପଗୁଚ୍ଛ ପ୍ରଦାନ ଓ ଶବଶୋଭାଯାତ୍ରା ଦୃଶ୍ୟ ସହିତ ତାଙ୍କ ଦ୍ୱାରା ରଚିତ ବିଶିଷ୍ଟ ଗଳ୍ପ ପୁସ୍ତକଗୁଡ଼ିକର ଚିତ୍ର ଏବଂ ସେ ପାଇଥିବା ବିଭିନ୍ନ ସମ୍ମାନ, ମାନପତ୍ର, ତାମ୍ରଫଳକ ଇତ୍ୟାଦିର ଚିତ୍ର ମଧ୍ୟ ପ୍ରଦର୍ଶିତ ହୋଇଥିଲା । ତା'ପର ଦିନ ପ୍ରାୟ ସମସ୍ତ ଓଡ଼ିଆ ସଂବାଦ ପତ୍ରରେ ତାଙ୍କ ଫଟୋ ସହିତ ତାଙ୍କର ସଂକ୍ଷିପ୍ତ ଜୀବନୀ ଓ ସାହିତ୍ୟ ସୃଷ୍ଟି ସଂପର୍କରେ ସଂବାଦ ପ୍ରକାଶିତ ହୋଇଥିଲା ।

ଅନୁପମଙ୍କ ଆତ୍ମାର ସଦ୍‌ଗତି କାମନା କରି କିଛି ସାହିତ୍ୟ ଅନୁଷ୍ଠାନ ଶୋକସଭା କରି ତାଙ୍କ ସ୍ମୃତିଚାରଣ କରିଥିବା ସଂବାଦ ମଧ ବିଭିନ୍ନ ସଂବାଦପତ୍ରରେ ତାଙ୍କ ମୃତ୍ୟୁର ଆଠ ଦିନ ପର୍ଯ୍ୟନ୍ତ ପ୍ରକାଶ ପାଇଲା । ଅନୁପମଙ୍କ ମୃତ୍ୟୁରେ ଓଡ଼ିଆ ସାହିତ୍ୟର ଅପୂରଣୀୟ କ୍ଷତି ଘଟିଲା । ସେ ଅନେକ ଯୁବ ସାହିତ୍ୟିକଙ୍କୁ ପ୍ରେରଣା ଓ ଦିଗଦର୍ଶନ ଦେଇ ଗାଳ୍ପିକ କରାଇ ପାରିଥିଲେ । ନୂତନ ଗାଳ୍ପିକଙ୍କ ଲେଖା ପଢ଼ି ଅଧିକରୁ ଅଧିକ ଗଳ୍ପ ଲେଖିବାକୁ ସେମାନଙ୍କୁ ଉତ୍ସାହିତ କରୁଥିଲେ ।

ଅନୁପମଙ୍କ ଆକସ୍ମିକ ମୃତ୍ୟୁରେ ତାଙ୍କ ସ୍ତ୍ରୀ ଅନିମା ବିଶେଷ ଭାବେ ଭାଙ୍ଗିପଡ଼ିଲେ ।

ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

ଅନୁପମଙ୍କ ବିନା ତାଙ୍କୁ ବଞ୍ଚିବାକୁ ପଡ଼ିବ ବୋଲି ସିଏ ଆଦୌ ଭାବି ନଥିଲେ । ତାଙ୍କର ଇଚ୍ଛା ଥିଲା ଅନୁପମ ବଞ୍ଚି ଯାଉ ଥାଉ ତାଙ୍କରି ଆଗରେ ସେ ଚାଲିଯିବେ । ଏମିତି ଇଚ୍ଛା ଅନିମା ତାଙ୍କ ସ୍ୱାମୀଙ୍କ ଆଗରେ ପ୍ରକାଶ ମଧ୍ୟ କରିଥିଲେ । କିନ୍ତୁ ଅନୁପମ କହିଥିଲେ- ଦେଖ ଅନିମା ! ତୁମେ ଯଦି ମୋତେ ଛାଡି ଆଗତୁରା ଚାଲିଯାଅ, ତା'ହେଲେ ମୁଁ ସଙ୍ଗେ ସଙ୍ଗେ ଆଉ ଗୋଟିଏ ନାରୀକୁ ବିବାହ କରିବି । କାରଣ ଜଣେ ସ୍ତ୍ରୀ ବିନା ମୁଁ କେବେ ବଞ୍ଚିପାରିବି ନାହିଁ । ତୁମକୁ ମୋର ଏକାନ୍ତ ଅନୁରୋଧ, ତୁମେ ଯଦି କେବେ ମର, ତା'ହେଲେ ମୋର ବିବାହ ବୟସ ଥିବା ଭିତରେ ମରିବ । ମୋର ବୁଢ଼ା ବୟସରେ ତୁମେ କେବେ ମରିବ ନାହିଁ । ସେମିତି ହେଲେ ମୋତେ ଆଉ ଜଣେ ସ୍ତ୍ରୀ ମିଳିବାରେ ସମସ୍ୟା ଦେଖାଦେବ ।

ଅବଶ୍ୟ ଏକଥା ଅନୁପମ ପରିହାସରେ କହିଥିଲେ । ଅନୁପମଙ୍କ ମୃତ୍ୟୁପରେ ଅନିମା ସ୍ତବ୍ଧ ହୋଇଯାଇଥିଲେ । ଖାଇବା, ଶୋଇବା ଆଉ କଥା କହିବା ତାଙ୍କ ପାଇଁ ଅନାବଶ୍ୟକ ହୋଇଯାଇଥିଲା ।

ଶୁଦ୍ଧିକ୍ରିୟା ଶେଷ ହେବା ପରେ ପୁଅ ଅନିକେତ ପ୍ରସ୍ତାବ ଦେଲା- ବୋଉ ! ତୁ ଆମ ସାଙ୍ଗରେ ମୁମ୍ବାଇ ଚାଲ ।

ବୋହୂ ଅସୀମା ମଧ ଶାଶୁଙ୍କୁ ଅନୁରୋଧ କରିଥିଲେ ତାଙ୍କ ସହିତ ମୁମ୍ବାଇ ଯିବାପାଇଁ ।

ଝିଅ ବର୍ଷା ଆଉ ଜ୍ୱାଇଁ ଅବିନାଶ ତାଙ୍କ ସହିତ ଅନିମାଙ୍କୁ ଦିଲ୍ଲୀ ନେବାକୁ ପ୍ରସ୍ତାବ ଦେଇଥିଲେ ।

କିନ୍ତୁ ଅନିମା କାହାକୁ କିଛି ନ କହି ଚୁପ୍ ରହିଲେ । ତାଙ୍କ ମନ ଭିତରେ କିଛି କଥାର ବାଦଲ ଦଉଡୁଥିଲା । ପୁଅ, ବୋହୂ ଝିଅ, ଜ୍ୱାଇଁ କାହାରି କଥା ସେ ଶୁଣିପାରୁ ନଥିଲେ । ସେମାନଙ୍କ ଏତେ କଥାର କିଛି ବି ପ୍ରତିକ୍ରିୟା ପଡୁ ନଥିଲା ଅନିମାଙ୍କ ମୁହଁରେ । ମନେହେଉଥିଲା, ସେ ଯେମିତି ଆଉ କିଛି ଭାବୁଥିଲେ । ବଡ଼ କିଛି ଗୋଟେ ସମସ୍ୟାର ସମାଧାନର ସନ୍ଧାନ କରୁଥିଲେ ।

ଅନିକେତ ମାଆଙ୍କୁ ପୁଣି ପ୍ରଶ୍ନ କଲେ- ବୋଉ, କ'ଣ ଏତେ ଭାବୁଛୁ ? ଆମ ଏଇ ଭୁବନେଶ୍ୱର ଘରକଥା ଭାବୁଛୁକି ? ଇଏତ ଆମର ମାର୍ବଲ ଫ୍ଲୋର ଆଉ ସାଗୁଆନ୍ କାଠରେ ତିଆରି କବାଟ, ଝରକା ଲଗା ଘର । ଏ ଘରଭଡ଼ା ଲାଗିବାର କିଛି ଅସୁବିଧା ନାହିଁ । ମୋ ଫ୍ରେଣ୍ଡ୍ ହିରଣ୍ୟ କହୁଥିଲା, ତାଙ୍କ ବ୍ୟାଙ୍କ୍ ମ୍ୟାନେଜର ତାଙ୍କ ରେସିଡେନ୍ସ



Digitized by srujanika@gmail.com

ପାଇଁ ଗୋଟେ ଭଲଘର ଖୋଜୁଛନ୍ତି ।

ବର୍ଷା ବୁଝାଇଲା- ଆମେ ତୋର ପୁଅ ବୋହୂ, ଝିଅ, ଜ୍ୱାଇଁ ଥାଉଁ ଥାଉଁ ତୁ କୌଣସି କଥା ଚିନ୍ତା କରିବା ଦରକାର କ'ଣ? ତୁ ଭାଇ ଭାଉଜଙ୍କ ସାଙ୍ଗରେ ମୁମ୍ବଇ ଯାଆ, ନ ହେଲେ ଆମ ସାଙ୍ଗରେ ଦିଲ୍ଲୀ ଚାଲ । ନିଜ ପିଲାଙ୍କ ପାଖରେ ରହିଲେ ନିଃସଙ୍ଗତା ବାଧିବ ନହିଁ । ତୁ ଯଦି ଏକୁଟିଆ ଏଠି ଏଇ ଭୁବନେଶ୍ୱରରେ ରହୁ ତା'ହେଲେ ଏ ଘର, ଦ୍ୱାର ଦେଖିଲେ ବାପାଙ୍କ କଥା ତୋର ସବୁବେଳେ ମନେ ପଡ଼ିବ । ଏଠି ତୁ ଏକୁଟିଆ ରହିଲେ ମନ ଭଲ ରହିବ ନାହିଁ । ମନ ସହିତ ଦେହର ନିବିଡ ସଂପର୍କ । ମନ ଭଲ ନ ରହିଲେ ଦେହ ଭଲ ରହିବ ନାହିଁ । ଏଠି ତୋ ଦେହ ପା' ଖରାପ ହେଲେ, କିଏ ତୋର ସେବା କରିବ ? ତୋ କଥା ଆମେ ସବୁବେଳେ ଚିନ୍ତା କରିବୁ । ଏଠି ନା ତୁ ଭଲରେ ରହିବୁ ନା ଆମେ ସେଠି ନିଶ୍ଚିନ୍ତ ରହିପାରିବୁ?

ଜ୍ୱାଇଁ ଅବିନାଶ କହିଲେ- ଦେଖନ୍ତୁ ବୋଉ ! ଆପଣ ଯଦି ଭାବୁଥାନ୍ତି ଅନିକେତ ଭାଇ ଆଉ ଅସୀମା ଭାଉଜ ଦୁହେଁ ଚାକିରି କରିଥିବାରୁ ଦିନବେଳେ ସେମାନେ ଅଫିସ୍‌କୁ ଚାଲିଯିବେ ଓ ଆପଣ ଦିନ ବେଳଟା ନିଃସଙ୍ଗ ହୋଇଯିବେ, ତେବେ ଆପଣ ଆମ ସାଙ୍ଗରେ ଆସନ୍ତୁ । ଆପଣଙ୍କ ଝିଅ ବର୍ଷା ଚାକିରି କରେନା । ସିଏ ସବୁବେଳେ ଆପଣଙ୍କ ପାଖରେ ରହିବ । ମାଆ, ଝିଅ ଦୁହେଁ ଏକାଠି ରହିଲେ ଭଲ ଲାଗିବ ।

ତଥାପି ଅନିମା ମୁହଁ ନଖୋଲି ଚୁପ୍ ରହିଲେ । ତାଙ୍କ ଆଖି ଦୁଇଟା ବନ୍ଦ ରହିଛି । ସିଏ ଯେମିତି ଅନ୍ୟ କିଛି ଗହନ ଚିନ୍ତାରେ ବୁଡ଼ି ରହିଚନ୍ତି । ତାଙ୍କ ପିଲାମାନଙ୍କ କଥା ସିଏ କିଛି ଶୁଣି ପାରୁ ନାହାଁନ୍ତି ।

ଆଉ କିଛି ଉପାୟ ନପାଇ ଅନିକେତ ମାଆଙ୍କ ହାତଟାକୁ ଧରି ହଲାଇ ଦେଇ ପ୍ରଶ୍ନ କଲେ- ବୋଉ ! ତୁ ଏତେ ସମୟ କ'ଣ ଭାବୁଛୁ ? ତୁ ଆମ ଆଗରେ ତୋ ମନ ଏବେ ନଖୋଲିଲେ ଆଉ କେବେ ଖୋଲିବୁ ? ଆମେ ତୋ ପୁଅ, ଝିଅ, ବୋହୂ, ଜ୍ୱାଇଁ ସମସ୍ତେ ତୋତେ ତୋ ମନକଥା ପଚାରୁଛୁ । ତୋତେ କହିବାକୁ ପଡ଼ିବ । ତୋର କିଛି ବ୍ୟବସ୍ଥା ନକଲା ପର୍ଯ୍ୟନ୍ତ ଆମେ ଏଠୁ ଯାଇ ପାରିବୁ ନାହିଁ ।

ଅନିମା ଏଥର ଆଖି ଖୋଲିଲେ ଏବଂ ମୁହଁ ଉଠାଇ ତାଙ୍କ ପିଲାମାନଙ୍କୁ ଚାହିଁଲେ । ନିଜ କଣ୍ଠ ଉପରେ ଜମିଯାଇଥିବା କଫକୁ ପରିଷ୍କାର କରି କହିଲେ- ମୁଁ ମୋ କଥା କିଛି ଭାବୁନାହିଁ । ମୁଁ ତୁମ ବାପାଙ୍କ କଥା ଭାବୁଛି । ମୁଁ ତୁମ ଚାରି ଜଣଙ୍କୁ ଗୋଟିଏ କଥା ପଚାରିବି । ସଠିକ୍ ଉତ୍ତର ଦେବ ?

ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

ଅନିକେତ, ଅବିନାଶ, ବର୍ଷା ଆଉ ଅସୀମା ଚାରିଜଣ ଯାକ ବିସ୍ମିତ ହେଲେ । ବୋଉ ସେମାନଙ୍କୁ କ'ଣ ଆଉ ପଚାରିବେ ? ବାପାଙ୍କର ଭୁବନେଶ୍ୱରରେ ଏ କୋଠାଘର, ଆଉ ଗୋଟିଏ ଘର ଉପଯୋଗୀ ପ୍ଲଟ, ବ୍ୟାଙ୍କ୍‌ରେ ପାଞ୍ଚ ଲକ୍ଷ ଟଙ୍କାର ଡିପୋଜିଟ୍ । ତା'ଛଡ଼ା ଗାଆଁ ଜମି ଆଉ ଘର । ଏ ସବୁ ସଂପତ୍ତି ବାପା କାହା ନାଆଁରେ ଉଇଲ୍ କରି ଯାଇଛନ୍ତି କି ?

ଅନିକେତ ପ୍ରଶ୍ନ କଲେ- ବାପାଙ୍କ କଥା କ'ଣ ପଚାରିବୁ ବୋଲି କହୁଥିଲୁ ,ପଚାର । ଆମେ ଯାହା ଜାଣିଥିବୁ ନିଶ୍ଚୟ କହିବୁ ।

ଅନିମା ଏଥର ସହଜ କଣ୍ଠରେ କହିଲେ- ଅନିକେତ ଆଉ ବର୍ଷା, ତୁମେ ଦୁହେଁ ତୁମ ବାପାଙ୍କ ସହିତ ଖୁବ୍ ନିବିଡ଼ ଭାବରେ ମିଶିଛ । ସେ ତୁମମାନଙ୍କ ପାଖରେ ଖୁବ୍ ସହଜ ଭାବରେ ମିଶନ୍ତି । ଅନ୍ୟମାନେ ତାଙ୍କ ପୁଅ, ଝିଅଙ୍କଠୁ କିଛି ଦୂରତା ରଖି ଚଳନ୍ତି, କିନ୍ତୁ ତୁମ ବାପା ତାଙ୍କର ବନ୍ଧୁପରି ତୁମ ସହିତ ଅନ୍ତରଙ୍ଗ ଭାବେ ମିଶନ୍ତି । ଅବିନାଶ ଆଉ ଅସୀମାଙ୍କୁ ମଧ୍ୟ ସିଏ ଜ୍ୱାଇଁ ଓ ବୋହୂ ଭାବରେ ନ ଦେଖି ତାଙ୍କ ପୁଅ ଝିଅ ଦୃଷ୍ଟିରେ ଦେଖନ୍ତି ଓ ଶ୍ରଦ୍ଧା କରନ୍ତି । ତୁମେ ସମସ୍ତେ ତୁମ ବାପାଙ୍କୁ ଠିକ୍ ଭାବେ ଜାଣ ।

ଟିକେ ଗମ୍ଭୀର ହୋଇ ଅନିମା ପ୍ରଶ୍ନକଲେ-ତୁମେ କହି ପାରିବ ସିଏ କାହାକୁ ସବୁଠୁ ବେଶି ଭଲ ପାଆନ୍ତି । ସ୍ତ୍ରୀ, ପୁଅ, ଝିଅ, ଜ୍ୱାଇଁ, ବୋହୂ ଏ ଘର ନା ଆଉ କାହାକୁ ? ତାଙ୍କ ଭାଇ, ବନ୍ଧୁ, କୁଟୁମ୍ବ, ତାଙ୍କ ଚାରିପାଖର ସମାଜ, ତାଙ୍କ ନିଜ ଗାଆଁ ନା ଏ ଭୁବନେଶ୍ୱର ସହର ? କାହାକୁ ସେ ସବୁଠୁ ବେଶି ଭଲ ପାଆନ୍ତି ?

କିଛି ସମୟର ନିରବତା ଛାଇଗଲା । ସମସ୍ତେ ପରସ୍ପରଙ୍କ ମୁହଁକୁ ଚାହିଁଲେ ।

ହଠାତ୍ ବର୍ଷା କହିଲା- ମୁଁ ଯେତିକି ଜାଣେ ବାପା ସବୁଠୁ ଅଧିକ ଭଲ ପାଉଥିଲେ ଭାଇକୁ । ବାପା ତାଙ୍କ ପୁଅର ଇଚ୍ଛା କେବେ ଅପୂରଣ ରଖୁ ନଥିଲେ । ବାପା କହୁଥିଲେ ମୋ ପୁଅ ଅନିକେତ ଭିତରେ ମୁଁ ବଞ୍ଚି ରହିବି । କାରଣ ଅନିକେତ ମୋ ଚେହେରାର ଠିକ୍ କାର୍ବନ କପି ।

ଅନିକେତ କହିଲା- ନା, ବାପା ସବୁଠୁ ବେଶି ଭଲ ପାଉଥିଲେ ତାଙ୍କର ଏକମାତ୍ର ଅଲିଅଳୀ ଝିଅ ବର୍ଷାକୁ । ତାର ସମସ୍ତ ଦାବି ଅତି ଆଗ୍ରହର ସହିତ ସେ ପୂରଣ କରୁଥିଲେ ।

ଅନିମା କଥା ମଝିରୁ ବାଧା ଦେଇ କହିଲେ- ମୁଁ ତୁମ ବାପାଙ୍କୁ ଯେତିକି ଜାଣେ ସିଏ ପୁଅ, ବୋହୂ, ଝିଅ, ଜ୍ୱାଇଁ ଆଉ ସ୍ତ୍ରୀ ସମସ୍ତଙ୍କୁ ସମାନ ଭାବରେ ଭଲ ପାଉଥିଲେ । କିନ୍ତୁ ସିଏ ଆଉ ଜଣକୁ ସବୁଠୁ ଅଧିକ ଭଲ ପାଉଥିଲେ । ଆମ ସମସ୍ତଙ୍କୁ ତୁମ ବାପା

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସାମାଜିକ କର୍ତ୍ତବ୍ୟ ଦୃଷ୍ଟିରୁ ଭଲ ପାଉଥିଲେ ମାତ୍ର ତାକୁ ସେ ନିଜ ଅନ୍ତର ଦେଇ ଭଲ ପାଉଥିଲେ । ଅନ୍ୟ ଭାବରେ କହିଲେ ସିଏ ତୁମ ବାପାଙ୍କ ଜୀବନ ଥିଲା ।

ଅନିକେତ, ଅବିନାଶ, ଅସୀମା ଓ ବର୍ଷା ପୁଣି ବିସ୍ମିତ ହେଲେ । ବାପା କ'ଣ ଆଉ କେଉଁ ସ୍ତ୍ରୀଲୋକକୁ ଭଲ ପାଉଥିଲେ ? ଲେଖକମାନେ ସ୍ୱାଭାବିକ ମଣିଷ ନୁହଁନ୍ତି । ଅନେକ ଲେଖକଙ୍କର ଅନେକ ଆଫେୟାରସ୍ ଥାଏ । କିନ୍ତୁ ତାଙ୍କ ବାପାତ ସେମିତି ନୁହନ୍ତି । ତାଙ୍କର ଅଧିକାଂଶ ଗଳ୍ପ ସମାଜର ବିଭିନ୍ନ ସମସ୍ୟା ଉପରେ ଲିଖିତ । ଅବଶ୍ୟ ଅଳ୍ପ କେତେଟା ପ୍ରେମ ଗଳ୍ପ ବାପା ଲେଖିଛନ୍ତି । କିନ୍ତୁ ବାପାଙ୍କର କେହି ପ୍ରେମିକା ଥିବା କଥା ସେମାନେ କେହି ଜାଣନ୍ତି ନାହିଁ ।

ତେବେ ବାପାଙ୍କ ଗଳ୍ପ ଉପରେ କିଛି ପାଠକ ଓ ପାଠିକାଙ୍କଠୁ ଅନେକ ଚିଠି ଆସେ । ସେମାନଙ୍କ ଭିତରୁ କେତେକ ବାପାଙ୍କୁ କୌଣସି ସାହିତ୍ୟ ସଭା ସମ୍ମିଳନୀରେ ଦେଖାକରନ୍ତି ଓ ଆଉ କେତେକ ଘରକୁ ମଧ୍ୟ ଆସନ୍ତି । ସେମାନଙ୍କ ମଧ୍ୟରେ, ବୟସ୍କ, ମଧ୍ୟ ବୟସ୍କ ଓ ଯୁବ ପାଠକ, ପାଠିକା ମଧ୍ୟ ଥାଆନ୍ତି ।

ବିଶେଷ କରି ତାଙ୍କ ଘରକୁ ଆସି ଯଦି କୌଣସି ଯୁବପାଠିକା ବାପାଙ୍କ ସହିତ ସାକ୍ଷାତ ଆଲୋଚନା କରନ୍ତି, ବୋଉ ସେ ସବୁକୁ ସହ୍ୟ କରିପାରନ୍ତି ନାହିଁ । ଅତୀତରେ ଏଥିପାଇଁ ବାପା, ବୋଉଙ୍କର ଅନେକ ଥର ଝଗଡ଼ା ହୋଇଥିବା ଅନିକେତ ଓ ବର୍ଷା ଜାଣନ୍ତି । ଥରେ ରାଉରକେଲାରୁ ବନଜା ବୋଲି ଜଣେ ଅବିବାହିତା ପାଠିକା ବାପାଙ୍କ ଗଳ୍ପ ଉପରେ ଆଲୋଚନା କରିବାକୁ ଭୁବନେଶ୍ୱର ଆସିଥିଲେ । ଏଥିପାଇଁ ବାପା ବୋଉଙ୍କ ଭିତରେ ବଡ଼ ଧରଣର ଝଗଡ଼ା ଲାଗିଥିଲା ।

ସେମିତି ଆଉ କୋଉ ଝିଅ ବାପାଙ୍କ ଜୀବନରେ ଆସିଥିଲାକି ? କାହିଁ ସେମାନେତ ଏ ବିଷୟରେ କିଛି ହେଲେ ଜାଣନ୍ତି ନାହିଁ । ହୁଏତ ସେମାନେ ଘରଛାଡ଼ି ମୁମ୍ବାଇ ଆଉ ଦିଲ୍ଲୀ ଚାଲିଯିବା ପରେ କାହା ସହିତ ଯଦି ବାପାଙ୍କର ସେମିତି କିଛି ସଂପର୍କ ଗଢ଼ି ଉଠିଥିବ ।

ପୁଅ, ଝିଅଙ୍କଠୁ କିଛି ଉତ୍ତର ନ ପାଇ ବସିଥିବା ସ୍ଥାନରୁ ଅନିମା ଉଠିଲେ ଓ ତାଙ୍କ ପଛେ ପଛେ ଆସିବାକୁ ପୁଅ ବୋହୂ ଓ ଝିଅ ଜ୍ୱାଇଁଙ୍କୁ ସଙ୍କେତ ଦେଲେ ।

ଅନିମା ବେଡରୁମ୍ ପାର ହୋଇ, ଡାଇନିଙ୍ଗ୍‌ରୁମ୍ ଦେଇ ଡ୍ରଇଂରୁମ୍ ଡୋର ପାଖରେ ଠିଆ ହେଲେ । ପଛକୁ ଚାହିଁଲେ ତାଙ୍କ ପଛରେ ସମସ୍ତେ ଆସୁଛନ୍ତି । ଡ୍ରଇଂରୁମ୍‌କୁ ଡେଇଁ ଚାଲିଲେ ଅନ୍ୟ ବଖରା ପାଖକୁ । ସେ ବଖରାଟି ଅନୁପମଙ୍କ ସାହିତ୍ୟ ସାଧନାର ସ୍ଥଳ । ତାଙ୍କ ମୃତ୍ୟୁ ଦିନଠୁ ସେ ବଖରାରେ ତାଲା ପଡି ରହିଛି ।

ଆନଂଦ ଚଂଦ୍ର ପଢି

Digitized by srujanika@gmail.com

ଅନିମା ସେ ବଖରାର ତାଲା ଖୋଲିଲେ । ଅନିକେତ ଓ ବର୍ଷା ପରସ୍ପରଙ୍କ ମୁହଁକୁ ଚାହିଁଲେ । ସେମାନଙ୍କ ଚାହାଣି ପ୍ରଶ୍ନ କରୁଥିଲା ବୋଉ ସେମାନଙ୍କୁ କଣ ଦେଖାଇବାକୁ ବାପାଙ୍କ ବଖରାକୁ ନେଉଛନ୍ତି ? କୌଣସି ପାଠିକାଙ୍କର ବାପାଙ୍କ ଉଦ୍ଦେଶ୍ୟରେ ଲିଖିତ ପ୍ରେମ ଚିଠି ନା ଆଉ କିଛି ?

ବର୍ଷା ନିଜକୁ ପ୍ରଶ୍ନ କରୁଥିଲା- ବାପାଙ୍କର ଅନ୍ୟ କୌଣସି ନାରୀ ସହିତ କିଛି ସଂପର୍କ ଥିବାର ପ୍ରମାଣ କଣ ବୋଉ ହାତରେ ପଡ଼ିଯାଇଛି ? ବାପାଙ୍କ ମୃତ୍ୟୁ ପରେ ସେ କଥାକୁ ବୋଉ ଏତେ ଗୁରୁତ୍ୱ କାହିଁକି ବା ଦେଉଛି ? ସେ ସ୍ତ୍ରୀଲୋକ କ'ଣ ବାପାଙ୍କ ମୃତ୍ୟୁ ପରେ ବାପାଙ୍କ ସଂପତ୍ତିର ଅର୍ଦ୍ଧେକ ଦାବି କରିପାରେ ?

ଅନିମା ସେ ବଖରାର କବାଟ ଖୋଲିଦେଇ ତାଙ୍କ ସନ୍ତାନମାନଙ୍କ ମୁହଁକୁ ଚାହିଁଲେ । ସେମାନଙ୍କ ମୁହଁ ଆଉ ଆଖିରେ ବିସ୍ମୟର ବାଦଲ ପହଁରୁଥିଲା ।

ଅନିମା ଚାବିକାଠି ପେନ୍ଥାଏ ଧରି ସେ ଘରେ ଥୁଆ ହୋଇଥିବା ଷ୍ଟିଲ୍ ଆଲ୍‌ମାରି ପାଖକୁ ଗଲେ । ଗୋଟିଏ ପରେ ଗୋଟିଏ, ଏମିତି ତନୋଟିଯାକ ଆଲମାରିର ତାଲା ଖୋଲି କହିଲେ- ତଥାପି ତୁମେମାନେ କିଛି ବୁଝିପାରୁନ ? ଜାଣିପାରୁନ ତୁମ ବାପା କାହାକୁ ତାଙ୍କ ଜୀବନଠୁ ଅଧିକ ଭଲ ପାଉଥିଲେ ?

ଏ ସବୁ ଆଲ୍‌ମାରିରେ ତୁମ ବାପାଙ୍କ ଦ୍ୱାରା ଲେଖା ବହି, ତାଙ୍କ ଗଳ୍ପ ଓ ସାକ୍ଷାତକାର ବାହାରିଥିବା ଅସଂଖ୍ୟ ସାହିତ୍ୟ ପତ୍ରିକା, ପାଣ୍ଡୁଲିପି, ଏବଂ ପାଠକ, ପାଠିକାମାନଙ୍କଠୁ ଆସିଥିବା ଅନେକ ଚିଠି ଆଉ ତୁମ ବାପା ତାଙ୍କ ସାହିତ୍ୟ କୃତି ପାଇଁ ପାଇଥିବା ପୁରସ୍କାର, ସମ୍ମାନ, ମାନପତ୍ର ଭର୍ତ୍ତି ହୋଇ ରହିଛି । ଏ ଘରର ତାଜା ଉପରେ କାଗଜ ପେଟି ଭିତରେ ଅଛି ଅନେକ ବହି ଆଉ ପତ୍ରିକା । ଏ ଥାକରେ ସଜା ହୋଇ ରହିଛି ଅନେକ ବହି ଯାହା ତାଙ୍କୁ ଅନେକ ଲେଖକ ଉପହାର ଦେଇଥିଲେ । ଏଇଟା ତାଙ୍କ ପ୍ରିୟ ଟେବୁଲ ଆଉ ଏଇଟା ତାଙ୍କ ପ୍ରିୟ ଚେୟାର ଯାହା ତାଙ୍କୁ ଏତେ ସବୁ ବହି ଲେଖିବାରେ ସହାୟକ ହୋଇଛି ।

ଏ ସବୁକୁ ତୁମ ବାପା ତାଙ୍କ ଜୀବନଠୁ ଅଧିକ ଭଲ ପାଉଥିଲେ । ଏ ସବୁ ଜିନିଷର ସେ ଖୁବ୍ ଯତ୍ନ ନେଉଥିଲେ । କିଛି ଟିକେ ଏପଟ ସେପଟ ହେଲେ କିମ୍ବା ଏଥିରେ କିଏ ଟିକିଏ ହାତ ମାରିଲେ ସିଏ ଖୁବ୍ ମନ ଦୁଃଖ କରୁଥିଲେ ।

ତୁମ ବାପାଙ୍କ ଏସବୁ ଜିନିଷକୁ ଏମିତି ଛାଡି ମୁଁ କେମିତି ତୁମମାନଙ୍କ ସାଙ୍ଗରେ ମୁମ୍ବେଇ କି ଦିଲ୍ଲୀ ଚାଲିଯିବି । ମୁଁ ଗଲାପରେ ଏସବୁ କ'ଣ ହେବ ? କିଏ ଯାର ଯତ୍ନ



Digitized by srujanika@gmail.com

ନେବ ?

ମୁଁ ମୋ ନିଜ ପାଇଁ କିମ୍ବା ଏ ଘରପାଇଁ ଚିନ୍ତିତ ନୁହଁ । ତୁମ ବାପାଙ୍କ ସାହିତ୍ୟ ଓ ତାଙ୍କ ସ୍ମୃତିର ସୁରକ୍ଷା ପାଇଁ କ'ଣ କରାଯିବ ମୁଁ କେବଳ ସେଇକଥା ପାଇଁ ଚିନ୍ତିତ ।

ଅନିକେତ, ଅବିନାଶ, ଅସୀମା ଓ ବର୍ଷାଙ୍କ ପାଖରେ କଥାଟା ଏଥର ପରିଷ୍କାର ହୋଇଗଲା । ଜଣେ ଲେଖକ ତାର ମୃତ୍ୟୁପରେ ତାର ଅନେକ ମୂଲ୍ୟବାନ ପଦାର୍ଥ ଏ ପୃଥିବୀରେ ଛାଡିଯାଇଥାଏ । କିନ୍ତୁ ସେ ସବୁର ଭବିଷ୍ୟତ କ'ଣ ସେ ବିଷୟରେ କିଛି ସୂଚନା ଛାଡି ଯାଇ ନଥାଏ ।

ଅନିମା କହିଲେ- ତୁମ ବାପା ଏମିତି ଆକସ୍ମିକ ଭାବେ ଚାଲିଯିବେ ବୋଲି ମୁଁ ଯଦି ଆଗରୁ ସାମାନ୍ୟ ସୂଚନା ପାଇଥାନ୍ତି, ତା'ହେଲେ ତାଙ୍କୁ ପଚାରି ବୁଝିଥାନ୍ତି ତାଙ୍କ ପରେ ତାଙ୍କର ଏ ବହୁମୂଲ୍ୟ ଜିନିଷ କ'ଣ ହେବ ?

କିନ୍ତୁ ସେତକ ସୁବିଧା ବି ସେ ମୋତେ ଦେଲେ ନାହିଁ । ତୁମେ ସବୁ ତାଙ୍କର ଉତ୍ତରାଧିକାରୀ । ତୁମେ ସବୁ ଏବେ କୁହ, ଏ ସବୁକୁ ମୁଁ କ'ଣ କରିବି ? ତା'ପରେ ମୁଁ ତୁମକୁ ଜଣାଇବି ମୋର ତୁମ ସହିତ ମୁମ୍ବାଇ କିମ୍ବା ଦିଲ୍ଲୀ ଯିବା ନିଷ୍ପତ୍ତି ।

ଅନିମା ଉତ୍ତର ଆଶାରେ ତାଙ୍କ ପୁଅ ଅନିକେତ, ବୋହୂ ଅସୀମା, ଝିଅ ବର୍ଷା ଓ ଜ୍ୱାଇଁ ଅବିନାଶଙ୍କୁ ଚାହିଁଥିଲେ । ଏମିତି ଏକ ଜଟିଳ ପ୍ରଶ୍ନର ଉତ୍ତର ସେମାନଙ୍କ ପାଖରେ ନଥିଲା । ସେମାନେ କେବଳ ପରସ୍ପରକୁ ମୁହଁକୁ ପ୍ରଶ୍ନିଳ ଦୃଷ୍ଟିରେ ଅନାଇଁ ରହିଥିଲେ ।



ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

# ସଂବିତ ବିଚିତ୍ର

ସଂବିତ ଚାକିରିରୁ ଅବସର ଗ୍ରହଣ କରିବା ଦିନ ଭାବି ନେଇଥିଲେ ଯେ ସିଏ ଆଜିଠୁ ସମ୍ପୂର୍ଣ୍ଣ ସ୍ୱାଧୀନ । ସକାଳ ଦଶଟାରେ ତରବର ହୋଇ ଅଫିସ୍ ଯିବା ଦରକାର ନାହିଁ କି ଅଫିସ୍‌ର ଉପରିସ୍ଥ ଅଫିସରଙ୍କ ହାକିମାତି ନାହିଁ । ଏଣିକି ତାଙ୍କୁ କେହି କିଛି କହିବାର, ଆକଟ କରିବାର ନାହିଁ କି ତାଙ୍କ ଉପରେ ହୁକୁମ୍ ଜାରି କରିବାକୁ କେହି ନାହାଁନ୍ତି । ତାଙ୍କ ହାତରେ ଥିବା ଦିନ ରାତି ଚବିଶ ଘଣ୍ଟା ସମୟକୁ ସିଏ ତାଙ୍କ ନିଜ ମନ ଇଛା ଯେମତି ସେମିତି ଖର୍ଚ୍ଚ କରି ପାରିବେ ।

ପୁଅ ସଂକେତ ଓ ଝିଅ ଅଙ୍କିତାଙ୍କର ବିଭାଘର ସରିଯାଇଛି । ପୁଅ ବୋହୂ ମୁମ୍ବାଇରେ ଓ ଝିଅ ଜ୍ୱାଇଁ ଦିଲ୍ଲୀରେ । ଅବସର ଗ୍ରହଣ କରିବାର ଦୁଇ ବର୍ଷ ପୂର୍ବରୁ ସଂବିତ କିଣିଥିବା ପ୍ଲଟରେ ନିଜ ରୁଚି ଅନୁସାରେ ଘର ତିଆରି ସାରି ଦେଇଛନ୍ତି । ଚାକିରିରୁ ଅବସର ନେବାର ଚାରିମାସ ପୂର୍ବରୁ ସରକାରୀ କ୍ୱାଟର ଛାଡ଼ି ସିଏ ସସ୍ତ୍ରୀକ ନିଜ ବାସଭବନରେ ଅବସ୍ଥାନ କରୁଛନ୍ତି ।

ଗାଆଁରେ ମଧ୍ୟ ତାଙ୍କର କିଛି ଦାୟିତ୍ୱ ନାହିଁ । ସଂବିତଙ୍କ ବାପା ବୋଉ ଅନେକ ବର୍ଷ ତଳୁ ସ୍ୱର୍ଗାରୋହଣ କଲେଣି । ଗାଆଁରେ ତାଙ୍କ ବଡ଼ଭାଇ ସୁଜିତ ତାଙ୍କ ପିଲା ପରିବାର ନେଇ ଭଲରେ ଅଛନ୍ତି । ତାଙ୍କୁ କିଛି ଦେବାର ନାହିଁ କି ତାଙ୍କଠୁ କିଛି ପାଇବାର ସେ ଆଶା ରଖି ନାହାଁନ୍ତି ।

ଆଗ,ପଛ, ଉପର,ତଳ,ଗାଆଁ କି ସହର କେଉଁଠି ହେଲେ ସଂବିତଙ୍କ ମୁଣ୍ଡବ୍ୟଥା କଲା ପରି କାମ କିଛି ବାକି ନାହିଁ ।

ସରକାରୀ ଚାକିରିରୁ ଅବସର ନେବା ପରେ ପରେ ଦୁଇ ତିନୋଟି ସଂସ୍ଥାରୁ ଚାକିରି ଅଫର ତାଙ୍କୁ ଆସିଥିଲା । ତାଙ୍କ କାର୍ଯ୍ୟ ଦକ୍ଷତା, ସାଧୁତା, ବିନମ୍ରତା ଓ ଉତ୍ତମ ଲୋକ ସଂପର୍କ ଯୋଗୁ ସେମାନେ ଏକ ରକମ ବାଧ୍ୟ କରିଥିଲେ ଚାକିରି କରିବାକୁ । କିନ୍ତୁ ସଂବିତ ସେମାନଙ୍କୁ ରୋକ୍ ଠୋକ୍ ମନା କରିଦେଲେ ଓ କହିଲେ-ଅବଶିଷ୍ଟ ଜୀବନ ମୁଁ ସ୍ୱାଧୀନ ଭାବେ ବଞ୍ଚିବାକୁ ଚାହେ । ମାସିକ ପେନସନ୍ ଯାହା ମିଳିବ ତାହା ଆମ ଦୁଇ ଜଣଙ୍କର ଦୁଇ ମାସର ଖର୍ଚ୍ଚ ତୁଲାଇ ପାରିବ । ମୋର ଅଧିକ ରୋଜଗାର କରିବାର ଇଛା ନାହିଁ କି ଆଗ୍ରହ ନାହିଁ । ବରଂ ସମୟ,ସୁବିଧା ଓ ସୁଯୋଗ ପାଇଲେ କିଛି ସମାଜ ସେବା

ଆନଂଦ ଚଂଦ୍ର ପତି

Digitized by srujanika@gmail.com

କରିବାକୁ ଅଭିଳାଷ ରଖିଛି । ତାଛଡ଼ା ଆଦୌ ଚାକିରି ନପାଇ ଆମ ଦେଶରେ ଅନେକ ଯୁବକ,ଯୁବତୀ ବେକାର ହୋଇ ବୁଲୁଥିବା ବେଳେ ମୁଁ ତେତିଶ ବର୍ଷ ଚାକିରି କରିସାରି ପୁଣି ଚାକିରି କରିବା ଉଚିତ ହେବ ନାହିଁ ।

ସଂବିତ ଏବେ ମୁକ୍ତ ଆକାଶର ବିହଙ୍ଗମ । ଆଜି ତାଙ୍କ ହାତରେ ପ୍ରଚୁର ସମୟ । ସକାଳ ପାଞ୍ଚଟାରେ ଶଯ୍ୟା ତ୍ୟାଗ କଲା ପରେ ନିତ୍ୟକର୍ମ ସାରି ସେ ଚାଲିଗଲେ ପ୍ରଭାତ ଭ୍ରମଣରେ । ଖବରକାଗଜ ପଢ଼ା ଓ ଚା'ପିଆ ସରିଗଲା ସକାଳ ଆଠଟା ସୁଦ୍ଧା । ଦିନ ଆଠଟାରୁ ରାତି ଏଗାରଟା ଏଇ ପନ୍ଦର ଘଣ୍ଟାର ଦୀର୍ଘ ସମୟ ତାଙ୍କ ହାତରେ ଗଚ୍ଛିତ ।ଏଇ ସମୟକୁ ନିଜ ଇଚ୍ଛା ଅନୁସାରେ ସିଏ ଖର୍ଚ୍ଚ କରିବେ ।

ଖବର କାଗଜ ପଢ଼ା ସରୁ ସରୁ ସେ ସ୍ତ୍ରୀ ସୁଚିତ୍ରାଙ୍କୁ ଡାକ ପକାଇଲେ । ଗୋଟିଏ ପ୍ଲେଟରେ ଉପମା ଓ କିଛି ଟମାଟୋ ସସ୍ ଧରି ସୁଚିତ୍ରା ପହଞ୍ଚିଲେ ।ସଂବିତ କହିଲେ-ସୁଚିତ୍ରା !ତୁମେ ଏଇଠି ବସ । ତୁମକୁ ମୋର କିଛି କହିବାର ଅଛି ।

ସୁଚିତ୍ରା ହସି ହସି ଉତ୍ତର ଦେଲେ-ଆଜିଠୁ ତ ତୁମର ଆଉ ଅଫିସ୍ ଯିବାର ନାହିଁ, ଦିନଟା ଯାକ ପଡ଼ିଚି, କହିବାକୁ ଏତେ ତରବର କାହିଁକି ? ତମର ସିନା କିଛି କାମ ନାହିଁ,ହେଲେ ମୋର କାମର ପରିମାଣ ଆଜିଠୁ ଅଧିକ ହେବ ।

ସଂବିତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ-ତୁମର କାହିଁକି ଆଜିଠୁ କାମ ଅଧିକ ହେବ ? ମତେ କ'ଣ ତୁମେ କାଖେଇବ ନା ମୁଣ୍ଡେଇବ ? ବରଂ ମୁଁ ଘରେ ରହିବା ଦ୍ୱାରା ତୁମର କାମ କିଛିଟା କମି ଯିବ ,କାରଣ ଆଉ ତରବର ହୋଇ ସକାଳ ସାଢ଼େ ନଅଟା ସୁଦ୍ଧା ତୁମକୁ ରୋଷେଇ କରିବାକୁ ପଡ଼ିବ ନାହିଁ । ଏଣିକି ତୁମ କାମ ତୁମେ ଲିଳର୍‌ଲି କରିବ ।

ସୁଚିତ୍ରା କହିଲେ-ସକାଳ ସାଢ଼େ ନଅଟା ସୁଦ୍ଧା ରୋଷେଇ କରି ତୁମକୁ ଦଶଟା ବେଳକୁ ଅପିସ୍ ପଠେଇ ଦେବା ପରେ ମୋର ଝମେଲା ତୁଟି ଯାଉଥିଲା । ଅନ୍ତତଃ ଦିନ ଦଶଟାରୁ ସଂଧ୍ୟା ଛଅଟା, ସାତଟା ପର୍ଯ୍ୟନ୍ତ ତୁମେ ଅଫିସ୍‌ରେ ରହୁଥିଲ । ସେତକ ସମୟ ମୋତେ ତୁମର ଦାୟିତ୍ୱ ନେବାକୁ ପଡୁ ନଥିଲା । ଏବେ ତୁମେ ଚବିଶ ଘଣ୍ଟା ଘରେ ରହିବ । ଦିନ ସାରା ତୁମର ଦୁନିଆ ଯାକର ଫର୍ମାସି ବାହାରିବ,ସେ ସବୁ ମୋତେ ପୂରଣ କରିବାକୁ ପଡ଼ିବ ।

-ଫର୍ମାସି କ'ଣ ? ଏ ବୟସରେ ଆଉ ମୁଁ କି ଫର୍ମାସି କରିବି ? ତୁମେ ଆଉ କ'ଣ ନବବଧୂ ସୁଚିତ୍ରା ହୋଇଛ ଯେ କହିବି ପାଦରେ ଘୁଙ୍ଗୁର ପିନ୍ଧି ନାଚକର, ନହେଲେ



Digitized by srujanika@gmail.com

ହାରମୋନିୟମ ଧରି ଗୀତ ଗାଅ, କି ମୋ ଦେହକୁ ଲାଗି ବସ, ପ୍ରେମ ଗପ କରିବା ?

ସୁଚିତ୍ରା ହସି ହସି ଉତ୍ତର ଦେଲେ-ସେ ବୟସ ଏବେ ମୋର ନାହିଁ କି ତୁମର ନାହିଁ । ତଥାପି ତୁମେ ଘରେ ରହିଲେ ଥରକୁ ଥର ଚା'ବରାଦ କରିବ, ଅଧିକ ଥରଟେ ଜଳଖିଆ ମାଗିବ,ମଝିରେ ମଝିରେ ପାଣି ମାଗିବ । ଆଉ ସମୟ ସମୟରେ ତୁମ ସାଙ୍ଗ ସାଥି ଆସିବେ,ସେମାନଙ୍କ ପାଇଁ ଚା'ଜଳଖିଆର ବ୍ୟବସ୍ଥା କରିବାକୁ ପଡ଼ିବ ।

ସଂବିତ ଠୋ,ଠୋ ହୋଇ ହସିଲେ ଓ କହିଲେ-ଠିକ୍ ଅଛି । ମୁଁ ତୁମକୁ ଏସବୁ କାମ କରିବାକୁ କହିବି ନାହିଁ । ତମେ ଭାବିଚ ମୁଁ ହାତ ଗୋଡ଼ ଟେକି ଅଳସୁଆ ପରି ଘରେ ବସି ରହିବି ? ମୁଁ କିଛି ନା କିଛି କାମ ନିଶ୍ଚୟ କରିବି । ଆଜିଠୁ ତୁମେ ଆଉ ଚା' ତିଆରି କରିବ ନାହିଁ, ମୁଁ କରିକି ନିଜେ ପିଇବି ଆଉ ତୁମକୁ ପିଆଇବି ।

ସୁଚିତ୍ରା ସଂବିତଙ୍କ କଥାକୁ ହସରେ ଉଡ଼ାଇ ଦେଇ କହିଲେ-ମୁଁ କ'ଣ ତୁମକୁ ଆଜି ନୂଆ ଦେଖୁଛି ? ତୁମ ସହିତ ଚଳିବା ମୋର ଆଜିକି ତିରିଶ ବର୍ଷ ହୋଇ ଗଲାଣି ।ଚା' ଜଳଖିଆ ତିଆରି କରିବାତ ବହୁତ ବଡ଼ କଥା ତୁମେ ନିଜେ ଫିଲ୍ଟରରୁ ପାଣି ଗ୍ଲାସଟେ ଆଣି କେବେ ପିଇଛ କି ? ହଉ, ସେକଥା ଛାଡ଼ । କି' କଥା କହିବାକୁ ଡାକିଥିଲ କୁହ ।

-ନାଇଁ, ନୂଆ କଥା କିଛି ନୁହଁ । ଆଜିଠୁ ମୋ କାମ ମୁଁ ନିଜେ କରିବି । ତାହେଲେ ତୁମ କାମ କିଛିଟା ହାଲୁକା ହେବ ।

-କି କାମ ତୁମେ କରିବ ?

ସଂବିତ କଛି ଚିନ୍ତା କରି କହିଲେ-ଏଇ ଯେମିତି ମୁଁ ସକାଳୁ ଉଠିବା ପରେ ନିଜ ବିଛଣାପତ୍ର ଝଡ଼ାଝଡ଼ି, ଭଙ୍ଗା ଭଙ୍ଗି କରି ରଖିବି । ମୋ ପୋଷାକ ମୁଁ ନିଜେ ୱାସିଙ୍ଗ ମେସିନ୍‌ରେ ସଫା କରି ଆଇରନ୍ କରିବି । ସକାଳୁ ତୁମେ ଠାକୁରଙ୍କ ପାଇଁ ଫୁଲ ତୋଳୁଛ, ସେ କାମଟା ମୁଁ କରିବି । ଠାକୁରଙ୍କ ଆସ୍ଥାନ ସଫା କରି ଫୁଲ ସଜାଇ ଦେବି । ଆମ ଘର ଆଗରେ ଥିବା ଫୁଲ ଗଛ ଖୁସେଇବା,ଘାସ ବାଛିବା ଓ ଫୁଲ ଗଛରେ ସକାଳେ ଓ ସଂଧ୍ୟାରେ ପାଣି ଦେବା କାମ ମୁଁ କରିବି ।

ସୁଚିତ୍ରା ହସିହସି କହିଲେ-ତୁମେ ପୁଣି ଏତେ ସବୁ କାମ କରିବ ? ଅସମ୍ଭବ କଥା । କଥା କହିଦେବା ଯେତେ ସହଜ ତାକୁ କାମରେ କରିବା ସେତେ ସହଜ ନୁହଁ । ତୁମେ ଆଜି ଯାଏ ଯେଉଁକାମ କରିନ ଏ ବୟସରେ ସେକାମ କରିବ ?ଯଦି ବିନା କାମରେ ବସି ରହିଲେ ତୁମକୁ ବୋର୍ ଲାଗିବ ବୋଲି ଭାବୁଛ ତାହେଲେ ଯେଉଁ ଦୁଇ ତିନିଟା ଚାକିରିର ଅଫର୍ ଆସିଥିଲା ସେଥିରୁ ଗୋଟାକରେ ଜଏନ୍ କରି ଯାଅ । ସମୟ



Digitized by srujanika@gmail.com

ସୁରୁ ଖୁରୁରେ କଟିବ ।

ସଂବିତ ଦୃଢ଼ ଭାବରେ ମନା କଲେ । ତାଙ୍କର ସ୍ୱାଧୀନ ଓ ମୁକ୍ତ ଜୀବନ ଦରକାର । ସୁଚିତ୍ରା ତାଙ୍କ ଫଇସଲା ଶୁଣାଇ ଦେଲେ-ତୁମେ ଏତେ ଦିନ ଖଟିଲ , ଏବେ ଆଉ କିଛି କାମ କରିବା ଦରକାର ନାହିଁ । ତୁମେ ଚୁପ୍ ଚାପ୍ ଘରେ ବସ, ଖବରକାଗଜ ପଢ଼, ଟିଭି ଦେଖ, ସାଙ୍ଗସାଥିଙ୍କ ସହିତ ଗପକର,ଖାଅ,ପିଅ,ଶୁଅ ।

କିନ୍ତୁ  କିଛି କାମ ନକରି ଘରେ ବସି ରହିବାରୁ ମାତ୍ର ପନ୍ଦର ଦିନ ଭିତରେ ସଂବିତଙ୍କୁ ବିରକ୍ତ ଲାଗିଲା । ଖବରକାଗଜ ପଢ଼ା, ବହି ପଢ଼ା, ଟିଭିଦେଖାରେ ଗୋଟେ ସୀମା ଅଛି । ମାତ୍ରାଧିକ ହେବାରୁ ତାହା ଆନନ୍ଦ ଦେବା ପରିବର୍ତ୍ତେ ତାଙ୍କ ମନ ଓ ମୁଣ୍ଡକୁ ଭାରାକ୍ରାନ୍ତ କଲା ।

କିଛି ନକରିବା ସ୍ୱାଧୀନତା ନୁହଁ, ପରାଧୀନତା । ନିଜକୁ ନିଜ ଭିତରେ ବାନ୍ଧି ରଖିବା ଯାହା କିଛି ନକରି ଚୁପ୍ ଚାପ୍ ବସି ରହିବା ସେଇଆ ।

ପ୍ରତିଦିନ ସୁଚିତ୍ରା ଗାଧୋଇ ସାରି ଠାକୁର ପୂଜା କରିବା ପାଇଁ ପ୍ରାୟ ଗୋଟିଏ ଘଣ୍ଟା ସମୟ ନିଅନ୍ତି । ସିଏ ସେଇ ଘଣ୍ଟାକ ଭିତରେ ଠାକୁରଙ୍କ ଆସ୍ଥାନ ସଫା,ଠାକୁରଙ୍କ ପାଖରେ ବିଭିନ୍ନ ଡିଜାଇନର ଫୁଲସଜା,ଚନ୍ଦନ ଘୋରା,ଘିଅଦୀପ ଲଗା କାମ ସାରି ଗୀତା ପାଠ କରନ୍ତି । ପ୍ରତିଦିନ ସକାଳ ଦଶଟାରୁ ଏଗାରଟା ସୁଚିତ୍ରା ଠାକୁରଘରେ କଟାନ୍ତି । ସଂବିତ ସ୍ଥିର କଲେ ସୁଚିତ୍ରାଙ୍କ ବାରଣ ନମାନି ଏଇ ସମୟ ଭିତରେ ସିଏ କିଛି ଘରକାମ କରିବେ ।

ଦିନେ ସୁଚିତ୍ରା ଠାକୁରଘରେ ପଶିବା ପରେ ପରେ ସଂବିତ ରୋଷେଇ ଘରେ ପଶିଲେ । ଗ୍ୟାସ୍‌ଚୁଲା ଲଗାଇ ଭାତ ରାନ୍ଧିବା ପାଇଁ ପାଣି ଡେକ୍‌ଚି ବସାଇଲେ । କିନ୍ତୁ କେତେ ଚାଉଳ ରନ୍ଧାଯିବ ସିଏ ଏକ ସମସ୍ୟା । ସୁଚିତ୍ରାଙ୍କୁ ଏକଥା ପଚାରିଲେ କଥା ସରିଯିବ । ସିଏ ରୋଷେଇ କରିବାର ସୁଯୋଗ ଦେବେ ନାହିଁ । ନିଜ ଅନୁମାନ ମୁତାବକ କିଛି ଚାଉଳ ଧୋଇଧାଇ ଡେକ୍‌ଚିରେ ପକାଇ ଦେଲେ । ଏଥର ଡାଲମା ରାନ୍ଧିବା ପାଇଁ ଆଉ ଗୋଟେ ଡେକ୍‌ଚିରେ ପାଣି ନେଇ ସେଥିରେ କିଛି ଡାଲି ପକାଇ ଦେଲେ । ଫ୍ରିଜ ଖୋଲି ପ୍ରତ୍ୟେକ ପ୍ରକାର ପରିବାରୁ କିଛି କିଛି କାଟି ସେଥିରେ ପକାଇ ଦେଲେ ଓ ଅନୁମାନ କରି ଲୁଣ, ହଳଦି ପକାଇ ଦେଲେ ।

ସଂବିତ ମନେ ମନେ କହିଲେ-ରୋଷେଇ କରିବା ସେତେ ବଡ଼ କାରିଗରୀ କାମ ନୁହଁ ଯେତେ ବଡ଼କରି ସୁଚିତ୍ରା ପରି ସବୁ ସ୍ତ୍ରୀ ଲୋକମାନେ ତାଙ୍କ ସ୍ୱାମୀମାନଙ୍କୁ



Digitized by srujanika@gmail.com

କୁହନ୍ତି । ସୁଚିତ୍ରା ଠାକୁର ପୂଜା କରି ସାରି ଆସିବା ପରେ ମୁଁ ତାଙ୍କୁ ଆଜି ସରପ୍ରାଇଜ୍ ଦେବି । ସିଏ ଆସି ଦେଖିବେ ଯେ ରୋଷେଇର ଦୁଇଟା ମେଜର ଆଇଟମ୍ ଭାତ ଆଉ ଡାଲମା ତିଆରି ସରିଚି ।

ହଠାତ୍ ସୁଚିତ୍ରା ଠାକୁରଘରୁ ବାହାରି ଆସି ରୋଷେଇଘର ଆଗରେ ଠିଆ ହୋଇ ପାଟିକଲେ-ଗଲା ଗଲା ଭାତ ଡାଲମା ଦୁଇଟା ଯାକ ଉତୁରିକି ଗ୍ୟାସ୍‌ଚୁଲାରେ ପଶିଲା । ଆରେ ଠିଆ ହୋଇ ଅନେଇଚ କ'ଣ ? ଗ୍ୟାସଚୁଲାର ନବ୍ ଦୁଇଟାକୁ ସିମ୍‌କୁ ନେଇଆସ । ତମକୁ କିଏ କହୁଥିଲା ଏସବୁ କାଣ୍ଡ କରିବାକୁ ? କାମକୁ ତିନି କାମ ଲଗାଇବ ।

ସଂବିତ ତରବର ହୋଇ ଗ୍ୟାସଚୁଲାର ନବ୍ ଦୁଇଟାକୁ ମୋଡ଼ି ସିମ୍‌ରେ ରଖିଦେଲେ । ଭୁଲ୍ କରିଥିବା ଛାତ୍ରଟିଏ ପରି କହିଲେ-ମୁଁ ଭାବିଲି ତୁମେ ଠାକୁର ପୂଜା ସାରି ଆସିବା ଭିତରେ ମୁଁ ଭାତ ଡାଲମା ଦୁଇଟା ରାନ୍ଧିଦେଇଥିବି ।

ସୁଚିତ୍ରା ଠାକୁର ପୂଜା ସାରି ନଥିବାରୁ ରୋଷେଇ ଘରେ ନପଶି ଖଣ୍ଡେ ଦୂରରେ ଠିଆ ହୋଇ କହିଲେ-ସେ କ୍ଷୀର ଡେକ୍‌ଚି ଧରା କନା ଆଣି ତମେ ଭାତ ହାଣ୍ଡି ଧରିଚ । ଭାତ ହାଣ୍ଡିଧରିବା ପାଇଁ ଅଲଗା କନା ଅଛି । ଭାତ ହାଣ୍ଡିରେ ଦିଇ ଗୁଣ ଚାଉଳ ପଡ଼ିଥିବା ପରି ଲାଗୁଛି । ଏତେ ଛୋଟ ଡେକ୍‌ଚିରେ ଏତେ ଚାଉଳ ରାନ୍ଧି ହେବ ନାହିଁ । ଭାତ ରନ୍ଧା ଡେକ୍‌ଚିରେ ଡାଲମା ବସାଇଛ, କ୍ଷୀର ଡେକ୍‌ଚିଟାରେ ଭାତ ବସାଇଛ । ଡାଲମାରେ ତୁମେ ବୋଧହୁଏ ସବୁ ପ୍ରକାର ପରିବା କାଟିକି ପକାଇ ଦେଇଚ ? ପରିବା ଚୋପାରୁ ଜଣା ପଡୁଛି ପୋଇ ଆଉ କଲରା ମଧ୍ୟ ଡାଲମାରେ ପଡ଼ିଛି । ଏ ସବୁ ପରିବା କ'ଣ ଡାଲମାରେ ପଡ଼େ ? ଆଛା, ଡାଲମାରେ ଆରମ୍ଭରୁ ଟମାଟୋ କାଟିକି ପକାଇ ଦେଇଛ ?ପରିବା କି ଡାଲି କିଛି ସିଝିବ ନାହିଁ ।

ସୁଚିତ୍ରା ବିରକ୍ତ ହୋଇ ଅବଶିଷ୍ଟ ଥିବା ଠାକୁର ପୂଜା କରିବାକୁ ଠାକୁରଘରକୁ ଫେରିଗଲେ । ସଂବିତ ରୋଷେଇ ଘରେ ଦୋଷୀଟିଏ ପରି ଠିଆ ହୋଇ ଦେଖୁଥିଲେ ସିଏ ଆଉ କ'ଣ ଭୁଲ୍ କରିଛନ୍ତି ଯାହା ଏପର୍ଯ୍ୟନ୍ତ ସୁଚିତ୍ରାଙ୍କ ନଜରରେ ପଡ଼ି ନାହିଁ । ଦୁଇଟା ଲୁଣ ପ୍ୟାକେଟ୍ ଖୋଲା ଅଛି , ସେଥିରୁ ବୋଧହୁଏ ଗୋଟେ ଆମିଷ ଓ ଅନ୍ୟଟି ନିରାମିଷ । ତେବେ ସେ କେଉଁ ପ୍ୟାକେଟ୍‌ରୁ ଲୁଣ ଆଣିଛନ୍ତି ତାହା ତାଙ୍କର ଏବେ ମନେ ପଡୁନାହିଁ । ଉଷୁନା ଚାଉଳ ଟିଣ ଭିତରେ ସିଏ ଯେଉଁ ଚାଉଳ ମପା ଡବାଟା ପୂରାଇ ଛନ୍ତି ସେଟା ଉଷୁନା ଚାଉଳ ପାଇଁ ଉଦ୍ଦିଷ୍ଟ ନା ଅରୁଆ ପାଇଁ ?

ସଂବିତଙ୍କ ମୁଣ୍ଡ ଗୋଳମାଳ ଧରିଲା । ସିଏ ରୋଷେଇଘର ବାହାରକୁ ଚାଲି



Digitized by srujanika@gmail.com

ଆସିଲେ ଓ ଡ୍ରଇଁରୁମ୍‌ରେ ବସି ଗପ ବହିଟିଏ ଧରି ପଢ଼ିବାରେ ଲାଗିଲେ ।

ସୁଚିତ୍ରା ଠାକୁରଘରୁ ଆସି ସିଧା ପଶିଲେ ରୋଷେଇ ଘରେ । ଗ୍ୟାସଚୁଲା ବନ୍ଦ୍ କରିଦେଇ ଡେକ୍‌ଚି ଦୁଇଟା ତଳକୁ ଓହ୍ଲାଇ ଆଣିଲେ ଓ ଏପଟ ସେପଟ କରି ଦେଖି କହିଲେ- ନା, ଦୁଇଟା ଯାକ କିଛି କାମରେ ଲାଗିବ ନାହିଁ । ଯେତେ ପରିମାଣର ଚାଉଳ ପଡ଼ିଛି ଏ ଛୋଟ ଡେକ୍‌ଚିରେ ତାହା ଭଲରେ ଫୁଟିବ ନାହିଁ । ଡାଲମାରେ କଲରା ପଡ଼ିଚି ସବୁ ପିତା ହୋଇ ଯାଇଥିବ ।

ସୁଚିତ୍ରା ଭାତ ଡେକ୍‌ଚିରୁ ଦରଫୁଟା ଭାତରୁ ଅଧା ଭାତ ଅନ୍ୟ ଗୋଟିଏ ପାତ୍ରରେ କାଢ଼ି ରଖିଲେ । ସେତକ ବୁଲା ଗାଈଙ୍କୁ ଦିଆ ଯିବ । ଡାଲମା ଡେକ୍‌ଚିଟା ସିଧା ନେଇ ବାହାରେ ଢାଳି ଦେଲେ । ଗ୍ୟାସ୍‌ଚୁଲା,ରୋଷେଇ ଘର ପିଣ୍ଡି ଓ ଡେକ୍‌ଚିଧରା କନା ଧୋଇ ସଫାକଲେ ଓ ତାପରେ ନୂଆ କରି ରୋଷେଇ ବସାଇଲେ । ସେ ଦିନ ଲଞ୍ଚ ଖିଆଗଲା ଅପରାହ୍ନ ସାଢ଼େ ତିନିଟାରେ ।

ରାତିରେ ରୁଟି ପାଇଁ ଅଟା ଦଳିବାକୁ ଜିଦ୍‌କଲେ ସଂବିତ । ସୁଚିତ୍ରା ମନାକଲେ । ତଥାପି ସଂବିତ ମାନିବାକୁ ନାରାଜ । ସିଏ ସୁଚିତ୍ରାଙ୍କୁ ବୁଝାଇଲେ-ଗୋଟେ ଦିନ ଭୁଲ୍ ହୋଇଗଲା । ସେଥିରୁ ମଧ୍ୟ ମୁଁ କିଛି ଶିଖିଲି । ତିନି ଚାରି ଦିନ ତୁମେ ମୋ ପାଖରେ ଠିଆ ହୋଇ ଭାତ, ଡାଲମା ଓ ରୁଟି ତିଆରି ପରି ନିହାତି ମିନିମମ୍ ରୋଷେଇ ଶିଖାଇ ଦିଅ । ଧୀରେ ଧୀରେ ମୁଁ ଶିଖିଯିବି । ତୁମର କାମ ଲାଘବ ହେବ । ମୋର ମଧ୍ୟ ସମୟ କଟିବ ।

ସୁଚିତ୍ରାଙ୍କର ଗୋଟିଏ କଥା-ତୁମ ଦ୍ୱାରା ଏ ସବୁ କାମ ହେବ ନାହିଁ । ତୁମେ ଅଯଥା ଜିଦ୍ କରନା ।

ସୁଚିତ୍ରାଙ୍କ କଥା ନଶୁଣି ସଂବିତ ନିଜେ ଅନୁମାନ କରି କିଛି ଅଟା ଗୋଟେ ପାତ୍ରରେ ନେଇ ସେଥିରେ ପାଣି ଢାଳି ଦଳିବାରେ ଲାଗିଲେ ।

ସୁଚିତ୍ରା ବିରକ୍ତ ହେଲେ-ପିଲାଙ୍କ ପରି ତୁମେ ଏତେ ଜିଦ୍‌ଖୋର୍ କାହିଁକି ହେଉଛ ? ଏତେ ଅଟା ନେଇଛ,ଯାକୁ ଦୁଇଜଣ ନୁହଁ, ଆମ ପରି ଚାରି ଜଣ ଖାଇବେ । ପୁଣି ଏତେ ପାଣି ଢାଳି ଦେଇଛ, ଇଏ କେମିତି ରୁଟିହେବ ? ଲୁଣ ଏତେ ପକାଇ ଦେଇଛ ଯେ ପିତା ଲାଗୁଛି ।

ସୁଚିତ୍ରା ସେ ଅଟାକୁ ବହାରକୁ ଫିଙ୍ଗିଦେଲେ । ଖାଦ୍ୟ ପଦାର୍ଥକୁ ଏମିତି ଫିଙ୍ଗି ଦେବା ଠିକ୍ ହେଲା ନାହିଁ ବୋଲି ସଂବିତ ଯୁକ୍ତି କଲେ । କିନ୍ତୁ ସୁଚିତ୍ରା ତାଙ୍କ କଥାକୁ ଆଦୌ ଧ୍ୟାନ ନଦେଇ ଆଉ ଅଟା ଆଣି ରୁଟି ତିଆରି କଲେ ।

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ସକାଳେ କାମବାଲୀ ଆସି ଘର ଓଳାଇ ବାସନ ମାଜିଲା, ଘର ପୋଛିଲା । ତା'କାମ ତଦାରଖ କରିବାରେ ବ୍ୟସ୍ତ ରହିଲେ ସୁଚିତ୍ରା । ସଂବିତ ମର୍ଣ୍ଣିଙ୍ଗ ୱାକରେ ବାହାରି ଯିବା ପୂର୍ବରୁ ନିଜର ଦୁଇଟି ପ୍ୟାଣ୍ଟ , ଦୁଇଟି ସାର୍ଟ ଓ ତିନୋଟି ଗଞ୍ଜି ୱାସିଙ୍ଗ ମେସିନରେ ପକାଇ ଦେଇ ଗଲେ । ମର୍ଣ୍ଣିଙ୍ଗୱାକରୁ ଫେରି ସେ ସବୁକୁ ସଫା କରି ଛାତ ଉପରେ ଶୁଖାଇ ଦେଲେ । ଶୁଖୁଥିବା ପ୍ୟାଣ୍ଟ,ସାର୍ଟ ଓ ଗଞ୍ଜି ସୁଚିତ୍ରାଙ୍କ ନଜରରେ ପଡ଼ିଗଲା । ସିଏ ସଙ୍ଗେ ସଙ୍ଗେ ସେ ସବୁ ପୋଷାକ ତୋଳିଆଣି ପୁଣି ୱାସିଙ୍ଗ ମେସିନ୍‌ରେ ପକାଇ ଦେଲେ । ସଂବିତ ତାଙ୍କୁ ଏ କାମରେ ବାଧା ଦେବାରୁ ସୁଚିତ୍ରା କହିଲେ-ସାର୍ଟର କାଲର,କାଖ ଓ ପ୍ୟାଣ୍ଟ ଦୁଇଟାର  ତଳ ମହୁରିରେ ଏତେ ମଇଳା ଲାଗିଛି, ତମେ କେମିତି ସଫା କରିଛ ?

ସଂବିତ ମନେ ମନେ ବିରକ୍ତ ହେଲେ-ସରକାରୀ ଚାକିରି କଲାବେଳେ ସିଏ ଯାଠୁ ଅଧିକ ସ୍ୱାଧୀନ ଥିଲେ । ନିଜ ଇଛା ଅନୁସାରେ ସବୁ କାମ କରୁଥିଲେ । ନିଜ ଇଛା ମୁତାବକ ସିଏ ଫାଇଲ୍ ପୁଟ୍ ଅପ୍ କରୁଥିଲେ ଓ ନିଜର ସ୍ୱାଧୀନ ମତାମତ ଦେଉଥିଲେ । ତାଙ୍କ କାମ ଓ ମତାମତର ବେଶ୍ ଗୁରୁତ୍ୱ ମଧ୍ୟଥିଲା । ତାଙ୍କ ବିଭାଗର ଶାସନ ମୁଖ୍ୟ କହିଲେ ମଧ୍ୟ ସଂବିତ ତାଙ୍କ ଫାଇଲର ନୋଟ୍ ସେ କେବେ ବଦଳାଉ ନଥିଲେ । ତାଙ୍କ ପ୍ରସ୍ତାବ ଅକାଟ୍ୟ ଥିଲା । ତାଙ୍କରି ପ୍ରସ୍ତାବ ହିଁ ଶେଷରେ ଗୃହିତ  ହେଉଥିଲା ଓ କାର୍ଯ୍ୟକାରି ହେଉଥିଲା । କିନ୍ତୁ ନିଜ ଘରେ ସିଏ କିଛି ହେଲେ କରିବାକୁ ସ୍ୱାଧୀନ ନୁହଁନ୍ତି । ତାଙ୍କୁ ଲାଗୁଥିଲା ତାଙ୍କ ବେକରେ ଯେମିତି ଗୋଟେ ଅଦୃଶ୍ୟ ପଘାର ବନ୍ଧନ ରହିଛି ଓ ସେ ପଘାର ଶେଷ ମୁଣ୍ଡଟି ସୁଚିତ୍ରା ତାଙ୍କ ନିଜ ହାତରେ ଧରି ତାଙ୍କୁ ନିୟନ୍ତ୍ରଣ କରୁଛନ୍ତି ।

ମଧ୍ୟାହ୍ନ ଭୋଜନ ପରେ ଗେଟ୍ ଖୋଲି ପଦାକୁ ବାହାରିଲେ ସଂବିତ । ପଛରୁ ଡାକ ପକାଇଲେ ସୁଚିତ୍ରା-ଖାଇ ପିଇ ଖରା ବେଳଟାରେ ଟିକେ ବିଶ୍ରାମ ନନେଇ ତୁମେ କୁଆଡ଼େ  ବାହାରିଲ ?

ସଂବିତ ବିରକ୍ତ ହୋଇ କହିଲେ-ଦିନଟାରେ ଶୋଇଲେ ରାତିରେ ନିଦ ହେବ ନାହିଁ । ମୁଁ ଏଇ ପାଖ ବସ୍ତି ଆଡ଼େ ଟିକେ ବୁଲା ବୁଲି କରି ସଂଧ୍ୟା ପୂର୍ବରୁ ଫେରି ଆସିବି ।

ସୁଚିତ୍ରାଙ୍କର କୌଣସି ଆକଟ ନମାନି ବସ୍ତି ଆଡ଼କୁ ଆଗେଇଲେ ସଂବିତ । ତାଙ୍କ ଘରଠୁ ପ୍ରାୟ ଦୁଇ ଶହ ମିଟର ଦୂରରେ ବସ୍ତିଟା । ବସ୍ତି ଦାଣ୍ଡରେ କିଛି ପିଲା ଖେଳୁ ଥିଲେ । ସଂବିତ ପାଖ ଦୋକାନରୁ କିଛି ଚକଲେଟ୍ କିଣି ପିଲାମାନଙ୍କ ମଧ୍ୟରେ ବାଣ୍ଟି ଦେଲେ । ପିଲାମାନେ ଆନନ୍ଦରେ ଚକଲେଟ୍ ଖାଇବା ବେଳେ ସେମାନଙ୍କୁ ଜଣ ଜଣକି ପାଖକୁ ଡାକି ତାଙ୍କ ନାଆଁ ଓ ବାପା ନାଆଁ ପଚାରିଲେ । ସଂବିତ ନିଜ ପକେଟରୁ



Digitized by srujanika@gmail.com

କାଗଜ,କଲମ ବାହାର କରି କହିଲେ-ତୁମ ଭିତରୁ ନିଜ ନାଆଁ କିଏ ଲେଖି ପାରିବ ? ଯିଏ ଏ କାଗଜରେ ଠିକ୍ ଭାବେ ନିଜ ନାଆଁ ଲେଖି ପାରିବ ତାକୁ ଆଉ ଦୁଇଟା ଚକଲେଟ୍ ଦେବି ।

କିନ୍ତୁ କେହି ଜଣେ ହେଲେ ପିଲା ତା'ନାଆଁ ଲେଖିବାକୁ ସମର୍ଥ ହେଲା ନାହିଁ । ବରଂ କାଗଜ କଲମ ଦେଖି ଓ ଲେଖା ପଢ଼ା କଥା ଶୁଣି ସେମାନେ କିଏ କୁଆଡ଼େ ପଳାଇ ଗଲେ ।

ସେ ବସ୍ତିର କିଛି ଲୋକ ସଂବିତଙ୍କୁ କହିଲେ-ଏମାନେ କେହି ପାଠ ପଢ଼ି ନାହାଁନ୍ତି କି ଅକ୍ଷର ଚିହ୍ନି ନାହାଁନ୍ତି । ଏମାନଙ୍କୁ ବହିଖାତା ଯୋଗାଇ,ଦରମା ଦେଇ ପାଠ ପଢ଼ାଇବାକୁ ଏମାନଙ୍କ ବାପା ମାଆ ସମର୍ଥ ନୁହଁନ୍ତି ।

ସେ ପିଲାମାନଙ୍କୁ ବହି,ଖାତା ,ସ୍ଲେଟ୍,ଖଡ଼ି ଯୋଗାଇ ନିଜେ ତାଙ୍କୁ ପାଠ ପଢ଼ାଇ ସାକ୍ଷର କରିବାକୁ ସଂବିତ ପ୍ରସ୍ତାବ ଦେଲେ । ବସ୍ତିର ମୁଖିଆ ଲୋକମାନଙ୍କୁ ଡ଼ାକି ସେମାନଙ୍କ ସହିତ କଥାବାର୍ତ୍ତା କଲେ । ବସ୍ତିର କ୍ଲବଘରେ ପାଠପଢ଼ା ଯିବା କଥା ସ୍ଥିର ହେଲା ।

ସେ ଦିନ ସଂବିତ ଘରେ ପହଞ୍ଚିଲା ବେଳକୁ ରାତି ହୋଇଯାଇ ଥିଲା । ସୁଚିତ୍ରା ଗର୍ଜ୍ଜନ କଲେ-ତୁମର କ'ଣ ଆଉ ବଳ,ବୟସ ଆସୁଛିଯେ ତୁମେ ଯାଇ ସେ ବସ୍ତିର ପିଲାଙ୍କୁ ପାଠ ପଢ଼େଇବ ? ପୁଣି ନିଜ ହାତରୁ ଟଙ୍କା ଖର୍ଚ୍ଚକରି ସେମାନଙ୍କୁ ପାଠ ପଢ଼ାଇବ ?ଏଇ ଘର ଭିତରେ ଯାହା କରୁଛ କର । ସେ ବସ୍ତିକୁ ଯିବା ଆମର ଦରକାର ନାହିଁ । କାଲିଠୁ ମୁଁ ଗେଟ୍‌ରେ ତାଲା ପକାଇ ଦେବି । ତୁମେ କ'ଣ ଏକୁଟିଆ ରିଟାୟାର କରିଛ ? ତୁମ ସାଙ୍ଗମାନେ ଯାହା କରୁଛନ୍ତି ସେଇୟା କରୁନା ? ଏମିତି ଗାନ୍ଧୀ, ଗୋପବନ୍ଧୁ ହେବା କ'ଣ ଦରକାର ? ତୁମେ ଭବିଷ୍ୟତରେ କ'ଣ କର୍‌ପୋରେଟର ନା ଏମ୍.ଏଲ୍.ଏ ପାଇଁ ଠିଆ ହେବ ?

ସଂବିତ ଆଶ୍ଚର୍ଯ୍ୟ ହେଲେ,ସିଏ ଘରେ ପହଞ୍ଚିବା ଆଗରୁ ସୁଚିତ୍ରାଙ୍କୁ ଏସବୁ ଖବର କିଏ ଦେଲା ? ସେଇ ବସ୍ତିରେ ତାଙ୍କ କାମବାଲୀର ଘର । ସେଇ ବୋଧ ହୁଏ ବସ୍ତି ଲୋକଙ୍କଠୁ ଶୁଣିକି ଏସବୁ ସୁଚିତ୍ରାଙ୍କୁ କହିଦେଇଛି ।

ତା'ପର ଦିନ ସଂବିତ ମର୍ଣ୍ଣିଙ୍ଗ୍‌ୱାକରୁ ଫେରିବା ପରେ ପରେ ସୁଚିତ୍ରା ଗୋଟେ ବଡ଼ ପିତଳ ତାଲା ନେଇ ଗେଟରେ ପକାଇ ଦେଲେ । ସଂବିତ ଚିତ୍କାର କଲେ-ଏ କ'ଣ ହେଉଛି ସୁଚିତ୍ରା ? ମତେ କ'ଣ ତୁମେ ସତକୁ ସତ ତାଲା ପକାଇ ଗୃହବନ୍ଦୀ କରି ରଖିବ ?

ସୁଚିତ୍ରା ହସି ହସି ଉତ୍ତର ଦେଲେ-ତୁମେ ଗେଟ୍‌ରେ ତାଲା ନପକାଇଥିଲେ ବି



Digitized by srujanika@gmail.com

ମୁଁ ଆଜିକି ତିରିଶବର୍ଷ ହେଲା ଏଇ ଘର ଭିତରେ ବନ୍ଦି ଜୀବନ କାଟୁଛି । କେବେ ଦିନେ ହେଲେ ବି ମୁଁ ସେ ବିଷୟରେ ଅଭିଯୋଗ କରିନାହିଁ କି ନିଜ ଇଚ୍ଛାରେ ଘରୁ ଗୋଡ଼କାଢ଼ି କେଉଁଆଡ଼େ ଯାଇନାହିଁ । ତୁମ ଚାକିରି ସରିବା ପରେ ମୁଁ ଭାବିଥିଲି ମୋର ଏକେଲା ପଣର ଶେଷ ହେବ । ତୁମେ ସବୁବେଳେ ଘରେ ରହିବ,ମୋତେ ସବୁ କଥାରେ କମ୍ପାନୀ ଦେବ । କିନ୍ତୁ ତୁମ ଅବସର ଗ୍ରହଣ ପରେ ତୁମେ ଦିନ ଦଶଟା ଘରେ ନ କଟାଉଣୁ ବ୍ୟତି ବ୍ୟସ୍ତ ହୋଇ ପଡୁଛ । ମୁଁ କେମିତି ଏଘରଟା ଭିତରେ ଏତେ ବର୍ଷ ହେଲା ଏକେଲା ରହୁଛି,ତୁମେ ସେ କଥା କେବେ ପଚାରି ବୁଝିଛ ?

ସଂବିତ ବ୍ୟଙ୍ଗକରି କହିଲେ-ମତେ ଲାଗୁଛି ତୁମେ ମୋ ବେକରେ ଗୋଟେ ମୋଟା ଚମଡ଼ାର ବେଲ୍ଟ ଲଗାଇ ଆମ ଏଇ ବେଡରୁମ୍‌ର ଖଟ ଖୁରାରେ ବାନ୍ଧିଦେବ । କ'ଣ ମୁଁ ସତ କହିଲି ନା ?

ସୁଚିତ୍ରା କିଛି ନକହି ଗେଟ୍‌ରେ ପଡ଼ିଥିବା ତାଲାଟାକୁ ଖୋଲି ଆଣି ଦୁମ୍ ଦୁମ୍ ହୋଇ ଘର ଭିତରକୁ ପଶିଗଲେ । ସଂବିତ ଗୋଡ଼,ହାତ ଧୋଇହୋଇ ଟିଭି ପାଖରେ ବସି ନିଉଜ ଦେଖିବାରେ ମନଦେଲେ । କିଛି ସମୟ ପରେ କଲିଙ୍ଗବେଲ୍ ବାଜିଲା । ସଂବିତ ଉଠିଗଲେ ଗେଟ୍ ପାଖକୁ । ସ୍ଥାନୀୟ କଲୋନୀର କ୍ଲବପିଲାମାନେ ଆସିଛନ୍ତି ଗଣେଶ ପୂଜା ଚାନ୍ଦା ମାଗିବା ପାଇଁ । ଶହେ ଏକ ଟଙ୍କାର ଗୋଟେ ରସିଦ୍ କାଟି ସେମାନେ ସଂବିତଙ୍କ ହାତକୁ ବଢ଼ାଇ ଦେଲେ ।

ଗେଟ୍ ଖଡ଼ ଖଡ଼ ଶବ୍ଦ ଶୁଣି ସୁଚିତ୍ରା ଗେଟ୍ ପାଖକୁ ଆସି ଦେଖିଲେ ଚାରିଟା ଟୋକା ଗେଟ୍ ଖୋଲି ଚାଲି ଯାଉଛନ୍ତି । ସୁଚିତ୍ରା ବିରକ୍ତ ହେଲେ-ମତେ ନପଚାରି ତାଙ୍କୁ ଏତେଗୁଡ଼େ ଟଙ୍କା କାହିଁକି ଦେଲ ? ଫ୍ରେଣ୍ଡସ୍ କ୍ଲବପିଲାମାନେ ଆସିଥିଲେ ତ ? ସେମାନେ ପ୍ରତିବର୍ଷ ଆମ ଘରୁ ଏକାବନ ଟଙ୍କା ଚାନ୍ଦା ନିଅନ୍ତି । ତାଙ୍କ କ୍ଲବର ଗତ ବର୍ଷର ରସିଦ ମୋ ପାଖରେ ଅଛି । ତାଙ୍କୁ ସେ ରସିଦଟା ଦେଖାଇଥିଲେ ସେମାନେ ଖୁସିରେ ସେଇ ଏକାବନ ଟଙ୍କା ନେଇ ଚାଲି ଯାଇଥାନ୍ତେ । ଗଣେଶ ପୂଜା ଚାନ୍ଦା ପାଇଁ ଆହୁରି ଚାରିଟା କ୍ଲବର ପିଲା ଆସିବେ । ତାଙ୍କୁ ପୁଣି ସେତିକି ଟଙ୍କା ଲେଖାଁ ଚାନ୍ଦା ନଦେଲେ ସେମାନେ ମହା ଝମେଲା କରିବେ ।

ସଂବିତ ଆଉ କିଛି ନକହି ଚୁପ୍ ରହିଲେ । ସିଏ ସବୁବେଳ ଘରେ ରହୁ ନଥିଲେ ତେଣୁ କାହାକୁ କେତେ ଚାନ୍ଦା ଦିଆ ଯାଏ ତାଙ୍କୁ ଜଣା ନାହିଁ । ଏ ବର୍ଷର ଅଭିଜ୍ଞତାକୁ ସେ ଆସନ୍ତା ବର୍ଷ କାମରେ ଲଗାଇବେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସଂଧ୍ୟାବେଳକୁ ସଂବିତ ଫୋନ୍ କରି ଡକାଇଲେ ଜଣେ ରାଜମିସ୍ତ୍ରୀକୁ । ତାକୁ ଘରର ଉପର ମହଲା ନକ୍ସା ଦେଖାଇ କହିଲେ- ଏଇଟା ଆମ ଏଇ ଘରର ଫାଷ୍ଟ ଫ୍ଲୋରର ନକ୍ସା । ମୁଁ ଯା ଉପରେ ଆଉ ଗୋଟେ ଫ୍ଲୋର୍ କରିବାକୁ ଭାବୁଛି । କୋର୍ ହାଉସ କରିବା ପାଇଁ କେତେ ଟଙ୍କା ଖର୍ଚ୍ଚହେବ ତୁମେ ତାର ଗୋଟେ ଏଷ୍ଟିମେଟ୍ କରି ଦିଅ । ମୁଁ ମ୍ୟାଟେରିଆଲ ଯୋଗାଇବି ,ତୁମେ ଘର ତିଆରି କରିବ ।

ରାଜମିସ୍ତ୍ରୀ ନକ୍ସାଟିକୁ ଏପଟ ସେପଟ କରି ଦେଖିବା ପରେ ପକେଟ୍‌ରୁ କାଲ୍‌କୁଲେଟର୍ ବାହାର କଲେ ଓ କିଛି ସମୟ ହିସାବ କରିବା ପରେ କହିଲେ- ଆପଣଙ୍କ ଏ ଘରର ପ୍ଲିନ୍ଥ ଏରିଆ ପନ୍ଦର ଶହ ବର୍ଗ ଫୁଟ୍ । ଆଜିକାଲି ବାଲି,ସିମେଣ୍ଟ,କଂକ୍ରିଟ ଲୁହାରଡ଼,ଇଟା ଓ ମଜୁରି ଢ଼େର ବଢ଼ି ଗଲାଣି । ମ୍ୟାଟେରିଆଲ୍ କଷ୍ଟ ସହିତ ସ୍କୋୟାର ଫୁଟ୍ ସାତ ଶହ ଟଙ୍କା ହିସାବରେ ପ୍ରାୟ ଦଶ ଲକ୍ଷ ଟଙ୍କା ଲାଗିବ ।

ସୁଚିତ୍ରା ଦୁଇ କପ୍ ଚା' ଧରି ପହଞ୍ଚିଲେ । ଦଶ ଲକ୍ଷ ଟଙ୍କା କଥା ଶୁଣି ଚମକି ପଡ଼ି କହିଲେ-ଦଶ ଲକ୍ଷ ଟଙ୍କା ? ଆମର କି କାମ ହେବ କି ?

ସଂବିତ ଚା'ଦୁଇ କପ୍ ସୁଚିତ୍ରାଙ୍କ ହାତରୁ ନେଇ ସେଥିରୁ ଗୋଟିଏ କପ୍ ରାଜମିସ୍ତ୍ରୀଙ୍କ ହାତକୁ ବଢ଼ାଇ ଦେଇ କହିଲେ-ନାଇଁ, ମୁଁ ଘରେ ବସି ବସି ବୋର୍ ହେଉଛି । ଘର କାମ ତୁମେ ମୋତେ କିଛି କରାଇ ଦେଉନା । ମୁଁ ଭାବୁଥିଲି ଆମ ଏ ଘରର ଉପରେ ଆଉ ଗୋଟେ ମହଲା ଘର ତିଆରି କରିବା । ଖରା ଦିନେ ଏକ ମହଲା ଘରଟା ଭାରି ଗରମ ହେଉଛି । ଉପରେ ଘର ତିଆରି କରିଦେଲେ ତଳ ଘରଟା ଥଣ୍ଡା ରହିବ । ତାଛଡ଼ା ଆଜିକାଲି ଭୁବନେଶ୍ୱରରେ ଘର ଭଡ଼ା ଦେଲେ ଭଲ ପଇସା ମିଳୁଛି । ଆମ ଘରର ଫାଷ୍ଟ ଫ୍ଲୋରଟା କରିଦେଲେ ଅତି କମ୍‌ରେ ମାସିକ ଭଡ଼ା ଦଶ , ଏଗାର ହଜାର ଟଙ୍କା ମିଳିଯିବ ।

ସୁଚିତ୍ରାଙ୍କ ମୁହଁ ରାଗରେ ଲାଲ୍ ପଡ଼ିଗଲା । ସିଏ କହିଲେ-ନାଇଁ,ନାଇଁ ଆମର ଆଉ ଘରଫର କିଛି କରିବା ଦରକାର ନାହିଁ । ଏଇ ଘରର ମେଣ୍ଟିନାନ୍ସ କରିବାକୁ ବଳ ନାହିଁ । ଆଉ ଘର କଲେ ତା'ର ମେଣ୍ଟିନାନ୍ସ କିଏ କରିବ ? ଘର ଭଡ଼ାଦେବା ମହା ଝମେଲା । ଆଜି ପାଣି ଉଠିଲା ନାହିଁ, କାଲି ପାଇଖାନା ଚୋକ୍ ହେଲା, ଆଉ କେଉଁ ଦିନ ଇଲେକ୍ଟ୍ରି କଟିଗଲା । ଏତେ କଥା ଏବୟସରେ ଆମର କିଏ ବୁଝିବ ? ତା'ଛଡ଼ା ଗୋଟେ ଗୋଟେ ବଦମାସ୍ ଲୋକ ଅଛନ୍ତି , ଘରଭଡ଼ା ଦେବେ ନାହିଁ କି ଘର ଛାଡ଼ିବେ ନାହିଁ । ଏ କୋର୍ ହାଉସ ସିନା ଦଶଲକ୍ଷ ଟଙ୍କାରେ ହୋଇଯିବ, ମାର୍ବଲ ବସାଇବା,କବାଟ ଝରକା ଲଗାଇବା, ଇଲେକ୍ଟ୍ରି ଆଉ ପି.ଏଚ.ଡ଼ି କାମ,ରଙ୍ଗଦେବା କାମ ଇତ୍ୟାଦି ଫିନିସିଙ୍ଗ୍ କାମ



Digitized by srujanika@gmail.com

ପାଇଁ ଆହୁରି ଦଶ, ବାର ଲକ୍ଷ ଟଙ୍କା ଲାଗିବ । ଏତେ ଟଙ୍କା ଆମର କାହିଁ ?

ସଂବିତ କହିଲେ-ଆଜିକାଲି ଘର ତିଆରି ଲୋନ୍ ଦେବା ପାଇଁ ବ୍ୟାଙ୍କମାନେ ଟାକି ବସିଛନ୍ତି ।

ସୁଚିତ୍ରାଙ୍କ କ୍ରୋଧ ଦ୍ୱିଗୁଣିତ ହୋଇଗଲା । ସେ କହିଲେ-ଆମ ଦୁହିଁଙ୍କର ଯେଉଁ ବୟସ,କାହାକୁ କେତେବେଳେ କି ରୋଗ ଧରିବ ତାହା କହିହେବ ନାହିଁ । ଆଜିକାଲି ତ ଏମିତି ସେମିତି ରୋଗ ଧରୁ ନାହିଁ,ଧରୁଛି ଖୁବ୍ ବଡ଼ ବଡ଼ ରୋଗ । ଏଇ ଯେମିତି ହାର୍ଟ ପ୍ରୋବ୍ଲେମ୍,କିଡ଼ିନି ଡ୍ୟାମେଜ,ବ୍ରେନ୍ ଟିୟୁମର,ବ୍ଲଡ଼ କ୍ୟାନସର୍,ପାରଲିସିସ୍ । ଏସବୁ ରୋଗ ଭିତରୁ ଯେ କୌଣସି ଗୋଟିଏ ରୋଗ ଯଦି ଆକ୍ରମଣ କରେ ତାର ଚିକିତ୍ସା ପାଇଁ ଦଶ ବାର କି ପନ୍ଦର ଲକ୍ଷ ଟଙ୍କା ବି ନିଅଣ୍ଟ ପଡ଼ିବ । ଏ ବୟସରେ ଆଉ ଘର ତିଆରି କରିବା ସ୍ୱପ୍ନ ନଦେଖି ଦେହ ପା'ପାଇଁ ଟଙ୍କା ସଂଚୟ କରିବା ବୁଦ୍ଧିମାନ କାମ ହେବ ।

ସୁଚିତ୍ରା ରାଜ ମିସ୍ତ୍ରୀଙ୍କୁ ଫେରାଇ ଦେଲେ । ସଂବିତ କିଛି ନ କହି ଚୁପ୍ ରହିଲେ । ତାପର ଦିନ ସଂବିତ ମର୍ଣ୍ଣିଙ୍ଗୱାକ୍‌ରେ ନ ଯାଇ ଘରେ ଗମ୍ଭୀର ହୋଇ ବସି ରହିଲେ । ଖବରକାଗଜ ବି ପଢ଼ିଲେ ନାହିଁ । ସୁଚିତ୍ରାଙ୍କ ସହିତ ଭଲରେ କଥାବାର୍ତ୍ତା କଲେ ନାହିଁ ।

ଅପରାହ୍ନ ପାଞ୍ଚଟା ବେଳକୁ ଆସି ପହଞ୍ଚିଲେ ତାଙ୍କ ବନ୍ଧୁ ପ୍ରକାଶବାବୁ । ମର୍ଣ୍ଣିଙ୍ଗୱାକ୍‌ରେ ନଯିବାର କାରଣ ପଚାରିଲେ । ସଂବିତଙ୍କର ଇଚ୍ଛା ହେଉଥିଲା ପ୍ରକାଶଙ୍କ ଆଗରେ ସବୁ କଥା ପ୍ରକାଶ କରିଦେବାକୁ, କିନ୍ତୁ ସେ ନିଜକୁ ନିୟନ୍ତ୍ରଣରେ ରଖିଲେ ।

ପ୍ରକାଶଙ୍କ ହାତକୁ ଚା'କପ୍‌ଟିଏ ବଢ଼ାଇ ଦେଉଁ ଦେଉଁ ସୁଚିତ୍ରା କହିଲେ-ମୁଁ କହି କହି ଥକିଲିଣି ସିଏ ମୋ କଥା ଶୁଣୁ ନାହାଁନ୍ତି । ମର୍ଣ୍ଣିଙ୍ଗ୍ ୱାକରେ ନଯାଇ, ଖବର କାଗଜ ନପଢ଼ି,ଗମ୍ଭୀର ହୋଇ ଦିନମାନ ଖଟ ଉପରେ ବସିଛନ୍ତି ।

ପ୍ରକାଶଙ୍କର ଚା'ପିଆ ସରିବା ବେଳକୁ ସଂବିତ ପ୍ରସ୍ତୁତ ହୋଇ ଘରୁ ବାହାରି ଆସିଲେ । ସୁଚିତ୍ରାଙ୍କ କଥା ଅଧା ଅକୁହା ରହିଗଲା । ଦୁଇ ବନ୍ଧୁ ଇଭିନିଙ୍ଗ ୱାକ୍‌ରେ ବାହାରି ଗଲେ । କିଛିବାଟ ଚାଲିବା ପରେ ପ୍ରକାଶ ପ୍ରଶ୍ନକଲେ-ମିସେସ୍‌ଙ୍କ ସହିତ କିଛି ଝଗଡ଼ା ହୋଇଛି କି ?

ତଥାପି ସଂବିତ ନିରବ ରହିଲେ । ସେ ଭାବୁଥିଲେ ଘର କଥା ଅନ୍ୟ ଆଗରେ ପ୍ରକାଶ କରିବା ବୁଦ୍ଧିମାନର କାମ ନୁହଁ ।

ପ୍ରକାଶ ଚାହିଁଲେ ସଂବିତଙ୍କ ମୁହଁକୁ । ତାଙ୍କ ମୁହଁଟା ଗମ୍ଭୀର ଓ କୁହୁଡ଼ିଆ,କୁହୁଡ଼ିଆ ଦିଶୁଛି । ଆଉ ଟିକେ ଉଖାରିଲେ ପ୍ରକାଶ-ଏ ବୟସରେ ଟେନ୍‌ସନ୍‌କୁ ନିଜ ଭିତରେ ଚାପି



Digitized by srujanika@gmail.com

ରଖିଲେ ରକ୍ତଚାପ ବଢ଼ିବ, ହାର୍ଟ ଆଟାକ୍ ହେବାର ଆଶଙ୍କା ସୃଷ୍ଟି ହେବ । ନିଜ ଭିତରେ ଥିବା ଦୁଃଖକୁ ଅନ୍ୟ ଆଗରେ ପ୍ରକାଶ କଲେ ମନ ହାଲୁକା ଲାଗିବ । ଆଉ ତାଠୁ ବଡ କଥା ହେଲା ବେଳେବେଳେ ସମସ୍ୟା ସମାଧାନର ବାଟ ମଧ୍ୟ ମିଳିଯିବ ।

ସଂବିତ ନିଜ ଭିତରେ ନିଜକୁ ପ୍ରସ୍ତୁତ କରିନେଇ କହିଲେ-ନିଶ୍ଚୟ କହିବି । ବନ୍ଧୁ ଆଗରେ ନ କହି ଆଉ କାହା ଆଗରେ କହିବି ?

-ତେବେ ଆଉ ବିଳମ୍ବ କାହିଁକି ? କ'ଣ ସେମିତି କିଛି ଗୁରୁତର କଥା ?

ସଂବିତ ହସିବାକୁ ଚେଷ୍ଟାକରି କହିଲେ-ନାଇଁ,ନାଇଁ ସେମିତି ଗୁରୁତର କଥା କିଛି ନୁହଁ । ଏଇ ଆଠ ଦଶ ଦିନହେଲା ଚାକିରିରୁ ଅବସର ନେଇ ମୁଁ ଘରେ ରହୁଛି । କିନ୍ତୁ ପ୍ରତିଦିନ ଆମ ଘରେ ଏମିତି କିଛି ଘଟଣା ଘଟୁଛି ,ସେଥିରୁ ମୋତେ ଲାଗୁଛି ମୋର ସମସ୍ତ ସ୍ୱାଧୀନତା ଧୀରେ ଧୀରେ ହଜିଯାଉଛି ।

ପ୍ରକାଶ ଠୋଠୋ ହୋଇ ହସି କହିଲେ-ଆପଣ କ'ଣ ଏମିତି କହୁଛନ୍ତି ? ଆପଣଙ୍କ ସ୍ୱାଧୀନତାକୁ କିଏ ଆପଣଙ୍କଠୁ ଛଡ଼ାଇ ନେଉଛି ? ସେ ଘରେ କେବଳ ଆପଣ ସ୍ୱାମୀ,ସ୍ତ୍ରୀ ଦୁଇ ଜଣ । ସେଠି ତୃତୀୟ ବ୍ୟକ୍ତି କେହି ନାହିଁ ।

ସଂବିତ କହିଲେ-ମୋ ସ୍ତ୍ରୀ ସୁଚିତ୍ରା ହିଁ  ମୋତେ ମୋ ଇଚ୍ଛା ଅନୁସାରେ କଛି କରାଇ ଦେଉ ନାହାଁନ୍ତି । କିଛି ନକରି ମୁଁ ଘରେ ଚୁପ୍‌ଚାପ୍ କେମିତି ବସିବି ?

ସଂବିତ ତାଙ୍କ ଅବସର ନେବା ଦିନଠୁ ଯାହା ଯାହା ଘଟିଥିଲା ସବୁ ଗୋଟି ଗୋଟିକି ପ୍ରକାଶଙ୍କ ଆଗରେ ଖୋଲି କହିଲେ । ପ୍ରକାଶ ସବୁ ଶୁଣିବା ପରେ ହୋ ହୋ ହୋଇ ହସି ଉଠିଲେ ।

ସଂବିତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ-ଏଥିରେ ଏମିତି ହସିବାର କଥା କ'ଣ ଅଛି ଯେ ଆପଣ ଏମିତି ହସୁଛନ୍ତି ?

ପ୍ରକାଶ ସେମିତି ହସି ହସି କହିଲେ-ଆପଣଙ୍କଠୁ ଗୋଟେ ବର୍ଷ ପୂର୍ବରୁ ମୁଁ ସରକାରୀ ଚାକିରିରୁ ଅବସର ନେଇଛି । ଯେଉଁ ଅଭିଜ୍ଞତା ଆପଣଙ୍କର ମୋଟେ ଆଠ ଦଶ ଦିନର ସେହି ଅଭିଜ୍ଞତା ମୋର ତିନି ଶହ ପଅଁଷଠି ଦିନର । ଆପଣ ଜାଣି ଆଶ୍ଚର୍ଯ୍ୟ ହେବେଯେ ମୋ ସହିତ ମୋ ସ୍ତ୍ରୀ ପ୍ରଥମେ ପ୍ରଥମେ ଠିକ୍ ଏମିତି ବ୍ୟବହାର ଦେଖାଉ ଥିଲେ । କିନ୍ତୁ କିଛି ଦିନ ପରେ ମୁଁ ଜାଣି ପାରିଲି ଯେ ନିଜ ସ୍ୱାମୀମାନଙ୍କୁ ନିଜ ନିୟନ୍ତ୍ରଣରେ ରଖିବା ପାଇଁ ସ୍ତ୍ରୀମାନେ ତାଙ୍କ ସ୍ୱାମୀକୁ ସ୍ୱାବଲମ୍ବୀ ହେବାର ସୁଯୋଗ ଦିଅନ୍ତି ନାହିଁ । ସର୍ବଦା ସ୍ୱାମୀଟି ତାର ପ୍ରତ୍ୟେକ କାମ ପାଇଁ ତା' ସ୍ତ୍ରୀ ଉପରେ ନିର୍ଭର କରୁ ଏହା ହିଁ



Digitized by srujanika@gmail.com

ପ୍ରତ୍ୟେକ ଚାଲାକ୍ ସ୍ତ୍ରୀର କୌଶଳ । ଯେଉଁ ସ୍ୱାମୀଟି ନିଜେ କୌଣସି କାମ ନକରି ପ୍ରତ୍ୟେକ କାମ ପାଇଁ ନିଜ ସ୍ତ୍ରୀ ଉପରେ ନିର୍ଭର କରିବ ସିଏ ସ୍ତ୍ରୀ କଥାରେ ଉଠ୍ ବସ ହେବାକୁ ବାଧ୍ୟ ହେବ । ସ୍ତ୍ରୀଙ୍କ ଅବର୍ତ୍ତମାନରେ ସେ ଘର ଘଣ୍ଟାଟିଏ ବି ଆଗକୁ ଆଗେଇ ପାରିବ ନାହିଁ ।

ସଂବିତ ସବୁକଥା ଶୁଣି ସାରି ପଚାରିଲେ-ଆପଣ ତାହେଲେ ଆପଣଙ୍କ ସ୍ତ୍ରୀଙ୍କ ସୁଚିନ୍ତିତ ଓ ମଜଭୁତ ଜାଲର ଫାନ୍ଦକୁ କେମିତି କାଟିଲେ ?

-କେମିତି କାଟିଲି କ'ଣ ପଚାରୁଛନ୍ତି,ମୁଁ ସେ ଜାଲରେ ଆଦୌ ପଡ଼ିନାହିଁ । ଜାଲ କାଟିବା ପ୍ରଶ୍ନ କାହିଁକି ଉଠୁଛି ? ମୋ ସ୍ତ୍ରୀ ମୋର ଯେଉଁ ଯେଉଁ କାମର ଦୋଷ ତ୍ରୁଟି ଦେଖାଇ ମୋତେ ଯାହା କରିବାକୁ ବାରଣ କରନ୍ତି ମୁଁ ତାଙ୍କର ସେ କଥା ନମାନି ଠିକ୍ ତାପର ଦିନ ହିଁ ଆଉ ଥରେ ସେଇ କାମ କରେ । ବାରମ୍ବାର ସେ କାମ କରିବା ଫଳରେ ତାର ଦୋଷ ତ୍ରୁଟି ମୁଁ ଜାଣି ପାରେ ଓ ମୋ କାମ ନିର୍ଭୁଲ୍ ହୁଏ । ଏଇ ଯେମିତି ଆପଣ ଦିନେ ଭାତ ଡାଲମା କରିଥିଲେ ଓ ସେଥିରେ ଅନେକ ଦୋଷ ତ୍ରୁଟି ଆପଣଙ୍କ ସ୍ତ୍ରୀ ବାହାର କଲେ । ଆପଣ ଯଦି ତାପର ଦିନ ପୁଣି ଭାତ ଡାଲମା ରାନ୍ଧି ଥାଆନ୍ତେ ତେବେ ସେ ଭୁଲ୍ ଆଉ ହୋଇ ନଥାନ୍ତା କିମ୍ବା ଯଦିବା କିଛି ଭୁଲ୍ ହୋଇଥାନ୍ତା, ସେତେ ଭୁଲ୍ ହୋଇ ନଥାନ୍ତା । ତାପର ଦିନ ପୁଣି ଆପଣ ସେଇ ଭାତ ଡାଲମା କରିଥାନ୍ତେ ଓ ତାହା ନିଶ୍ଚୟ ନିର୍ଭୁଲ ହୋଇଥାନ୍ତା ।

ସଂବିତଙ୍କ ମନକୁ କଥାଟା ବେଶ୍ ଛୁଇଁଲା । ସେ ହସି ହସି କହିଲେ-ମୁଁ ତାହେଲେ ଏଇ ସୂତ୍ର ଆମ ଘରେ ପ୍ରୟୋଗ କରିବି । ଯଦି ମୁଁ ସଫଳ ହୁଏ ତେବେ ଆପଣଙ୍କୁ ଗୁରୁ ଭାବେ ଗ୍ରହଣ କରିବି ।

ପ୍ରକାଶ ପରିହାସ କରି କହିଲେ-ସେଥିରେ ମୋର ଆପତ୍ତି ନାହିଁ । କିନ୍ତୁ ମୁଁ ତାପରେ ଗୁରୁ ଦକ୍ଷିଣା ମାଗିବି । ସେଥି ପାଇଁ ପ୍ରସ୍ତୁତ ଥିବେ ।

ଦୁଇ ବନ୍ଧୁ ମନ ଖୋଲି ଖୁବ୍ ବଡ଼ ପାଟିରେ ହସି ଉଠିଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ବାଜି

ଆରେ ତୂଳିକା !ତୁମେ ହଠାତ୍ ଏଠି କେମିତି ? ତୁମ ମିଷ୍ଟର କାହାଁନ୍ତି ?ତୁମେ ଏକାଯେ ..

ତୁଳିକା ମୁରୁକି ହସି କହିଲେ- ମୁଁ ତୁମ ଘରକୁ ଏକା ଆସିବା କ'ଣ ମନା ?ବିନା ମିଷ୍ଟରରେ ଜଣେ ମହିଳା ଏଇ ଏକବିଂଶ ଶତାବ୍ଦୀରେ କୁଆଡ଼େ ଯିବା କ'ଣ ଆପତ୍ତିଜନକ ?

ସଂବିତ ଥତ୍‌ମତ୍ ହୋଇ କହିଲେ-ନାଇଁ ଯେ..

ତୁଳିକା ଚଟାପଟ୍ ଉତ୍ତର ଦେଲେ-ତୁମରଯେ କିଛି ଆପତ୍ତି ନଥିବ ସେ କଥା ମୁଁ ଜାଣେ । ପୁରୁଣା ପ୍ରେମିକାକୁ ପାଖରେ ପାଇବାକୁ ସବୁ ପୁରୁଷ ଟାକି ବସିଥାନ୍ତି । ତୁମ ପତ୍ନୀ ସୁଜାତା ଯିଏ ମୋ ଉପସ୍ଥିତି ପାଇଁ ଆପତ୍ତି ଉଠାଇଥାନ୍ତେ ସିଏ ଆଜି ଘରେ ନାହାଁନ୍ତି । ସିଏ ଆଠ ଦିନ ପର୍ଯ୍ୟନ୍ତ ଏଠିକୁ ଫେରିବାର ସମ୍ଭାବନା ମଧ୍ୟ ନାହିଁ । ମୁଁ ଠିକ୍ କହିଲିନା ?

ସଂବିତ ଆଶ୍ଚର୍ଯ୍ୟ ଆଖିରେ ତୁଳିକାକୁ ଚାହିଁ ପଚାରିଲେ- ତୁଳିକା । ତୁମେ ଏତେ ସବୁ ତଥ୍ୟ କୋଉଠୁ ପାଇଲ ?

ତୁଳିକା ତା' ଏୟାର ବ୍ୟାଗଟା ସଂବିତଙ୍କ ଆଗରେ ଥୋଇଦେଇ କହିଲେ- ତୁମେ ନଜାଣିଚ ଯଦି ଜାଣି ରଖଯେ ଜଣେ ପ୍ରେମିକା ପକ୍ଷେ ଏଇ ସାମାନ୍ୟ ତଥ୍ୟ ଯୋଗାଡ଼ କରିବା ସେମିତି କିଛି କଷ୍ଟ କାମ ନୁହଁ । ନିଅ ମୋ ବ୍ୟାଗଟା ତୁମ ବେଡ୍‌ରୁମ୍‌ରେ ରଖିଦିଅ ।

ସଂବିତ ବାଧ୍ୟ ଛାତ୍ରଟିଏ ପରି ତୁଳିକାଙ୍କର ଏୟାରବ୍ୟାଗଟା ବେଡ୍‌ରୁମ୍‌କୁ ନେଉ ନେଉ ପଚାରିଲେ- ଆଛା, ଏଥିରେ କ'ଣ ସବୁ ଅଛି ? ଖୁବ୍ ଓଜନଦାର୍ ହୋଇଚି ।

ତୁଳିକା ହସି ହସି କହିଲେ-ତୁମ ଦାମ୍ପତ୍ୟ ଜୀବନକୁ ଭାଙ୍ଗିବାକୁ ଏଥିରେ କିଛି ବୋମା ଅଛି । ଜଣେ ବିବାହିତା ତରୁଣୀର ବ୍ୟାଗରେ କ'ଣ ସବୁ ଥାଇପାରେ ତୁମେ ଜାଣିନା ? କିଛି ଶାଢ଼ି,ଶାଲୁଆର ପଞ୍ଜାବି, କେତେଟୋ ନାଇଟଡ୍ରେସ୍,କେତେ ଖଣ୍ଡ ଅନ୍ତବାସ, କିଛି ପ୍ରସାଧନ ସାମଗ୍ରୀ, କେତେ ଖଣ୍ଡ ମ୍ୟାଗାଜିନ୍ ଆଉ ବହି ।

**ଅଳ୍ପ ସମୟ ଭିତରେ ବାଥରୁମ୍‌ରେ ଧୋଇଧାଇ ହୋଇ ଶାଢ଼ି ପାଲଟି ଲାଇ** ରଙ୍ଗର ପଞ୍ଜାବି ଶାଲୁଆର ପିନ୍ଧି ଡାଇନିଙ୍ଗ୍ ଟେବୁଲ୍ ପାଖରେ ଯାଇ ବସିଲେ ତୁଳିକା ଆଉ

ଆନଂଦ ଚଂଦ୍ର ପହି

Digitized by srujanika@gmail.com

କହିଲେ-କ'ଣ ଅଛି ଖାଇବାକୁ ଆଣ ସଂବିତ ! ମତେ ଭାରି ଭୋକ ଲାଗିଲାଣି । ଏଇଟା ଲଞ୍ଚ୍ ଟାଇମ୍ । ତୁମେ ଯଦି ଗରମ ଭାତ ଖାଇ ସାରିଥିବ ତେବେ ମୋ ପାଇଁ ପଖାଳ ଭାତ ହେଲେବି ଚଳିବ । ରାତିକୁ ମୁଁ ନିଜେ ଆମ ଦୁଇ ଜଣଙ୍କ ପାଇଁ ରୋଷେଇ କରିବି । ସବୁ ଦିନ ପତ୍ନୀ ହାତ ରନ୍ଧା ଖାଉଥିଲ , ଆଜି ପ୍ରେମିକା ହାତରନ୍ଧା ଖାଇବ ।

ସଂବିତ ହସି ହସି ଉତ୍ତର ଦେଲେ - ଆଜି ସକାଳ ଆଠଟାରେ ସୁଜାତା ତାଙ୍କ ଭାଇଙ୍କ ସାଙ୍ଗରେ ରାଉରକେଲା ତାଙ୍କ ବାପଘରକୁ ଗଲେ । ମୁଁ ଦୀର୍ଘ ଚାରି ଘଣ୍ଟାର ଅକ୍ଲାନ୍ତ ପରିଶ୍ରମ ପରେ ଦୁଇଟା ଆଇଟମ୍ ରାନ୍ଧିଛି । ଗୋଟିଏ ଭାତ, ଅନ୍ୟଟି ଡାଲମା । ରନ୍ଧା ସରିବା ସଙ୍ଗେ ସଙ୍ଗେ ତୁମେ ଆସିଲ । ମୁଁ ଖାଇ ନାହିଁ । ଦୁହେଁ ମିଶି ଖାଇବା । ଦେଖ ତୁଳି ! ମୋର ଏଇଟା ପ୍ରଥମ ରୋଷେଇ । ଭଲ ମନ୍ଦ ଯାହା ହୋଇଥିବ ଚଳାଇଦେବ ।

ତୁଳିକା ଉଲ୍ଲସିତ ହୋଇ କହିଲେ-ପ୍ରେମିକର ଗାଆଁ ଭଲ, ପ୍ରେମିକର ନାଆଁ ଭଲ, ପ୍ରେମିକର ଛୁଆଁ ଭଲ,ପ୍ରେମିକର ଚେହେରା ଭଲ, ପ୍ରେମିକର ଡ୍ରେସ୍ ଭଲ, ପ୍ରେମିକର  କଥା ଭଲ । ତେଣୁ ପ୍ରେମିକର ହାତରନ୍ଧା ନିଶ୍ଚୟ ଭଲ ହୋଇଥିବ ।

ଆଉ ଦୁଇଟା ଆଇଟମ୍ ଖୁବ୍ ସହଜ ଓ ଅଳ୍ପ ସମୟ ଭିତରେ ତିଆରି ହୋଇଯିବ । ଅଣ୍ଡା ଆମଲେଟ୍ ଆଉ ସାଲାଡ୍ । ସଂବିତ ! ତୁମେ ଟିକେ ଅପେକ୍ଷାକର ମୁଁ କରି ଆଣୁଚି ।

ତୁଳିକା ନିଜେ ଉଠିଯାଇ କାକୁଡ଼ି, ପିଆଜ,ଟମାଟୋ, ଗାଜର, ଧନିଆଁପତ୍ର,କଞ୍ଚା ଲଙ୍କା ଓ ଦହି ଆଣି ସାଲାଡ୍ ଆଉ ଚାରିଟା ଅଣ୍ଡା ଭାଙ୍ଗି ଆମଲେଟ୍ ତିଆରି କଲେ ।

ଦୁଇ ବନ୍ଧୁ ଖୁବ୍ ଖୁସିରେ ଲଞ୍ଚ ଖାଇ ଫେରି ଆସିଲେ ଡ୍ରଇଁରୁମ୍‌କୁ  । କିଛି ସମୟର ନିରବତା ପରେ ତୁଳିକା ପଚାରିଲେ-ମୁଁ କାହିଁକି ତୁମ ପାଖକୁ ଆସିଚି , ତୁମେତ ସେକଥା ମୋତେ ଏଯାଏ ପଚାରିଲ ନାହିଁ ?

-ତୁମେ ଆସିଛ ଖୁବ୍ ଭଲ କରିଚ ତୁଳି ! ସୁଜାତା ନାହାଁନ୍ତି, ମୋତେ ବୋର ଲାଗୁଥିଲା । ମୁଁ ଆଜି ମନେ ମନେ ତୁମ କଥା ହିଁ ଭାବୁଥିଲି । ଆମ ଅତୀତ ଦିନର ସ୍ମୃତି ସବୁ ମୋର ମନେ ପଡୁଥିଲା । ମୋ ଭଲପାଇବାର ସେମିତି ଆକର୍ଷଣ ଅଛିବୋଲି,ତୁମକୁ ବାଲେଶ୍ୱରରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଟାଣିଆଣି ପାରିଲା ।

-ହୁଏତ ତୁମ କଥା ଠିକ୍ ସଂବିତ ! କିନ୍ତୁ ମୋର ସନ୍ଦେହ ହେଉଚି, ତୁମେ ନାକେବମ୍ ହୋଇ ଭାତ ଡାଲମା ରାନ୍ଧୁଥିବା ବେଳେ ମୋ କଥା ଭାବିବାକୁ ତୁମକୁ ଫୁରୁସତ୍ ମିଳିଲା କେମିତି ? ହଉ, ସେକଥା ଛାଡ଼ । ମୋତେ ଇଣ୍ଟେରେଷ୍ଟିଙ୍ଗ୍ କଥା ଶୁଣିବ ?

ସଂବିତ ଖୁବ୍ ଉତ୍କଣ୍ଠିତ ହୋଇ ତୁଳିକାଙ୍କ ପାଖକୁ ଲାଗିଆସି ତାଙ୍କ ବାମ ହାତଟିକୁ



Digitized by srujanika@gmail.com

ତୁଳିକା ନିଜ ହାତଟିକୁ ସଂବିତଙ୍କ ଝାଳୁଆ ହାତ ଭିତରୁ ମୁକୁଳାଇ ଆଣୁ ଆଣୁ କହିଲେ-ପ୍ରେମିକଟିଏ ଯଦି ତା' ପ୍ରେମିକାକୁ ବିବାହ କରି ନପାରେ ଆଉ ତା'ର ପ୍ରେମିକାଟି ଅନ୍ୟ କେଉଁ ପୁରୁଷକୁ ବିବାହ କରେ ତେବେ ସେ ଭାବେଯେ ତା'ର ପ୍ରେମିକାଟି ଅନ୍ୟ ପୁରୁଷକୁ ବିବାହ କରି ଖୁବ୍ ଦୁଃଖରେ ଜୀବନ ବଞ୍ଚୁଥିବ । ମୋତେ ବିବାହ କରିଥିଲେ ମୋ ପ୍ରେମିକାଟି  ସର୍ବଦା ସୁଖ, ପ୍ରେମ ଓ ଶ୍ରଦ୍ଧାର ସରସୀରେ ସ୍ନାନ କରୁଥାନ୍ତା । ଏଇ କଥାଟା କେତେଦୂର ସତ ତୁମେ କହି ପାରିବ ସଂବିତ ?

ସଂବିତ ଟିକେ ହଡ଼ବଡ଼େଇ ଯାଇ ତାପରେ ନିଜକୁ ନିୟନ୍ତ୍ରଣ ଭିତରେ ରଖି ଉତ୍ତର ଦେଲେ-ମୁଁ କହିବି ଏକଥାଟା ଶତକଡ଼ା ଶହେ ଭାଗ ଠିକ୍ । ପ୍ରତି ପ୍ରେମିକତ ଏଇ ବିଶ୍ୱାସରେ ବଞ୍ଚେ । ତା' ଆଖିରେ ସେ ଏକା ଅଯୋଧ୍ୟାର ପୁରୁଷୋତ୍ତମ ରାମଚଂଦ୍ର ଆଉ ତା' ପ୍ରେମିକାକୁ ତା'ଠୁ ଛଡ଼େଇ ନେଇଥିବା ତାର ସ୍ୱାମୀ ଦୁରାଚାରି ରାକ୍ଷସ ରାବଣ ।

ତୁଳକା ସଂବିତଙ୍କ କଥାକୁ କାଟି କହିଲେ-ତୁମ ଧାରଣା ଶତକଡ଼ା ଶହେ ଭୁଲ୍ ସଂବିତ ! ପ୍ରେମିକାଟି ତାର ପ୍ରେମିକକୁ ବିବାହ କରିବା ଦିନ ହିଁ ତାର ପ୍ରେମର ମୃତ୍ୟୁହୁଏ । ବିବାହ ବେଦିର ହୁତ୍‌ହୁତ୍ ହୋମ ନିଆଁରେ ତାଙ୍କ ପ୍ରେମ ପୋଡ଼ି ପାଉଁଶ ହୋଇଯାଏ ।ପ୍ରେମର ସ୍ଥାନ ମାଡ଼ିବସେ ଅଧିକାର । ପ୍ରେମିକ ପରିଣତ ହୁଏ ପତିରେ । ପ୍ରେମିକା ପରିଣତହୁଏ ପତ୍ନୀରେ । ପତି ହୋଇଯାଏ ପତ୍ନୀର ଦେବତା । ପତ୍ନୀ ହୁଏ ପତିର ସେବିକା, ଉପଭୋଗର ସାମଗ୍ରୀ, ମନୋରଂଜନର ମାଧ୍ୟମ । ଭଲ ପାଇବା ବଦଳରେ ତା'ଗଳାରେ ବନ୍ଧାଯାଏ ପରାଧୀନତାର ପଟି, ମଙ୍ଗଳସୂତ୍ର । ତାର କାମ ହୁଏ ରୋଷେଇ ଘରେ ପଶି ନିଆଁ ଧାସରେ ସିଝି ସିଝି ସ୍ୱାମୀ ଓ ତାର ପରିବାର ପାଇଁ ରୋଷେଇ କରିବା ଓ ସ୍ୱାମୀଙ୍କ ଫେରନ୍ତା ବାଟକୁ ଅନାଇଁ ରହିବା ।

ସଂବିତ ଆପତ୍ତି ଉଠାଇଲେ-ନା,ନା, ତୁଳି ! ମୁଁ ଏକଥାକୁ କେବେ ମାନିନେଇ ପାରିବି ନାହିଁ । ତୁମେ ତାହେଲେ ତୁମ ଗଳାର ପଟିକୁ କାଟି କେମିତି ଆଜି ମୋ ପାଖକୁ ଆସିଚ ? ତୁମେ ମୋ ପାଖକୁ ଆସିବା କଥା ତୁମ ସ୍ୱାମୀ ଜାଣନ୍ତି ନା ନାହିଁ ?

ଏଇ ସମୟରେ ତୁଳିକାଙ୍କ ମୋବାଇଲ୍ ଫୋନ୍ ରିଙ୍ଗହେଲା ।ତୁଳିକା ଫୋନ୍ ଉଠାଇଲେ-ହ୍ୟାଲୋ, ହଁ, ମୁଁ ଠିକ୍ ଠାକ୍ ପହଞ୍ଚିଛି । ହଁ, ସଂବିତ ଅଛନ୍ତି , କିନ୍ତୁ ସୁଜାତା ନାହାଁନ୍ତି ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସଂବିତ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲେ-ତୁମେ ମୋ ପାଖକୁ ଆସିବା କଥା ତାହେଲେ ତୁମ ସ୍ୱାମୀ ଅଭିଜିତ ଜାଣନ୍ତି ? ଖୁବ୍ ଇଣ୍ଟରେଷ୍ଟିଙ୍ଗ ତ ?

-କାହିଁକି ଏଥିରେ ତୁମର ଅସୁବିଧା କ'ଣ ହେଲା ? ଦେଖ ସଂବିତ ! ସିଏ ମୋର ପ୍ରେମିକ ନୁହଁ ପତି । ଆମ ଭିତରେ ଯଥେଷ୍ଟ ଅଣ୍ଡରଷ୍ଟାଣ୍ଡିଙ୍ଗ ଅଛି । ଆମ ବିବାହ ପୂର୍ବରୁ ଆମେ ଦୁଇ ବର୍ଷ ପରସ୍ପରଙ୍କ ସହିତ ମିଶିଛୁ, ଆଲୋଚନା କରିଛୁ । ମୁଁ ତାଙ୍କୁ ମୋ ପ୍ରେମ କଥା ଆଉ ମୋ ପ୍ରେମିକ କଥା ଅର୍ଥାତ ତୁମ କଥା କହିଛି । ସିଏ ମଧ୍ୟ ତାଙ୍କ ପ୍ରେମ ଓ ପ୍ରେମିକାଙ୍କ କଥା ମୋତେ କହିଛନ୍ତି । ଆମ ଉଭୟଙ୍କ ମତଯେ ପ୍ରେମ କୈଶୋର ଅବା ଯୌବନରେ ହୁଏ ।ପ୍ରେମ ଜୀବନକୁ ରସ ସିକ୍ତ କରେ, ମନରେ ଆକର୍ଷଣ ଓ ଉଦ୍ଦାମତା ଭରିଦିଏ । ପ୍ରେମ ନିଜ ଭିତରର ସମସ୍ତ ପ୍ରତିଭାକୁ ପ୍ରସ୍ଫୁଟିତ କରିବାକୁ ପ୍ରଚୋଦିତ କରାଏ, ସ୍ୱପ୍ନରେ ବିଭୋର ହୋଇ ଆକାଶରେ ଉଡିବା ପାଇଁ ମନରେ ଡେଣା ଲଗାଇ ଦିଏ । କିନ୍ତୁ ଘର ସଂସାର କରିବା ପାଇଁ ପ୍ରେମିକ ନୁହଁ ପତି ଦରକାର, ପ୍ରେମିକା ନୁହଁ ପତ୍ନୀ ଦରକାର । ପ୍ରେମିକ ପ୍ରେମିକା ଉତ୍ତମ ସାଥୀ; ମାତ୍ର ଉତ୍ତମ ଜୀବନ ସାଥୀ ହୋଇ ନପାରନ୍ତି । ପ୍ରେମ ପାଇଁ ଭଲ ପାଇବା , ସ୍ୱପ୍ନ ବିଭୋରତା,କଳ୍ପନା, ତନ୍ମୟତା ଦରକାର ; କିନ୍ତୁ ଘର ସଂସାର ପାଇଁ ବାସ୍ତବତା, ବୁଦ୍ଧିମତା, ଧୈର୍ଯ୍ୟ, ସହନଶୀଳତା ଓ ଯୋଜନା ସହିତ ଭଲ ପାଇବା , ସ୍ନେହ, ଶ୍ରଦ୍ଧା ଲୋଡ଼ା । ପ୍ରେମ ଅନ୍ଧ କରିଦିଏ କିନ୍ତୁ ଦାମ୍ପତ୍ୟ ଜୀବନ ଦୂରଦର୍ଶୀ କରାଏ ।

-ତୁମେ ତାହେଲେ ଆମ ପ୍ରେମକୁ ନିନ୍ଦିତ କରିବାକୁ ଯୋଜନା କରି ଆସିଚ ତୁଳି ! ତୁମର ମାତ୍ର ଦୁଇ ବର୍ଷର ଦାମ୍ପତ୍ୟ ଜୀବନ ଭିତରେ ତୁମେ ଆମ ପ୍ରେମକୁ ଭୁଲିଗଲ ? ହଁ, ସବୁ ଝିଅ ବିବାହ ପୂର୍ବରୁ ପ୍ରେମିକକୁ ଦିନଟିଏ ନଦେଖିଲେ ମୂର୍ଚ୍ଛାଯିବାର ଅଭିନୟ କରନ୍ତି, କିନ୍ତୁ ବିବାହ ପରେ ତାଙ୍କ ଚଲାପଥରେ ଯଦି ପ୍ରେମିକଟି ସାମନାକୁ କଦବା ଆସିଯାଏ ତେବେ ତାକୁ ଚିହ୍ନି ନଥିବାର ଅଭିନୟ କରି ମୁହଁ ଆଡ଼େଇ ଚାଲି ଯାଆନ୍ତି ।

ଏମିତି ଯଦି କେଉଁଠାରେ ହେଉ ଥାଏ ତେବେ ମୁଁ କହିବି ଏଥିପାଇଁ ତା' ସ୍ୱାମୀଙ୍କ ସନ୍ଦେହହିଁ ସଂପୂର୍ଣ୍ଣ ଭାବେ ଦାୟି, ସେ ଝିଅ ନୁହଁ । ଅଭିଜିତଙ୍କ ପରି ଉଦାର ସ୍ୱାମୀ ମିଳିଲେ ପ୍ରେମିକକୁ ଉତ୍ତମ ସାଥୀଟିଏର ମର୍ଯ୍ୟଦା ଦେବାରେ କିଛି ଅସୁବିଧା ନାହିଁ । ମୁଁ ମୋ ସ୍ୱାମୀଙ୍କ ଅନୁମତି ନେଇ ତୁମ ପାଖକୁ ଆସିଛି । କିଏ ଅସ୍ୱୀକାର କଲେ ମଧ୍ୟ ପ୍ରେମ ଥିଲା ଓ ରହିବ । ତରୁଣ ତରୁଣୀଙ୍କ ଜୀବନରେ ପ୍ରେମର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଛି ।

ସଂବିତ ସବୁ ଶୁଣିସାରି କହିଲେ- ତୁମେତ ଗୋଟେ ଖୁବ୍ ନୂତନ ଫିଲୋସଫିର



Digitized by srujanika@gmail.com

କଥା କହୁଛ । ତେବେ ତୁମେ ଦୟାକରି କହିବକି ଆଜି ତୁମର ଏଠିକି ଏମିତି ଅଚାନକ ଆସିବାର ଅଭିପ୍ରାୟ କ'ଣ ? ପୁଣି ତୁମେ ଆସିଛ ଏମିତି ଗୋଟେ ସମୟରେ ଯେତେବେଳେ ମୋ ଶ୍ରୀମତୀ ଘରେ ନାହାନ୍ତି ।

ତୁଳିକା ଖୁବ୍ ମନଖୋଲା ହସ ହସି ସଂବିତଙ୍କ ଉପରେ ଅଜାଡ଼ି ହୋଇ ପଡୁ ପଡୁ ନିଜକୁ ସମ୍ଭାଳି ନେଇ କହିଲେ-ମୁଁ ତୁମ ଚରିତ୍ର ନଷ୍ଟ କରିବା ଉଦ୍ଦେଶ୍ୟ ନେଇ ଆସିଛି ବୋଲି ଭାବିନେଇ ତୁମେ ଭୟ କରୁଛ କି ? ନା,ନା, ସେମିତି ମନ୍ଦ ଅଭିପ୍ରାୟ ମୋର ନାହିଁ । ଏତେ ରାତି ସ୍ୱାମୀଙ୍କ ସହିତ କଟାଇ ସାରିବା ପରେ ସେଥିରେ ନୂତନତା କିଛି ନଥାଏ । ଗୋଟେ ରାତି ମୁଁ ତୁମ ସହିତ କାଟିବାକୁ ଆସିଛି । ଆଜି ରାତିସାରା ଆମେ ଆମର ଅତୀତ କଥା ଗପିବା, ସ୍ମୃତି ରୋମନ୍ଥନ କରି ରୋମାଞ୍ଚିତ ହେବା ।

ସଂବିତଙ୍କ ଲ୍ୟାଣ୍ଡଫୋନ୍ ବାଜିଉଠିଲା । ଚାରି,ପାଞ୍ଚଟା ରିଙ୍ଗ ହେବା ପର୍ଯ୍ୟନ୍ତ ବି ସଂବିତ ରିସିଭର ଉଠାଇଲେ ନାହିଁ ।

ତୁଳିକା କହିଲେ-ଫୋନ୍‌ଟା ଉଠାଅ ସଂବିତ । ତୁମ ସ୍ତ୍ରୀ ସୁଜାତା ଫୋନ୍ କରିଛନ୍ତି ।

ତଥାପି ସଂବିତ ଫୋନ୍ ଉଠାଇଲେ ନାହିଁ । ସେ ଜାଣନ୍ତି ଏଇଟା ସୁଜାତାଙ୍କ ଫୋନ୍ ; କିନ୍ତୁ ସିଏ ତାଙ୍କୁ କି ଉତ୍ତର ଦେବେ ? ତୁଳିକା ବର୍ତ୍ତମାନ ତାଙ୍କ ଘରେ ଥିବା କଥା ସିଏ କ'ଣ ତାଙ୍କୁ କହି ପାରିବେ ?

ଫୋନ୍‌ଟା ବାରମ୍ବାର ବାଜିଲା । ତୁଳିକା ବାଧ୍ୟକଲେ ସଂବିତଙ୍କୁ ଫୋନ୍ ଉଠାଇ ସୁଜାତାଙ୍କ ସହିତ କଥାବାର୍ତ୍ତା କରିବାକୁ;କିନ୍ତୁ ସଂବିତ ଫୋନ୍ ନଉଠାଇ ଅସହାୟ ଭାବେ ତୁଳକାଙ୍କ ମୁହଁକୁ ଚାହିଁ ରହିଲେ ।

ତୁଳିକା ଆଖିରେ ଇଙ୍ଗିତ ଦେଲେ ଫୋନ୍‌ଟା ଉଠାଇବା ପାଇଁ ;କିନ୍ତୁ ସଂବିତ ଚାହିଲେ ଫୋନ୍‌ର ରିଙ୍ଗ ବନ୍ଦ୍ କରିବାକୁ ସିଏ ରିସିଭରଟାକୁ ଉଠାଇ ତଳେ ଥୋଇଦେବେ । ତୁଳିକା ତାଙ୍କୁ ବାରଣ କଲେ । କହିଲେ-ସେମିତି କଲେ ଫୋନ୍‌ଟା ଏନଗେଜ ଦେଖାଇବ । ସୁଜାତା ନିଶ୍ଚୟ ସନ୍ଦେହ କରିବେ ଯେ ତୁମେ କାହା ସହିତ ଦୀର୍ଘ ସମୟ ଫୋନ୍‌ରେ ଗପୁଛ । ଦିନେ ତାର କୈଫତ ତୁମକୁ ଦେବାକୁ ପଡ଼ିପାରେ ।

ସଂବିତ ଫୋନ୍ ଉଠାଇଲେ-ହ୍ୟାଲୋ, କ'ଣ ହେଲା ସୁଜାତା ? ତୁମେ ଏବେ ରାଉରକେଲାଠୁ କେତେ ଦୂରରେ ? ନା, ନା, ମୋର କିଛି ଅସୁବିଧା ହୋଇନାହିଁ । ମୁଁ ରୋଷେଇ କରି ଖାଇ ନେଇଚି । ରାତି କଥା ରାତିରେ ବୁଝିବି । ଆରେ ତୁମେ ଆଦୌ ବ୍ୟସ୍ତ ହୁଅନା । ମୁଁ ରାତିରେ ପାଖ ହୋଟେଲରେ ଖାଇନେବି ।ତୁମେ ରାଉରକେଲାରେ



Digitized by srujanika@gmail.com

ପହଞ୍ଚିବା ପରେ ମତେ ଫୋନ୍ କରି ଜଣାଇଦେବ । ଫୋନ୍ ରଖୁଚି ।

ସଂବିତ ଫୋନ୍ ଥୋଇଦେଇ ରୁମାଲରେ ମୁହଁ ପୋଛିଲେ । ତୁଳିକା ସଂବିତଙ୍କ ଛାତିରେ ହାତ ରଖି ତାଙ୍କ ହୃଦ୍ ସ୍ପନ୍ଦନ ମାପି କହିଲେ-ତୁମ ଛାତିର ସ୍ପନ୍ଦନରୁ ଜଣାଯାଏ ତୁମେ ଖୁବ୍ ଭୟ ପାଇ ଯାଇଛ ।

ସଂବିତ ଯଥା ସମ୍ଭବ ନିଜକୁ ନିୟନ୍ତ୍ରଣ ଭିତରେ ରଖି ପ୍ରଶ୍ନକଲେ-ଆଛା, ତୁଳିକା ! ତୁମେ ମୋ ଘରକୁ ଆସିବା ବେଳେ ଆମ ପଡ଼ିଶା ଘରର କୌଣସି ସ୍ତ୍ରୀଲୋକ ତୁମକୁ ଦେଖି ନାହିଁତ ? ଏଇ ଦୁଇ ଘରର ମାନେ ମହାନ୍ତିବାବୁ ଆଉ ପରିଡ଼ାବାବୁଙ୍କ ସ୍ତ୍ରୀ ସୁଜାତାଙ୍କର ଅତି ଘନିଷ୍ଠ ପଡ଼ୋଶୀ । ପ୍ରତିଦିନ ଖରାବେଳ ସାରା ଆମ ଘରେ ଏଇ ତିନି ଜଣଙ୍କର ବୈଠକ ବସେ । ତାଙ୍କ ଭିତରୁ ଯଦି ଜଣେ କିଏ ଦେଖି ଦେଇଥାଏ ତାହେଲେ ଆମ ଦୁହିଁଙ୍କର ଛାଡ଼ପତ୍ର ହୋଇଯିବାଟା ନିଶ୍ଚୟ ।

-ନା,ନା, ମୁଁ ସେମିତି କଞ୍ଚା ଖେଳାଳି ନୁହଁ । ତୁମେ ଏବିଷୟରେ ନିଃସନ୍ଦେହ ରୁହ । ମୋ ପାଇଁ ତୁମର କିଛିହେଲେ କ୍ଷତିହେବାର ନାହିଁ । ମୁଁ ଗୋଟେ ସ୍ତ୍ରୀଲୋକ ହୋଇ ଆଦୌ ଭୟ କରୁନାହିଁ, ଅଥଚ ତୁମେ ଭୟ କରୁଚ ?

-ଆଛା, ତୁଳିକା ! ସତକରି କୁହ ଏଠିକି ଆସିବା ପଛରେ ତୁମର ଅସଲ ଉଦ୍ଦେଶ୍ୟଟା କ'ଣ ? ଆମ ପ୍ରେମକୁ ସମ୍ମାନ ଦେବା ନା ମୋ ଦାମ୍ପତ୍ୟ ଜୀବନକୁ ଭାଙ୍ଗିବା ?

-ମୋତେ ବିଶ୍ୱାସ କର ସଂବିତ ! ସତ କଥାଟା ମୁଁ ପ୍ରଥମରୁ କହିଚି । ତେବେ କଥାଟାର ପୂର୍ବାପର ସଂପର୍କ ସହିତ ଆଉଥରେ କହୁଚି ଶୁଣ । ମୁଁ ସବୁବେଳେ ମୋ ସ୍ୱାମୀ ଅଭିଜିତଙ୍କ ଆଗରେ ଆମ ଦୁହିଙ୍କ ପବିତ୍ର ପ୍ରେମ କଥା କହି ଆସିଛି । ଦିନେ ସିଏ ମୋତେ କହିଲେ , ପ୍ରତି ପ୍ରେମିକ ପ୍ରଥମେ ଜଣେ ପୁରୁଷ ତାପରେ ପ୍ରେମିକ । ପ୍ରେମିକ ତା' ପ୍ରେମିକାର ଭଲ ପାଇବା ଅପେକ୍ଷା ତା'ଶରୀର ପ୍ରତି ଅଧିକ ଆକର୍ଷିତ । ତୁମେ ଯଦି ସଂବିତଙ୍କ ପତ୍ନୀଙ୍କ ଅନୁପସ୍ଥିତିରେ ସଂବିତଙ୍କ ଘରେ ଗୋଟିଏ ରାତି ନିରାପଦରେ କଟାଇ ଫେରି ଆସି ପାରିବ,ତାହେଲେ ମୁଁ ସ୍ୱୀକାର କରିବି ତୁମ ପ୍ରେମ ପବିତ୍ର ।

ମୁଁ ଅଭିଜିତଙ୍କ ସହିତ ଏମିତି ଗୋଟେ ବାଜି ଲଗାଇ ତୁମ ପାଖକୁ ଆସିଛି ସଂବିତ ! ମୁଁ ଏବାଜି ଜିତିବା ପାଇଁ ତୁମର ସହଯୋଗ ଦରକାର ।

ତୁମେ ଏମିତି ଗୋଟେ ଅଜବ ବାଜି ତୁମ ସ୍ୱାମୀଙ୍କ ସହିତ ଲଗାଇବା ପୂର୍ବରୁ ମୋତେ ପଚାରିବା ତୁମର ଉଚିତ ଥିଲା ତୁଳିକା !ମୁଁ ଯେତେବେଳେ କେବଳ ତୁମର ପ୍ରେମିକ ଥିଲି ,ସୁଜାତାଙ୍କ ସ୍ୱାମୀ ହୋଇ ନ୍ଥିଲି ସେତେବେଳର କଥା ନିଆରା ଥିଲା ।



Digitized by srujanika@gmail.com

-ଏଇ ସମୟରେ ହିଁ ନିଜ ଉପରେ ନିୟନ୍ତ୍ରଣ ରଖିବାରେ ଆମ ପବିତ୍ର ପ୍ରେମର ପ୍ରକୃତ ପରୀକ୍ଷା ହେବ । ମୁଁ ଜାଣେ ତୁମେ ପରୀକ୍ଷାରେ ନିଶ୍ଚୟ ଉତ୍ତୀର୍ଣ୍ଣହେବ ।

-ଠିକ୍ ଅଛି, ମୁଁ ଚେଷ୍ଟା କରିବି ।

-ଚେଷ୍ଟା କରିବ ବୋଲି କହିଦେଲେ ହେବ ନାହିଁ । ମୁଁ ଆଜିଯାଏ ଆମର ଯେଉଁ ପ୍ରେମକୁ ଉଚ୍ଚ ସ୍ଥାନ ଦେଇ ଆସିଛି , ଯେଉଁ ପ୍ରେମକୁ ସ୍ମୃତିର ଶାମୁକାଟିଏ ପରି ଢେଉଁରିଆ  କରି ହାତରେ ବାନ୍ଧିଛି ତାକୁ ତୁମେ କେବେ ବି ଅସମ୍ମାନ କରିବ ନାହିଁ ବୋଲି ମୋତେ କଥା ଦିଅ ।

-ଆଚ୍ଛା ତୁଳିକା ! ଆଜି ତାହେଲେ ଏ ଦିନଟା ଆମେ କେମିତି କାଟିବା ?

-ସଂବିତ ! ଆସ ଆମେ ଆଜି ଆମ ପଛ ଦିନ କଥା ମନେପକାଇ ଅତୀତର ଅଲିଭା ସ୍ମୃତିକୁ ସେଲିବ୍ରେଟ କରିବା । ବାଣୀବିହାରରେ ଆମେ ପି.ଜି. କଲାବେଳେ ପ୍ରତି ସଂଧ୍ୟାରେ କୃଷ୍ଣଚୂଡ଼ା ଗଛମୂଳେ ଠିଆ ଠିଆ ଗପ କରୁଥିଲେ ।ସେଗପ ସରୁ ନଥିଲା , ସଂଧ୍ୟା ସରି ଯାଇ ରତି ଆସୁଥିଲା । ଜହ୍ନ ଉଠୁଥିଲା । କୃଷ୍ଣଚୂଡ଼ା ଗଛତଳର ଛାଇ ଛାଇଆ ଜହ୍ନ ଆଲୁଅ ଆମକୁ ଶିହରିତ କରୁଥିଲା ।

-ଆଚ୍ଛା, ତୁଳିକା ! ତୁମର ମନେ ଅଛିନା, ଆମେ ଯାଇଥିଲେ ବାଲିହରଚଣ୍ଡିକୁ ପିକ୍‌ନିକ୍ କରିବାକୁ  । ବାଲିହରଚଣ୍ଡି ଗୋଟେ ଚମତ୍କାର ପିକନିକ୍ ସ୍ପଟ, ଯେଉଁଠି ପାହାଡ଼ ଅଛି , ପାହାଡ଼ ଉପରେ ମନ୍ଦିର , ମନ୍ଦିରକୁ ଲାଗି ଝାଉଁବଣ, ଝାଉଁବଣକୁ ଲାଗି ଗୋଟେ ନଈ ବହି ଯାଉଚି । ନଈ ପାର ହେଲେ ବୁଦି ବୁଦିକିଆ ଜଙ୍ଗଲ ଆଉ ଜଙ୍ଗଲକୁ ଲାଗି ରହିଛି ସମୁଦ୍ର । ପାହାଡ଼, ମନ୍ଦିର, ଝାଉଁବଣ, ନଈ, ଜଙ୍ଗଲ ଓ ସମୁଦ୍ର ଏସବୁ ସେଇଠି ଏକାଠି, ପାଖାପାଖି ।

ତୁଳିକା ରୋମାଞ୍ଚିତ ହୋଇ କହିଲେ-ତୁମର ମନେ ଅଛିନା ? ସେଦିନ ସମସ୍ତେ ସମୁଦ୍ରକୂଳ ବୁଲା, ଜଙ୍ଗଲଦେଖା ଓ ଝାଉଁବଣ ଭ୍ରମଣ ସାରି ବାଲିହରଚଣ୍ଡି ମନ୍ଦିରକୁ ବେଳାବେଳି ଫେରି ଆସିଲେ; ହେଲେ ତୁମେ ଆଉ ମୁଁ ସେଇ ଝାଉଁବଣ ଭିତରେ ବସିଗଲେ । ମନ୍ଦିର ବେଢ଼ାରେ ଠିଆହୋଇ ଆମ ସାଥୀମାନେ ଉଚ୍ଚ କଣ୍ଠରେ ଡ଼ାକ ଛାଡୁଥିଲେ -ସଂବିତ,ତୁଳିକା । ଝାଉଁବଣରୁ ପ୍ରତିଧ୍ୱନି ଶୁଭୁଥିଲା-ସଂବିତ, ତୁଳିକା ।ତାପରେ ଆମେ ଝାଉଁବଣ ଛାଡ଼ି ସେମାନଙ୍କ ପାଖକୁ ଫେରି ଆସିଥିଲେ ।

ସେଇଦିନଠୁ ତୁମ ନାଆଁ ସହିତ ମୋ ନାଆଁକୁ ଯୋଡ଼ି ଆମ ସାଙ୍ଗ ସାଥୀ ଆମକୁ ଚିଡ଼ାଉଥିଲେ । ତମେ ଜାଣିଛ ସଂବିତ ! ସେ କଥା ମୋ ଡାଡ଼ିଙ୍କ କାନକୁ



Digitized by srujanika@gmail.com

ଯାଉଥିଲା । ମୋ ଡାଡ଼ିଙ୍କର କିନ୍ତୁ ମୋ ଉପରେ ଅଗାଧ ବିଶ୍ୱାସ ଥିଲା । ମୁଁ ଡାଡ଼ିଙ୍କୁ ବୁଝେଇ ଦେଇଥିଲି-ସଂବିତ ମୋର ଜଣେ ଭଲ ବନ୍ଧୁ ।ଆଉ ଅଧିକ କିଛି ନୁହଁ । ସିଏ ମୋତେ ଓ ମୁଁ ତାଙ୍କୁ କେବଳ ବନ୍ଧୁ ଭାବେ ଭଲପାଉ । ଅନ୍ୟ କିଛି ସଂପର୍କ ଆମ ଭିତରେ ନାହିଁ କିମ୍ବା ଭବିଷ୍ୟତରେ ହେବନାହିଁ ।

ଠିକ୍ ସେଇ କଥା ମୁଁ ଅଭିଜିତଙ୍କୁ କହି ଏଠିକି ଆସିଛି । ତୁମେ ସତ କୁହ ସଂବିତ ଆମ ଭିତରେ ଏଯାବତ୍ ଆଉ କିଛି ସଂପର୍କ କେବେ ଥିଲା ?

ସଂବିତ ମନଖୋଲା ହସ ହସିଲେ । ତୁଳିକାଙ୍କ ମୁହଁକୁ ସିଧା ଚାହିଁ କହିଲେ- ସବୁ ନାରୀ ନିଜକୁ ଯେତେ ସ୍ମାର୍ଟ ଓ ବୁଦ୍ଧିମତୀ ମନେକରନ୍ତି,ସେମାନେ ସେତେଟା ବୁଦ୍ଧିମତୀ କି ସେତେଟା ସ୍ମାର୍ଟ ନୁହଁନ୍ତି । ଠିକ୍ ଅଛି ମୁଁ ତୁମର ବିଶ୍ୱାସ ଭଙ୍ଗ କରିବି ନାହିଁ । ଆଜି ଆମ ଭିତରେ କିଛି ବି ଆପତ୍ତିଜନକ ଘଟଣା ଘଟିବ ନାହିଁ । କିନ୍ତୁ କିଛିବି ଆପତ୍ତିଜନକ ଘଟଣା ଘଟିନାହିଁ ବୋଲି ତୁମ କଥାକୁ ତୁମ ସ୍ୱାମୀ କେମିତି ବିଶ୍ୱାସ କରିବେ ? କି ପ୍ରମାଣ ତୁମେ ତାଙ୍କୁ ଦେଇ ପାରିବ ?

ତୁଳିକାଙ୍କ ମୁହଁ ବିବର୍ଣ୍ଣ ଦିଶିଲା । ସିଏ କଥାର ଏଦିଗଟାକୁ କେବେ ଚିନ୍ତା କରି ନଥିଲେ । ନିଜକୁ ନିଃଷ୍କଳଙ୍କ ପ୍ରମାଣିତ କରିବାର କିଛି ବାଟଥିବା କଥା ସିଏ ଚିନ୍ତା କରି ପାରୁ ନାହାଁନ୍ତି । ତଥାପି ନିଜକୁ ହାଲୁକା କରିବା ପାଇଁ ମୁହଁରେ ହସ ଫୁଟାଇ କହିଲେ- ସେ କଥା ତୁମେ ମୋ ଉପରେ ଛାଡ଼ିଦିଅ ସଂବିତ ।ସେ ବ୍ୟବସ୍ଥା ନକରି ମୁଁ ଘରୁ ଗୋଡ଼କାଢ଼ି ନାହିଁ ।

-କି ବ୍ୟବସ୍ଥା ତୁମେ କରିଛ ତୁଳିକା ? ନିଜ ଆଖି ବ୍ୟତୀତ ଏ ବିଷୟରେ ଆଉ କିଛି ବ୍ୟବସ୍ଥାକୁ କୌଣସି ପୁରୁଷ ବିଶ୍ୱାସ କରେନା ।

ପଛପଟ ରୁମ୍ ଭିତରୁ ହଠାତ୍ ବାହାରି ଆସିଲେ ଅଭିଜିତ । ତୁଳିକା ଖୁସିରେ ଆତ୍ମହରା ହୋଇ ଅଭିଜିତଙ୍କୁ କୁଣ୍ଢାଇ ପକାଇଲେ ।

ଅଭିଜିତ କହିଲେ-ମୋର ଆଶଙ୍କାଥିଲା ତୁଳିକା ତୁମେ ବାଜି ହାରିଯିବ । ତେଣୁ ତୁମେ ଆସିବାର ଘଣ୍ଟାଏ ପରେ ଏଠିକୁ ଆସି ତୁମ ଦୁହିଁଙ୍କ ଅଲକ୍ଷ୍ୟରେ ଏଇ ପଛପଟ କୋଠରିରେ ଲୁଚିକି ରହିଥିଲି ।

ସଂବିତ ହସିହସି କହିଲେ-ମୁଁ ପ୍ରଥମରୁ ଜାଣିଥିଲି ଅଭଜିତବାବୁ ନିଶ୍ଚୟ ଠିକ୍ ସମୟରେ ପହଞ୍ଚିବେ ।



ଆନଂଦ ଚଂଦ୍ର ପତି

Digitized by srujanika@gmail.com

# ସଂକଳ୍ପ ସେତୁ

ମହେଶ ନିଜ ଗାଆଁରେ ପହଞ୍ଚିବାର ଆଠ ଦିନ ଆଗରୁ ଦୈନିକ ଓଡ଼ିଆ ଖବର କାଗଜରେ ଗୋଟିଏ ବିଜ୍ଞାପନ ଦେଲେ । ସେହି ବିଜ୍ଞାପନଟି ଥିଲା କୃଷିକାରଖାନା ସଂପର୍କରେ । ମହେଶ ନିଜ ଅଞ୍ଚଳର ପାଞ୍ଚ ହଜାର ଏକର ଜମିକୁ ନେଇ ଗୋଟିଏ କୃଷିକାରଖାନା ପ୍ରତିଷ୍ଠା କରିବାକୁ ସେହି ବିଜ୍ଞାପନ ଜରିଯାରେ ସର୍ବସାଧାରଣଙ୍କ ପାଖରେ ନିଜର ଇଚ୍ଛା ପ୍ରକାଶ କରିଥିଲେ । ପାଖ ଆଖ ପଚାଶ ଖଣ୍ଡ ଗାଆଁର ପାଞ୍ଚ ହଜାର ଏକର ଜମିକୁ ନେଇ କୃଷି କାରଖାନା ପ୍ରତିଷ୍ଠା କରାଯିବ । ଏହି କାରଖାନାରେ ଅଂଶ ଗ୍ରହଣ କରି ଅଂଶୀଦାର ହୋବାକୁ ଇଚ୍ଛୁକ ସର୍ବସାଧାରଣ ମହେଶଙ୍କ ସହିତ ତାଙ୍କ ଗାଆଁ ଇଚ୍ଛାପୁର ଠାରେ ଆଲୋଚନା କରିବାକୁ ସେ ଅନୁରୋଧ କରିଛନ୍ତି ।

ଆମେରିକାରୁ ଫେରି ମହେଶ ଗାଆଁରେ ପହଞ୍ଚିବା ଦିନ ପାଖ ଆଖ ଗାଆଁର ହଜାର ହଜାର ଲୋକ ତାଙ୍କୁ ସାକ୍ଷାତ କଲେ । ସମସ୍ତଙ୍କର ଇଚ୍ଛା ସେମାନେ କୃଷିକାରଖାନାରେ ଚାକିରି କରିବେ । ଶିକ୍ଷିତ,ଉଚ୍ଚଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଅନେକ ଯୁବକ,ଯୁବତୀ ବେକାର ହୋଇ ବସିଛନ୍ତି । ସେମାନଙ୍କୁ କୃଷିକାରଖାନାରେ ଚାକିରି ମିଳିବା ଆଶାରେ ସେମାନେ ଉତ୍ସୁକ ହୋଇ ଉଠିଛନ୍ତି । ସେମାନଙ୍କ ଭିତରୁ ଅଧିକାଂଶ ଯୁବକ,ଯୁବତୀ ଓ ମଧ୍ୟ ବୟସର ମଣିଷଙ୍କୁ ପ୍ରସ୍ତାବିତ କୃଷିକାରଖାନାରେ ନିଯୁକ୍ତି ଦେଇହେବ ବୋଲି ମହେଶ ଭରସା ଦେଲେ । କିନ୍ତୁ ପ୍ରତିଶ୍ରୁତି ଓ ଭରସା ପରି ମୁଖରୋଚକ ଶବ୍ଦମାନଙ୍କ ଉପରୁ ସର୍ବସାଧାରଣଙ୍କ ଆସ୍ଥା ଅନେକ ଦିନରୁ ଉଠି ଗଲାଣି । ରାଜନୈତିକ ନେତାମାନଙ୍କ ଦ୍ୱାରା ଏସବୁ ଶବ୍ଦର ଯଥେଚ୍ଛା ପ୍ରୟୋଗ ଯୋଗୁ ଏ ଶବ୍ଦଗୁଡ଼ିକ ପତିଆରା ହରାଇ ବସିଛି ।

ମହେଶ କହିଲେ-ଆପଣମାନଙ୍କ ଚାପା କଣ୍ଠର ଗୁଂଜରଣ ମୋ କାନରେ ବାଜିଛି । ମୁଁ ଆପଣମାନଙ୍କର ସନ୍ଦେହ ମୋଚନ କରି ପାରିବି ବୋଲି ମୋର ଦୃଢ଼ ବିଶ୍ୱାସ । ଥରେ ଆମ ଦେଶର ନେତାଜୀ ସୁବାସ ବୋଷ କହିଥିଲେ,ଆପଣମାନେ ମୋତେ ରକ୍ତ ଦିଅନ୍ତୁ, ମୁଁ ଆପଣମାନଙ୍କୁ ସ୍ୱାଧୀନତା ଦେବି । ସେମିତି ଆଜି ମୁଁ ଦୃଢ଼ କଣ୍ଠରେ କହୁଛି, ମୋତେ ଆପଣମାନଙ୍କର ଚାଷ ଜମି ଦିଅନ୍ତୁ, ମୁଁ ଆପଣମାନଙ୍କୁ କୃଷିକାରଖାନା ଓ ଯଥେଷ୍ଟ କାମ ଯୋଗାଇ ଦେବି । ଆପଣମାନଙ୍କ ଜମି ମୁଁ ବିନା ମୂଲ୍ୟରେ ଦେବା କଥା

ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

କହୁନାହିଁ । ସେଥିପାଇଁ ଆପଣମାନଙ୍କୁ ଆପଣଙ୍କମାନଙ୍କ ଜମିର ଉପଯୁକ୍ତ ମୂଲ୍ୟ ମିଳିବ ଓ ଏ ଅଞ୍ଚଳର ସମସ୍ତ ସକ୍ଷମ ମଣିଷ କୃଷିକାରଖାନାରେ କାମ ପାଇବେ । ଯେତେ ଲୋକଙ୍କର ଜମି ଏକାରଖାନାରେ ସାମିଲ ହେବ, ସେମାନେ ସମସ୍ତେ ଏ କୃଷିକାରଖାନାର ଅଂଶୀଦାର ହେବେ । ପ୍ରତ୍ୟେକ ଜମି ମାଲିକ ଏ କାରଖାନାର ମାଲିକାନା ସତ୍ତ୍ୱର ହକଦାର ହେବେ ।

ସମବେତ ଲୋକମାନଙ୍କ ଭିତରୁ କିଏ ଜଣେ ପାଟିକଲା-ଆପଣଙ୍କ ଚାଲବାଜି ଜଣାଗଲା । ଆମ ଜମି ହଡ଼ପ କରିବା ପାଇଁ ଇଏ ଆପଣଙ୍କର ଗୋଟିଏ ଅତି ସୁନ୍ଦର ଷଡ଼ଯନ୍ତ୍ର । ଅତୀତରେ ଆପଣଙ୍କ ପରି ଅନେକ ଲୋକଙ୍କ ପ୍ରଲୋଭନର ଥୋପ ଆମେ ଗିଳିଛୁ । ଏ ସବୁ ପ୍ରଲୋଭନର ପଛରେ ଥିବା ଆପଣଙ୍କ ଅସଲ ଉଦ୍ଦେଶ୍ୟ ଆମକୁ ଜଳ ଜଳ ହୋଇ ଦିଶୁଛି ।

ମହେଶ ଆଦୌ ବିବ୍ରତ ,ବିଚଳିତ କି ଉତ୍‌କ୍ଷିପ୍ତ ନହୋଇ ଅତ୍ୟନ୍ତ ଧୀର ଓ ଶାନ୍ତ କଣ୍ଠରେ ଉତ୍ତର ଦେଲେ-ମୁଁ ଆପଣମାନଙ୍କ ଜମି ନେଇ କେଉଁଆଡ଼େ ପଳାଇ ଯିବାର ଆଶଙ୍କା ନାହିଁ । ଆପଣ ଚାହିଲେ ଆପଣଙ୍କ ଜମିର ଉପଯୁକ୍ତ ଦାମ୍ ନେଇ କୃଷିକାରଖାନା ନାଆଁରେ ଜମିକୁ ରେଜେଷ୍ଟ୍ରି କରିଦେବେ । ସେକଥା ଯଦି ନକରନ୍ତି,ତେବେ ସେଇ ଜମିକୁ ଆପଣ କୃଷିକାରଖାନାରେ ମୂଳଧନ ଭାବେ ଖଟାଇ ପାରନ୍ତି । ଆପଣଙ୍କ ଜମିର ମୂଲ୍ୟ ଯେତେ ଟଙ୍କା ସେତିକି ପରିମାଣର ଅଂଶ ଆପଣଙ୍କ ନାଆଁରେ କାରଖାନାରେ ରହିବ । କଥାଟାକୁ ମୁଁ ଆଉଟିକେ ସରଳ ଭାବରେ କହୁଛି । ଧରନ୍ତୁ, ଆପଣଙ୍କ ଜମିର ମୂଲ୍ୟହେଲା ଏକଲକ୍ଷ ଟଙ୍କା । ତେବେ କାରଖାନାରେ ଆପଣଙ୍କର ଏକ ହଜାର ଟଙ୍କିଆ ଶହେଟି ଅଂଶ ରହିବ । ଆପଣଙ୍କ ଅଂଶ ସଂଖ୍ୟା ଅନୁସାରେ କାରଖାନାର ଲାଭାଂଶ ଆପଣଙ୍କୁ ମିଳିବ । ଆପଣଙ୍କ ପରିବାରର ଯୋଗ୍ୟ ଲୋକମାନେ ମଧ୍ୟ କୃଷିକାରଖାନାରେ ଚାକିରି କରିବା ନିମନ୍ତେ ସୁଯୋଗ ପାଇବେ । କାମ ଅନୁସାରେ ମାସକୁ ମାସ ଦରମା ମିଳିବ ।

କଥାବାର୍ତ୍ତା ଭିତରକୁ ସେ ଅଞ୍ଚଳର ଏମ.ଏଲ.,ଏ ସୌମେନ୍ଦ୍ର ପଶି ଆସିଲେ । ତାଙ୍କ ପଛରେ ଅଛନ୍ତି ଦଶ,ବାର ଟୋକା । ସୌମେନ୍ଦ୍ର ନିଜ ଅଫିସ୍‌କୁ ଡ଼ାକିନେଲେ ମହେଶଙ୍କୁ । ନିଜର ଅନିଚ୍ଛା ସତ୍ତ୍ୱେ ମହେଶ ଲୋକମାନଙ୍କୁ ଛାଡ଼ି ସୌମେନ୍ଦ୍ରଙ୍କ ସହିତ ଚାଲିଗଲେ ।

ମହେଶ ଜାଣନ୍ତି କୌଣସି ଅଞ୍ଚଳର ଲୋକ ସହଯୋଗ ନେଇ କିଛି କରିବାକୁ ହେଲେ ସ୍ଥାନୀୟ ଲୋକ ପ୍ରତିନିଧି ବା ଏମ.ଏଲ.ଏ ଆଉ ସଂପୃକ୍ତ ମନ୍ତ୍ରୀଙ୍କ ଅନୁମତି



Digitized by srujanika@gmail.com

ନେବାକୁ ପଡ଼ିବ । ନଚେତ ସେମାନେ ବିଭିନ୍ନ ଭାବେ ହଇରାଣ ହରକତ କରିବେ ।

ସେ ଦିନ ସୌମେନ୍ଦ୍ରଙ୍କର ପ୍ରଥମ ପ୍ରଶ୍ନ ଥିଲା-ଆପଣ ଆମେରିକା ଛାଡ଼ି ଓଡ଼ିଶାରେ ଏମିତି ଗୋଟେ କୃଷିକାରଖାନା କରିବାର ନିଷ୍ପତ୍ତି ନେଲେ କାହିଁକି ? ଏଠି ଅଳ୍ପ ପୁଞ୍ଜିରେ କାରଖାନା କରିହେବ ବୋଲି ନା କାରଖାନା ଗଢ଼ିବା ନାଆଁରେ ଅଳ୍ପ ମୂଲ୍ୟରେ ବହୁ ପରିମାଣର ଜମି ଦଖଲ କରିହେବ ବୋଲି ?

ମହେଶ ଉତ୍ତର ଦେଲେ-ନା, ମୋର ସେମିତି କିଛି ଅଭିସନ୍ଧି ନାହିଁ । ମୁଁ ବହୁ ବର୍ଷ ତଳେ ଓଡ଼ିଶା ଆସିଥିଲି । ଦେଖିଲି ଆମ କୃଷିରେ କିଛି ଉନ୍ନତି ହୋଇ ନାହିଁ । ବହୁ ପ୍ରାଚୀନ କାଳରୁ ହଳ,ବଳଦରେ ଜମି ଚାଷ ହେଉଛି । ସେଇ ଆଇମାଆ ଅମଳର ଖତ,ବିହନ ବ୍ୟବହାର ହେଉଛି । ବର୍ଷା ପାଣିକୁ ଅନେଇଁ ଅନେଇଁ ଫସଲ ଉଜୁଡ଼ି ଯାଉଛି । ନିରକ୍ଷର, ଦୁର୍ବଳ ଲୋକମାନେ ଚାଷ କାମରେ ନିଯୁକ୍ତ ଅଛନ୍ତି, ଅଥଚ ଶିକ୍ଷିତ ଯୁବକମାନେ ଚାଷକାମକୁ ଅସମ୍ମାନ ଜନକ କାମ ବୋଲି ଭାବି ଚାଷକାମ ନକରି ବେକାର ହୋଇ ବୁଲୁଛନ୍ତି ।ଏଣେ ସରକାର ଜଳସେଚନ, ଉନ୍ନତ ସାର, ଉନ୍ନତ ବିହନ,କୃଷିଯନ୍ତ୍ରପାତି ଯୋଗାଇବା ପାଇଁ କହୁଥିଲେ ବି ସେ ସବୁକୁ ଉପଯୋଗ କରି ଉନ୍ନତ ପ୍ରଣାଳୀରେ ଚାଷ କରିବାକୁ କେହି ଆଗେଇ ଆସୁ ନାହାଁନ୍ତି । ଅନ୍ୟ ପକ୍ଷରେ ଅଶିକ୍ଷିତ ଚାଷୀମାନେ ସେ ସବୁ ଆଧୁନିକ ଉପକରଣ ବ୍ୟବହାର କରିବାର ବାଗ ପାଉ ନାହାଁନ୍ତି । କିନ୍ତୁ ଚାଷ ପାଇଁ ଆମର ପ୍ରଚୁର କଞ୍ଚାମାଲ ଅଛି । ପ୍ରଚୁର ଚାଷ ଉପଯୋଗୀ ଜମି ଅଛି, ନଈ,ନାଳ,କେନାଲ ଅଛି । ବହୁ ସଂଖ୍ୟାରେ ଜନବଳ ଅଛି । ଅନେକ ଲୋକ କାମ ନପାଇ ବେକାର ହୋଇ ବୁଲୁଛନ୍ତି । ଆମେ ଚାଷକୁ ବିଧିବଦ୍ଧ ଭାବେ ଶିଳ୍ପରେ ପରିଣତ କରି ପାରିଲେ ଆମ ରାଜ୍ୟର ଶିକ୍ଷିତ ଓ ଅଶିକ୍ଷିତ ସବୁ ମଣିଷ କାମ ପାଇବେ ଏବଂ ଆମ ରାଜ୍ୟର ଆର୍ଥିକ ଅବସ୍ଥାରେ ଘୋର ପରିବର୍ତ୍ତନ ଆସିବ। ଏଇ ଉଦ୍ଦେଶ୍ୟକୁ ସାକାର କରିବା ପାଇଁ ମୁଁ ଓଡ଼ିଶା ଆସିଛି । ଆପଣ ଆମ ଅଞ୍ଚଳର ଲୋକ ପ୍ରତିନିଧି । ଏ ଦିଗରେ ଆପଣଙ୍କ ସାହାଯ୍ୟ ଓ ସହଯୋଗ ମୋର ନିହାତି ଦରକାର ।

ସୌମେନ୍ଦ୍ରଙ୍କ କାନରେ କିଏ ଜଣେ ମନ୍ତ୍ର ଫୁଙ୍କିଲା-ଇଏ ଗୋଟେ ମାଲଦାର୍ ପାର୍ଟି ପରି ମାଲୁମ ହେଉଚି । ଆମେରିକାରେ ଅନେକ ବର୍ଷ ରହିବା ଭିତରେ ପ୍ରଚୁର ଧନ ଇଏ ଠୁଳ କରିଛି । ଏଠି କୃଷି କାରଖାନା କଲେ ଅସୁମାରି ଲାଭ କରିବ । ଇଏ ଆମ ପାର୍ଟି ପାଇଁ ମୋଟା ଅଙ୍କର ଚାନ୍ଦା ଆଗ ଦେଉ । ମନ୍ଦିରରେ କିଛି ଭୋଗ ନଲଗେଇଲେ ଏ ଲୋକକୁ ମନ୍ଦିର ପ୍ରବେଶର ଅଧିକାର କିଏ ଦେବ ?

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ସୌମେନ୍ଦ୍ର ଚାହିଁଲେ ତାଙ୍କ ଚାରି ପାଖର ଚାମଚାମାନଙ୍କୁ ଓ ମହେଶବାବୁଙ୍କୁ । କିଛି ସମୟ ମନ ଭିତରେ କ'ଣ ଆକଳନ କଲା ପରି ଦିଶିଲେ । ତାପରେ କହିଲେ- ଆଛା, ମହେଶବାବୁ!ଆପଣ ଜାଣନ୍ତି ଏମିତି ଗୋଟେ କାରଖାନା ପାଇଁ କେତେ ପୁଞ୍ଜି ଆବଶ୍ୟକ ହେବ ? ଆପଣ ଏତେ ଟଙ୍କା କେଉଁଠୁ ପାଇବେ ? ଆପଣଙ୍କୁ କୌଣସି ସଂସ୍ଥା ଫାଇନାନ୍ସ କରିବ ନା ଆପଣଙ୍କ ହାତରେ ଏତେ ଟଙ୍କା ଅଛି ? ଏ ସବୁ କାମ ପାଇଁ ପ୍ରଥମ କଥା ହେଉଛି ପୁଞ୍ଜି ।

ମହେଶ ଅଧିକ ଉତ୍ସାହିତ ହୋଇ କହିଲେ-ପୁଞ୍ଜିର ଅଭାବ ହେବ ନାହିଁ । ଏକୁଟିଆ ମୁଁ ନୁହେଁ , ଆମେରିକାରେ ମୋ ପରି ଯେତେ ଓଡ଼ିଆ କାମ କରୁଛନ୍ତି ସେମାନଙ୍କ ସହିତ ମୁଁ କଥାବାର୍ତ୍ତା କରିଛି । ସେମାନେ ସମସ୍ତେ ଏଇ କୃଷିକାରଖାନା ପାଇଁ ଫାଇନାନ୍ସ କରିବାକୁ ପ୍ରସ୍ତୁତ ହୋଇ ମୋତେ ପଠାଇଛନ୍ତି । ସେମାନେ ସମସ୍ତେ ଏ କାରଖାନାରେ ଅଂଶୀଦାର ରହିବେ । ପ୍ରାଥମିକ କାର୍ଯ୍ୟ ପାଇଁ ଯାହା ପୁଞ୍ଜି ଦରକାର ତାହା ମୋ ପାଖରେ ଅଛି ।

ସୌମେନ୍ଦ୍ର ଟିକେ ହସିଲେ । ବଡ଼ ମାଛଟାଏ ତାଙ୍କ ବନ୍ସିକଣ୍ଟାର ଥୋପ ଗିଳିଛି । ସେ ଖୁସୀହୋଇ କହିଲେ-ଠିକ୍ ଅଛି, ଆପଣଙ୍କ ଉଦ୍ୟମ ପଛରେ ଆମର ଶୁଭେଚ୍ଛା ଅଛି । ଆପଣ ଆଗେଇ ଚାଲନ୍ତୁ । ସରକାରୀ ସ୍ତରରେ ଯାହା ସହଯୋଗ ଦରକାର ମୁଁ ସେ ସବୁ ଯୋଗାଇ ଦେବି ।

ମହେଶବାବୁ ସ୍ଥାନୀୟ ଏମ.ଏଲ.ଏ.ଙ୍କ ଅଭୟବାଣୀ ପାଇବା ପରେ କୃଷିକାରଖାନା ପ୍ରତିଷ୍ଠା କରିବା ନିମନ୍ତେ ଅଧିକ ଆଗ୍ରହୀ ହେଲେ । ତାଙ୍କ ମନରେ ଆଶଙ୍କା ଥିଲା ଏମ୍.ଏଲ.ଏ କିଛି ନା କିଛି ପ୍ରତିବନ୍ଧକ ସୃଷ୍ଟି କରିବେ । ସୌମେନ୍ଦ୍ରଙ୍କ ବ୍ୟବହାର ମହେଶଙ୍କୁ ମୁଗ୍ଧକଲା । ସବୁ ରାଜନୈତିକ ନେତା ଏକା ପରି ନୁହଁନ୍ତି ବୋଲି ତାଙ୍କର ଧାରଣାହେଲା ।

ପ୍ରଥମେ କୃଷି ଯନ୍ତ୍ରପାତି ଚଳାଇବା,ଉନ୍ନତ ସାର ଓ ବିହନ ପ୍ରୟୋଗ ଏବଂ କୀଟନାଶକ ପ୍ରୟୋଗ ଇତ୍ୟାଦି ଶିକ୍ଷାଦାନ ନିମନ୍ତେ ଗୋଟିଏ ତାଲିମ କେନ୍ଦ୍ର ଖୋଲିବାକୁ ସ୍ଥିରକଲେ ମହେଶବାବୁ । କୃଷିକାରଖାନା ଖୋଲିବା ପୂର୍ବରୁ ସେଥିରେ କାମକରିବା ପାଇଁ ତାଲିମ ପ୍ରାପ୍ତ କର୍ମଚାରୀ ଆବଶ୍ୟକ ।

ହଜାରେ ଏକର ପଡ଼ିଆ କିଣି ସେଥିରେ ତାଲିମକେନ୍ଦ୍ର ଖୋଲିଲେ ମହେଶବାବୁ । ବିଭିନ୍ନ ବିଭାଗରେ ବିଶେଷ ଜ୍ଞାନ ଅର୍ଜନ କରିଥିବା ବିଶେଷଜ୍ଞମାନେ ନିଯୁକ୍ତି ପାଇଲେ ।



Digitized by srujanika@gmail.com

ବିଭିନ୍ନ କୃଷିଯନ୍ତ୍ରପାତି କିଣାହୋଇ ଆସିଲା । ପାଖଆଖ ଗାଆଁର ଯୁବକ ଯବୁତୀମାନେ ତାଲିମକେନ୍ଦ୍ରରେ ତାଲିମନେବା ପାଇଁ ନାମ ଲେଖାଇଲେ । ବେଶି ସଂଖ୍ୟାରେ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ବେକାର ଯୁବକ,ଯୁବତୀ ଏ ତାଲିମକେନ୍ଦ୍ରରେ ନାମ ଲେଖାଇବାକୁ ଆଗ୍ରହ ପ୍ରକାଶ କଲେ । ସେମାନଙ୍କର ଆଶା କୃଷି ଯନ୍ତ୍ରପାତି ଚଳାଇବା ତାଲିମ ନେଲେ କୃଷିକାରଖାନାରେ ସେମାନଙ୍କୁ କାମ ମିଳିବ ।

ପାଖଆଖ ସମସ୍ତ ଗାଆଁରେ ଆଲୋଚନାର ମୁଖ୍ୟ ବିଷୟବସ୍ତୁ ହେଲା ମହେଶବାବୁଙ୍କ କୃଷିକାରଖାନା । କିନ୍ତୁ ଆଉ କେତେକ ସନ୍ଦେହ କଲେ-ଏ ମହେଶ ଜଣେ ମତଲବୀ ସୌଦାଗର । ଲୋକମାନେ କାଳେ ସେମାନଙ୍କ ଜମି କାରଖାନା ପାଇଁ ଦେବାକୁ ଆପତ୍ତି ଉଠାଇବେ ତେଣୁ ସିଏ ଆଗେ ଏ ଅଞ୍ଚଳର ଲୋକମାନଙ୍କୁ କୃଷିକାରଖାନାର କର୍ମଚାରୀ କରିବା ପାଇଁ ତାଲିମର ବ୍ୟବସ୍ଥା କରିଦେଲା । ଏଇ ତାଲିମ ପାଇଥିବା ଲୋକମାନେ ସେମାନଙ୍କ ଜମିଦେବେ ଓ କାରଖାନା ପ୍ରତିଷ୍ଠା କରିବାରେ ସହାୟତା କରିବେ ।

ଆଉ କେତେକ କହିଲେ-ଲୋକମାନେ ଏବେଠୁ କୃଷିକାରଖାନାକୁ ତାଙ୍କ ଜମିଦେବାକୁ ପ୍ରସ୍ତୁତ ହୋଇ ଗଲେଣି । ମହେଶବାବୁ ଏଅଞ୍ଚଳର ସବୁ ଲୋକଙ୍କୁ ଭୂମିହୀନ କରିଛାଡ଼ିବେ । ଥରେ ତାଙ୍କ ହାତକୁ ସମସ୍ତ ଜମି ଟେକିଦେବା ପରେ ଆଉ ଫେରିପାଇବା ଅସମ୍ଭବ । ଆମର ଏକମାତ୍ର ସମ୍ବଳ ଧାନଜମି । ସେତକ ଆମ ହାତରୁ ଚାଲିଗଲେ ଆମେ ସମସ୍ତେ ନିଃସ୍ୱ ହୋଇଯିବା ।

ଏମ.ଏଲ.ଏ ସୌମେନ୍ଦ୍ରବାବୁଙ୍କ କ୍ୟାମ୍ପରେ ମଧ୍ୟ ଅନୁରୂପ ଆଶଙ୍କା ବୃଦ୍ଧି ପାଇବାକୁ ଲାଗିଲା । ଚାମଚାମାନେ ସୌମେନ୍ଦ୍ରଙ୍କ ଉପରେ ଦୋଷାରୋପ କରି କହିଲେ-ଆପଣଙ୍କ ସରଳତା ଯୋଗୁ ଏସବୁ ହେଲା ।ଆମେ ଆପଣଙ୍କୁ ଆଗରୁ ସତର୍କ କରାଇ ଦେଇଚୁ । ଆପଣ ଆମ କଥା ଆଦୌ ଶୁଣିଲେ ନାହିଁ । ଓଲଟା କୃଷିକାରଖାନା କରିବା ପାଇଁ ତାଙ୍କୁ ଉତ୍ସାହିତ କଲେ । ଏବେ କ'ଣ କରାଯିବ ? ଶତ୍ରୁ ଦିନକୁ ଦିନ ଅଧିକରୁ ଅଧିକ ବଳଶାଳୀ ହେଉଛି । ଆଗେ ସିଏ କିଛି ଖର୍ଚ୍ଚକରି ନଥିଲା । ଏବେ କୃଷି ତାଲିମକେନ୍ଦ୍ର ପାଇଁ ଦୁଇ,ତିନି କୋଟି ଟଙ୍କା ଖର୍ଚ୍ଚ କଲାଣି । ଏବେ କ'ଣ ସହଜରେ ସିଏ ଏ ଜାଗାରୁ ଉଠିବ ? ତା'ହାତରେ ଏଇନେ ହଜାର ହଜାର ଲୋକ । ଯେଉଁମାନେ କୃଷି ତାଲିମ ପାଉଛନ୍ତି ସେମାନେ ଠେଙ୍ଗା,ବାଡ଼ି ଧରି ତା'ସପକ୍ଷରେ ଠିଆହେବେ ।

ସୌମେନ୍ଦ୍ର କହିଲେ-ତୁମେ ସବୁ କେହି ବ୍ୟସ୍ତ ହୁଅନା । ତାକୁ ହଲେଇବାର



Digitized by srujanika@gmail.com

ବେଳ ଆସିନାହିଁ । ଏବେ ହଲେଇଲେ କ'ଣ ମିଳିବ ? ଯେତେବେଳେ ସେଗଛରେ ଫଳ ଫଳିବ , ସେତେବେଳେ ଟିକେ ହଲାଇ ଦେଲେ ବୋଝ,ବୋଝ ଫଳ ତଳେ ପଡ଼ିବ । ଏବେ ଯଦି ଆମେ କିଛି ବିଘ୍ନ ଘଟାଇବା ମହେଶ ଆମେରିକା ଲେଉଟି ଯିବ । ଆମକୁ କ'ଣ ମିଳିବନା ଆମ ଅଞ୍ଚଳର ଲୋକଙ୍କୁ କ'ଣ ମିଳିବ ? ଏବେ ଫେରିଯିବାକୁ ଚାହିଲେ ତାର ଫେରିଯିବାରେ ବିଶେଷ କିଛି ଅସୁବିଧା ନାହିଁ । ଦୁଇ,ତିନି କୋଟି ଟଙ୍କା ଯାହା ଖଟାଇଛି ସେଟା ତା'ଦେହର ମଳି । କିନ୍ତୁ ଯେତେବେଳେ ସିଏ ତା'ର ସମସ୍ତ ସମ୍ବଳ କୃଷିକାରଖାନାରେ ଲଗାଇ ସାରିଥିବ ଓ ଏ ଅଞ୍ଚଳର ସମସ୍ତ ଜମି ଖରିଦ କରି ସାରିଥିବ ସେତେବେଳେ ତା'ର ଏଠୁ ତିଳେ ଉଠିବାର ଢୁ ନଥିବ । ସେତିକି ବେଳେ ତାକୁ ନିର୍ଘାତିଆ ପ୍ରହାର କଲେ ସିଏ ସୁନା ଅଣ୍ଡାଦେବ, ଏବେ ନୁହଁ । ତମେ ସବୁ ସେ ସୁଦିନକୁ ଚୁପ୍‌ଚାପ୍ ଅପେକ୍ଷା କର ।

ଚାମଚାମାନେ ଚୁପ୍ ହୋଇଗଲେ । ଏମ.ଏଲ.ଏ ଯେତେବେଳେ ଏମିତି କହୁଛନ୍ତି ସେମାନଙ୍କର ଆଉ ଚାରା କ'ଣ ଅଛି ?

ମଝିରେ ମଝିରେ ରେଡ଼ିଓ,ଦୂରଦର୍ଶନ ଓ ଖବରକାଗଜରେ ମହେଶଙ୍କ ସାକ୍ଷାତକାର ପ୍ରକାଶ ପାଇଲା । ସେଥିରେ ସେ ତାଙ୍କର ପରିକଳ୍ପିତ କୃଷିକାରଖାନାର ରୂପରେଖର ସୂଚନାଦେଲେ । ଖୁବ୍ ଅଳ୍ପ ଦିନ ମଧ୍ୟରେ କୃଷି ତାଲିମକେନ୍ଦ୍ର ଓ କୃଷିକାରଖାନା ବିଷୟରେ ସାରା ଓଡ଼ିଶାର ଲୋକ ଜାଣିଗଲେ ।

ଅସଲ କାମ କୃଷି କାରଖାନା ନିମନ୍ତେ ଜମି ସଂଗ୍ରହ କାର୍ଯ୍ୟ ଆରମ୍ଭ ହେଲା । କୃଷିକାରଖାନା ପ୍ରତିଷ୍ଠା ନିମନ୍ତେ ପୂର୍ବରୁ ରାଜ୍ୟରେ ଯେତିକି ଆଗ୍ରହ ପ୍ରକାଶ ପାଇଥିଲା ତାଠୁ ଢ଼େର ଅଧିକ ପ୍ରତିବାଦ ସୃଷ୍ଟିହେଲା । କେତେକ ଲୋକ ଅଡ଼ି ବସିଲେ ଯେ କୌଣସି ପରିସ୍ଥିତିରେ ମଧ୍ୟ ସେମାନଙ୍କ ଜମି ସେମାନେ କୃଷିକାରଖାନା ପାଇଁ ଦେବେ ନାହିଁ । ଆଉ କେତେକ ଲୋକ ଆଗପଛ ବିଚାର କରି ରାଜିହେଲେଯେ କୃଷିକାରଖାନାକୁ ସେମାନଙ୍କ ଜମିରୁ ଅଧେ ଦେବେ ଓ ଆର ଅଧକ ସେମାନେ ନିଜ ହାତରେ ଚାଷ କରିବେ । କିଛି ଲୋକ ତାଙ୍କ ଜମି ମୂଲ୍ୟର ତିନି,ଚାରି ଗୁଣ ଦାବି କଲେ ଏବଂ ଆଉ କିଛି ଲୋକ ଜମି ବିନିମୟରେ ତାଙ୍କ ପରିବାରର ସମସ୍ତଙ୍କ ପାଇଁ ଚାକିରି ଦାବି କଲେ । କିନ୍ତୁ ଆଉ କିଛି ଲୋକ ବଥାଇ ଭଲ ଦିଗ ପ୍ରତି ସଚେତନ ହୋଇ କହିଲେ -କୃଷି କାରଖାନା ହେଲେ ଆମ ଅଞ୍ଚଳର କୃଷିର ଉନ୍ନତି ହେବ ଓ ଆମ ଅଞ୍ଚଳର ବହୁ ବେକାର ଲୋକ କୃଷିକାରଖାନାରେ ନିଯୁକ୍ତି ପାଇବେ ।

ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

ଏମିତି ମିଶ୍ର ପ୍ରତିକ୍ରୀୟା ପ୍ରକାଶ ପାଇବା ଯୋଗୁ ସାରା ଅଞ୍ଚଳରେ ଗୋଟେ ବିପ୍ଲବ ମୁଣ୍ଡ ଟେକିଲା । ଗୋଟିଏ ପଟରେ କୃଷିକାରଖାନା କରାଇ ନଦେବା ପାଇଁ ବି ବିପ୍ଲବ କରିବାକୁ କିଛି ଲୋକ ନିଜକୁ ପ୍ରସ୍ତୁତ କଲେ ଏବଂ ଅନ୍ୟ ପକ୍ଷରେ କିଛି ଲୋକ କୃଷି କାରଖାନା କରିବା ସପକ୍ଷରେ ଅଣ୍ଟା ଭିଡ଼ି ଠିଆହେଲେ ।

କୃଷିକାରଖାନାକୁ ବିରୋଧ କରୁଥିବା ଲୋକମାନଙ୍କର ଶୋଭାଯାତ୍ରା ଦିନେ ଆସି କୃଷି ତାଲିମକେନ୍ଦ୍ରର ଫାଟକ ଆଗରେ ଠିଆହେଲା । ତାଲିମକେନ୍ଦ୍ରରେ ତାଲିମ ପାଉଥିବା ଲୋକମାନେ ବିପ୍ଲବକାରୀଙ୍କ ମୁକାବିଲା କରିବା ପାଇଁ ଏକଯୁଟ ହେଲେ ଓ ସେମାନଙ୍କ ସାମନା କରିବା ପାଇଁ ମହେଶବାବୁଙ୍କ ଅନୁମତି ଲୋଡ଼ିଲେ । ମହେଶବାବୁ ତାଙ୍କୁ ରୋକ୍ ଠୋକ୍ ମନାକଲେ । ଶାନ୍ତ ରହିବାକୁ ସେମାନଙ୍କୁ ପରାମର୍ଶ ଦେଇ ସିଏ ନିଜେ ଶୋଭାଯାତ୍ରା ଆଡ଼କୁ ଆଗେଇ ଗଲେ । ଶୋଭଯାତ୍ରାକାରୀମାନଙ୍କର କେତେ ଜଣ ପ୍ରତିନିଧିଙ୍କୁ ଆଲୋଚନାକୁ ଡାକିଲେ ।

ଆଲୋଚନା ଚାଲିଲା । ମହେଶବାବୁ ସେମାନଙ୍କୁ ବୁଝାଇଲେ-ଦେଖନ୍ତୁ, ମୁଁ ଆପଣମାନଙ୍କ ଜମି ସବୁକୁ ମୋ ସାଙ୍ଗରେ ଆମେରିକା ନେଇ ଯାଇ ପାରିବି ନାହିଁ। ଆପଣମାନଙ୍କ ନିଜ ଜମି ଯେଉଁଠି ଅଛି ସେଇଠି ହିଁ ରହିବ । ସେ ଜମିର ମାଲିକ ମଧ୍ୟ ମୁଁ ହେବିନାହିଁ । ଆପଣମାନେ ନିଜେ ସେ ଜମିର ମାଲିକ ହେବେ । ଯେତିକି ଜମି ଆପଣ କାରଖାନାକୁ ଦେବେ ସେଇ ଜମିର ମୂଲ୍ୟ ଯେତିକି ହେବ ସେତିକି ପରିମାଣର ଅଂଶଧନ ଆପଣଙ୍କ ନାମରେ ରହିବ । କେବଳ ଚାଷର ପଦ୍ଧତି ବଦଳିବ । ହଳ ସ୍ଥାନରେ କଳରେ ଚାଷ ହେବ । ପାରଂପରିକ ପଦ୍ଧତି ଛାଡ଼ି ବୈଜ୍ଞାନିକ ପ୍ରଣାଳୀରେ ଚାଷ ହେବ । ଏ ଚାଷରେ ଅମଳ ବହୁଗୁଣରେ ବଢ଼ିଯିବ ।

ଲୋକମାନେ ପ୍ରଶ୍ନକଲେ-ଆପଣ ଅଧାରୁ ଟଙ୍କା ପଇସା ନେଇ ଆମେରିକା ଫେରିଯିବେ ନାହିଁ ବୋଲି ଆମେ କେମିତି ନିଶ୍ଚିତ ହେବୁ? ପୂର୍ବରୁ ଆମ ରାଜ୍ୟରେ ଅନେକ ଠକ ସଂସ୍ଥା ଖୋଲିଛି । ପ୍ରଥମେ ପ୍ରଥମେ ଲୋକମାନଙ୍କୁ ପ୍ରଲୋଭନ ଦେଖାଇ ବେଶ୍ କିଛି ଟଙ୍କା ଠୁଳକରି ରାତାରାତି ସମସ୍ତ ସଂବଳ ଧରି ଉଭାନ ହୋଇ ଯାଇଛି ।

ମହେଶବାବୁ ଉତ୍ତର ଦେଲେ-ମୁଁ ମୋ କଥାଟା ପରିଷ୍କାର ଭାବେ କହି ଦେଉଛି ଶୁଣନ୍ତୁ । ଆପଣମାନଙ୍କ ଠାରୁ ମୋର ଗୋଟିଏ ହେଲେ ଟଙ୍କା ନେବାର ନାହିଁ । ବରଂ ଯିଏ କୃଷିକାରଖାନାକୁ ଜମିଦେବାକୁ ଚାହିବେ ମୁଁ ସେମାନଙ୍କ ଜମି ବିନିମୟରେ ତାର ଉପଯୁକ୍ତ ବଜାର ମୂଲ୍ୟ ଯାହାହେବ ସେତିକି ଟଙ୍କା ଆପଣଙ୍କୁ ଦେବି । କାରଖାନା ପାଇଁ



Digitized by srujanika@gmail.com

ଯେତେ ଜମି କିଣାଯାଇଥିବ ସମସ୍ତ ଜମିକୁ ଏଠୁ ଗୋଟେ ଇଞ୍ଚ ମଧ୍ୟ ଉଠାଇ ନେବାର ଶକ୍ତି କାହାର ନାହିଁ । ଆଉ ଯେଉଁମାନେ ନିଜ ଜମି ବିନିମୟରେ ଟଙ୍କା ନନେଇ କୃଷିକାରଖାନାର ଅଂଶଧନ ଭାବେ ରଖିବେ ସେମାନଙ୍କ ନାଆଁରେ ସେହି ଅଂଶଧନ ଆଇନ ଅନୁସାରେ ରେଜେଷ୍ଟ୍ରି ଭୁକ୍ତ ହେବ । ଏବେ ତଲିମକେନ୍ଦ୍ର ଜୋରସୋରରେ ଚାଲିଛି । ଆଉ ଛ'ମାସ ପରେ ପ୍ରଥମ ତାଲିମପ୍ରାପ୍ତ ଲୋକ ବାହାରିବେ । ମୁଁ ଏଇ ତାଲିମକେନ୍ଦ୍ର ଆଉ କୃଷିଯନ୍ତ୍ରପାତି ସବୁକୁ ଛାଡ଼ି ଯଦି ଚାଲିଯାଏ, ତାହେଲେ ସବୁଠୁ ବେଶି କ୍ଷତିହେବ ମୋର । ତେଣୁ ମୁଁ ଏ ସ୍ଥାନ ଛାଡ଼ିକି ଚାଲିଯିବା ପ୍ରଶ୍ନ ଉଠୁନାହିଁ । କିନ୍ତୁ ଆଉ ଗୋଟିଏ ଆଶଙ୍କା ଅଛି । ତାହା ମୁଁ ଆପଣମାନଙ୍କୁ ଖୋଲି କହି ଦେଉଛି । କିଛି ଲୋକ ମତେ ଏଠୁ ହଟେଇବାକୁ ବିଭିନ୍ନ ବାଟରେ ଉଦ୍ୟମ କରିବେ । ତା'ର କାରଣ କ'ଣ ବୋଲି ଆପଣମାନେ ପଚାରି ପାରନ୍ତି । ସେ ସଂପର୍କରେ ମୁଁ ଏତିକି କହିବି -ଯଦି ଏଠି ଗୋଟେ କୃଷିକାରଖାନା ଗଢ଼ିଉଠେ, ତାହେଲେ କିଛି ଲୋକଙ୍କର ସ୍ୱାର୍ଥ ଓ ପ୍ରତିପତ୍ତିରେ ଆଞ୍ଚ ଆସିବ । ମୁଁ ଆଶାକରେ ସେପରି ପରିସ୍ଥିତି ସୃଷ୍ଟିହେଲେ ଆପଣମାନେ ତା'ର ପ୍ରତିରୋଧ କରିବେ । ମୋ ପକ୍ଷରେ ଓ କୃଷିକାରଖାନା ପକ୍ଷରେ ଆପଣମାନେ ଠିଆହେବେ ।

ଶୋଭାଯାତ୍ରାରେ ଆସିଥିବା ଲୋକମାନେ ପରସ୍ପରଙ୍କ ମୁହଁକୁ ଚାହିଁଲେ । ନିଜ ନିଜ ଭିତରେ କିଛି ସମୟ କଥାବାର୍ତ୍ତା ହେଲେ-ମହେଶବାବୁ ଠିକ୍ କଥା କହୁଛନ୍ତି । ଜମିଟାକୁ ସିଏ ପକେଟ୍‌ରେ ପୂରାଇ କି ମୁଣ୍ଡରେ ମୁଣ୍ଡେଇ କେଉଁ ଆଡ଼େ ପଳେଇ ଯିବେ ନାହିଁ । ଏଠି କୃଷିକାରଖାନା ହେଲେ ଆମ ଏ ଅଞ୍ଚଳର ସବୁଲୋକ କାମ ପାଇବେ । ବୈଜ୍ଞାନିକ ପ୍ରଣାଳୀରେ ଚାଷହେଲେ କୃଷିର ଅମଳ ବଢ଼ିବ । ଆମ ଅଞ୍ଚଳର ଶିକ୍ଷିତ,ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ବେକାର ଯୁବକ,ଯୁବତୀମାନେ କୃଷିକାରଖାନାରେ ଚାକିରି କରି କଳ ହଳରେ ଚାଷକରିବାକୁ, ଯନ୍ତ୍ରପାତିରେ ବିଲବାଛିବାକୁ ,ରୋଇବାକୁ, କୀଟନାଶକ ଔଷଧ ପକାଇବାକୁ ଆଉ ଧାନ ଅମଳ କରିବାକୁ ଆଗ୍ରହ ପ୍ରକାଶ କରିବେ । ଆମ ଅଞ୍ଚଳରେ ଆଉ କେହି ବେକାର ରହିବେ ନାହିଁ ।

ଶୋଭାଯାତ୍ରାରେ ଆସିଥିବା ଲୋକମାନେ ମହେଶବାବୁଙ୍କ ଉଦ୍ୟମକୁ ଭୂରି ଭୂରି ପ୍ରଶଂସା କଲେ । ସେମାନେ ଶ୍ଳୋଗାନ ଦେଲେ-କୃଷିକାରଖାନା ଜିନ୍ଦାବାଦ, କୃଷିକାରଖାନା ସଫଳ ହେଉ । ମହେଶବାବୁ ଜିନ୍ଦାବାଦ ।

କୃଷିକାରଖାନା ପ୍ରତିଷ୍ଠା ବିଷୟରେ ସାରା ରାଜ୍ୟରେ ଆଲୋଚନା ସରଗରମ ହେଲା । କାରଖାନା ଅଫିସ୍‌ରେ ବହୁ ସଂଖ୍ୟାରେ ଲୋକଆସି ଭିଡ଼ ଜମାଇଲେ । ଖୁବ୍



Digitized by srujanika@gmail.com

ଅଳ୍ପ ଦିନ ମଧ୍ୟରେ କୃଷିକାରଖାନା ପାଇଁ ଆବଶ୍ୟକ ହେଉଥିବା ୧୦ହଜାର ଏକର ଜମି ସ୍ଥାନୀୟ ଲୋକମାନଙ୍କ ଠାରୁ ମିଳିଗଲା । ଜଣେ ହେଲେ କେହି ଜମିର ମୂଲ୍ୟ ନେବାକୁ ରାଜି ହେଲେନାହିଁ । ସମସ୍ତେ ସେମାନଙ୍କ ଜମି ମୂଲ୍ୟର ଅଂଶଧନ କୃଷିକାରଖାନାରେ ରଖିବାକୁ ଆଗ୍ରହ ପ୍ରକାଶକଲେ । ଚାରି ମାସ ଭିତରେ କାରଖାନାର ଚାରି ପାଖରେ ପଥର ପାଚିରି ବୁଲିଗଲା । ମାସ ଦୁଇଟା ଭିତରେ କାରଖାନାର ଅଫିସ୍ ପାଇଁ ୫୦ ବଖରା ଘର ସେଇ ପାଚିରି ଭିତରେ ତିଆରି ହୋଇଗଲା । ଏକ ହଜାର ଏକର ଜମିକୁ ନେଇ ଗୋଟିଏ ପ୍ରକାଣ୍ଡ ପୋଖରୀ ଖୋଳାଯାଇ ଜଳସେଚନ ପାଇଁ ବ୍ୟବସ୍ଥା କରାଗଲା ।

ପ୍ରଥମ କିସ୍ତିରେ ୫୦ଟା ଟ୍ରାକ୍ଟର କିଣାଯାଇ ସବୁ ଜମିକୁ ଚାଷ କରାଗଲା । ଟ୍ରାକ୍ଟର ଚାଳନା ଟ୍ରେନିଙ୍ଗ ପାଇଥିବା ସେହି ଅଞ୍ଚଳର ଯୁବକ, ଯୁବତୀମାନେ କୃଷିକାରଖାନାରେ ଚାକିରି ପାଇ ଟ୍ରାକ୍ଟର ଚଳାଇ ସବୁ ଜମିକୁ ଚାଷକଲେ ।

ହଠାତ୍ ଦିନେ ସୌମେନ୍ଦ୍ରବାବୁ କୃଷିକାରଖାନାରେ ପହଞ୍ଚି ମହେଶବାବୁଙ୍କ ସହିତ ଆଲୋଚନା କଲେ ଓ ପ୍ରସ୍ତାବ ଦେଲେ-କୃଷିକାରଖାନାର ଗୋଟିଏ ଉଦ୍‌ଘାଟନ ଉତ୍ସବ କରିବାକୁ ହେବ । ମୁଖ୍ୟମନ୍ତ୍ରୀ ଏହି କାରଖାନାକୁ ଉଦ୍‌ଘାଟନ କରିବାକୁ ଆଗ୍ରହୀ । ଆସନ୍ତା ଶୁକ୍ରବାର ଦିନ ମୁଖ୍ୟମନ୍ତ୍ରୀ ଆପଣଙ୍କ କୃଷି କାରଖାନାକୁ ଉଦ୍‌ଘାଟନ ପୂର୍ବକ ଏହାକୁ ଲୋକାର୍ପଣ କାରିବେ । ଏଥିପାଇଁ ସମସ୍ତ ବ୍ୟବସ୍ଥା କରିବାକୁ ହେବ । ମୁଖ୍ୟମନ୍ତ୍ରୀ ଏହି ଅବସରରେ କୃଷିକାରଖାନା ନିମନ୍ତେ କିଛି ଅନୁଦାନ ଓ ସବ୍‌ସିଡ଼ି ଘୋଷଣା କରିବେ ।

ଏମ.ଏଲ.ଏ.ଙ୍କ ଏହି ପ୍ରସ୍ତାବକୁ ମହେଶବାବୁ ସାଦରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଏଥିରେ କିଛିଟା ସଂଶୋଧନ ଆଣିଲେ । ମହେଶବାବୁଙ୍କ ସଂଶୋଧିତ ପ୍ରସ୍ତାବଥିଲା- ସ୍ଥାନୀୟ କୃଷକମାନଙ୍କୁ ସମ୍ମାନ ଦେବାପାଇଁ ମୁଖ୍ୟମନ୍ତ୍ରୀ ଏହି ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ସ୍ଥାନୀୟ କୃଷକମାନଙ୍କ ମଧ୍ୟରୁ ଜଣେ ବୟସ୍କ କୃଷକ ହାତରେ କୃଷିକାରଖାନାର ଶୁଭଉଦ୍‌ଘାଟନ କରାଇଲେ କଥାଟା ଅଧିକ ସୁନ୍ଦର ଓ ଆକର୍ଷଣୀୟ ହେବ । ମୁଖ୍ୟମନ୍ତ୍ରୀଙ୍କ ଏପରି କାମ କୃଷକମାନଙ୍କୁ ଉତ୍ସାହିତ କରିବ ଏବଂ ଏହା ମୁଖ୍ୟମନ୍ତ୍ରୀଙ୍କ ଭାବମୂର୍ତ୍ତିକୁ ବଢ଼ାଇବ ।

ଏହି ସଂଶୋଧିତ ପ୍ରସ୍ତାବକୁ ସୌମେନ୍ଦ୍ରବାବୁ ବହୁବାର ଓଲଟାଇ ପାଲଟାଇ ପରୀକ୍ଷା, ନିରୀକ୍ଷା କଲେ । ତାପରେ ମହେଶଙ୍କ ପ୍ରସ୍ତାବକୁ ଗ୍ରହଣ କରିବା ମୁଦ୍ରାରେ ମୁଣ୍ଡ ହଲାଇ ନିଜର ସମ୍ମତି ଜଣାଇଲେ । ଚଳିତ ମାସର ଶେଷ ସପ୍ତାହ ଅର୍ଥାତ ୨୮ତାରିଖ ଶୁକ୍ରବାର ଦିନ ଉଦ୍‌ଘାଟନ ଉତ୍ସବ କରାଯିବାକୁ ଆପାତତଃ ସ୍ଥିରହେଲା । ତଥାପି



Digitized by srujanika@gmail.com

ମୁଖ୍ୟମନ୍ତ୍ରୀଙ୍କ ସହିତ ପରାମର୍ଶ କରି ତାରିଖ ଓ ସମୟ ବିଷୟରେ ଶେଷ କଥା ଜଣାଇବେ ବୋଲି କହି ସୌମେନ୍ଦ୍ରବାବୁ ସେଦିନ ଫେରିଗଲେ ।

ନିର୍ଦ୍ଧାରିତ ଦିନରେ ମୁଖ୍ୟମନ୍ତ୍ରୀ କୃଷିକାରଖାନାର ଉଦ୍‌ଘାଟନ ଉତ୍ସବରେ ଯୋଗଦେଲେ । ସେ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ସହିତ କୃଷିମନ୍ତ୍ରୀ, କୃଷି ବିଭାଗର ଶାସନ ସଚିବ,ଜିଲ୍ଲାପାଳ,ଏମ.ଏଲ.ଏ ସୌମେନ୍ଦ୍ରବାବୁଙ୍କ ସମେତ ବହୁ ସରକାରୀ,ଅର୍ଦ୍ଧସରକାରୀ ଓ ବେସରକରୀ ସଂସ୍ଥାର ଲୋକ ଉପସ୍ଥିତଥିଲେ । ଏହି ଉତ୍ସବ ଦେଖିବା ନିମନ୍ତେ ସେ ଅଞ୍ଚଳର ପ୍ରାୟ ସତୁରି,ଅଶି ହଜାର ଲୋକ ଏକତ୍ର ହୋଇଥିଲେ ।

ସେହି ଅଞ୍ଚଳର ପୁରୁଖା ଓ ପ୍ରବୀଣ ଚାଷୀ ନରି ପ୍ରଧାନ ହାତରେ କୃଷିକାରଖାନାର ଉଦ୍‌ଘାଟନ ଉତ୍ସବ କରାଇ ମୁଖ୍ୟମନ୍ତ୍ରୀ ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେଲେ । ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣରେ କୃଷିକାରଖାନାର ସଫଳତା କାମନା କରିବା ସଙ୍ଗେ ସଙ୍ଗେ ଏହି କାରଖାନା ପାଇଁ କୃଷି ଯନ୍ତ୍ରପାତି,ସାର,ବିହନ ଓ କୀଟନାଶକ ଆଦି ସବ୍‌ସିଡ୍ ଦରରେ ଅଗ୍ରାଧିକାର ଭିତ୍ତିରେ ସରକାରଙ୍କ ତରଫରୁ ଯୋଗାଇ ଦେବାକୁ ଦୃଢ଼ ପ୍ରତିଶ୍ରୁତି ଦେଲେ । ମରୁଡ଼ି,ବନ୍ୟା,ବାତ୍ୟା ପରି ପ୍ରାକୃତିକ ବିପଦରୁ କାରଖାନାକୁ ରକ୍ଷାକରିବା ପାଇଁ ଫସଲବୀମା ଯୋଜନାର ସୁବିଧା ନେବା ପାଇଁ ପରାମର୍ଶ ଦେଲେ । କୃଷି ପାଇଁ ଆମ ଦେଶରେ ସବୁଠୁ ଅଧିକ କଞ୍ଚାମାଲ ଅଛି । କୃଷି ଆମ ଜୀବନ ଯାପନ ନିମନ୍ତେ ସବୁଠୁ ପ୍ରାଚୀନ ମାର୍ଗ । କୃଷିକୁ ଶିଳ୍ପର ମାନ୍ୟତା ଦେଇ ଆଧୁନିକ କୃଷି ଯନ୍ତ୍ରପାତି, ଉନ୍ନତ ସାର ଓ ବିହନ ଆଉ ଉପଯୁକ୍ତ କୀଟନାଶକ ଔଷଧ ପ୍ରୟୋଗ କରିବା ପାଇଁ ଆଜି ଆମ ଅଞ୍ଚଳରେ ମିଳିତ ଉଦ୍ୟମରେ ଗଢ଼ି ଉଠୁଛି ଏଇ କୃଷି କାରଖାନା । ଏହି କୃଷି କାରଖାନାର ଭବିଷ୍ୟତ ଖୁବ୍ ଉଜ୍ଜ୍ୱଳ । ଏମିତି ଏକ କାରଖାନା ପ୍ରତିଷ୍ଠା ନିଶ୍ଚୟ ଏ ଅଞ୍ଚଳର ବେକାର ସମସ୍ୟା ଦୂରକରି ପାରିବ । ଯେଉଁ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଯୁବକ, ଯୁବତୀମାନେ ଲୁଙ୍ଗି,ଗାମୁଛା କି ଶାଢ଼ି ପିନ୍ଧି ବିଲର ପାଣି କାଦୁଅରେ ଆଣ୍ଠେଇ କାମ କରିବାକୁ ନାପସନ୍ଦ କରୁଥିଲେ ସେମାନେ ପ୍ୟାଣ୍ଟ,ସାର୍ଟ, ସାଲୁଆର, ପଞ୍ଜାବି ପିନ୍ଧି ଆଧୁନିକ କୃଷିଯନ୍ତ୍ର ସାହାଯ୍ୟରେ ଏଇ କୃଷିକାରଖାନାରେ କାମ କରିବାକୁ ନିଶ୍ଚୟ ଆଗ୍ରହ ପ୍ରକାଶ କରିବେ । ସେମାନେ କାରଖାନାର ସାଇରନ୍ ବାଜିଲେ କାରଖାନା କାମରେ ଯୋଗଦେବେ ଓ ସଂଧ୍ୟାବେଳେ କାରଖାନାର ସାଇରନ୍ ବାଜିଲେ କାରଖାନାରୁ ବାହାରିବେ । ଯଦ୍ୱାରା ତାଙ୍କୁ ଲାଗିବ ଯେମିତି ସେମାନେ କୌଣସି ଶିଳ୍ପ କାରଖାନାରେ କାମ କରୁଛନ୍ତି । ସବୁଠୁ ବଡ଼ କଥା ଏ ଅଞ୍ଚଳର ଲୋକମାନଙ୍କୁ ଆଧୁନିକ କୃଷିଯନ୍ତ୍ର ଚଳାଇବା ନିମନ୍ତେ ଉପଯୁକ୍ତ ତାଲିମ ଦିଆ



Digitized by srujanika@gmail.com

ଯାଇଛି । ତାଲିମ କେନ୍ଦ୍ରଟିଏ ମଧ୍ୟ ଖୋଲା ଯାଇଛି ।

କୃଷିମନ୍ତ୍ରୀ ତାଙ୍କ ଭାଷଣରେ କହିଲେ-ଆଜି ମହେଶବାବୁ ଏଯେଉଁ କୃଷି କାରଖାନା କଲେ ସେଥିପାଇଁ ରାଜ୍ୟ ସରକରଙ୍କ ତରଫରୁ ଆମେ ତାଙ୍କୁ ସାଧୁବାଦ ଜଣାଉଛୁ । ଏ ପ୍ରସଙ୍ଗରେ ମୁଁ ଗୋଟିଏ କଥା କହିବି । ମୁଖ୍ୟମନ୍ତ୍ରୀ ଆଉ ମୁଁ ଗତବର୍ଷ ନଭେମ୍ବର ମାସରେ ଆମେରିକା ଯାଇଥିଲୁ । ସେଠାକାର ଓଡ଼ିଆ ସମାଜ ସହିତ ଆମର ସାକ୍ଷାତ ହୋଇଥିଲା । ଆମ ମୁଖ୍ୟମନ୍ତ୍ରୀ ଓଡ଼ିଶାରେ ଗୋଟିଏ କୃଷିକାରଖାନା ପ୍ରତିଷ୍ଠା କରିବା ନିମନ୍ତେ ମହେଶବାବୁଙ୍କୁ ସେହି ସମୟରେ ପ୍ରସ୍ତାବ ଦେଇଥିଲେ । ସୁଖର ବିଷୟ ଆଜି ତାହା ସଫଳ ହେବାକୁ ଯାଉଛି ।

ମହେଶବାବୁ ମନେପକାଇବାକୁ ଚେଷ୍ଟାକଲେ କେବେ ମୁଖ୍ୟମନ୍ତ୍ରୀ ଓ କୃଷିମନ୍ତ୍ରୀ ଆମେରିକା ଯାଇଥିଲେ ଆଉ ତାଙ୍କ ସହିତ କେବେ, କେଉଁଠି ସାକ୍ଷାତ ହୋଇଥିଲା ? ମୁଖ୍ୟମନ୍ତ୍ରୀଙ୍କ ସହିତ ମହେଶବାବୁଙ୍କର ଏଇଟା ପ୍ରଥମ ସାକ୍ଷାତ ହୋଇଥିବାରୁ ସେ କୃଷିମନ୍ତ୍ରୀଙ୍କ ଏ ବାହାପିଆ କଥାରେ ବିସ୍ମୟ ପ୍ରକାଶ କଲେ । କିନ୍ତୁ ଚୁପ୍ ରହିଲେ ।

କୃଷିମନ୍ତ୍ରୀ ପୁନଶ୍ଚ ପ୍ରକାଶ କଲେ-ମୁଁ ଏଇ ସଭାମଞ୍ଚରେ ଘୋଷଣା କରୁଛିଯେ ମୋ ବିଭାଗର ସମସ୍ତ ସୁବିଧା,ସୁଯୋଗ ଓ ସବସିଡ୍ ମୁଁ ଏହି କାରଖାନାକୁ ପ୍ରଦାନ କରିବି ।

ଉଦ୍‌ଘାଟନ ଉତ୍ସବ ଶେଷହେଲା । ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ଏମ.ଏଲ.ଏ ସମସ୍ତେ ଫେରିଗଲେ । ରାତିରେ କୃଷିକାରଖାନାର ଗୋଟିଏ ବୈଠକ ବସିଲା । ମହେଶବାବୁ ସେ ବୈଠକରେ ସଭାପତିତ୍ୱ କଲେ । ଉଦ୍‌ଘାଟନ ଦିନକୁ ଶୂନ ଦିବସ ଭାବେ ଧରି ଆଗାମୀ ବର୍ଷକର ଯୋଜନା ବିଷୟରେ ଆଲୋଚନା ହେଲା । ମହେଶବାବୁ ବୈଠକରେ ପ୍ରସ୍ତାବ ରଖିଲେ ଆମେ କେବଳ ଧାନ ଉତ୍ପାଦନ କରିବା ନାହିଁ, ବିଭିନ୍ନ ଋତୁରେ ଅମଳ ହେଉଥିବା ଅର୍ଥକରୀ ଫସଲ ସହିତ ପନିପରିବା, ଫଳଗଛ, ମାଛଚାଷ ମଧ୍ୟ କରିବା । ବହୁମୁଖୀ ଚାଷକଥା ଆପଣମାନେ ଶୁଣିଥିବେ । ଆମେ ସେଇ ବହୁମୁଖୀ ଚାଷ ପ୍ରଣାଳୀ ପ୍ରୟୋଗ କରିବା ।

ଜଣେ କିଏ ପ୍ରଶ୍ନ କଲେ-ଏ ବହୁମୁଖୀ ଚାଷ କ'ଣ ?

ମହେଶ କହିଲେ-ଆମର ଜଳସେଚନ ପାଇଁ ଯେଉଁ ବୃହତ ପୋଖରୀଟି ଖୋଳା ଯାଇଛି ସେ ପୋଖରୀରେ ବଡ଼ ବଡ଼ ଦମକଳ ଲାଗି ଫସଲରେ ପାଣି ମଡ଼ାଯିବ । ପୋଖରୀ ହୁଡ଼ାରେ ନଡ଼ିଆଗଛ ଲାଗିବ, ଆଉ କୁକୁଡ଼ା ଚାଷ କରାଯିବ । ସେଇ ପୋଖରୀ ଭିତରେ ମାଛଚାଷ କରାଯିବ । ହଁ, ଆଉ ଗୋଟିଏ କଥା, ଆମେ ଫସଲକୁ ବଜାରରେ ସିଧା



Digitized by srujanika@gmail.com

ସଳଖ ନବିକି ସେଥିରେ ବିଭିନ୍ନ ପଦାର୍ଥ ତିଆରି କରି ବିକିଲେ ଅଧିକ ମୂଲ୍ୟ ପାଇବା। ଏଇ ଯେମିତି ଧରନ୍ତୁ ଆଳୁ। ଆଳୁକୁ ସିଧା ବଜାରରେ ବିକିଦେଲେ ଆମେ ଯେତିକି ଟଙ୍କା ପାଇବା ତାକୁ ଆଳୁ ଚିପ୍ସ କରି ବଜାରରେ ବିକିଲେ ଆମେ ତା'ର ବହୁତ ଗୁଣ ଅଧିକ ଟଙ୍କା ପାଇବା।

ବୈଠକରେ କୃଷିକାରଖାନାର ଆଗାମୀ ଯୋଜନା ବିଷୟରେ ଏମିତି ଆଲୋଚନା ପଡ଼ିଥିବା ବେଳେ କିଏ ଜଣେ ଆସି ମହେଶବାବୁଙ୍କୁ ଖବର ଦେଲା- ଆପଣଙ୍କୁ ସ୍ଥାନୀୟ ଏମ.ଏଲ.ଏ. ସୌମେନ୍ଦ୍ରବାବୁ ଡାକୁଛନ୍ତି। ବୈଠକ ସେଇଠି ବନ୍ଦ ହେଲା। ମହେଶବାବୁ ଚାଲିଲେ ସୌମେନ୍ଦ୍ରବାବୁଙ୍କ ଘରକୁ।

ରାତି ଦଶଟାରେ ସୌମେନ୍ଦ୍ରବାବୁଙ୍କ ବୈଠକଘରେ ମହେଶବାବୁ ପହଞ୍ଚିଲେ। ସେ ବଖରାରେ ସୌମେନ୍ଦ୍ରବାବୁଙ୍କ ସହିତ ଆଉ ଦଶ ଜଣ ଚାମଚା ଉପସ୍ଥିତଥିଲେ। ସୌମେନ୍ଦ୍ରବାବୁ ହସି ହସି ମହେଶବାବୁଙ୍କୁ ସ୍ୱାଗତ ଜଣାଇଲେ।

ହଠାତ୍ ସୌମେନ୍ଦ୍ରବାବୁ ଆରମ୍ଭ କଲେ-ଆପଣଙ୍କ ଉଦ୍ୟମକୁ ମୁଁ ସାଧୁବାଦ ଜଣାଉଛି। କୃଷିମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଆପଣଙ୍କ କୃଷିକାରଖାନା ଉପରେ ଖୁବ୍ ଖୁସି। ଆପଣଙ୍କ କାରଖାନା ପାଇଁ ସେମାନେ ସ୍ୱଇଚ୍ଛାରେ ବିଭିନ୍ନ ସବସିଡ଼ି ଘୋଷଣା କରିଛନ୍ତି। ଆଚ୍ଛା , ଆପଣଙ୍କ ଏ କୃଷିକାରଖାନାରେ ମୋଟ ପୁଞ୍ଜି ଲଗାଣ କେତେ ହେବ ?

ମହେଶବାବୁ ଏମିତି ଗୋଟେ ପ୍ରଶ୍ନର ଉତ୍ତର ପାଇଁ ପ୍ରସ୍ତୁତ ନଥିଲେ। ସିଏ ଉତ୍ତରଦେବା ପୂର୍ବରୁ ମନେ ମନେ ହିସାବ କରିବାକୁ ଲାଗିଲେ।

ମହେଶବାବୁଙ୍କ ଉତ୍ତରକୁ ଅପେକ୍ଷା ନକରି ସୌମେନ୍ଦ୍ରବାବୁ କହିଲେ-ମୁଁ ଯାହା ଜାଣେ ଏଥିରେ ପାଞ୍ଚ ହଜାର କୋଟିରୁ କମ୍ ପୁଞ୍ଜି ବିନିଯୋଗ ହେବ ନାହିଁ। ଏତେ ପୁଞ୍ଜି ଉପରେ ଆପଣଙ୍କର ପ୍ରଫିଟ୍ ମାନେ ଲାଭ କେତେ ?

ମହେଶ କହିଲେ-ଲାଭ କରିବା ଉଦ୍ଦେଶ୍ୟରେ ମୁଁ ଏଠି କୃଷିକାରଖାନା କରୁନାହିଁ। ଲାଭ ଯଦି ମୋର ମୂଳ ଉଦ୍ଦେଶ୍ୟ ହୋଇଥାନ୍ତା ,ତାହେଲେ ମୁଁ କୃଷିକାରଖାନା ନକରି ଯେକୌଣସି ଶିଳ୍ପ ପ୍ରତିଷ୍ଠା କରିଥାନ୍ତି। ଏ କୃଷିକାରଖାନା କରିବା ମୂଳରେ ଆମ ରାଜ୍ୟର କୃଷିର ଉନ୍ନତି କରିବା ଏବଂ ଗାଆଁ ଗହଳର ଲୋକମାନଙ୍କୁ ନିଯୁକ୍ତି ଯୋଗାଇବା ଉଦ୍ଦେଶ୍ୟ ଅଛି। ତାଛଡ଼ା ଏ କୃଷିକାରଖାନା ମୋର ଏକଚାଟିଆ ଘରୋଇ ସଂସ୍ଥା ନୁହେଁ।ଏହା ସମବାୟ ଆଇନ ଅନୁସାରେ ପଞ୍ଜିକୃତ ଏକ ସମବାୟ ଅନୁଷ୍ଠାନ। ଏହାର ଲାଭ ଓ କ୍ଷତି ଅଂଶଧନ ଅନୁପାତରେ ସେୟାର ହୋଲ୍ଡରମାନଙ୍କ ମଧ୍ୟରେ ବଣ୍ଟନ କରାଯିବ।



Digitized by srujanika@gmail.com

ମହେଶଙ୍କ ଉତ୍ତର ପରେ ସୌମେନ୍ଦ୍ରବାବୁ କିଛି ସମୟ ଗମ୍ଭୀର ହୋଇ ବସି ରହିଲେ । ମହେଶବାବୁ ଠିଆହେଲେ ଯିବାପାଇଁ । ତାଙ୍କ କଥା ସିଏ କହି ସାରିଛନ୍ତି । ଆଉ ଅଧିକ ସମୟ ସିଏ ଏଠି ବସି ରହିବାର ଆବଶ୍ୟକତା ଅନୁଭବ କରୁ ନାହାଁନ୍ତି ।

ଉପସ୍ଥିତ ଥିବା ସୌମେନ୍ଦ୍ରବାବୁଙ୍କ ଚାମଚାମାନେ ପାଟି କଲେ-ଆପଣ ବସନ୍ତୁ ମହେଶବାବୁ ।ଏମ.ଏଲ.ଏ ଆପଣଙ୍କୁ ଅସଲ କଥାଟା ଏଯାଏ କହି ନାହାଁନ୍ତି ।

ସୌମେନ୍ଦ୍ରବାବୁ ଗମ୍ଭୀର ସ୍ୱରରେ କହିଲେ-ହଁ, ମୁଁ ଆପଣଙ୍କୁ ଏଠିକି ଯେଉଁ ଉଦ୍ଦେଶ୍ୟରେ ଡକାଇଥିଲି ସେ କଥା ମୁଁ ଏଯାଏ ଆପଣଙ୍କୁ କହିନାହିଁ । ଆପଣ ଜାଣନ୍ତି ଆମଦେଶ ଭାରତବର୍ଷ ପୃଥିବୀର ସର୍ବବୃହତ ଗଣତନ୍ତ୍ର ଦେଶ । ଗଣତନ୍ତ୍ରର ସବୁଠୁ ମୂଳକଥା ନିର୍ବାଚନ ଆଉ ନିର୍ବାଚିତ ସରକାର ।

କଥା ଅଧାରେ ରଖି ବୈଠକରେ ଉପସ୍ଥିତଥିବା ତାଙ୍କର ସମସ୍ତ ଲୋକଙ୍କୁ ସୌମେନ୍ଦ୍ରବାବୁ ଆଖିରେ ଇଙ୍ଗିତ ଦେଲେ । ସେମାନେ ସମସ୍ତେ ସେ ବଖରା ଛାଡ଼ି ଚାଲିଗଲେ ।

ମହେଶବାବୁ ସଚେତନ ହେଲେ । ସୌମେନ୍ଦ୍ରବାବୁ କିଛି ଏକାନ୍ତ ଗୋପନୀୟ କଥା କହିବାକୁ ପରିବେଶ ସୃଷ୍ଟି କରୁଛନ୍ତି ।ସେ ନିଜକୁ ନିଜ ଭିତରେ ଦୃଢ଼ଭାବେ ଧରି ରଖିଲେ । ରାଜନୈତିକ ଲୋକଙ୍କର ଚାରି ପାଖରେ ଧାର ଓ ଧାରୁଆ ଆଖି ।

ସୌମେନ୍ଦ୍ର ତାଙ୍କ କଥା ପୁଣି ଆରମ୍ଭ କଲେ-ଏଇଟା ନିର୍ବାଚନ ବର୍ଷ । ଆପଣ ଜାଣନ୍ତି ନିର୍ବାଚନରେ କେତେ ଖର୍ଚ୍ଚହୁଏ । ରାଜ୍ୟର ୧୪୭ ବିଧାନ ସଭା ଆସନ ପାଇଁ ସାଧାରଣ ନିର୍ବାଚନ ହେବ । ଆପଣଙ୍କ କୃଷି କାରଖାନା ଉପରେ ନିର୍ବାଚନ ଚାନ୍ଦା ୧୦କୋଟି ଟଙ୍କା ।

ମହେଶଙ୍କ ମୁହଁ ଓ ଦେହର ରଙ୍ଗ ଲାଲ ପଡ଼ିଗଲା । ତାଙ୍କ ଭିତରେ ମେଘ, ଘଡ଼ଘଡ଼ି, ବଜ୍ରପାତ ଏକ ସମୟରେ ଆରମ୍ଭ ହୋଇଗଲା । ନିଜକୁ ବହୁ କଷ୍ଟରେ କଣ୍ଟ୍ରୋଲ କରି ସିଏ ଭଦ୍ର, ନମ୍ର କଣ୍ଠରେ ପ୍ରତିବାଦ ଜଣାଇଲେ-କୃଷିକାରଖାନା ଏଇମାତ୍ର ଉଦ୍‌ଘାଟିତ ହେଲା । ଦଶକୋଟି ଟଙ୍କା ମୁଁ କୋଉଠୁ ଆଣିବି ?

ସୌମେନ୍ଦ୍ର ମହେଶଙ୍କୁ ବୁଝାଇବା କଣ୍ଠରେ କହିଲେ-ଆପଣ ଆଦୌ ବିଚଳିତ ହୁଅନ୍ତୁ ନାହିଁ । ଏ ଚାନ୍ଦାଟା ଆପଣଙ୍କୁ ଏବେ ଦେବାକୁ ହେବ ନାହିଁ । ନିର୍ବାଚନ ଆହୁରି ଏଗାର ମାସ ବାକି ଅଛି । ଯା ଭିତରେ କୃଷିକାରଖାନା ଗଢ଼ିଉଠିବ । ଦଶକୋଟି ଟଙ୍କା ବେଶି କ'ଣ ହେଲା ? ତା'ବିନିମୟରେ ସରକାରଙ୍କ ତରଫରୁ କୃଷିକାରଖାନାକୁ ବିଭିନ୍ନ



Digitized by srujanika@gmail.com

ଜିନିଷ ସବ୍‌ସିଡରେ ଯୋଗାଇ ଦିଆଯିବ । ଆଉ ସେଇସବୁ ସବସିଡ଼ର ପରିମାଣକୁ ହିସାବ କଲେ ହୁଏତ ଦଶକୋଟିରୁ ଅଧିକ ହେବ ।

ମହେଶବାବୁ ଆଉ କିଛି ନକହି ଉଠି ଠିଆହେଲେ । ତାଙ୍କ ଦେହ ଦୁର୍ବଳ, ମନ ଅସ୍ଥିର । କୌଣସି ମତେ ସେଠୁ ଫେରି କୃଷିକାରଖାନାରେ ଆସି ପହଞ୍ଚିଲେ । ସେଠି ତାଙ୍କୁ କୃଷିକାରଖାନାର ସମସ୍ତେ ଅପେକ୍ଷା କରି ରହିଥିଲେ । ସେମାନେ ମହେଶବାବୁଙ୍କ ଏପରି ଶୋଚନୀୟ ଅବସ୍ଥା ଦେଖି ଭୟ ପାଇଗଲେ ।

ସେମାନେ ଯେତେ ଯାହା ପଚାରିଲେ ମଧ୍ୟ ମହେଶବାବୁ କିଛି ଉତ୍ତର ନଦେଇ ଚୁପ୍ ରହିଲେ । ସୌମେନ୍ଦ୍ରବାବୁ ଯାହା କହିଲେ ମହେଶବାବୁ ଯଦି ଏମାନଙ୍କୁ ସବୁ କହି ଦିଅନ୍ତି ତେବେ ଏମାନେ ବିପ୍ଳବ କରିବେ । ଏମିତି ଗୋଟେ ଯୁଦ୍ଧ ମହେଶବାବୁ ଚାହୁଁ ନାହାଁନ୍ତି । କେମିତି ଏ ପରିସ୍ଥିତିର ମୁକାବିଲା କରାଯିବ ସେଇ କଥା ସେ ନିଜ ଭିତରେ ଖୋଜୁଥିଲେ ।

ଯାର ଗୋଟେ ବାଟ ଖୋଜି ବାହାର କରିବାକୁ ହେବ । କିନ୍ତୁ ସେ ବାଟଟା କ'ଣ ? ଏକଥା ତାଙ୍କୁ କିଏ କହିବ ?

ମହେଶବାବୁଙ୍କ ମୁଣ୍ଡକୁ ଗୋଟେ ବୁଦ୍ଧି ଦିଶିଲା । ସିଏ କାହାକୁ କିଛି ନଜଣାଇ ସିଧା ଚାଲିଲେ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍‌କୁ । କିଛି ସମୟ ଅପେକ୍ଷା କରିବା ପରେ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କୁ ଅନୁମତି ମିଳିଲା । ଏତେ କମ୍ ସମୟ ଭିତରେ ଯେ ସାକ୍ଷାତ କରିବା ପାଇଁ ତାଙ୍କୁ ଅନୁମତି ମିଳିଯିବ ମହେଶବାବୁ ସେ କଥା କଳ୍ପନା କରି ନଥିଲେ ।

ମହେଶବାବୁ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତକରି ସବୁକଥା କହିଲେ ଆଉ ଆପତ୍ତି କଲେ ଯେ ଦଶକୋଟି ଟଙ୍କାର ଚାନ୍ଦା ସିଏ ଆଦୌ ଦେଇ ପାରିବେ ନାହିଁ ।

ମୁଖ୍ୟମନ୍ତ୍ରୀ କହିଲେ-ଦେଖନ୍ତୁ ମହେଶବାବୁ !ଆପଣ ଯେଉଁ ପଦକ୍ଷେପ ନେଇଛନ୍ତି ତାକୁ ମୁଁ ସବୁ ଦିଗରୁ ସମର୍ଥନ କରୁଛି । ମୋ ଜାଣିବାରେ ଆପଣଙ୍କ ଏ କୃଷିକାରଖାନା ପ୍ରତିଷ୍ଠା କରିବା ଉଦ୍ୟମ ଆମ ରାଜ୍ୟରେ ନିଶ୍ଚୟ ବୈପ୍ଳବିକ ପରିବର୍ତ୍ତନ ଆଣିବ । ଆପଣଙ୍କ ଏ କୃଷିକାରଖାନା ସଫଳ ହେଉବୋଲି ମୁଁ ସର୍ବାନ୍ତକରଣରେ ଇଚ୍ଛା କରୁଛି ।

ମହେଶ ସାହସ ପାଇ କହିଲେ-ଯଦି ଏ କୃଷିକାରଖାନା ସଫଳ ହୁଏ ତାହେଲେ ଓଡ଼ିଶାରେ ଓ ସାରା ଦେଶରେ ଆହୁରି ଏମିତି ଅନେକ କୃଷିକାରଖାନା ଗଢ଼ିଉଠିବ । ଆମ ରାଜ୍ୟର ତଥା ଆମ ଦେଶର ଶିକ୍ଷିତ, ଅର୍ଦ୍ଧଶିକ୍ଷିତ,ଅଶିକ୍ଷିତ,ମଜଦୁର, କୃଷକ ସମସ୍ତେ



Digitized by srujanika@gmail.com

ନିଯୁକ୍ତି ପାଇବେ । ମାଟିକୁ ଉପଯୋଗ କରି ସମ୍ମିଳିତ ସମବାୟ ଉଦ୍ୟମରେ ଉନ୍ନତ ପ୍ରଣାଳୀର ଚାଷକରି ଧାନଚାଷ ସହିତ ଆନୁସଙ୍ଗିକ ବିଭିନ୍ନ ଅର୍ଥକରୀ ଫସଲ ,ଫଳଚାଷ,ଓ ମାଛଚାଷ ମାଧ୍ୟମରେ ଜନସାଧାରଣଙ୍କ ଆର୍ଥିକ ମାନଦଣ୍ଡ ବୃଦ୍ଧି କରିବାର ଏହା ସର୍ବୋତ୍କୃଷ୍ଟ ପନ୍ଥା । ଏ କୃଷିକାରଖାନା ପ୍ରତିଷ୍ଠା କରିବାରେ କେହି ବିସ୍ଥାପିତ ହେବେନାହିଁ କି ପରିବେଶ ପ୍ରଦୂଷିତ ହେବନାହିଁ ।

ଏ ଉଦ୍ୟମ ଯଦି ସଫଳ ହୁଏ ତାହେଲେ ଏହା କେବଳ ଆପଣଙ୍କର ସୁନାମ ବୃଦ୍ଧି କରିବ ନାହିଁ, ଆପଣଙ୍କ ପାର୍ଟିର ସଫଳତାର ସ୍ୱାକ୍ଷର ବହନ କରିବ ।ଏ କାରଖାନା ଆପଣ ଉଦଘାଟନ କରିଛନ୍ତି ଏବଂ ଏଥିପାଇଁ ଅନେକ ସବସିଡ୍ ମଧ୍ୟ ଘୋଷଣା କରିଛନ୍ତି । ତେଣୁ ଏ କାରଖାନାର ସଫଳତା ମଧ୍ୟ ଆପଣଙ୍କ ପାଟିର ଲୋକପ୍ରିୟତା ବୃଦ୍ଧିରେ ସହାୟକ ହେବ । ପରୋକ୍ଷରେ ଆସନ୍ତା ନିର୍ବାଚନରେ ଏହା ଆପଣଙ୍କ ଭୋଟ ସଂଖ୍ୟା ବୃଦ୍ଧି କରିବାରେ ସହାୟକ ହେବ ।

ମୁଖ୍ୟମନ୍ତ୍ରୀଙ୍କ ମୁହଁ ପ୍ରସନ୍ନ ଦିଶିଲା । ସିଏ କହିଲେ-ମୋ ମତରେ ଆପଣ ଏ କୃଷିକାରଖାନା ପ୍ରତିଷ୍ଠା କରି ଆପଣ ଆମ ପାଇଁ,ଆମ ଲୋକମାନଙ୍କ ପାଇଁ ଯଥେଷ୍ଟ ଉପକାର କରିଛନ୍ତି । ଆପଣ ଏବେ ନିର୍ଭୟରେ ଯାଆନ୍ତୁ,ମୁଁ ଓ ମୋ ସରକାର ଆପଣଙ୍କ ପଛରେ ଅଛି । ଆପଣ କାହାକୁ କିଛି ଚାନ୍ଦା ଦେବା ଦରକାର ନାହିଁ ; ଆପଣ ଯେତେବେଳେ ଯାହା ସରକାରୀ ସାହାଯ୍ୟ ଲୋଡ଼ିବେ ଆପଣଙ୍କୁ ସେ ସବୁ ଯୋଗାଇ ଦେବାର ନିର୍ଭର ପ୍ରତିଶ୍ରୁତି ମୁଁ ଆପଣଙ୍କୁ ଦେଉଛି । ମୁଁ ସୌମେନ୍ଦ୍ରବାବୁଙ୍କୁ ଜଣାଇ ଦେଉଛି, ସିଏ ଏ କୃଷିକାରଖାନା ପ୍ରତିଷ୍ଠା ଦିଗରେ ଆପଣଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ କରିବେ ।

ମହେଶବାବୁ ହସ ହସ ମୁହଁରେ ମୁଖ୍ୟମନ୍ତ୍ରୀଙ୍କ ଚାମ୍ବରରୁ ବାହାରି ଆସିଲେ ।



ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

# ଶୋଷର ଅବସୋସ୍

ସନାତନ ସରକାରୀ ଚାକିରିରୁ ଅବସର ନେବା ବର୍ଷେ ହେଲାଣି ।ସିଏ ପ୍ରତି ମାସ ଦଶ ତାରିଖ ଭିତରେ ଭୁବନେଶ୍ୱର ଟ୍ରେଜେରିକୁ ଆସି ତାଙ୍କ ପେନସନ୍ ଟଙ୍କା ନେଇ ଯାଆନ୍ତି । ଟ୍ରେଜେରିରେ ସମ ବୟସ୍କ ସାଙ୍ଗ ସାଥୀମାନଙ୍କ ସହିତ ସାକ୍ଷାତ ହୁଏ । ସେମାନେ ଦୁଃଖ,ସୁଖ ହୁଅନ୍ତି । ଟ୍ରେଜେରିରେ ଆସି ପହଞ୍ଚନ୍ତି ପ୍ରାୟ ଦିନ ଏଗାରଟା ବେଳେ । ପେନସନ୍ ଟଙ୍କା ନେଇ ଘରେ ପହଞ୍ଚିଲା ବେଳକୁ ଅପରାହ୍ନ ପ୍ରାୟ ଦୁଇଟା,ଅଢ଼େଇଟା ହୋଇ ଯାଏ ।

ଆଜି ସନାତନଙ୍କ ପେନସନ୍ ନେବା ବାରି । ଠିକ୍ ସକାଳ ଏଗାରଟାରେ ସିଏ ଟ୍ରେଜେରିରେ ପହଞ୍ଚିଛନ୍ତି ।ଦିନ ଗୋଟାଏ ଦଶ ମିନିଟ୍‌ରେ ତାଙ୍କୁ ପେନସନ୍ ଟଙ୍କା ମିଳିଗଲା । ଟଙ୍କା ଧରି ଘରକୁ ଫେରିବାବେଳେ ଟ୍ରେଜେରି ଗେଟ୍ ପାଖରେ କିଏ ଜଣେ ତାଙ୍କ ହାତରୁ ଟଙ୍କା ପଶିଥିବା ହ୍ୟାଣ୍ଡବ୍ୟାଗଟା ଝାମ୍ପିନେଇ ଧାଇଁ ପଳାଇଲା । ଚୋର ଚୋର ବୋଲି ସନାତନ ବଡ଼ ପାଟିରେ ଚିତ୍କାର କଲେ । ଟ୍ରେଜେରି ପାଖରେ ଡିଉଟି କରୁଥିବା ଦୁଇଟା କନେଷ୍ଟବଲ୍ ଚୋର ପଛରେ ଗୋଡାଇଲେ । ଆଗରେ ଚୋର ପ୍ରାଣ ମୁର୍ଚ୍ଛା ଧାଇଁଛି ,ପଛରେ ପୋଲିସ୍ ଗୋଡାଇଛି । ଚୋର ଓ ପୋଲିସ୍ ମଧ୍ୟରେ ବ୍ୟବଧାନ ବଢ଼ି ବଢ଼ି ଚାଲିଛି । ଚୋରଟା ହୁଏତ ଚକମା ଦେଇ ଫେରାର ହୋଇଯିବ । ଏମିତି ପ୍ରତିଦିନ ପୋଲିସ୍ ଆଖିରେ ଧୂଳି ଦେଇ ଚୋର ଚମ୍ପଟ ମାରୁଛି । ଜଣେ କନେଷ୍ଟବଲ ତା'ର ବାଡ଼ିଟାକୁ ଚୋରର ଗୋଡ଼କୁ ଲକ୍ଷ୍ୟକରି ଫିଙ୍ଗିଲା । ଚୋର ଗଛ କାଟିଲା ପରି ତଳେ ପଡ଼ିଗଲା । କନେଷ୍ଟବଲ ଦୁଇ ଜଣ ଧାଇଁଯାଇ ଚୋରକୁ ମାଡ଼ି ବସିଲେ । ଚୋରର ମୁହଁରେ କଳାକନାର ଗୋଟେ ମୁଖା ।

ସନାତନ କଷ୍ଟେମଷ୍ଟେ ଧାଇଁଯାଇ ଚୋର ପାଖରେ ପହଞ୍ଚିଲେ ।ଚୋରଟା କିଏ ଜାଣିବା ପାଇଁ ତା' ମୁହଁରୁ ମୁଖା ଖୋଲାଗଲା ।ସନାତନ ଆଶ୍ଚର୍ଯ୍ୟ ହେଲେ । ଏ ଚୋର ଅନ୍ୟ କେହି ନୁହଁ, ତାଙ୍କର ଏକମାତ୍ର ପୁଅ ପାର୍ଥ । କନେଷ୍ଟବଲ ଦୁଇ ଜଣ ଚୋରକୁ ପିଟାପିଟି କରି ତା' ହାତରୁ ଟଙ୍କା ବ୍ୟାଗଟି ଛଡ଼ାଇ ଆଣି ସନାତନଙ୍କୁ ଫେରାଇ ଦେଲେ ଓ କହିଲେ-ଚାଲନ୍ତୁ ମଉସା ! ଚୋରକୁ ଥାନାରେ ଦେବା । ଏ ବଦମାସ୍‌ମାନଙ୍କୁ ଜେଲରେ ନପୂରାଇଲେ ନିସ୍ତାର ନାହିଁ । ଜେଲ୍‌ରେ ପଶି ଚକିପେଶିଲେ ପୁଅ ମଜା ପାଇବ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସନାତନ ସତ କଥା ପ୍ରକାଶ କରିବାକୁ ବାଧ୍ୟ ହେଲେ । କନେଷ୍ଟବଲ ଦୁଇ ଜଣଙ୍କୁ ଦୁଇ ଶହ ଟଙ୍କା ଲେଖା ପୁରସ୍କାର ଦେଇ କହିଲେ-ଇଏ ଅଭ୍ୟାସଗତ ଚୋର ନୁହଁ । ଇଏ ମୋ ନିଜ ପୁଅ । ବାହାରୁ କୋଉଠି କିଛି ଚୋରି କରେନାହିଁ । ପାଠ ପଢ଼ିଛି,ବେକାର ଅଛି । ଖରାପ ପିଲାଙ୍କ ସାଙ୍ଗରେ ପଡ଼ି ମଦ ପିଉଛି । ତା' ମାଆକୁ ଧମକ ଚମକ ଦେଇ, ଆଉ କେବେ କେମିତି ଆଲମାରୀ ଭାଙ୍ଗି ଟଙ୍କା ପଇସା ନେଇ ମଦ ପିଉଛି । ତାକୁ ଆପଣମାନେ ଦୟାକରି ଛାଡ଼ି ଦିଅନ୍ତୁ । ମୁଁ ଆପଣଙ୍କ ପାଖରେ ସବୁ ଦିନ ପାଇଁ କୃତଜ୍ଞ ରହିବି ।

କନେଷ୍ଟବଲ ଦୁଇ ଜଣ ମଦ ଛାଡ଼ିବା ପାଇଁ ପାର୍ଥକୁ ଅନେକ ଉପଦେଶ ଦେଇ ତାଙ୍କ ଡିଉଟି କରିବାକୁ ଚାଲିଗଲେ ।

କଲ୍ୟାଣୀ ପୁଅର ହାତ ଗୋଡ଼କୁ ଦେଖି ମନ ଦୁଃଖ କଲେ । ପୋଲିସର ଲାଠି ମାଡ଼ରେ ତା'ହାତ ଗୋଡ଼ ଫୁଲି ଯାଇଛି । ଗରମ ପାଣିରେ ସେକ ଦେଇ ମଲମ ଲଗାଇ ଦେଲେ । ଗରମ କ୍ଷୀର ପିଇବାକୁ ଦେଲେ ।

ସଂଜ ବେଳକୁ କଲ୍ୟାଣୀଙ୍କ ବେକରୁ ସୁନା ଚେନଟା ଟାଣିନେଇ ଯାଉ ଯାଉ ପାର୍ଥ କହିଲା-ଏ ଗରମ ପାଣି ସେକରେ କି ମଲମରେ ଦେହର ଦରଜ ଛାଡ଼ିବ ନାହିଁ । ମଦ ହୋତଲେ ପେଟରେ ପଡ଼ିଗଲେ ସବୁ ଦରଜ ରାତିକ ଭିତରେ ଛାଡ଼ି ଯିବ ।

କଲ୍ୟାଣୀ ଚିତ୍କାର କଲେ-ଆରେ ପାର୍ଥ ! ମୁଁ ତୋତେ ନେହୁରା ହଉଚି, ତୁ ମୋ ସୁନା ଚେନଟା ଦେଇଦେ । ମଦ ଖାଇବାକୁ ମୁଁ ତତେ ଟଙ୍କା ଦେବି ।

ସେ ଦିନ ପାର୍ଥକୁ ଦୁଇ ଶହ ଟଙ୍କା ଦେଇ କଲ୍ୟାଣୀ ତାଙ୍କ ସୁନା ଚେନଟାକୁ ମୁକୁଳାଇ ଥିଲେ ।

ଦିନକୁ ଦିନ ପାର୍ଥର ଜୁଲୁମ୍ ବଢ଼ି ଚାଲିଲା । ପ୍ରତିଦିନ ତା'ର ମଦ ଆଉ ମାଂସ ପାଇଁ ଶହେ ଟଙ୍କା ଦରକାର । ଟଙ୍କା ନଦେଲେ ଅଭଦ୍ର ଭାଷାରେ ଗାଳି ଗୁଲଜ,ଆଲମାରି ଭଙ୍ଗା, ଟଣା ଓଟରା,ମାଡ଼ଗୋଳ । ଏବେ ପାର୍ଥର ଶାରୀରିକ ଶକ୍ତି ସନାତନ ଓ କଲ୍ୟାଣୀ ଦୁହିଁଙ୍କଠାରୁ ଅଧିକ ।

କଲ୍ୟାଣୀ ଦିନେ ସନାତନଙ୍କୁ କହିଲେ-ଆମେ ଆଉ କେତେ ଦିନ ଏମିତି ବରଦାସ୍ତ କରିବା ? ପ୍ରତିଦିନ ମୁଁ ମାଡ଼ଗାଳି ଖାଉଛି । ତୁମେ ବି ସେଥିରୁ ବାଦ୍ ପଡୁନା । ମଦ ପିଇ ପିଇ ଦିନକୁ ଦିନ ତା' ଅବସ୍ଥା କ'ଣ ହେଲାଣି ? ଏବେ ସିଏ ମଦ ପିଉ ନାହିଁ ,ମଦ ତାକୁ ପିଉଛି । ଆମକୁ ଯାର କିଛି ପ୍ରତିକାର କରିବାକୁ ପଡ଼ିବ । ମୁଁ ଭାବୁଛି ଆମେ



Digitized by srujanika@gmail.com

ତାକୁ ବିବାହ କରାଇ ଦେଲେ ତା' ସ୍ତ୍ରୀ ତାକୁ ବାଟକୁ ଆଣି ପାରନ୍ତା । ଅନେକ ଲୋକଙ୍କ କ୍ଷେତ୍ରରେ ବିଭାଘର ପରେ ପରିବର୍ତ୍ତନ ଆସିଛି ।

ସନାତନ କହିଲେ-ତୁମ କଥାଟା ଯଦିଓ ସଂପୂର୍ଣ୍ଣ ସତ ନୁହଁ , ତଥାପି ସଂପୂର୍ଣ୍ଣ ମିଛ ନୁହଁ । କିଛିଟା ସତ୍ୟତା ଅଛି । କିନ୍ତୁ ଆମର ଏ ଘୋଡ଼ା ମଦୁଆ ପୁଅକୁ କିଏ ଝିଅ ଦେବ ?

କଲ୍ୟାଣୀ ଯୁକ୍ତିକଲେ-ପାର୍ଥ ଆମର ଶିକ୍ଷିତ ଆଉ ସୁନ୍ଦର । ତା'ଛାତ୍ର ଜୀବନରେ ସିଏ ଭଲ ପାଠ ପଢୁଥିଲା । ଆମର ଭୁବନେଶ୍ୱରରେ ଏ ଜାଗା ଆଉ କୋଠାଘର ଅଛି । ଗାଆଁରେ ଜମିବାଡ଼ି ଅଛି ।ପାର୍ଥର ମଦ ପିଆ କେବଳ ତା' ସାଙ୍ଗ ସାଥୀଙ୍କ ଯୋଗୁ । ସିଏ ଯଦି ତା'ର ମଦୁଆ ସାଙ୍ଗମାନଙ୍କୁ ଛାଡ଼ିଦେବ,ତେବେ ସିଏ ବାଟକୁ ଆସିଯିବ । ତୁମେ ଚେଷ୍ଟାକର,ଝିଅର ଅଭାବ ହେବନାହିଁ ।

ଦିନେ ବିଭାଘର ବିଷୟରେ କଲ୍ୟାଣୀ ତାଙ୍କ ପୁଅ ପାର୍ଥର ମତାମତ ଲୋଡ଼ିଲେ । ପାର୍ଥ ପରିହାସ କଣ୍ଠରେ କହିଲା-ବଢ଼ିଆ ହେବ । ଯେଉଁ ଝିଅଟା ତୋ ଘରକୁ ବୋହୂହୋଇ ଆସିବ ତା'ବାପାଠୁ ଆମକୁ ତିନି ଚାରି ଲକ୍ଷ ଟଙ୍କାର ଯୌତୁକ ମିଳିଯିବ । ସେ ଟଙ୍କାରେ ମୋ ମଦପିଆ ସୁରୁଖୁରୁରେ ଦୁଇ,ତିନି ବର୍ଷ ଚାଲିଯିବ । ତାଛଡ଼ା ସେ ଝିଅଟାର ଯେତେକ ସୁନା ଗହଣା ଥିବ ସେ ସବୁକୁ ବିକ୍ରିକଲେ ଆଉ ବର୍ଷେ ଛ'ମାସ ମୋର ମଦପିଆ ଆରାମରେ ଚାଲିବ । ଠିକ୍ ଅଛି, ବାହାଘର କର । କିନ୍ତୁ ଦେଖ୍ ବୋଉ ! ଧନୀଘର ଦେଖି ବାହାଘର କରିବୁ ଯେମିତି ତାଙ୍କ ପୋଖରୀରେ ବହୁତ ମାଛ ଥିବ । ମୁଁ ଯେତେବେଳେ ଜାଲ ପକାଇଲେ ବି ରୋହି,ଭାକୁଡ଼ ମିଳିବ ।

କଥା ମଝିରେ ସନାତନ ଆସି ପହଞ୍ଚି କହିଲେ-ତୋର ଯେଉଁ ଗୁଣ ସେଥିଯୋଗୁ ଝିଅ ମିଳିବା ସମ୍ଭାବନା କମ୍ । ତୋ ପରି ଗୋଟେ ଘୋଡ଼ା ମଦୁଆକୁ କିଏ କାହିଁକି ଝିଅଦେବ ? ଧନୀଘର ଝିଅ ମିଳିବା ପ୍ରଶ୍ନ ଉଠୁନାହିଁ । ଗରିବ ଘର, ଯାହା ଘରେ ଝିଅଟିର ଖାଇବା, ପିନ୍ଧିବା, ଅଭାବ ଥିବ ସିଏ ଝିଅ ଦେଲେ ଦେଇପାରେ । ତଥାପି ଯିଏ ତା'ଝିଅ ଦେବ ସିଏ ତାପୂର୍ବରୁ ଆଗ ପଚ୍ଛ ହଜାର ବାର ଚିନ୍ତା କରିବ ।

ଗରିବ ଘରର ଝିଅ ମୋର ଦରକାର ନାହିଁ ବୋଲି ଶୁଣାଇଦେଇ ଘରୁ ବାହାରି ଗଲା ପାର୍ଥ ।

ସନାତନ ବହୁତ ଚେଷ୍ଟା କରିବା ସତ୍ତ୍ୱେ ପାର୍ଥ ପାଇଁ ବୋହୂଟିଏ ଯୋଗାଡ଼ କରି ପରିଲେ ନାହିଁ । ପାର୍ଥର ବଦନାମ ପାଖ ଆଖ ଗାଆଁରେ ଏମିତି ବ୍ୟାପି ଯାଇଥିଲାଯେ



Digitized by srujanika@gmail.com

ତା'ନାଆଁ ଶୁଣିବା ମାତ୍ରେ ଲୋକମାନେ ମୁହଁ ମୋଡି ନେଉଥିଲେ ।

ସନାତନ ପୁଅ ବିଭାଘର ଆଶା ଛାଡ଼ିଦେଲେ । କିନ୍ତୁ କଲ୍ୟାଣୀ ତଥାପି ଆଶାବାନ୍ଧି ବସିଥାନ୍ତି । ତାଙ୍କ ପୁଅ ପାଇଁ କେଉଁଠି ନା କେଉଁଠି ଝିଅଟିଏ ଅଛି । ତାକୁ ଖୋଜି ବାହାର କରିବାକୁ ହେବ । ଭଗବାନ ସମସ୍ତଙ୍କ ପାଇଁ କନ୍ୟାର ବ୍ୟବସ୍ଥା କରିଥାନ୍ତି ।

କଲ୍ୟାଣୀ ତାଙ୍କ ସ୍ୱାମୀଙ୍କୁ ପ୍ରସ୍ତାବ ଦେଲେ- ପାଖ ଆଖ ଗାଆଁ ଛାଡ଼ି ଦୂର ଗାଆଁ ଦେଖ । ସେତେ ବାଟ ପାର୍ଥର ବଦନାମ ପବନ ହୁଏତ ପହଞ୍ଚି ନଥିବ ।

କିନ୍ତୁ ଦୂର ଗାଆଁରେ ପହଞ୍ଚିବା ସନାତନଙ୍କ ପକ୍ଷେ ସମ୍ଭବ ନଥିଲା । ଏ ପରିଣତ ବୟସରେ ଏତେ ବାଟ ଯାଇ ବୋହୂ ଖୋଜିବା ପାଇଁ ତାଙ୍କର ଶାରୀରିକ ଶକ୍ତି ତାଙ୍କୁ ଅନୁମତି ଦେଉ ନଥିଲା ।

କିନ୍ତୁ ଦିନେ କଲ୍ୟାଣୀ ଓ ସନାତନଙ୍କୁ ଆଶ୍ଚର୍ଯ୍ୟ କରି ରାତି ଆଠଟା ବେଳେ ଗୋଟିଏ ସୁନ୍ଦରୀ ଝିଅକୁ ସାଙ୍ଗରେ ଧରି ଘରେ ପହଞ୍ଚିଲା ପାର୍ଥ । ଝିଅଟିର ଶାଢ଼ି ଓ ବ୍ଲାଉଜ ଠାଏଁ ଠାଏଁ ଚିରି ଯାଇଛି । ଗାଲରୁ ରକ୍ତ ଝରୁଛି । ଝିଅଟି କହିଲା- ମୁଁ ଆଜି ସଂଧ୍ୟାବେଳେ ଅଟୋରିକ୍ସାରେ ଘରକୁ ଫେରୁଥିଲି । ନିଛାଟିଆ ସ୍ଥାନ ଦେଖି ଦୁଇଟା ଟୋକା ମୋ ଅଟୋରିକ୍ସାକୁ ଅଟକାଇ ମୋତେ ଟଣା ଓଟରା କଲେ । ମୋ ପାଟିଶୁଣି କିଛି ଲୋକ ଜମାହେଲେ ,କିନ୍ତୁ ସେ ଦୁଇଟା ଦୁର୍ଦ୍ଦାନ୍ତ ଟୋକାଙ୍କୁ ବିରୋଧ କରିବାକୁ କେହି ସାହସ କଲେନାହିଁ । ସେମାନଙ୍କ ହାତର ଧାରୁଆ ଛୁରୀ ଦେଖି ସମସ୍ତେ ନିରବ ଦର୍ଶକ ହୋଇ ଠିଆହେଲେ । ହଠାତ୍ ପାର୍ଥ ପହଞ୍ଚି ସେମାନଙ୍କ ସହିତ ଲଢ଼େଇ କରି ସେମାନଙ୍କ କବଳରୁ ମୋତେ ରକ୍ଷାକଲେ । ପାର୍ଥଙ୍କ ଦେହରେ ଦୁଇ ତିନିଟା ସ୍ଥାନରେ ଛୁରୀ ବାଜିଛି । ମୋତେ ମଧ୍ୟ ସେମାନେ ଛୁରୀରେ ଖଣ୍ଡିଆ ଖାବରା କରି ଦେଇଛନ୍ତି ।

ଏତେ ଦିନ ପରେ ଗର୍ବକଲା ପରି ଗୋଟେ କାମ ତାଙ୍କପୁଅ ପାର୍ଥ ଆଜି କରିଛି ବୋଲି ସନାତନ ଅନୁଭବ କଲେ । କଲ୍ୟାଣୀଙ୍କ ଛାତି ମଧ୍ୟ ଗର୍ବରେ ଫୁଲି ଉଠିଲା । ଆଜିଯାଏ କେବଳ ପୁଅର ବଦନାମ ଶୁଣିଶୁଣି ଆସୁଥିବା ମାଆ ପାଇଁ ଆଜି ଗର୍ବ କରିବାର ସୁଯୋଗ ଆସିଛି ।

ଘରେଥିବା ଔଷଧ ଲଗାଇ ସେଝିଅ ଓ ପାର୍ଥର କ୍ଷତ ସ୍ଥାନର ପ୍ରାଥମିକ ଚିକିତ୍ସା କଲେ କଲ୍ୟାଣୀ । ଆଲମାରିରୁ ଭଲ ଶାଢ଼ି ବାହର କରି ସେ ଝିଅଟିକୁ ପିନ୍ଧିବାକୁ ଦେଲେ । ଦୁହିଁଙ୍କୁ ଖାଇବାକୁ ଦେଇସାରି ଦୁଇ କପ୍ ଗରମ କ୍ଷୀର ପିଇବାକୁ ଦେଲେ ।

ଝିଅଟିର ନାଆଁଥିଲା ଏଲୋରା । ଦକ୍ଷ ଶିଳ୍ପୀର ହାତଗଢ଼ା ମୁର୍ତ୍ତିଟିଏ ପରି ଏଲୋରା



Digitized by srujanika@gmail.com

ସୁନ୍ଦରୀ ଥିଲା । ଭୁବନେଶ୍ୱର ସହର ତଳି ଛୋଟ ଗୋଟିଏ ଗାଆଁରେ ତା'ର ଘର । ତା' ବାପାଙ୍କର ଅନେକ ଦିନୁ ମୃତ୍ୟୁ ହୋଇ ଯାଇଛି । ଘରେ କେବଳ ତା'ର ମାଆ ଆଉ ସାନଭାଇ ।

ରାତି ନଅଟାବେଳେ ଗୋଟେ ଅଟୋରିକ୍ସାରେ ବସାଇ ଏଲୋରାକୁ ତାଙ୍କ ଘରେ ଛାଡ଼ି ଆସିଲା ପାର୍ଥ ।

ଏଇ ଘଟଣାର ପନ୍ଦର ଦିନ ପରେ ସନାତନ ଏଲୋରାର ଘରେ ପହଞ୍ଚି ତା' ମାଆଙ୍କୁ ସାକ୍ଷାତ କରି ପାର୍ଥ ସହିତ ଏଲୋରାର ବିବାହ ପ୍ରସ୍ତାବ ଦେଲେ ଏବଂ ମାସେ ଭିତରେ ଏଲୋରା ସନାତନଙ୍କ ଘରକୁ ବୋହୂହୋଇ ଆସିଲା ।

ପାର୍ଥର ମଦପିଆ ଏଲୋରା ବନ୍ଦ କରିବାରେ ବ୍ୟର୍ଥହେଲା । ପାର୍ଥ ତା'ବିଭାଘର ପରେ ମଧ୍ୟ ପୂର୍ବ ପରି ପ୍ରତିରାତିରେ ମଦପିଇ ଟଳି ଟଳି ଘରକୁ ଫେରିଲା । ମଦ ନିଶା ପାଖରେ ସୁନ୍ଦରୀ ସ୍ତ୍ରୀର ଆକର୍ଷଣ ଫିକା ପଡ଼ିଗଲା ।

ମଦପିଆ ପାଇଁ ଏଲୋରାର ଗହଣା ଗୁଡ଼ିକୁ ଗୋଟି ଗୋଟିକି ସବୁ ବିକ୍ରି କରିଦେଲା ପାର୍ଥ ।ଏଲୋରା,କଲ୍ୟାଣୀ ଓ ସନାତନ ମିଳିତ ଭାବେ ପାର୍ଥର ପ୍ରତିରୋଧ କରିବାକୁ ସମର୍ଥ ହେଲେ ନାହିଁ । ପାର୍ଥ ଯେଉଁ ଦିନ ଏଲୋରାର ଶେଷ ଗହଣା ଭାବେ ରହିଥିବା ସୁନା ମୁଦିଟିକୁ ଜୋର ଜବରଦସ୍ତ ତା' ଆଙ୍ଗୁଠିରୁ ବାଢ଼ିନେଲା, ସେ ଦିନ ଏଲୋରା କହିଥିଲା-ମୋ ପାଖରେ ଆଉ କିଛି ନାହିଁ । ଏବେ ଆଉ କ'ଣ ବିକି ମଦ ପିଇବ ?

ପାର୍ଥ ବିଦ୍ରୁପ କରି ଉତ୍ତର ଦେଇଥିଲା-ତୁ ଆସିବା ଆଗରୁ ମୁଁ କ'ଣ ମଦ ପିଉ ନଥିଲି ବୋଲି ଭାବୁଚୁ ?ତୋ ପାଖରେ ଆଉ କିଛି ନଥିଲେ ବି ମୋ ବୋଉ ପାଖରେ କିଛି ଅଛି । ମୋ ବାପାତ ଗୋଟେ ସୁନା ଅଣ୍ଡା ଦିଆ କୁକୁଡ଼ା । ମାସକୁ ମାସ ସିଏ ସରକାରରୁ ପେନସନ୍ ପାଉଛନ୍ତି । ଏତେ କଥା ଥାଉଁ ଥାଉଁ ମୋ ମଦପିଆ ବନ୍ଦ୍ ହୋଇଯିବ ? ନା, କଦାପି ନୁହଁ ।

ପାର୍ଥ ଏଲୋରାର ସୁନା ମୁଦି ନେଇ ଚାଲିଗଲା । ସନାତନ ଓ କଲ୍ୟାଣୀ ପରସ୍ପରଙ୍କ ମୁହଁକୁ କରୁଣ ଭାବେ ଚାହିଁଥିଲେ । ସେମାନେ ଭାବିଥିଲେ କ'ଣ, ଏବେ ହେଉଛି କ'ଣ ?

ସନାତନ କଲ୍ୟାଣୀଙ୍କୁ ସତର୍କ କରାଇ ଦେଲେ- ତୁମ ସୁନା ହାରଟା ବେକରୁ ଓହ୍ଲାଇ କେଉଁଠି ଲୁଚାଇ ଦିଅ । ଏଥର ସିଏ ନିଶ୍ଚୟ ତୁମ ହାରକୁ ଟାର୍ଗେଟ କରିବ ।

ଆଠ ଦନ ଯାଏ ଆଉ କିଛି ଅଘଟଣ ଘଟିଲା ନାହିଁ । ମୁଦି ବିକ୍ରି ଟଙ୍କା ହୁଏତ



Digitized by srujanika@gmail.com

ପାର୍ଥର ମଦଖିଆ ଖର୍ଚ୍ଚକୁ ସେଇ ଆଠ ଦିନ ସମ୍ଭାଳି ନେଲା । କିନ୍ତୁ ନବମ ଦିନ ସକାଳ ଆଠଟାରେ ପାର୍ଥ ତା' ବୋଉର ସମସ୍ତ ଟ୍ରଙ୍କ,ବାକ୍ସ, ଆଲମାରି, ଥାକ ଘଣ୍ଟା ଚକଟା କରି ସୁନାହାରଟାକୁ ଖୋଜିଲା । ଘରର ସମସ୍ତ ଜିନିଷ ଫୋପଡ଼ା ଫିଙ୍ଗା କଲା । କିନ୍ତୁ ହାରଟା ତା'ହାତରେ ପଡ଼ିଲା ନାହିଁ ।

ପାର୍ଥ ହଠାତ୍ ଧାଇଁ ଯାଇ ଏଲୋରାର ଗଳାଟାକୁ ଗଁ ଗଁ କରି ଚିପିଧରି ଧମକଦେଲା-ବୋଉ ! ଦେଖ୍ ।ତୁ ଯଦି ଲୁଚାଇଥିବା ଜାଗାରୁ ତୋ ହାରଟା ବାହାର କରି ମୋତେ ନଦେଉ ତାହେଲେ ମୁଁ ଏଲୋରାର ତଣ୍ଟି ଚିପି ହତ୍ୟା କରିବି । ଭଲଭାବରେ ବିଚାର କରି ଦେଖ ତୋ ବୋହୂର ଜୀବନ ବଡ଼ ନା ତୋ ସୁନାହାର ବଡ଼ ?

ସନାତନ ଓ କଲ୍ୟାଣୀ ଯେତେ କାକୁତି ମିନତି ହେଲେ ବି ପାର୍ଥ ସେମାନଙ୍କ କଥା ଶୁଣିଲା ନାହିଁ । କଲ୍ୟାଣୀ ଶେଷରେ ଲୁଚାଇ ଥିବା ଜାଗାରୁ ବାହାର କରି ସୁନା ହାରଟି ପାର୍ଥ ହାତରେ ଦେବାରୁ ସେ ଦିନ ଏଲୋରାର ଜୀବନ ବଞ୍ଚିଗଲା ।

ଏଲୋରା ଅନେକ କାନ୍ଦିଲା । ସେମିତି କାନ୍ଦ,କାନ୍ଦ କଣ୍ଠରେ କହିଲା-ବୋଉ ! ଆପଣ ହାରଟାକୁ ତାଙ୍କ ହାତକୁ ଟେକିଦେଇ କିଛି ଠିକ୍ କଲେନାହିଁ । ପଇସା ବାହାର କରିବାର ଗୋଟେ ସହଜ ଉପାୟ ସିଏ ଜାଣି ଗଲେ । ହାର ବିକ୍ରି ଟଙ୍କା ସରିଗଲେ ଆଉ ଟଙ୍କା ପାଇବା ଆଶାରେ ସିଏ ମୋ ତଣ୍ଟି ଚିପିବେ ।

କଲ୍ୟାଣୀ ଓ ସନାତନ ବୁଝିଗଲେ ଏଲୋରା ଯାହା କହୁଛି ସେଟା ନିରାଟ ସତକଥା । ଏଲୋରାର ଜୀବନ ବଞ୍ଚାଇବା ପାଇଁ ସିଏ ଆଜି ଯାହାକଲେ ତାହା ଏଲୋରାର ମରଣ ପାଇଁ ସବୁ ଦିନିଆଁ ବାଟ ପରିଷ୍କାର କରିଦେଲା ।

ସନାତନ ବୋହୂକୁ ଆଶ୍ୱାସନା ଦେଲେ ସିଏ ବଞ୍ଚିଥିବା ଯାଏ ଆଉ ଏମିତି ଘଟଣା ଘଟାଇବା ପାଇଁ ପାର୍ଥକୁ ପ୍ରଶ୍ରୟ ଦେବେ ନାହିଁ ।

ସନାତନ ଏମିତି ଗୋଟେ ଶପଥ ସିନା ବୋହୂ ଆଗରେ କରିଦେଲେ, କିନ୍ତୁ ପାର୍ଥ ପରି ଶକ୍ତିଶାଳୀ ଯୁବକର ଶକ୍ତ ପଂଝା ଭିତରୁ ତାକୁ ମୁକୁଳାଇବେ କେମିତି ?

ସନାତନ ଦିନେ ପ୍ରସ୍ତାବ ଦେଲେ ଯେ ସିଏ ଏଲୋରାକୁ ତାଙ୍କ ମାଆଙ୍କ ପାଖରେ ଛାଡ଼ିଦେଇ ଆସିବେ । ସିଏ ତା' ମାଆଙ୍କ ପାଖରେ ହୁଏତ ନିରାପଦ ରହିବ ।

ଏ ପ୍ରସ୍ତାବକୁ ଏଲୋରା ବିରୋଧ କଲା-ସିଏଯେ ମୋ ବାପଘରକୁ ଯାଇ ସେଠି ପାଟିତୁଣ୍ଡ,ମାରଧର ନକରିବେ ,ତାର କିଛି ନିଶ୍ଚିତତା ନାହିଁ । ଆମ ଗାଆଁ ଲୋକ ଯାଙ୍କ ମଦପିଆ କଥା କିଛି ଜାଣି ନାହାଁନ୍ତି । ଯାଙ୍କ କୀର୍ତ୍ତି ଯଦି ସେମାନେ ଜାଣନ୍ତି,ତାହେଲେ



Digitized by srujanika@gmail.com

ମୁଁ ସେଠି କାହାକୁ ମୁହଁ ଦେଖାଇ ପାରିବି ନାହିଁ ।

ସନାତନ କଥାଟାକୁ ମନରେ ପରଖିଲେ । ତାଙ୍କର ମନେହେଲା ବୋହୂ ଯାହା କହୁଛି ଠିକ୍ କହୁଛି । ସେ ପ୍ରସ୍ତାବ ସେଇଠି ଅଟକି ଗଲା ।

କିଛିଦିନ ପରେ ପାର୍ଥ ଟଙ୍କା ପାଇଁ ପୁଣି ଜୁଲମ ଆରମ୍ଭ କଲା । ଏଲୋରାର ହାତ ଗୋଡ଼କୁ ଗୋଟେ ରସିରେ ଶକ୍ତ ଭାବେ ବାନ୍ଧିଲା,ଯେମିତି ଗୋଟେ କୁକୁଡ଼ାର ଗୋଡ଼ ଓ ଡେଣାକୁ ବନ୍ଧାଯାଏ । ଗୋଟେ ହାତରେ ଏଲୋରାର ବେକର ଶଙ୍ଖନଳୀକୁ ଚିପି ଧରି ଡାକ ପକାଇଲା-ବୋଉ ! ଯଦି ତୋ' ବୋହୂର ଜୀବନ ରକ୍ଷାକରିବାକୁ ଚାହୁଁ ତେବେ ୫୦୦ ଟଙ୍କା ଶୀଘ୍ର ଆଣ ।

ସନାତନ ସେତେବେଳେ ଘରେ ନଥିଲେ । କଲ୍ୟାଣୀ ଏଲୋରାର ଏ ଦୟନୀୟ ଅବସ୍ଥା ଦେଖି ଅତ୍ୟନ୍ତ ଭୟ ପାଇଗଲେ । କାନ୍ଦି କାନ୍ଦି ପୁଅ ପାଖରେ ହାତଯୋଡ଼ି ନେହୁରା ହେଲେ-ମୁଁ ସତ କହୁଛି ପାର୍ଥ ! ମୋ ପାଖରେ ଯାହାଥିଲା ତୁ ସବୁ ନେଲୁଣି । ମୋ ପାଖରେ ଆଉ କିଛି ନାହିଁ । ତୋ ବାପା କୁଆଡେ ଯାଇଛନ୍ତି ଆସନ୍ତୁ, ମୁଁ ତାଙ୍କଠୁ ଟଙ୍କା ଆଣି ତୋତେ ଦେବି । ତୁ ମୋ ବୋହୂକୁ ଛାଡ଼ି ଦେ ।

କିନ୍ତୁ ପାର୍ଥ ସେଥିରେ ଭୁଲିବା ଯନ୍ତୁ ନୁହେଁ । ସିଏ ଏଲୋରାର ତଣ୍ଟିକୁ ଅଧିକ ଜୋରରେ ଚିପିଧରି କହିଲା-ମୁଁ ଦଶ ଗଣିବା ଭିତରେ ଯଦି ମୋ ହାତକୁ ୫୦୦ଟଙ୍କା ନଆସେ ,ତେବେ ମୁଁ ଏଲୋରାର ତଣ୍ଟି ଚିପି ହତ୍ୟା କରିବି ଏବଂ ଏ ହତ୍ୟା ପାଇଁ ତୁ ଦାୟୀ ରହିବୁ । ମୋ ଗଣିବା ହେଇ ଆରମ୍ଭ ହେଲା-ଦଶ,ନଅ, ଆଠ,ସାତ, ଛଅ, ପାଞ୍ଚ,ଚାରି, ତିନ୍, ଦୁଇ...

ଏତିକି ବେଳେ କଲ୍ୟାଣୀ ଗୋଟିଏ କାଠ ପିଢ଼ାରେ ପାର୍ଥର ହାତକୁ ପାହାରେ ପିଟିଦେଲେ । ପାର୍ଥ ଏଲୋରାର ତଣ୍ଟିକୁ ଛାଡ଼ି କଲ୍ୟାଣୀଙ୍କୁ ଖୁବ୍ ଜୋରରେ ପଛକୁ ଠେଲିଦେଲା । କଲ୍ୟାଣୀ ଗଛ କାଟିଲା ପରି ଚିତ୍‌ହୋଇ ତଳେ ପଡ଼ିଗଲେ । ତାଙ୍କମୁଣ୍ଡର ପଛ ପାଖ ଫାଟି ରକ୍ତ ବହାରିଲା । ସିଏ ସଙ୍ଗେ ସଙ୍ଗେ ଅଚେତ ହୋଇଗଲେ ।

ପାଟି ତୁଣ୍ଡ ଶୁଣି ସନାତନ ଆସି ଘରେ ପହଞ୍ଚି ସଙ୍ଗେ ସଙ୍ଗେ ଅଟୋରିକ୍ସାରେ କଲ୍ୟାଣୀଙ୍କୁ ନେଇ ରାଜଧାନୀ ହସପିଟାଲରେ ପହଞ୍ଚାଇଲେ । ଡାକ୍ତର ପରୀକ୍ଷା କରି କଲ୍ୟାଣୀଙ୍କୁ ମୃତ ବୋଲି ଘୋଷଣା କଲେ । ବ୍ରେନ ହାମରେଜ ଯୋଗୁ ତାଙ୍କର ମୃତ୍ୟୁ ହୋଇଥିବା କଥା ଡାକ୍ତର ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ ।

କଲ୍ୟାଣୀଙ୍କ ମୃତ୍ୟୁ ପରେ ମଧ୍ୟ ପାର୍ଥ ତା'ର ମଦଖିଆ ଛାଡ଼ିଲା ନାହିଁ । ତାଙ୍କ



Digitized by srujanika@gmail.com

ଶୁଦ୍ଧିକ୍ରୀୟାର ପରଦିନ ପାର୍ଥ ମଦପିଇ ମାତାଲ ହୋଇ ଏଲୋରାର ଚୁଟି ଧରି ଘୋଷାରିଲା । ଏଲୋରା କାନ୍ଦି କାନ୍ଦି ପ୍ରତିବାଦ ଜଣାଇଲା-ତୁମେ ମଣିଷ ନା ରାକ୍ଷସ ? ତୁମରି ଯୋଗୁ ତୁମର ଦେବୀ ପ୍ରତିମ ମାଆଙ୍କର ମୃତ୍ୟୁହେଲା । ଏବେ ଆଉ କ'ଣ ଅଛିଯେ ତୁମେ ମଦ ପିଇବ ?

ପାର୍ଥ ବିଦ୍ରୂପ କରି କହିଲା-କାହିଁକି କ'ଣ ହୋଇ ଯାଇଛି କି ? ମଦ ପିଇବାକୁ କ'ଣ ଆମ ଘରେ ଟଙ୍କାର ଅଭାବ ଅଛି ? ବୋଉ ସିନା ମରିଗଲା, ଆମ ଘରେ ଗୋଟେ ସୁନା ଅଣ୍ଡାଦିଆ କୁକୁଡ଼ା ତ ଅଛି । ସିଏ ପ୍ରତିଦିନ ସୁନା ଅଣ୍ଡା ଦେଉଥିବ ଆଉ ମୁଁ ମନଭରି ମଦ ପିଉଥିବି । ମୋ ବାପା ପ୍ରତି ମାସରେ ସରକାରୀ ଟ୍ରେଜେରିରୁ ପେନସନ୍ ଟଙ୍କା ଆଣୁଛନ୍ତି । ତାଙ୍କ ପେନସନ୍ ଟଙ୍କା ଆସୁଥିବା ପର୍ଯ୍ୟନ୍ତ,ମୋର ଆଉ ଚିନ୍ତା କ'ଣ ?

ଅନ୍ୟ ବଖରାରେ ଥାଇ ସନାତନ ଏକଥା ଶୁଣି ପାରିଲେ । ତାଙ୍କ ମୁଣ୍ଡକୁ ହଠାତ୍ ବିଷ ଚଢ଼ିଗଲା । ସିଏ ଚିତ୍କାର କଲେ-କ'ଣ କହିଲୁରେ ଘୋଡ଼ା ମଦୁଆ କୁଳାଙ୍ଗାର ? ମୁଁ ତୋର ଗୋଟେ ସୁନା ଅଣ୍ଡା ଦିଆ କୁକୁଡ଼ା ? ମୋ ପେନସନ୍ ଟଙ୍କା ନେଇ ତୁ ମଦପିଇବୁ ? ମଦ ପିଇ ଏଘରେ ନାଟ କରିବୁ ?

ହାତରେ ଠେଙ୍ଗାଟାଏ ଧରି ପୁଅ ଆଡ଼କୁ ଉହୁଁକି ଆସିଲେ ସନାତନ । ପାର୍ଥକୁ ପିଟିବାକୁ ଠେଙ୍ଗା ଉଠାଇବା ବେଳେ ଠେଙ୍ଗାଟା ଦୁଆର ବନ୍ଧରେ ବାଜି ଫେରି ଆସିଲା ଓ ତାହା ସନାତନଙ୍କ ମୁଣ୍ଡରେ ପିଟି ହୋଇଗଲା । ସନାତନ ରଜରାଜ ହୋଇ ତଳେ ପଡ଼ିଗଲେ । ପାର୍ଥ ଓ ଏଲୋରା ତାଙ୍କୁ ତଳୁ ଉଠାଇ ତାଙ୍କ ମୁହଁରେ ପାଣି ଛିଞ୍ଚି ଚେତା କରାଇଲେ ।

ସନାତନ ଆଖି ଖୋଲି ଚାହିଁଲେ ; କିନ୍ତୁ କିଛି କଥା କହି ପାରିଲେ ନାହିଁ କିମ୍ବା ଚାଲି ପାରିଲେ ନାହିଁ । ଡାକ୍ତର ସନାତନଙ୍କୁ ପରୀକ୍ଷା କରି କହିଲେ ଅତ୍ୟଧିକ ଉତ୍ତେଜନା ଯୋଗୁ ତାଙ୍କୁ ପକ୍ଷାଘାତ ଆକ୍ରମଣ କରିଛି । ତାଙ୍କର ନିୟମିତ ସେବା ଓ ଚିକିତ୍ସା ଆବଶ୍ୟକ ।

ଏଲୋରା ପାର୍ଥକୁ ବୁଝାଇଲେ-ତୁମ ସୁନା ଅଣ୍ଡାଦିଆ କୁକୁଡ଼ାକୁ ତୁମେ ନିଜ ହାତରେ ମାରି ଦରମରା କରି ଦେଇଛ । ପକ୍ଷାଘାତ ରୋଗ ସହଜରେ ଭଲ ହୁଏ ନାହିଁ । ବାପାଙ୍କର ଏ ବୟସରେ ପକ୍ଷାଘାତ ରୋଗ ଆଦୌ ଭଲ ହେବନାହିଁ । ସିଏ ସବୁ ଦିନ ପାଇଁ ଶଯ୍ୟାଶାୟୀ ହୋଇ ରହିବେ । ଏ ରୋଗ ସହିତ ଲଢ଼ିବା ପାଇଁ ରୋଗୀର ଯଥେଷ୍ଟ ଇଚ୍ଛାଶକ୍ତି ଦରକାର । ତୁମ ପରି ମଦୁଆ ପୁଅ ଯାହାର ଥିବ ତା' ବାପାଙ୍କର ବଞ୍ଚିବା ପାଇଁ କାହିଁକି ବା ଇଚ୍ଛା କି ଆଗ୍ରହ ରହିବ ? ପ୍ରତିଦିନ ମଦୁଆ ପୁଅ ଦ୍ୱାରା ନିର୍ଯାତିତ ହେବାପାଇଁ



Digitized by srujanika@gmail.com

କିଏ ବା କାହିଁକି ବଞ୍ଚିବାକୁ ଚାହିଁବ ?

ବାପାଙ୍କର ଯଦି କିଛି ହୋଇ ଯାଏ ତେବେ ତୁମର ମଦ ଖିଆ ତ ଦୂରର କଥା ଘରେ ଚୁଲି ଜଳିବା ମଧ୍ୟ ବନ୍ଦ ହୋଇ ଯିବ । ତାଙ୍କ ପେନ୍‌ସନ୍ ଟଙ୍କା ନଆସିଲେ ଏ ଘର ଚଳିବ କେମିତି ? ମୁଁ ଘରକାମ କରି ତାଙ୍କ ସେବା ଆଉ ଚିକିତ୍ସା କରି ପାରିବି ନାହିଁ । ତାଛଡ଼ା ବାପାଙ୍କୁ ଏକୁଟିଆ ଟେକା ଉଠା କରିବା ମୋ ଶକ୍ତିର ବାହାରେ । ତାଙ୍କ ସେବାର ଦାୟିତ୍ୱ ତୁମକୁ ନେବାକୁ ପଡ଼ିବ ।

ପାର୍ଥ ସବୁ ଶୁଣିଲା କିନ୍ତୁ କିଛି କହିଲା ନାହିଁ । ପ୍ରତିଦିନ ସକାଳୁ ଉଠି ବାପାଙ୍କୁ ଦାନ୍ତ ଘଷେଇବା, ପାଇଖାନାକୁ ନେବା, ଗାଧୋଇଦେବା, ଲୁଗା ପିନ୍ଧାଇବା, ଔଷଧ ଖୁଆଇବା, ଖାଦ୍ୟ ଖୁଆଇବା, କ୍ଷୀର ଓ ପାଣି ପିଆଇବା, ଗୋଡ଼ ହାତରେ ତେଲ ମାଲିସ୍ କରିବା ଇତ୍ୟାଦି ସମସ୍ତ କାମ ପାର୍ଥକଲା ।ଏଲୋରା ଏସବୁ କାମରେ ପାର୍ଥକୁ ସାହାଯ୍ୟ କଲା ।

ସନାତନ ଖାଇ ପିଇ ଶୋଇବା ପରେ ପାର୍ଥ ତାଙ୍କ ପାଖରେ ଚେୟାରଟିଏ ପକାଇ ତାଙ୍କୁ ଜଗି ବସିଲା । ସକାଳୁ ରାତି ପର୍ଯ୍ୟନ୍ତ ଘରଛାଡ଼ି କୁଆଡ଼େ ଗଲା ନାହିଁ । ରାତିରେ ମଧ୍ୟ ବାପାଙ୍କୁ ଜଗି ବସିଲା ।

ଛଅ ମାସ ଏମିତି ପୁଅ ବୋହୂଙ୍କ ସେବା ଯତ୍ନ ପାଇ ଚିକିତ୍ସାରେ ରହିବାରୁ ସନାତନଙ୍କ ରୋଗ ଧୀରେ,ଧୀରେ ଭଲ ହେବାକୁ ଲାଗିଲା । ସନାତନ ଏଥର ସବୁବେଳେ ଶୋଇ ନରହି ବିଛଣାରେ ବସି ଗୋଡ଼ ହାତ ଚଳେଇବାକୁ ଚେଷ୍ଟା କଲେ । ତାଙ୍କର ପାଟି ଖୋଲୁ ନଥିଲେ ବି ସବୁ କଥା ଠାରରେ ଜଣାଇଲେ ।

କିଛି ଦିନ ପରେ ପାର୍ଥ କାନ୍ଧରେ ଭରାଦେଇ ସନାତନ ଘର ଭିତରେ ଓ ଅଗଣାରେ ଛୋଟେଇ ଛୋଟେଇ ଚାଲିଲେ । ଚେୟାରରେ ବସି ଖବରକାଗଜ ପଢ଼ିଲେ ଓ ନିଜ ହାତରେ ଚା'କପ୍ ଧରି ପିଇଲେ ।

ସନାତନଙ୍କ ମୁହଁ ଏଥର ହସ ହସ । ତାଙ୍କ ଦେହ ସଂପୂର୍ଣ୍ଣ ସୁସ୍ଥ ହୋଇ ନଥିଲେ ବି ତାଙ୍କ ମନ ପ୍ରଫୁଲ୍ଲ ଅଛି । ଆଜିକୁ ସାତ,ଆଠ ମାସ ହେଲା ତାଙ୍କ ପୁଅ ତାଙ୍କ ପାଖେ ପାଖେ ରହି ସେବା କରୁଛି । ଘର ଛାଡ଼ି କୁଆଡ଼େ ଯାଉ ନାହିଁ । ମଦ ପିଇ ନାହିଁ କି ବୋହୂ ସହିତ କଳି ଝଗଡ଼ା କରି ନାହିଁ ।ଏମିତି ଗୋଟେ ସୁଖର ଦିନକୁ କଲ୍ୟାଣୀ ଅପେକ୍ଷା କରି କରି ସଂସାର ଛାଡ଼ି ଚାଲିଗଲେ ।ସୁଖ ଦେଖି ପାରିଲେ ନାହିଁ । ସନାତନଙ୍କ ଆଖିରୁ ଦୁଇ ବୁନ୍ଦା ଲୁହ ଗଡ଼ି ତାଙ୍କ ଗାଲ ଉପର ଦେଇ ବୋହିଗଲା ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ପାର୍ଥ ତା'ର ଟାଉଏଲ କାନିରେ ବାପାଙ୍କ ଆଖିର ଲୁହକୁ ପୋଛି ପକାଇଲା । ଉତ୍କଣ୍ଠାର ସହିତ ବାପାଙ୍କୁ ପଚାରିଲା-ବାପା ! ତୁମକୁ କିଛି ଯନ୍ତ୍ରଣା ହେଉଛି କି ?କ'ଣ ହେଉଛି କୁହ, ମୁଁ ଡାକ୍ତରଙ୍କୁ ପଚାରି ଔଷଧ ଆଣିବି ।

ସନାତନ ମୁହଁରେ ହସର ମୁଦ୍ରା ଫୁଟାଇ ହାତରେ ଠାରି କହିଲେ-ଏଟା ଦୁଃଖ କି ଯନ୍ତ୍ରଣାର ନୁହଁ ଖୁସୀର ଲୁହ । ତୋ ବୋଉ ଆଜି ବଞ୍ଚିଥିଲେ ତୋର ଏ ପରିବର୍ତ୍ତନ ଦେଖି ସବୁଠୁ ବେଶୀ ଖୁସୀ ହୋଇଥାନ୍ତା । ତୁ' ମଦ ପିଆ ଛାଡ଼ି ଦେଇଛୁ । ମୋର ସେବା କରୁଛୁ, ଆଉ ଏଲୋରା ସହିତ ଭଲ ବ୍ୟବହାର କରୁଛୁ ।

ଖଣ୍ଡେ ଦୂରରେ ଏଲୋରା ଠିଆହୋଇ ଏ ଦୃଶ୍ୟ ଦେଖି ଆତ୍ମ ସନ୍ତୋଷର ସରୁ ହସ ଧାରଟିଏ ମୁହଁରେ ଟାଣି ରୋଷେଇ ଘରକୁ ଫେରିଗଲେ ।

ସନାତନର ପାଖ ପଡ଼ୋଶୀମାନେ ମଦୁଆ ପାର୍ଥର ଏ ପିତୃଭକ୍ତି ଦେଖି ମୁହଁମୋଡ଼ି କହିଲେ-ମଦୁଆର ଏଟା ପିତୃଭକ୍ତି ନୁହଁ, ଏଟା ତା'ବାପାର ପେନସନ ଟଙ୍କା ପ୍ରତି ଥିବା ମମତା । ସନାତନ ଯଦି ମରି ଯାଆନ୍ତି, ତେବେ ଘରକୁ ପେନସନ ଟଙ୍କା ଆସିବା ସବୁଦିନ ପାଇଁ ବନ୍ଦ୍ ହୋଇଯିବ । ସେଇ ଭୟରେ ପାର୍ଥ ତା' ବାପାର ଏତେ ସେବା ଯତ୍ନ ଆଉ ଚିକିତ୍ସା କରୁଛି । ଯେଉଁ ଦିନ ସନାତନ ଭଲହୋଇ ଯିବେ ସେଦିନ ଏ ନକଲି ବାଲ୍ମିକୀ ଅସଲି ଦଶ୍ୟୁ ରତ୍ନାକର ପାଲଟି ଯିବ । ଇଏତ ମାତ୍ର ସାତ,ଆଠ ମାସ ହେବ ମଦଖିଆ ଛାଡ଼ି ବାପ ସେବା କରୁଛି,କିନ୍ତୁ ମଦ ପିଇବା ତା'ର ସାତ,ଆଠ ବର୍ଷର ଅଭ୍ୟାସ । ପାର୍ଥ କ'ଣ ତାକୁ ସହଜରେ ଛାଡ଼ି ପାରିବ ?

ପଡ଼ୋଶୀମାନଙ୍କ ଏକଥା ସନାତନଙ୍କ କାନରେ ପଡ଼େ । ସିଏ ଏସବୁକୁ ଶୁଣି ନଶୁଣିବା ପରି ରୁହନ୍ତି ।

ଦିନେ ପାର୍ଥ ତା' ବାପାଙ୍କୁ ଔଷଧ ଖୁଆଇ ଦେବାବେଳେ ତା'ର ଚାରି ଜଣ ସାଙ୍ଗ ଆସି ତାକୁ କହିଲେ-କିରେ ପାର୍ଥ ! ଆମେ ଏତେ ଥର ଡାକିବା ସତ୍ତ୍ୱେ ତୁ କ୍ଲବ ଆଡ଼େ ଆସୁନଉଁ କାହିଁକି ? ତୋର କ'ଣ ଏକା ବାପା ଅଛନ୍ତି, ଆମର କାହାର ବାପା ନାହାଁନ୍ତି ? ତୁ କ'ଣ ଏକଦମ୍ ପିତୃଭକ୍ତ ଶ୍ରବଣ କୁମାର ପାଲଟିଗଲୁ କିରେ ?ଠିକ୍ ଅଛି ଆଜି ରାତିରେ କ୍ଲବଘରେ ଭୋଜି ଅଛି । ନିଶ୍ଚୟ ଆସିବୁ ।

ପାର୍ଥ ଦୃଢ଼ କଣ୍ଠରେ ମନାକଲା-ନା, ମୋ ବାପା ସଂପୂର୍ଣ୍ଣ ସୁସ୍ଥ ନହେବା ପର୍ଯ୍ୟନ୍ତ ମୁଁ ଘର ଛାଡ଼ି କୁଆଡ଼େ ଯାଇ ପାରିବି ନାହିଁ ।

ତା' ସାଙ୍ଗମାନଙ୍କ ଭିତରୁ ଜଣେ କହିଲା-ପକ୍ଷାଘାତ ରୋଗୀ କ'ଣ କେବେ



Digitized by srujanika@gmail.com

ସୁସ୍ଥ ହେଲାଣି ? ସେ ରୋଗୀ ଶେଷ ପର୍ଯ୍ୟନ୍ତ ଏମିତି ବିଛଣାରେ ପଡ଼ିଥିବେ ଆଉ ଔଷଧ ଖାଉଥିବେ । ଦୁଟା ଘରେ ରହି ଅନବରତ ରୋଗୀ ସେବା କରି କରି ରୋଗୀ ପାଲଟି ଗଲୁଣି ।

ପାର୍ଥର ସାଙ୍ଗମାନେ ତାକୁ ଆଉ ଅଧିକ ବାଧ୍ୟ ନକରି ଫେରିଗଲେ । କିନ୍ତୁ ରାତି ଦଶଟା ବେଳକୁ କିଏ ଜଣେ ଆସି ପାର୍ଥ ଘରର କବାଟ ଠକ୍ ଠକ୍ କଲା ।ଏଲୋରା ଉଠି ଯାଉଥିଲା କବାଟ ଖୋଲିବାକୁ ପାର୍ଥ ତାକୁ ଅଟକାଇ ନିଜେ ଯାଇ କବାଟ ଖୋଲିଲା । ତା'ଆଗରେ ଠିଆହୋଇଛି ରୁଦ୍ର, ଯିଏ ତା'ର ସବୁଠୁ ଅନ୍ତରଙ୍ଗ ମଦପିଆ ସାଙ୍ଗ । ତା'ହାତରେ ଗୋଟେ ବଡ଼ ବେଲାରେ ବେଲାଏ ମାଂସ ତରକାରି ଓ ଗୋଟେ ମଦ ବୋତଲ । ରୁଦ୍ର ତାକୁ କିଛି କହିବାକୁ ଚାହୁଁଥିଲା;କିନ୍ତୁ ପାର୍ଥ ତାକୁ ଇସରାରେ ସୂଚନା ଦେଲା । ରୁଦ୍ର କିଛି ନକହି, ସେଇ ମାଂସ ତରକାରି ଓ ମଦ ବୋତଲଟି ପାର୍ଥ ହାତକୁ ବଢ଼ାଇ ଦେଇ ରାତିର ଅନ୍ଧାର ଭିତରେ ହଜିଗଲା ।

ପାର୍ଥ ସେ ମାଂସ ତରକାରି ଓ ମଦ ବୋତଲକୁ ଧରି କିଛି ସମୟ ଠିଆହୋଇ କିଛି ଚିନ୍ତିକଲା । ଖଣ୍ଡେ ଦୂରରେ ଠିଆହୋଇ ଏଲୋରା ଏଦୃଶ୍ୟକୁ ବ୍ୟଗ୍ରତାର ସହିତ ନିରୀକ୍ଷଣ କରୁଥିଲା ।

ପାର୍ଥ କ'ଣ ଭାବିଲା କେଜାଣି ସେ ମାଂସ ତରକାରି ଓ ମଦ ବୋତଲକୁ ପାଚେରି ସେପଟକୁ ଫିଙ୍ଗି ଦେଲା ।

ଏଦୃଶ୍ୟକୁ ନିରୀକ୍ଷଣ କରୁଥିବା ଏଲୋରା ଆଖିରୁ ଖୁସୀର ଦୁଇ ଧାର ଲୁହ ଚବକି ଆସି ତା'ର ଗାଲ ଉପରଦେଇ ବହିଗଲା । ସିଏ ତା' ପଣତ କାନିରେ ସେ ଲୁହକୁ ପୋଛି ନେଇ ମୁରୁକି ହସିଲା ଓ ହାତଯୋଡ଼ି ପ୍ରଭୁଙ୍କୁ କୃତଜ୍ଞତା ଜଣାଇଲା ।





Digitized by srujanika@gmail.com

# ବାଇଗଣିରଙ୍ଗ ଘର

ଅବସରପ୍ରାପ୍ତ ଡେପୁଟି ସେକ୍ରେଟାରୀ ମାନବ ଚୌଧୁରୀଙ୍କ ନୂଆ ଦୁଇ ମହଲା କୋଠାଘର ତିଆରି ପ୍ରାୟ ସଂପୂର୍ଣ୍ଣ ହେବା ଉପରେ । କେବଳ ଘରର ବାହାର ପାଖ ରଙ୍ଗ ଦିଆ ଯିବ । ଘର ଭିତର ରଙ୍ଗ ଦିଆ ସରିଛି । ଘର ଭିତରଟାର ରଙ୍ଗ ଅଫ୍ ହ୍ୱାଇଟ । ସିଲିଙ୍ଗର ରଙ୍ଗ ଦୁଧ ପରି ଧଳା । ବାହାର ରଙ୍ଗଟା ଯେତେ ସୁନ୍ଦର ହେବ ଘରଟା ସେତେ ଚମତ୍କାର ଦିଶିବ । ସବୁ ଲୋକ ଘର ଭିତର ଦେଖିବାର ସୁଯୋଗ ନାହିଁ । ତେଣୁ ଘର ଭିତରଟା ଯେତେ ସୁନ୍ଦର ହେଲେ ବି ଘର ଭିତରେ ପ୍ରବେଶ ନକରିବା ଲୋକ ଘର ଭିତରର ସୌନ୍ଦର୍ଯ୍ୟ ଉପଭୋଗ କରି ପାରିବ ନାହିଁ । ତେଣୁ ସେଇ ବାହାର ରଙ୍ଗଟା ଯେତେ ସୁନ୍ଦର ଓ ଆକର୍ଷଣୀୟ ହେବ ଘରଟା ସେତେ ସୁନ୍ଦର ବୋଲି ବିବେଚିତ ହେବ ।

ଘରର ଭିତର କାନ୍ଥରେ ପ୍ରଥମେ ପୁଟି,ପ୍ରାଇମର ଓ ତାପରେ ପ୍ଲାଷ୍ଟିକ କଲର ଦିଆ ଯାଇଛି । ଘରର ବାହାର କାନ୍ଥରେ ସେ ପ୍ରାଇମର ଦେଇ ସାରିଲେଣି । ତା' ଉପରେ ଦୁଇ କୋଟ୍ ୱେଦର କଲର୍ ଦିଆଯିବ । ବାହାର ୱେଦର କଲର୍ ପାଇଁ ଖର୍ଚ୍ଚ ଅଟକଳ ପ୍ରାୟ ଲକ୍ଷେ ଟଙ୍କା । ତାଙ୍କ ସ୍ତ୍ରୀ ନୀଳିମାଙ୍କ ମତ, ଘରର ବାହାର ରଙ୍ଗଟା ଧଳା ହେଲେ ଭଲ । ଧଳା ରଙ୍ଗର ତୁଳନା ନାହିଁ ।

କିନ୍ତୁ ମାନବଙ୍କ ମନକୁ କଥାଟା ଠିକ୍ ଲାଗିଲା ନାହିଁ । ଧଳା ରଙ୍ଗ ନିହାତି ଗୋଟେ ସାଧାରଣ ରଙ୍ଗ । ସେ କହିଲେ-ଆମ ଏ ନୂଆ କଲୋନୀରେ ପ୍ରାୟ ତିନିଶହ କି ସାଢ଼େ ତିନିଶହ ଘର ତିଆରି ହେଲାଣି ।ଏଥି ମଧ୍ୟରୁ ପ୍ରାୟ ଏକ ପଞ୍ଚମାଂଶ ଘରର ରଙ୍ଗ ଧଳା । ଏତେ ଧଳା ରଙ୍ଗର ଘର ଭିତରୁ ଆମ ଘରଟାକୁ ଦୂରରୁ ଚିହ୍ନିବା ମୁସ୍କିଲ୍ ହୋଇଯିବ । ଏବେତ ମାତ୍ର ସାଢ଼େ ତିନି ଶହ ଘର ତିଆରି ହୋଇଛି, କିନ୍ତୁ ଯେତେବେଳେ ଅବଶିଷ୍ଟ ସାଢ଼େ ଛଅଶହ ଘର ତିଆରି ହୋଇଯିବ ସେତେବେଳ ତା'ଭିତରୁ ଆହୁରି ଅନେକ ଘରର ରଙ୍ଗ ଧଳାହେବ । ତେଣୁ ଆମକୁ ନିହାତି ଗୋଟେ ନିଆରା ରଙ୍ଗ ପସନ୍ଦ କରିବାକୁ ପଡ଼ିବ ଯାହା ହଜାରେ ଘର ଭିତରୁ ବାରି ହୋଇ ପଡୁଥିବ ।

ମାନବ ସଂଧ୍ୟାବେଳେ ଫୋନ୍ କଲେ ତାଙ୍କର ଏକମାତ୍ର ପୁଅ ଆକାଶ ପାଖକୁ ଯିଏ ଆମେରିକାରେ ରହୁଚି । ତା'ର ଆଉଟଲୁକ୍ ଖୁବ୍ ଭଲ । ଆକାଶ ମଧ୍ୟ ସେଇ କଥ କହିଲା । ଧଳା ରଙ୍ଗଟା ନିହାତି ଗୋଟେ କମନ୍ କଲର୍ । ତେଣୁ ତାଙ୍କ ଘର ପାଇଁ କିଛି

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଗୋଟେ ସ୍ପେସିଆଲ୍ କଲର୍ ବାଛିବାକୁ ହେବ । ଆକାଶ ପ୍ରତିଶ୍ରୁତି ଦେଲାଯେ ଦୁଇ,ତିନି ଦିନ ଭିତରେ ସିଏ ନିଶ୍ଚୟ ଭଲ ରଙ୍ଗଟିଏ ନିର୍ବାଚନ କରି ବାପାଙ୍କୁ ଜଣାଇବ ।

ଏଇ ରଙ୍ଗ ନିର୍ବଚନ ନିମନ୍ତେ ମାନବ ତାଙ୍କ ଝିଅ ପିଙ୍କିର ମଧ୍ୟ ମତାମତ ଲୋଡ଼ିଲେ । ସିଏ ତା' ସ୍ୱାମୀଙ୍କ ସହିତ ମୁମ୍ୱେଇରେ ରହୁଛି । ମୁମ୍ବାଇରେ ଅନେକ ସିନେମା ଷ୍ଟାରଙ୍କର ବିଭିନ୍ନ ଡଡିଜାଇନର ଓ ଆକର୍ଷଣୀୟ ରଙ୍ଗର ଘର ଅଛି । ଘରର ରଙ୍ଗ ବିଷୟରେ ତା'ର ନିଶ୍ଚୟ କିଛି ଆଇଡ଼ିଆ ଥିବ । ପିଙ୍କି ମଧ୍ୟ ତା'ର ମତାମତ ଦେବା ପାଇଁ ଦୁଇ,ତିନି ଦିନ ସମୟ ନେଲା ।

ରଙ୍ଗ ମିସ୍ତ୍ରୀ ଆସି ପହଞ୍ଚିଲା । ସିଏ ଆସିଛି ଆଜି ମାନବଙ୍କୁ ସଙ୍ଗରେ ନେଇ ବଜାରକୁ ଯିବ ଓ ୱେଦର କଲର କିଣିବ । ମାନବ ରଙ୍ଗ ମିସ୍ତ୍ରୀକୁ ରଙ୍ଗ ବିଷୟରେ ପଚାରିଲେ । ସିଏ ଏ ଭୁବନେଶ୍ୱର ସହରରେ ଅନେକ ଘର ରଙ୍ଗ କରୁଛି । ତା'ର ଏ ବିଷୟରେ ନିଶ୍ଚୟ କିଛି ପ୍ରାକ୍ଟିକାଲ୍ ନଲେଜ ଥିବ ।

ରଙ୍ଗ ମିସ୍ତ୍ରୀ କିଛି ସମୟ ଚିନ୍ତା କରି କହିଲା-ମୁଁ କ'ଣ କହିବି ? ଆପଣଙ୍କ ନିଜ ଘର,ଆପଣ ରଙ୍ଗ ପସନ୍ଦ କରିବେ । ତେବେ କିଛି ଗୋଟେ ଲାଇଟ୍ କଲର ଦେଲେ ଭଲ ।ଏଇ ଯେମିତି ଲାଇଟ ବ୍ରାଉନ୍, ଲାଇଟ ଗ୍ରୀନ୍,ଲାଇଟ ଯେଲୋ କିମ୍ବା ଲାଇଟ ପିଙ୍କ୍ । ରଙ୍ଗ ମିସ୍ତ୍ରୀର କଥା ଶୁଣିବା ପରେ ମନେ ମନେ ହସିଲେ ମାନବ । ଏ ରଙ୍ଗବାଲାର ବୁଦ୍ଧି ଅବା କେତେ ? ସିଏ ନୂଆ କ'ଣ କାହିଁକି ଜାଣିବ ? ସେଇ ଚିରା ଚରିତ ସାଧାରଣ ରଙ୍ଗର ନାଆଁ ସବୁ କହୁଛି । ଯେପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତାହାର ବେଭାର । ମାନବ ତାଙ୍କ ପୁଅ ଓ ଝିଅଙ୍କ ମତାମତ ନେବା ପରେ ରଙ୍ଗ ବିଷୟରେ ଚୂଡ଼ାନ୍ତ ନିଷ୍ପତ୍ତି ନେବେ ।

ସେଦିନ ରଙ୍ଗ ମିସ୍ତ୍ରୀ ଫେରିଗଲା । ମାନବ ତାକୁ କହିଲେ-ମୁଁ ଏପର୍ଯ୍ୟନ୍ତ ବାହାର ରଙ୍ଗ ବିଷୟରେ ଫାଇନାଲ୍ ନିଷ୍ପତ୍ତି ନେଇନାହିଁ । ତୁମେ ଆଉ ଚାରି ଦିନ ପରେ ଆସ । ସେତେବେଳକୁ ସବୁ କଥା ଫାଇନାଲ୍ ହୋଇଯାଇଥିବ ।

ଠିକ୍ ଦୁଇ ଦିନ ପରେ ଆମେରିକାରୁ ଆକାଶ ଫୋନ୍ କରି ଜଣାଇଲା-ବାଇଗଣି ରଙ୍ଗଟା ଏକଦମ୍ ଅନକମନ୍ କଲର । ଏଇ ରଙ୍ଗଟା ଅତ୍ୟନ୍ତ ସ୍ୱତନ୍ତ୍ର,ସୁନ୍ଦର ଓ ଆକର୍ଷଣୀୟ । ଭାରି ଆଇ କ୍ୟାଚିଙ୍ଗ । ଏ ରଙ୍ଗର ଘର ସାରା ଭୁବନେଶ୍ୱରରେ ଗୋଟିଏ ହେଲେ ଦେଖିବାକୁ ମିଳିବ ନାହିଁ । ଗାଢ଼ ବାଇଗଣି ରଙ୍ଗ । ସେଥିରେ ଆଉ ଅନ୍ୟ କିଛି କଲର ମିଶାଇବେ ନାହିଁ କି ତାକୁ ଆଦୌ ଲାଇଟ୍ କରିବେ ନାହିଁ । ବାଇଗଣି କେବଳ ଅନ୍‌କମନ୍ ନୁହଁ,



Digitized by srujanika@gmail.com

ଏକ ଅନନ୍ୟ ରଙ୍ଗ ।

ମାନବଙ୍କ ମନକୁ ବାଇଗଣି ରଙ୍ଗଟା ବେଶ୍ ଛୁଇଁଲା । ସେ ସଙ୍ଗେ ସଙ୍ଗେ ସ୍ତ୍ରୀ ନୀଳିମାଙ୍କୁ ଡାକି ଗାଢ଼ ବାଇଗଣି ରଙ୍ଗ ଦେବା କଥାଟା ଜଣାଇଁ ଦେଲେ । ନୀଳିମା ଫିକ୍ କରି ହସିଉଠି କହିଲେ-ଗାଢ଼ ବାଇଗଣି ରଙ୍ଗ ? ମୁଁ ମୋ ଆଖି ଉଠିବା ଦିନଠୁ ଆଜିଯାଏ ଏ ରଙ୍ଗର ଘର କେଉଁଠି ଦେଖି ନାହିଁ ।

ମାନବ ନୀଳିମାଙ୍କ ଉପରେ ବିରକ୍ତ ହେଲେ-ତୁମେ କୁଆଡ଼େ ଯାଇଛ ଯେ କ'ଣଟେ ଦେଖିବ ? ତୁମ ଗାଆଁରୁ ଆମ ଗାଆଁ ଆଉ ଏଇ ଭୁବନେଶ୍ୱର ହେଉଛି ତୁମ ପାଇଁ ବିଶ୍ୱବ୍ରହ୍ମାଣ୍ଡ । ତୁମର ପସନ୍ଦ ଗୋଟେ କ'ଣ ନା ନଲେଜ କ'ଣ ? ଧଳା ରଙ୍ଗତ କେବଳ ଗୋଟେ ରଙ୍ଗ  ଅଛି ଏ ଦୁନିଆରେ ।

ନୀଳିମା ଆଉ ଅଧିକ କିଛି ନକହି ଓଠ ଚାପି ଚୁପଚାପ୍ ଘର ଭିତରକୁ ଚଲିଗଲେ ।

ଝିଅ ପିଙ୍କିର ମତାମତକୁ ଆଉ ଅପେକ୍ଷା ନକରି ମାନବ ତାପର ଦିନ ରଙ୍ଗମିସ୍ତ୍ରୀକୁ ଡକାଇ ବଜାରକୁ ଯାଇ ଗାଢ଼ ବାଇଗଣି ରଙ୍ଗ କିଣି ଆଣିଲେ । ତାକୁ କଡ଼ା ନିର୍ଦ୍ଦେଶ ଦେଲେ ଆଦୌ କିଛି ନମିଶାଇ ଗାଢ଼ ବାଇଗଣି ରଙ୍ଗ ଦେବା ପାଇଁ ।

ଆଠ ଦିନ ଭିତରେ ଗାଢ଼ ବାଇଗଣି ରଙ୍ଗ ମାନବଙ୍କ ଘରର ବାହାର କାନ୍ଥରେ ଦୁଇ କୋଟ୍ ଦିଆ ଗଲା । ସାରା କଲୋନୀ ଭିତରେ ଗାଢ଼ ବାଇଗଣି ରଙ୍ଗର ଦୁଇ ମହଲା ଘରଟା ବାରିହୋଇ ପଡ଼ିଲା ।

ଘର ପ୍ରତିଷ୍ଠା ବେଳକୁ ମାନବଙ୍କ ପୁଅ,ବୋହୂ କିମ୍ବା ଝିଅ,ଜ୍ୱାଇଁ କେହି ଏତେ ଦୂରରୁ ଭୁବନେଶ୍ୱର ଆସି ପାରିଲେ ନାହିଁ । ମାନବ ତାଙ୍କ ଘରର ବିଭିନ୍ନ ଆଙ୍ଗଲ୍‌ର ଫଟୋ ଡିଜିଟାଲ୍ କ୍ୟାମେରାରେ ଉଠାଇ ସେମାନଙ୍କ ପାଖକୁ ଇ-ମେଲ୍ କରିଦେଲେ । ନିଜର ବନ୍ଧୁ,ବାନ୍ଧବ,ସାଙ୍ଗ ସାଥି,ଚିହ୍ନା,ଜଣା ଓ ପଡ଼ୋଶୀମାନଙ୍କୁ ଟେଲିଫୋନ୍ ଯୋଗେ ଗୃହପ୍ରବେଶ ଉତ୍ସବକୁ ନିମନ୍ତ୍ରଣ ଜଣାଇଲେ । ତାଙ୍କ ଘରର ନିର୍ଦ୍ଦିଷ୍ଟ ଅବସ୍ଥିତି ଜଣାଇବା ପାଇଁ ସେ ଫୋନ୍‌ରେ ସୂଚନା ଦେଲେ-ଖଣ୍ଡଗିରି ଛକରୁ ପଶ୍ଚିମ ଦିଗକୁ ମୁଖ୍ୟ ରାସ୍ତାରେ ଗୋଟିଏ କିଲୋମିଟର ଆସିଲେ,ରାସ୍ତାର ଡାହାଣ ପାଖରେ ଗୋଟିଏ ସାଇନବୋର୍ଡ଼ରେ ଲେଖାଯାଇଛି 'ଶ୍ରଦ୍ଧାନଗର' । ସେଇ ଶ୍ରଦ୍ଧାନଗର ହେଉଛି ଏଇ ଆମ ନୂଆ କଲୋନୀର ନାଆଁ । ସେଇ କଲୋନୀକୁ ଆସିଲେ ଆମ ଘର ଚିହ୍ନିବାରେ କିଛି ଅସୁବିଧା ହେବ ନାହିଁ, କାରଣ ଆମ ଘରର ରଙ୍ଗଟା ସବୁଠୁ ନିଆରା । ଆମ ଘରର ରଙ୍ଗ ଗାଢ଼ ବାଇଗଣି ରଙ୍ଗ । ଦୁଇ ମହଲା ଘର । ମନେ ରହିଲା ? ଗାଢ଼ ବାଇଗଣି ରଙ୍ଗର ଦୁଇ ମହଲା ଘର । ଏମିତି



Digitized by srujanika@gmail.com

ରଙ୍ଗର ଘର ଆମ କଲୋନୀରେ ଏଇ ଗୋଟିଏ ।

ଗୃହପ୍ରବେଶ ଉତ୍ସବ ନିର୍ଦ୍ଦିଷ୍ଟ ଦିନ ଠିକ୍ ସମୟରେ ଅନୁଷ୍ଠିତ ହେଲା । ଉନ୍ନତମାନର ଗୋଟିଏ କ୍ୟାଟରରକୁ ଭୋଜିର ଦାୟିତ୍ୱ ଦିଆଗଲା । ମାନବ ଯେତେ ଲୋକଙ୍କୁ ନିମନ୍ତ୍ରଣ କରିଥିଲେ ପ୍ରାୟ ସମସ୍ତେ ଆସିଥିଲେ । ସମସ୍ତେ ଘରର ଭିତର ଓ ବାହାର ବୁଲି ବୁଲି ଦେଖି ମାନବଙ୍କ ରୁଚିକୁ ତାରିଫ୍ କଲେ । କବାଟ ଝରକା ସବୁ ସିଜିନଡ୍ ଶାଗୁଆନ କାଠରେ ତିଆରି । ତଳେ ବିଛା ଯାଇଛି ଦାମିକା ମାର୍ବଲ୍ । ରୋଷେଇ ଘର ଓ ଗାଧୁଆ ଘର କାନ୍ଥରେ ସୁନ୍ଦର ଟାଇଲ । ବିଭିନ୍ନ ସ୍ଥାନରେ ପ୍ଲାଇ ଓ ଭିନିୟର ଦିଆଯାଇ କପ୍‌ବୋର୍ଡ଼ ତିଆରି ହୋଇଛି । ଡାଇନିଙ୍ଗ୍ ଓ ଡ୍ରଇଁରୁମ୍ ଖୁବ୍ ପ୍ରଶସ୍ତ,ବିଶାଳ । ଭୋଜିର ସ୍ୱାଦ ଅନନ୍ୟ ।

ସମସ୍ତଙ୍କ ଠାରୁ ଘର ଓ ତାଙ୍କ ଉନ୍ନତ ରୁଚିର ପ୍ରଶସ୍ତି ଶୁଣି ଶୁଣି ନିଜ ମଧ୍ୟରେ ଆନନ୍ଦ ଉଲ୍ଲାସରେ ଫୁଲି ଫୁଲି ଉଠୁଥିଲେ ମାନବ । ତାଙ୍କ ଓଠରେ ସରୁ ହସ ଧାରଟିଏ ଚମକୁ ଥାଏ । ମାନବ ତାଙ୍କର ଜଣେ ବନ୍ଧୁଙ୍କୁ ପଚାରିଲେ-ମୋର ଏ ଘରଟା ପାଇବାରେ କିଛି ଅସୁବିଧା ହେଲା କି ?

ସେ ଭଦ୍ରଲୋକ ହସି ହସି କହିଲେ-ନା, ଆଦୌ ଅସୁବିଧା ହୋଇ ନାହିଁ । ଆପଣଙ୍କ ଘର ଚିହ୍ନଟ କରିବା ଅତି ସହଜ । ଗାଢ଼ ବାଇଗଣି ରଙ୍ଗର ଆପଣଙ୍କର ଏ ଦୁଇ ମହଲା ଘର ଏ ସାରା କଲୋନୀରେ ଏଇ ଗୋଟିଏ । ମୁଖ୍ୟରାସ୍ତାରୁ ଆପଣଙ୍କ ଘରଟା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଛି ।

ମାନବ ଆଉ କିଛି ଲୋକଙ୍କୁ ସେଇ ସମାନ ପ୍ରଶ୍ନ ପଚାରି ଥିଲେ ଓ ସମସ୍ତଙ୍କ ଠାରୁ ସେଇ ଏକା ପ୍ରକାର ଉତ୍ତର ପାଇ ଖୁବ୍ ଖୁସି ହେବା ସଙ୍ଗେ ସଙ୍ଗେ ଗର୍ବ ଅନୁଭବ କରିଥିଲେ । ତାଙ୍କ ଘରର ରଙ୍ଗ ଖୁବ୍ ସ୍ୱତନ୍ତ୍ର ଓ ଆକର୍ଷଣୀୟ । ଆକାଶର ସଜେସନକୁ ମନେ ମନେ ତାରିଫ୍ ନକରି ରହି ପାରିଲେ ନାହିଁ ମାନବ ।

ଗୃହପ୍ରବେଶ ଉତ୍ସବ ସରିବାର ଦୁଇ ଦିନ ପରେ ମାନବ ତାଙ୍କ ସ୍ତ୍ରୀ ନୀଳିମାଙ୍କୁ କହିଲେ-ତୁମେ ଶୁଣିଲତ ଲୋକମାନେ ଆମ ଘରର ଗାଢ଼ ବାଇଗଣି ରଙ୍ଗର କେମିତି ଉଚ୍ଚ ପ୍ରଶଂସା କରୁଛନ୍ତି ? ଏଇ ଆକର୍ଷଣୀୟ ଆଉ ନିଆରା ରଙ୍ଗ ପାଇଁ ଆମ ଘର ପାଇବାକୁ କାହାର ଟିକେ ବି ଅସୁବିଧା ହୋଇ ନାହିଁ । ସେଥିପାଇଁ ଏତେ ସଂଖ୍ୟାରେ ଲୋକ ଆମ ଗୃହପ୍ରବେଶ ଉତ୍ସବରେ ଯୋଗଦେଲେ ।

ନୀଳିମା କିଛି ଉତ୍ତର ନଦେଇ କେବଳ ଟିକେ ହସିଦେଇ ରୋଷେଇ ଘରକୁ ଚାଲିଗଲେ ଚା’ ତିଆରି କରିବାକୁ ।

ଆନଂଦ ଚଂଦ୍ର ପଢ଼ି

Digitized by srujanika@gmail.com

ରାତି ଦଶଟା ବେଳେ ମାନବ ଫୋନ୍‌କଲେ ଆମେରିକାରେ ଥିବା ତାଙ୍କ ପୁଅ ଆକାଶକୁ । ଘରର ବାହାର କାନ୍ଥରଙ୍ଗ ପାଇଁ ଗାଢ଼ ବାଇଗଣି ରଙ୍ଗଟା ସିଏ ସଜେଷ୍ଟ କରିଥିଲା । ତାର ଏ ଅନନ୍ୟ ରୁଚି ପାଇଁ ତାକୁ ଖୁବ୍ ପ୍ରଶଂସା କଲେ । ଏଇ ରଙ୍ଗ ପାଇଁ ଗୃହ ପ୍ରବେଶ ଉତ୍ସବରେ ତାଙ୍କୁ ବନ୍ଧୁ , ବାନ୍ଧବ,ସାଙ୍ଗ ,ସାଥି ଓ ପଡ଼ିଶାମାନଙ୍କ ଠାରୁ ଖୁବ୍ ତାରିଫ ମିଳିଛି । ଏ ସମସ୍ତ ତାରିଫ୍ ଓ ପ୍ରଶଂସା ପାଇବାର ହକ୍‌ଦାର ଆକାଶ ବୋଲି ତାକୁ ମାନବ ଜଣେଇ ଦେଲେ ।

ବାପାଙ୍କଠାରୁ ବାହାବା ପାଇ ଆକାଶ ଉତ୍‌ଫୁଲ୍ଲିତ ହେଲା । ବାପ,ପୁଅ ଦୁହେଁ କିଛି ସମୟ ଧରି ଗୃହପ୍ରବେଶ ଉତ୍ସବ,ତାଙ୍କ ନୂଆ କଲୋନୀର ଅନ୍ୟାନ୍ୟ ଘର ଓ ସେଇ ଘରଗୁଡ଼ିକର ରଙ୍ଗ ବିଷୟରେ ଫୋନ୍‌ରେ ଆଲୋଚନା କରି ଆତ୍ମପ୍ରସାଦ ଲାଭକଲେ ।

ଆଠ ଦିନ ପରେ ସକାଳ ଆଠଟା ବେଳେ ତାଙ୍କ ଦୁଇ ମହଲା ଘରର ଛାତ ଉପରେ ପ୍ଲାଷ୍ଟିକ ଚେୟାରଟିଏ ପକାଇ ତା'ଉପରେ ବସି ସେ ଦିନର ଖବରକାଗଜ ପଢୁଥିଲେ ମାନବ । ଅଳ୍ପ,ଅଳ୍ପ ଶୀତ ଓ କଅଁଳ ଖରାର ସ୍ୱାଦ ଚାଖୁଥିଲେ ଖବରକାଗଜ ପଢ଼ା ସହିତ । କଲିଙ୍ଗବେଲ୍ ବାଜିଲା । ଖବରକାଗଜ ପୃଷ୍ଠାରୁ ମୁହଁ ଉଠାଇ ପାରାପେଟ୍ ପାଖକୁ ଯାଇ ତଳକୁ ଚାହିଁଲେ । ତାଙ୍କ ଗେଟ୍ ଆଗରେ ଗାଢ଼ ଲାଲ୍ ରଙ୍ଗର ମୋଟର ସାଇକେଲଟିଏ ଥୁଆହୋଇଛି । ଜଣେ ଭଦ୍ରଲୋକ କଲିଙ୍ଗବେଲ୍ ମାରି ସାରି ଗେଟ୍ ପାଖରେ ଠିଆ ହୋଇଛନ୍ତି । ବାର୍ଦ୍ଧକ୍ୟ ଯୋଗୁ ପାହାଚ ଚଢ଼ିବା ଏବଂ ଓହ୍ଲାଇବାରେ ଯନ୍ତ୍ରଣା ଅନୁଭବ କରୁଛନ୍ତି ମାନବ । ତଳ ଘରେ ନୀଳିମା ଅଛନ୍ତି, ସିଏ ଗେଟ୍ ଖୋଲିବେ ଭାବି ମାନବ ଫେରିଗଲେ ଖବର କାଗଜ ପଢ଼ା ପାଖକୁ । ପୁଣି ଲାଗ,ଲାଗ ଦୁଇ ଥର କଲିଙ୍ଗବେଲ୍ ବାଜିଲା । ମାନବ ମନେ ମନେ ବିରକ୍ତ ହେଲେ ସେ ଭଦ୍ରଲୋକଙ୍କ ଉପରେ- ଏ ଲୋକଗୁଡ଼ାଙ୍କର ସାଧାରଣଜ୍ଞାନର ଅଭାବ । ଘରେ କ'ଣ ଗୋଟେ ଦରୱାନ ଅଛିଯେ ସଙ୍ଗେ ସଙ୍ଗେ ଦଉଡ଼ିଯାଇ ଗେଟ୍ ଖୋଲିବ ?କିଏ କେଉଁ ଅବସ୍ଥାରେ ଥିବ, କି'କାମ କରୁଥିବ,ସେ କାମ ଛାଡ଼ିକି ଆସିବାକୁ କିଛି ସମୟତ ନିଶ୍ଚୟ ଦରକାର । ଏତେ ବ୍ୟସ୍ତ,ଅଧୈର୍ଯ୍ୟ ହେଲେ କ'ଣ ହେବ ?

ପୁନଶ୍ଚ କଲିଙ୍ଗବେଲ୍ ଆହୁରି ଦୀର୍ଘ ସମୟ ଯାଏ ବାଜିଲା । ମାନବ ଭାବିଲେ ନୀଳମା ବୋଧ ହୁଏ ଏବେ ବାଥ୍‌ରୁମ୍‌ରେ ଥିବେ । ସିଏ ସକାଳୁ ଥରେ ବାଥରୁମରେ ପଶିଲେ ତା'ଭିତରେ ନିତ୍ୟକର୍ମ ସାରି ଗାଧୋଇକି ବାହାରିବା ବେଳକୁ ଅତି କମରେ ପଇଁଚାଳିଶ ମିନିଟ୍ ଆବଶ୍ୟକ ।

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ମାନବ ବାଧ୍ୟ ହୋଇ ତଳକୁ ଓହ୍ଲାଇଲେ । ଆଣ୍ଠୁର ଯନ୍ତ୍ରଣା ଯୋଗୁ ଧୀରେ ଧୀରେ ଦୁଇ ମହଲାର ସମସ୍ତ ପାହାଚ ଓହ୍ଲାଇବା ଭିତରେ ସେ ଭଦ୍ରଲୋକ ଆଉ ଦୁଇ ଥର କଲିଙ୍ଗବେଲ୍ ବଜାଇ ସାରିଥିଲେ । ମାନବ ଗେଟ୍ ପାଖରେ ପହଞ୍ଚି ସେ ଲୋକକୁ ନିରିକ୍ଷଣ କଲେ । ମଧ୍ୟ ବୟସର ଜଣେ ଶିକ୍ଷିତ ମଣିଷ । ସିଏ ତାଙ୍କୁ ଆଗରୁ କେଉଁଠି କେବେ ଦେଖି ନାହାଁନ୍ତି କି ଜାଣି ନାହାନ୍ତି । କେହି ଜଣେ ଅଚିହ୍ନା ଭଦ୍ରଲୋକ, ଅଜନବି ।

ସେ ଭଦ୍ରଲୋକ ଗେଟ୍ ଆରପଟୁ ମାନବଙ୍କୁ ନମସ୍କାରଟିଏ କରି ପଚାରିଲେ- ଆପଣଙ୍କ ଏଇ ଘର ପାଖରେ ନବଘନବାବୁଙ୍କ ଘର କେଉଁଟା କହି ପାରିବେ ? ତାଙ୍କର ଏକ ମହଲା ଧଳାରଙ୍ଗର ଘର ।

ମାନବ ମନେ ମନେ ହସିଲେ । ଧଳା ରଙ୍ଗର ଘର ।ଏଠିତ ଅନେକ ଘରର ରଙ୍ଗ ଧଳା । ତା'ଭିତରୁ ଏକ ମହଲା ଧଳା ରଙ୍ଗର ଘର ସଂଖ୍ୟା ଅର୍ଦ୍ଧାଧିକ । ଏତେ ସଂଖ୍ୟାର ଧଳା ଘର ମଧ୍ୟରୁ ନବଘନବାବୁଙ୍କର ଘର କେଉଁଟା କି ନବୀନବାବୁଙ୍କର କେଉଁଟା ଜାଣିବା କଠିନ ବ୍ୟାପାର । ନବଘନବାବୁ ତାଙ୍କ ଘରର ରଙ୍ଗ ଦେବାବେଳେ ଏ ସବୁ ଦିଗ ପ୍ରତି ଦୃଷ୍ଟି ଦେବା ଅତ୍ୟନ୍ତ ଆବଶ୍ୟକ ଥିଲା ।

ମାନବଙ୍କ ନିରବତା ଲକ୍ଷ୍ୟକରି ସେ ଭଦ୍ରଲୋକ ଆଉ ଥରେ ପ୍ରଶ୍ନ କଲେ- ନବଘନବାବୁଙ୍କ ଘରଟା ଆପଣଙ୍କ ଏଇ ଘରଠୁ ଉତ୍ତର ଦିଗକୁ ବୋଲି ସିଏ ମୋତେ କହୁଥିଲେ ।

ତଥାପି ମାନବ ଚିନ୍ତିତ ଦିଶିଲେ । ତାଙ୍କ ଘରର ଉତ୍ତର ଦିଗରେ ତ ଅନେକ ଧଳା ରଙ୍ଗର ଘର । ସେଥିରୁ ଏ ଭଦ୍ରଲୋକ ଖୋଜୁଥିବା ଘର ପୁଣି କେଉଁଟା ?

-ତାଙ୍କ ପୂରା ନାମ ନବଘନ ଚୌଧୁରୀ । ସିଏ ସେକ୍ରେଟାରିଏଟରେ ଡେପୁଟି ସେକ୍ରେଟାରୀ ଥିଲେ । ଏଇ ଚାରି ମାସ ତଳେ ଚାକିରିରୁ ଅବସର ନେଇଛନ୍ତି ।

-ଚୌଧୁରୀବାବୁଙ୍କ ଘର ? ସେ କଥା କହୁ ନାହାଁନ୍ତି ? ହଁ, ମୁଁ ତାଙ୍କୁ ଚିହ୍ନିଛି । ଠିକ୍ ଅଛି, ଆମ ଏଇ ଘରଠୁ ଉତ୍ତର ଦିଗକୁ ରାସ୍ତାର ବାଆଁ ପାଖରେ ସାତଟା ଘର ଛାଡ଼ି, ଅଷ୍ଟମ ଘରଟା ଚୌଧୁରୀବାବୁଙ୍କ ଘର ।

ମାନବ ଗୋଟେ ଧଳା ରଙ୍ଗର ଏକ ମହଲା ଘର ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କଲେ । ସେ ଭଦ୍ରଲୋକ କୃତଜ୍ଞତାରେ ବତୁରିଯାଇ ମାନବଙ୍କୁ ନମସ୍କାର କରି ମୋଟର ସାଇକେଲ୍ ଷ୍ଟାର୍ଟ କଲେ ।

ସେ ଦିନ ଅପରାହ୍ନରେ ମାନବ ଯାଇଥିଲେ ପାଖ ମାର୍କେଟକୁ କିଛି ଦରକାରୀ



Digitized by srujanika@gmail.com

ଜିନିଷ ଆଣିବାକୁ । ଗୋଟେ ଅଟୋରିକ୍ସା ଆସି ତାଙ୍କ ଘର ଆଗରେ ଠିଆହେଲା । ରୋଷେଇ ଘରର ଝର୍କାରୁ ନୀଳିମା ଦେଖିଲେ ଅଟୋରେ ବସିଛନ୍ତି ଜଣେ ଭଦ୍ରଲୋକ, ଜଣେ ଅଳ୍ପ ବୟସର ସୁନ୍ଦରୀ ତରୁଣୀ ଓ ତାଙ୍କ କୋଳରେ ବର୍ଷକର ସୁନ୍ଦର ଶିଶୁ । ତାଙ୍କର କେହି ଚିହ୍ନା ଜଣା କି ବନ୍ଧୁ,ବାନ୍ଧବ ହୋଇ ପାରନ୍ତି ବୋଲି ତାଙ୍କ ମନରେ ଧାରଣା ହେଲା । ନୀଳିମା ଘରକାମ ଛାଡ଼ି ଗେଟ୍ ପାଖକୁ ଗଲେ । ପାଖରୁ ନିରେଖି ଦେଖିଲେ । ଏମାନେ କେହି ତାଙ୍କର ଚିହ୍ନା,ଜଣା ନୁହଁନ୍ତି ।

ଭଦ୍ରଲୋକ ନୀଳିମାଙ୍କୁ ସୌଜନ୍ୟମୂଳକ ନମସ୍କାରଟିଏ କରି ପଚାରିଲେ-ଏଠି ଜେନାବାବୁଙ୍କ ଘର କେଉଁଟା କହିପାରିବେ ?

ନୀଳିମା ହସି ହସି ଉତ୍ତର ଦେଲେ-ଜେନାବାବୁ ତ ଏଠି ଅନେକ ଥିବେ । ଆପଣ ତାଙ୍କ ପୂରା ନାଆଁ ଜାଣିଥିଲେ କୁହନ୍ତୁ ।

ଭଦ୍ରଲୋକ ଚାହିଁଲେ ତାଙ୍କ ସ୍ତ୍ରୀଙ୍କ ମୁହଁକୁ । ସିଏ କିଛି ସମୟ ଚିନ୍ତାକରି କହିଲେ- ତାଙ୍କ ପୁଅ ଜଣେ ଇଞ୍ଜିନୟର । ସିଏ ବାଙ୍ଗାଲୋରରେ ଚାକିରି କରେ ।

ତଥାପି ନୀଳିମା କିଛି ଜାଣି ପାରିଲେ ନାହିଁ । ଏବେତ ପ୍ରତ୍ୟେକଙ୍କ ଘରେ ଗୋଟେ ଦୁଇଟା ଇଞ୍ଜିନିୟର ପୁଅ । ବାଙ୍ଗାଲୋରରେ ଅନେକ ଲୋକଙ୍କ ପୁଅ ଚାକିରି କରୁଛନ୍ତି । ମାନବ ଥିଲେ ହୁଏତ କିଛି କହି ପରିଥାନ୍ତେ । ନୀଳିମା ନିରବ ହୋଇ ଠିଆ ହେଲେ ।

ଭଦ୍ରଲୋକ ଏକଡ଼ ସେକଡ଼କୁ ଦୃଷ୍ଟି ପକାଇ କହିଲେ-ଇଏତ ନୂଆ କଲୋନୀ । କୌଣସି ଗୋଟିଏ ଘରର ନମ୍ବର ଏପର୍ଯ୍ୟନ୍ତ ଲେଖା ଯାଇନାହିଁ । ନମ୍ବର ଥିଲେ ଘର ପାଇବା ସୁବିଧା ହୋଇଥାନ୍ତା । ଜେନାବାବୁଙ୍କ ପୂରା ନାଆଁଟା ଆମକୁ ଜଣା ନାହିଁ । ସିଏ କହିଥିଲେ ଆପଣଙ୍କର ଏଇ ବାଇଗିଣିରଙ୍ଗ ଘରର ଅତି ପାଖରେ ତାଙ୍କ ଘର । ସାର୍‌ଙ୍କୁ ଟିକେ ଦୟାକରି ପଚାରନ୍ତୁ ସିଏ ହୁଏତ ଜେନାବାବୁଙ୍କୁ ଜାଣିଥିବେ ।

ନୀଳିମା ଏଥର ନିରବତା ଭଙ୍ଗ କରି କହିଲେ-ସିଏ ଘରେ ନାହାଁନ୍ତି,ବଜାରକୁ ଯାଇଛନ୍ତି । ଅନେକ ବେଳ ହେଲା ଗଲେଣି,ଏବେ ଫେରୁଥିବେ ।

ଭଦ୍ରମହିଳା ଅଟୋରିକ୍ସାରୁ ଓହ୍ଲାଇ ପଡ଼ିଲେ । ତାଙ୍କ କୋଳର ଶିଶୁଟି ହଠାତ୍ କାନ୍ଦି ଉଠିଲା । ଭଦ୍ରମହିଳା ନୀଳିମାଙ୍କୁ ମାଗିଲେ ପାଣି ଗ୍ଲାସେ । ଶିଶୁଟିକୁ ଶୋଷ ଲାଗୁଛି । ନୀଳିମା ଖୁବ୍ ଶୀଘ୍ର ଘର ଭିତରକୁ ଯାଇ ପାଣି ଗ୍ଲାସେ ଆଣି ଦେଲେ । ଭଦ୍ରମହିଳା ପ୍ରଥମେ ପାଣି ଚଳାଏ ଛାଟି କଅଁଳ ଶିଶୁଟିର ମୁହଁକୁ ଧୋଇଦେଲେ ଓ ଆଉ କଛି ପାଣି ଶିଶୁକୁ ପିଆଇ ଦେଲେ ।

ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

ମାନବ ବଜାରରୁ ଫେରି ଦେଖିଲେ ଘର ଆଗରେ ଗୋଟେ ଅଟୋରିକ୍ସା ଓ ତା'ପାଖରେ କିଛି ଲୋକ। ଘଟଣା କ'ଣ ହୋଇପାରେ ସିଏ ଅନୁମାନ କରି ପାରିଲେ ନାହିଁ। କିନ୍ତୁ ନୀଳିମା ଅଳ୍ପ ସମୟ ଭିତରେ ତାଙ୍କୁ ସବୁ କଥା ବୁଝାଇ ଦେଲେ।

ମାନବ ମନେପକାଇ କହିଲେ-ଜେନାବାବୁ? ସିଏ ଆଗରୁ ବ୍ୟାଙ୍କରେ ଚାକିରି କରୁଥିଲେ କି?

ସେ ଭଦ୍ରଲୋକ ଖୁବ୍ ଖୁସିହୋଇ କହିଲେ-ହଁ,ହଁ। ସିଏ ଷ୍ଟେଟବ୍ୟାଙ୍କରେ ଚାକିରି କରୁଥିଲେ। ଏଇ ଦୁଇ,ତିନି ବର୍ଷ ତଳେ ସିଏ ରିଟାୟାର କରିଛନ୍ତି।

-ତାଙ୍କ ନାଆଁଟା ନାରାୟଣ ଜେନା?

-ହଁ ଆଜ୍ଞା। ମୋର ଏବେ ମନେ ପଡ଼ିଲା। ତାଙ୍କ ନାଆଁ ନାରାୟଣ ଜେନା।

-ନାରାୟଣ ଜେନାଙ୍କ ଘରଟା ଆମ ଘରର ପୂର୍ବ ଦିଗରେ ।ଏଇ ରାସ୍ତାରେ ଅଳ୍ପ ବାଟ ଗଲେ ଆଗରେ ଗୋଟେ ଟର୍ଣ୍ଣିଙ୍ଗ ପଡ଼ିବ। ସେଇଠୁ ଡାହାଣକୁ ଯିବେ। ରାସ୍ତାର ବାଆଁ ପଟକୁ ଚାହିଁ ଚାହିଁ ଯିବେ ଯେଉଁ ଘର ସାମନାରେ ଗୋଟିଏ ତୁଳସି ଚଉଁରା ଦେଖିବେ, ସେଇ ଘରଟା ଜେନାବାବୁଙ୍କର। ଫିକା ଗୋଲାପି ରଙ୍ଗର ଏକ ମହଲା ଘର।

ମାନବଙ୍କ ଠାରୁ ଏତେ ଗୁଡ଼ାଏ ସୂଚନା ପାଇ ସେ ଭଦ୍ରଲୋକ ଓ ଭଦ୍ରମହିଳା କୃତ୍ୟ କୃତ୍ୟ ହୋଇ ଅଟୋରିକ୍ସାରେ ବସି ଜେନାବାବୁଙ୍କ ଘର ଉଦ୍ଦେଶ୍ୟରେ ଚାଲିଗଲେ।

ପ୍ରାୟ ପ୍ରତିଦିନ କେହି ନା କେହି ମାନବଙ୍କ ଘରର କଲିଙ୍ଗବେଲ୍ ବେଳ ଅବେଳରେ ବଜାଇ ତାଙ୍କୁ ବ୍ୟସ୍ତ, ବିବ୍ରତ କରି ପକାଇଲେ। ତାଙ୍କ ଘର ପାଖରେ ଆହୁରି ଅନେକ ଘର ଥିଲେ ବି ସବୁଲୋକ କାହିଁକି ଅନ୍ୟ କୌଣସି ଘରକୁ ନଯାଇ କେବଳ ମାନବଙ୍କ ଘରର କଲିଙ୍ଗବେଲ୍ ବଜାଇ ବିଭିନ୍ନ ଲୋକଙ୍କ ଘରର ଠିକଣା ପଚାରୁଛନ୍ତି ତାର ଯୁକ୍ତି ଯୁକ୍ତ କାରଣ ନୀଳିମା କି ମାନବ କେହି ଅନୁମାନ କରି ପାରିଲେ ନାହିଁ। ଦିନକୁ ଦିନ ଏମିତି କଲିଙ୍ଗବେଲ୍ ବଜାଉଥିବା ଲୋକଙ୍କ ସଂଖ୍ୟା ବଢ଼ି ଚାଲିଲା।

ଆଉ ଦିନେ ସକାଳ ଦଶଟା ବେଳେ ଜଣେ ଯୁବକ ଆସି ମାନବଙ୍କ ଘରର କଲିଙ୍ଗବେଲ୍ ବଜାଇଲେ। ମାନବ ସେତେବେଳେ ଗାଧୋଇ ସାରି ଠାକୁର ପୂଜା କରିବାକୁ ଯାଉଥିଲେ। ଲାଗ ଲାଗ ଦୁଇ ତିନି ଥର କଲିଙ୍ଗବେଲ୍ ବାଜିଲା। ନୀଳିମା ରୋଷେଇ ଘରେ କାମରେ ବ୍ୟସ୍ତ ଥିଲେ। ମାନବ ବାଧ୍ୟ ହୋଇ ଫୁଙ୍ଗୁଳା ଦେହ ଉପରେ ମଠା ଚାଦରଟିଏ ପକାଇ ଗେଟ୍ ଖୋଲିଲେ।

ଆନଂଦ ଚଂଦ୍ର ପଢ଼ି

Digitized by srujanika@gmail.com

ଯୁବକ ଜଣକ ବ୍ୟସ୍ତ ହୋଇ ପ୍ରଶ୍ନ କଲେ-ଏଇ ପାଖରେ କେଉଁଠି ବୈଲୋଚନ ତ୍ରିପାଠୀଙ୍କ ଘର କହି ପାରିବେ ?

ମାନବ ମୁଣ୍ଡ ହଲାଇ ମନା କଲେ-ବୈଲୋଚନ ତ୍ରିପାଠୀଙ୍କ ନାଆଁ ମୁଁ ଆଦୌ ଶୁଣି ନାହିଁ । ଆପଣ ଆଉ କାହାକୁ ପଚାରନ୍ତୁ ।

ଯୁବକ କହିଲେ-ମୋର ଅଫିସ୍ ସମୟ ହୋଇ ଯାଉଛି,ମୁଁ ଅଫିସ୍ ଯିବି । ଦୟାକରି ଏଇ ବ୍ୟାଗଟା ଟିକେ ଆପଣଙ୍କ ଘରେ ରଖିଥାନ୍ତୁ । ମୁଁ ଏତେ ବଡ଼ ବ୍ୟାଗଟା ଧରି ଅଫିସ୍ ଯିବା ଠିକ୍ ହେବନାହିଁ । ମୁଁ ଅଫିସରୁ ଫେରିଲେ ଅନ୍ୟ କାହାକୁ ପଚାରି ବୈଲୋଚନବାବୁଙ୍କ ଘରେ ତାଙ୍କ ବ୍ୟାଗଟା ଦେଇଦେବି ।

ମାନବ ଏ ପ୍ରସ୍ତାବକୁ ଘୋର ବିରୋଧ କଲେ । ଆଜିକାଲି ସମୟ ଯାହା ହେଲାଣି କୌଣସି ଅଜଣା ଅଶୁଣା ଲୋକର ବ୍ୟାଗ ନିଜ ଘରେ ରଖିବା ଖୁବ୍ ବିପଦ ।  ନିଜ ଘରୁ ଗୋଟେ ବ୍ୟାଗ ଚୋରି ହେବାଠୁ  ଅଧିକ ବିପଦ ନିଜ ଘରେ ଗୋଟେ ଅଜଣା ଲୋକର ବ୍ୟାଗ ରଖିବା । ଏ ଯୁବକ ଯେ ମାଓବାଦୀ କିମ୍ବା ଉଗ୍ରପନ୍ଥୀ ନହୋଇଥିବ ସେ କଥା କିଏ କହିବ ? ବ୍ୟାଗରେ ଗୁଳିଗୋଳା,ବମ୍ କି ଆଉ କିଛି ବିପଦଜନକ ପଦାର୍ଥ ଥାଇପାରେ । ଏବେ ତ ମାଓବାଦୀଙ୍କ ଟାର୍ଗେଟ୍‌ରେ ଭୁବନେଶ୍ୱର ଆଉ କଟକ ।

ନୀଳିମା ରୋଷେଇ ଘରୁ ଆସି ଏସବୁ ଦେଖୁଥିଲେ ।

ବ୍ୟାଗଟା ରଖିବାକୁ ମାନବଙ୍କ କୁଣ୍ଠିତ ଭାବ ଦେଖି ଯୁବକ ଜଣକ ବୁଝାଇଲେ-କଥା କ'ଣ କି ସାର୍ ! ମୁଁ ବୈଲୋଚନବାବୁଙ୍କ ଗାଆଁ ଲୋକ । ଏଇ ଶନିବାର ଦିନ ଗାଆଁକୁ ଯାଇଥିଲି । ତାଙ୍କ ସାନଭାଇ ମୋ ହାତରେ ତାଙ୍କ ପାଖକୁ ଏଇ ବ୍ୟାଗଟା ଦେଇଛନ୍ତି ।ଏଥିରେ ଅନ୍ୟ କିଛି ନାହିଁ,କେବଳ କିଛି ପରିବା ଅଛି । ଆପଣ ଅନ୍ୟ କିଛି ନଭାବି ବ୍ୟାଗଟା ରଖନ୍ତୁ ,ମୁଁ ଅଫିସ୍‌ରୁ ଫେରିଲେ ତାଙ୍କ ଘର ଖୋଜି ତାଙ୍କ ଘରେ ବ୍ୟାଗଟା  ଦେଇଦେବି ।

ମାନବ ପ୍ରଶ୍ନ କଲେ-ଏଠି ଏତେ ଲୋକ ଥାଉଁ ଥାଉଁ ଆପଣ ମୋ ଘରର କଲିଙ୍ଗବେଲ୍ କାହିଁକି ବଜାଇଲେ ? ଦେଖନ୍ତୁ ମୋର ସମୟ ନାହିଁ ଏ ସବୁ କାମ କରିବାକୁ । ଆପଣ ଅନ୍ୟ କାହାଘରେ ରଖିଦେଇ ଯାଆନ୍ତୁ ।

ଯୁବକ ଏଥର ହସି ହସି ଉତ୍ତର ଦେଲେ-ବୈଲୋଚନବାବୁ ଦିନେ ମୋତେ କଥା ପ୍ରସଙ୍ଗରେ କହିଥିଲେ,ବାଇଗଣି ରଙ୍ଗର ଦୁଇମହଲା ଘରଠୁ  ଅଳ୍ପ ଦୂରରେ ତାଙ୍କ ଘର । ଏ କଲୋନୀରେ ତ ଏଇ ଗୋଟିଏ ବାଇଗଣି ରଙ୍ଗ ଘର । ଆପଣ ତାଙ୍କୁ ନଚିହ୍ନିଥିଲେ



Digitized by srujanika@gmail.com

ବି ସିଏ ଆପଣଙ୍କ ଘର ଚିହ୍ନିଛନ୍ତି ।

ମାନବ ସେ ଯୁବକର ଆଉ କୌଣସି କଥା ନଶୁଣି ତାକୁ ଫେରାଇ ଦେଲେ ଓ ଗେଟ୍ ବନ୍ଦ୍ କରିଦେଲେ । ମନେ ମନେ ବିରକ୍ତ ହେଲେ-ଢ଼େର ହୋଇଗଲା । ମୁଁ ଆଉ କାହାର କଲିଙ୍ଗବେଲ୍ ଶୁଣିବି ନାହିଁ ।ଏଇଟା ଏ କଲୋନୀର ସୂଚନାକେନ୍ଦ୍ର ନୁହଁ କି ମୁଁ ଏସବୁ କାମର ଠିକା ନେଇ ନାହିଁ । ଏ କଲୋନୀରେ ଏତେ ଲୋକଙ୍କ ଘର ଥାଉଁ ଥାଉଁ ମୋ ଘରର କଲିଙ୍ଗବେଲ୍ କାହିଁକି ଏତେ ଥର ବାଜିବ ? ମଣିଷକୁ ଟିକେ ଶାନ୍ତିରେ ରହିବାକୁ ଦେବେ ନାହିଁ ।

ସେ ଦିନ ଉପର ଓଳି ପୁଣି ଆଉ ଜଣେ ଅଜଣା ଭଦ୍ରଲୋକ ଆସି କଲିଙ୍ଗବେଲ୍ ବଜାଇଲେ । ସେ ଲୋକ କିଛି କହିବା ଆଗରୁ ମାନବ ବାଘ ପରି ଗର୍ଜନ କରି ତା'ଆଡ଼କୁ ମାଡ଼ିଗଲେ ଓ କହିଲେ-ଏଠି ଏତେ ଲୋକଙ୍କ ଘର ଥାଉଁ ଥାଉଁ ଆପଣ ମୋଘରର କଲିଙ୍ଗବେଲ୍ କାହିଁକି ବଜାଇଲେ ?

ଭଦ୍ରଲେକ କିଛି ଉତ୍ତର ନଦେଇ ଆଶ୍ଚର୍ଯ୍ୟ ହୋଇ ମାନବଙ୍କ ମୁହଁକୁ ଚାହିଁ ଭାବିବାକୁ ଲାଗିଲେ-କାହାଘରର କଲିଙ୍ଗବେଲ୍ ମାରିବାଟା କ'ଣ ଏତେ ବଡ଼ ଅପରାଧ !ବୁଢ଼ାଟା ହଠାତ୍ ଏମିତି ଚିଡ଼ି ଉଠିଲା କାହିଁକି ? ବୟସାଧିକ୍ୟ ଯୋଗୁ ବୁଢ଼ା ଏମିତି ଚିଡ଼ି ଚିଡ଼ା ହୋଇ ଯାଇଛି କି ?

ମାନବ ରାଗରେ ପାଚି ଲାଲ ଦିଶିଲେ । ସେ ଲୋକର ମୁହଁ ଉପରେ ଗେଟ୍କୁ ଧଡ଼କରି ବନ୍ଦ୍ କରିଦେଲେ । କଲିଙ୍ଗବେଲ୍ର ତାରଟାକୁ ଟାଣି ଛିଣ୍ଡାଇ ଦେବାକୁ ଉଦ୍ୟମ କଲେ । ନୀଳିମା ଆସି ମାନବଙ୍କୁ ବୁଝାଇଲେ-ତାରରେ କରେଣ୍ଟ ଅଛି, ଦେହରେ ଲାଗିଲେ ବିପଦ । ତାଛଡ଼ା ଘର ପାଇଁ କଲିଙ୍ଗବେଲ୍ଟିଏ ନିହାତି ଦରକାର । ଏବେ ରାଗିକି ଛିଣ୍ଡାଇଦେଲେ ତାକୁ ପୁଣି ଥରେ ଠିକ୍ କରିବାକୁ ମିସ୍ତ୍ରୀ ଡାକିବାକୁ ପଡ଼ିବ । ତୁମେ ଯଦି କଲିଙ୍ଗବେଲ୍ ଆଟେଣ୍ଡ ନକରିବ, ନକର । ସେଟା ସେମିତି ବାଜି ବାଜି ରହିବ । କିନ୍ତୁ ସବୁଠୁ ବଡ଼ କଥା ହେଲା ଆମକୁ ଜାଣିବାକୁ ପଡ଼ିବ ଅନ୍ୟମାନଙ୍କ କଲିଙ୍ଗବେଲ୍ କେହି ନବଜାଇ ସମସ୍ତେ କାହିଁକି କେବଳ ଆମରି ବେଲ୍ ବଜାଉଛନ୍ତି ?

ମାନବଙ୍କ ମନକୁ ନୀଳିମାଙ୍କ କଥାଟା ଶତପ୍ରତିଶତ ଛୁଇଁଗଲା । ସତକଥା ତ । ତାଙ୍କ କଲିଙ୍ଗବେଲ୍ କାହିଁକି ସମସ୍ତେ ବଜାଉଛନ୍ତି ? ସବୁ ଲୋକ କହୁଛନ୍ତି ଏଉ ବାଇଗଣି ରଙ୍ଗର ଘର କଥା । ତାହେଲେ ଏଇ ବାଇଗଣି ରଙ୍ଗ କ'ଣ ସମସ୍ତ ସମସ୍ୟାର ମୂଳ ମଞ୍ଜି ?

ନୀଳିମା ମଧ୍ୟ ସେଇ କଥାରେ ଏକମତ ହେଲେ । ଏଇ ବାଇଗଣି ରଙ୍ଗର



Digitized by srujanika@gmail.com

ଘର ଏ କଲୋନୀରେ ଆଦୌ ନାହିଁ । ତେଣୁ ଏ କଲୋନୀର ଯେତେ ଲୋକ ଆମର ଏ ବାଇଗଣିରଙ୍ଗ ଘରର ପାଖା ପାଖି ରହୁଛନ୍ତି ସମସ୍ତେ ଅନ୍ୟମାନଙ୍କୁ କହୁଛନ୍ତି ତାଙ୍କ ଘରଟା ବାଇଗଣିରଙ୍ଗର ଘର ପାଖରେ । କାହା ଘର ଏ ବାଇଗଣିରଙ୍ଗ ଘରର ଆଗ ପାଖରେ ତ କାହାର ପଛ ପାଖରେ । ଆଉ କାହା ଘର ପୂର୍ବ ଦିଗରେ କି ପଶ୍ଚିମ ଦିଗରେ ଅଥବା ଉତ୍ତର କି ଦକ୍ଷିଣ ଦିଗରେ ।

ମାନବ ମନ୍ତବ୍ୟ ଦେଲେ-ଏଇଟା ହିଁ ସତ୍ୟ ଆଉ ସଠିକ୍ ସମସ୍ୟା । ଆମକୁ ଯାର କିଛି ଗୋଟେ ପ୍ରତିକାର ଶୀଘ୍ର କରିବାକୁ ପଡ଼ିବ ।

ନୀଳିମାଙ୍କୁ ସୁଯୋଗ ମିଳିଗଲା । ସିଏ କହିଲେ-ମୁଁ ପ୍ରଥମରୁ କହିଛି ଆମ ଘରଟାକୁ ଗୋଟେ ହାଲୁକା ରଙ୍ଗ ଦେବା,ସେତେବେଳେ ତୁମେ ମୋ କଥା ଆଦୌ ଶୁଣିଲ ନାହିଁ । ଧଳା ରଙ୍ଗ ଦେଇଥିଲେ ଏବେ କିଛି ବି ସମସ୍ୟା ନଥାନ୍ତା ।

ମାନବ ଆଉ କିଛି ନକହି ଗମ୍ଭୀର ହୋଇ ବସି ରହିଲେ । ଦୁଇ,ତିନି ଦିନ ପର୍ଯ୍ୟନ୍ତ ତାଙ୍କର ଏଇ ଗମ୍ଭୀର ଭାବ ଲାଗି ରହିଲା । ଖାଇବା,ପିଇବା,ଶୋଇବା, ମର୍ଣ୍ଣିଙ୍ଗୱାକ୍. ଖବରକାଗଜ ପଢ଼ା କି ଟିଭିଦେଖା କୌଣସିଥିରେ ସିଏ ଆଗ୍ରହ ପ୍ରକାଶ କଲେ ନାହିଁ । କଲିଙ୍ଗବେଲ୍ ବାଜି ବାଜି ବନ୍ଦ୍ ହେଉଛି ସିଏ ଆଟେଣ୍ଡ କରୁ ନାହାଁନ୍ତି କି ନୀଳିମାଙ୍କୁ ଆଟେଣ୍ଡ କରିବାକୁ ଦେଉ ନାହାଁନ୍ତି ।

ମାନବଙ୍କର ଏମିତି ଅସ୍ୱଭାବିକତା ବେଶି ଦିନ ଲାଗି ରହିଲେ ସିଏ ମାନସିକ ଭାରସାମ୍ୟ ହରାଇ ପାରନ୍ତି ବୋଲି ଆଶଙ୍କା କରି ନୀଳିମା ଆତଙ୍କିତ ରହିଲେ ।

ଦିନେ ରାତି ଦୁଇଟାରେ ମାନବ ବିଛଣାରେ ଉଠିବସିଲେ ଓ ନୀଳିମାଙ୍କୁ ନିଦରୁ ଉଠାଇ କହିଲେ-ଏ କଲିଙ୍ଗବେଲ୍ ସମସ୍ୟାର ସମାଧାନର ଉପାୟ ମିଳିଗଲା ନୀଳିମା !

ନୀଳିମା ଧଡ଼ପଡ଼ ହୋଇ ନିଦରୁ ଉଠିପଡ଼ିଲେ । ସେ ଭାବିଲେ ମାନବ ବୋଧହୁଏ ମାନସିକ ଭାରସାମ୍ୟ ହରାଇ ପ୍ରଳାପ କରିବା ଆରମ୍ଭ କରି ଦେଇଛନ୍ତି ।

ମାନବ ଖୁବ୍ ବଡ଼ ପାଟିକରି କହିଲେ-ଆମ ଘରର ବାଇଗଣି ରଙ୍ଗକୁ ବଦଳାଇ ଆମେ ଧଳା ରଙ୍ଗ ଦେଇଦେବା । ତାହେଲେ ଆମ ଘରଟା ଅନ୍ୟମାନଙ୍କ ଘର ସହିତ ମିଶିଯିବ । ଏ କଲୋନୀରେ ଥିବା ଏତେ ସଂଖ୍ୟକ ଧଳାରଙ୍ଗର ଘର ଭିତରେ ଆମ ଘରଟା ହଜିଯିବ । ଆମ ଘରକୁ କେନ୍ଦ୍ର କରି ଆଉ କେହି ତାଙ୍କ ଘରର ଠିକଣା କାହାକୁ ଦେବେ ନାହିଁ କି ଆମ ଘରର କଲିଙ୍ଗବେଲ୍ ଆଉ କେହି ବାରମ୍ବାର ବଜାଇ ଆମକୁ ବିରକ୍ତ କରିବେ ନାହିଁ ।

ନୀଳିମା କିଛି ଚିନ୍ତା କରିବା ମୁଦ୍ରାରେ ଚୁପ୍ ରହିଲେ । ମାନବ ତାଙ୍କୁ ପ୍ରଶ୍ନ କଲେ କ'ଣ ଭାବୁଛ ? ଏହା ଦ୍ୱାରା କ'ଣ ଆମ ସମସ୍ୟାର ସମାଧାନ ହେବ ନାହିଁ



Digitized by srujanika@gmail.com

ବୋଲି ତୁମର କିଛି ସନ୍ଦେହ ରହିଛି କି ?

ନୀଳିମା କହିଲେ-ମୁଁ ସେକଥା ଭାବୁ ନାହିଁ । କିନ୍ତୁ ଏ ବାଇଗଣି ରଙ୍ଗ ଉପରେ ଆଉ ଗୋଟେ କୋଟ୍ ପ୍ରାଇମର ଓ ଦୁଇକୋଟ୍ ଓ୍ୱେଦର କଲର୍ ମାରିଲେ ଆମ ଏ ଦୁଇ ମହଲା ଘର ପାଇଁ ଆମକୁ ଅଯଥାରେ ଆହୁରି ଲକ୍ଷେ ଟଙ୍କା ଖର୍ଚ୍ଚକରିବାକୁ ପଡ଼ିବ । ଏତେ ଗୁଡ଼େ ଟଙ୍କା ପାଣିରେ ପଡ଼ିବ ।

ମାନବ ତାଙ୍କ ନିଷ୍ପତ୍ତିରେ ଦୃଢ଼ ରହିଲେ । ଆଠ ଦିନ ଭିତରେ ବାଇଗଣି ରଙ୍ଗର ଘରଟା ବରଫ ପରି ଧଳା ଦିଶିଲା । ପ୍ରାଇମର,ରଙ୍ଗ ଓ ମଜୁରି ମିଶାଇ ଏକ ଲକ୍ଷ ପଚିଶ ହଜାର ଟଙ୍କା ଖର୍ଚ୍ଚହେଲା । ଏତେଗୁଡ଼େ ଟଙ୍କା ଅଯଥା ଖର୍ଚ୍ଚ କରି ମଧ୍ୟ ତାଙ୍କ ମନରେ ତିଳେ ହେଲେ ଅନୁଶୋଚନା ନଥିଲା । ବରଂ ସେ ଖୁବ୍ ଖୁସି ଖୁସି ଦିଶୁଥିଲେ ।

ବାଇଗଣି ରଙ୍ଗ ଉପରେ ଧଳା ରଙ୍ଗ ଦେବାବେଳେ ସାଇପଡ଼ିଶା,ସାଙ୍ଗ ସାଥି ଓ ସେ ବାଟଦେଇ ଯିବା ଆସିବା କରୁଥିବା ଅନେକ ଲୋକ ମାନବଙ୍କୁ ଅନେକ ପ୍ରଶ୍ନ ପଚାରି ଥିଲେ; କିନ୍ତୁ ସେ କାହାକୁ କିଛି ଉତ୍ତର ନଦେଇ ଚୁପ୍ ରହିବାକୁ ପସନ୍ଦ କରିଥିଲେ ।

ରଙ୍ଗ ବଦଳ ସରିବା ପରେ ତାଙ୍କ ଘର ଆଗରେ ଠିଆ ହୋଇ ମୁରୁକି ମୁରୁକି ହସିଲେ ମାନବ । ଆଉ କେହି ତାଙ୍କ ଘରର କଲିଙ୍ଗବେଲ୍ ବଜାଇ ତାଙ୍କୁ ଡିଷ୍ଟର୍ବ କରିବେ ନାହିଁ । ଆଜିଠୁ ବାଇଗଣିରଙ୍ଗର କୁପରିଣାମ ତାଙ୍କୁ ଭୋଗ କରିବାକୁ ପଡ଼ିବ ନାହିଁ । ଇନ୍ଦ୍ରଧନୁରେ ଥିବା ସାତରଙ୍ଗର ନାଆଁ ପିଲାବେଳେ ଘୋଷିବା ସମୟରେ ସିଏ ଏଇ ବାଇଗଣିରଙ୍ଗ ସହିତ ପ୍ରଥମେ ପରିଚିତ ହୋଇଥିଲେ; କିନ୍ତୁ ପ୍ରକୃତ ଜୀବନରେ ବାଇଗଣି ରଙ୍ଗର ସଂସ୍ପର୍ଶରେ କେବେ ଆସି ନଥିଲେ । ତାଙ୍କର ଏଇ ଘରେ ବାଇଗଣିରଙ୍ଗ ଦେବାପରେ ତାଙ୍କର ବାଇଗଣିରଙ୍ଗ ସହିତ ଅଳ୍ପ କିଛି ଦିନ ପାଇଁ ଘନିଷ୍ଠତା ଆସିଥିଲା । ସମସ୍ୟାର ସମ୍ମୁଖୀନ ହେବା ପରେ ସେ ରଙ୍ଗର ସଂପୂର୍ଣ୍ଣ ବିଲୋପ ସାଧନ ସିଏ କରିଛନ୍ତି । ବାଇଗଣି ରଙ୍ଗର ମୁହଁ ସେ ଆଉ କଦାପି ଦେଖିବେ ନାହିଁ । ଅବଶ୍ୟ ଏଇ କଥାଟା ବୁଝିବାକୁ ଯଥେଷ୍ଟ ବିଳମ୍ବ ହୋଇଗଲା ଓ ସେଥି ପାଇଁ ତାଙ୍କୁ ଯଥେଷ୍ଟ ମୂଲ୍ୟ ଦେବାକୁ ପଡ଼ିଲା ।

କିନ୍ତୁ ଧଳାରଙ୍ଗ ଦିଆ ସରିବାର ଦୁଇ ଦିନ ପରର ଘଟଣା ତାଙ୍କୁ ସ୍ତମ୍ଭିଭୁତ କରିଦେଲା । ସମୟ ସକାଳ ଆଠଟା । ମାନବ ମର୍ଣ୍ଣିଙ୍ଗୱାକରୁ ଫେରି ଖୁବ୍ ଖୁସି ମନରେ ଖବରକାଗଜ ଓ ଚା'କପ୍ ଧରି ଛାତ ଉପରେ ବସିଛନ୍ତି । ଗରମ ଗରମ ଚା' ସାଙ୍ଗକୁ ଗରମ ଗରମ ତାଜା ଖବର । ମୁହଁରେ ପ୍ରସନ୍ନ ଭାବର ଚମକ୍ ।ତାଙ୍କ କଲିଙ୍ଗବେଲ୍ ଆଉ କେହି ଘନ ଘନ ବଜାଇ ତାଙ୍କୁ ଡିଷ୍ଟର୍ବ କରିବାର ଆଶଙ୍କା ଆଦୌ ନାହିଁ । ଏତେ ଗୁଡ଼େ ଟଙ୍କା ଅଯଥା ବରବାଦ ହେଲା ସତ ,କିନ୍ତୁ ଗୋଟେ ଝମେଲା ସବୁ ଦିନ ପାଇଁ ଗଲା ।

ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

ମାନବ ଚା'ପିଆ ଶେଷକରି କାଗଜ ପଢ଼ାରେ ମନୋନିବେଶ କଲେ ।

ହଠାତ୍ କଲିଙ୍ଗବେଲ୍ ବାଜିଲା । ମାନବ ଚମକି ପଡ଼ିଲେ । ପରକ୍ଷଣରେ ଭାବିଲେ ପଡ଼ିଶା ଘରର କଲିଙ୍ଗବେଲ୍ କେହି ବଜାଇଥାଇ ପାରେ ,କାରଣ ତାଙ୍କ କଲିଙ୍ଗବେଲ୍ ବଜାଇବାର ଆଉ କିଛି କାରଣ ନାହିଁ । କିନ୍ତୁ ତାଙ୍କୁ ବିସ୍ମିତ କରି କଲିଙ୍ଗବେଲ୍‌ଟା ଆଉ ଥରେ ବାଜିଲା । ଶବ୍ଦଟା ତାଙ୍କ ନିଜ ଘରୁ ଆସୁଛି । ସିଏ ଚେୟାର ଛାଡ଼ି ଠିଆ ହୋଇ ତଳକୁ ଚାହିଁଲେ । ତାଙ୍କ ଘର ଆଗ ରାସ୍ତାରେ ମୋଟର ସାଇକେଲଟିଏ ଷ୍ଟାଣ୍ଡ ମରାଯାଇଛି । ଜଣେ ମଧ୍ୟବୟସ୍କ ଭଦ୍ରଲୋକ ମାନବଙ୍କ ଗେଟ୍ ପାଖରେ ଠିଆ ହୋଇଛନ୍ତି । ନୀଳିମା ବୋଧ ହୁଏ ବାଥରୁମରେ ଅଛନ୍ତି ।

ମାନବ ନିଜର ଅନିଚ୍ଛା ସତ୍ତ୍ୱେ ଶିଡ଼ିର ପାହାଚ ଓହ୍ଲାଇ ତଳକୁ ଆସିଲେ । ଗେଟ୍ ପାଖକୁ ଗଲେ । ଭଦ୍ରଲୋକ ଜଣକଙ୍କୁ ସିଏ ଆଗରୁ କେଉଁଠି ଦେଖିଥିବା ପରି ଲାଗୁଛି । କିନ୍ତୁ କେଉଁଠି ଦେଖିଛନ୍ତି ତାଙ୍କର ଆଦୌ ମନେପଡୁ ନାହିଁ । ଚାକିରିରୁ ଅବସର ନେବାପରେ ତାଙ୍କ ସ୍ମରଣ ଶକ୍ତିର ଅବକ୍ଷୟ ଘଟିଛି । ଅଳ୍ପ ଦିନର କଥା ତାଙ୍କର ମନେ ପଡୁନାହିଁ । ଏପରିକି ସିଏ ବେଳେ ବେଳେ କୌଣସି କାମ ପାଇଁ ଚେୟାରରୁ ଉଠି ଆସନ୍ତି, ଠିଆହେବା ପରେ ତାଙ୍କର ମନେ ପଡ଼େନାହିଁ ସିଏ କେଉଁକାମ ପାଇଁ ଉଠିଥିଲେ । ସେମିତି ସେଇଠି ଠିଆ ଠିଆ ମନେ ପକାଇବା ପାଇଁ ଚେଷ୍ଟା କରନ୍ତି କିଛି ସମୟ । କିଛି ମନେପଡ଼େ ନାହିଁ । ସିଏ ଫେରିଯାଇ ବସନ୍ତି ଉଠିଥିବା ଚେୟାରରେ । ଦିନେ ସିଏ ଖବର କାଗଜରୁ ପଢ଼ିଥିଲେ ଅଧିକ ବୟସ ହେଲେ ସ୍ମରଣ ଶକ୍ତିର ଏମିତି ଅଜବ ବିଭ୍ରାଟ ଘଟେ । ଦୂର ଅତୀତର କଥା ସ୍ପଷ୍ଟ ମନେ ପଡ଼େ ଅଥଚ ଅତି ନିକଟ ଅତୀତ କଥା ଭୁଲିହୋଇ ଯାଏ ।

ଭଦ୍ରଲୋକ ଗେଟ୍ ସେପାଖେ ଥାଇ କହିଲେ-ମୁଁ ଅଳ୍ପ ଦିନ ତଳେ ଆସିଥିଲି । ଏଇଠି ଗୋଟେ ବାଇଗଣି ରଙ୍ଗର ଘର ଥିଲା । ସେ ବାଇଗଣି ରଙ୍ଗ ଘରଟା କୁଆଡ଼େ ଗଲା କହି ପାରିବେ ?

ମାନବଙ୍କ ମୁହଁ କ୍ରୋଧରେ ଲାଲ ଦିଶିଲା । ସିଏ ଅତ୍ୟନ୍ତ ବିରକ୍ତ ହୋଇ କହିଲେ-ବାଇଗଣି ରଙ୍ଗ ଘରର କ'ଣ ଗୋଡ଼ଥିଲାଯେ ସିଏ କେଉଁଆଡ଼େ ଚାଲିଗଲା ? ଏଠି ବାଇଗଣି ରଙ୍ଗ ଘର ନାହିଁ କି କେବେ ନଥିଲା । ଆପଣ ଏଠୁ ଚାଲି ଯାଆନ୍ତୁ ।

ଭଦ୍ରଲୋକ ବିସ୍ମିତ ହୋଇ ଏକଡ଼ ସେକଡ଼ ଓ ଆଗ ପଛକୁ ଆଉ ଥରେ ଦୃଷ୍ଟି ପକାଇ କହିଲେ-ଆପଣ ଏମିତି ବିରକ୍ତ କାହିଁକି ହେଉଛନ୍ତି ? ଏଇ ପନ୍ଦର କୋଡ଼ିଏ ଦିନ ତଳେ ମୁଁ ଏଠିକି ଆସିଥିଲି । ଏଇଠି ଗୋଟେ ବାଇଗଣି ରଙ୍ଗର ଘରଥିଲା । ତାର ଗେଟ୍‌ରେ ଥିବା ନେମ୍‌ପ୍ଲେଟରେ ଲେଖାଥିଲା 'ମାନବ ପଟ୍ଟନାୟକ' । ତା' ସାମନା ଘରର ଗେଟ୍‌ରେ ଲେଖାଥିଲା 'ଅଭିମନ୍ୟୁ ଦାଶ' । ଏବେ ବି ମୁଁ ଦେଖୁଛି ମାନବ ପଟ୍ଟନାୟକ ଓ ଅଭିମନ୍ୟୁ

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଦାଶ ଉଭୟଙ୍କ ଘର ଦୁଇଟା ସେମିତି ପୂର୍ବ ସ୍ଥାନରେ ସାମନା ସାମନି ହୋଇ ଠିଆ ହୋଇ ଛନ୍ତି । ନେମପ୍ଲେଟ ବି ଅପରିବର୍ତ୍ତିତ ଅଛି । କିନ୍ତୁ ବାଇଗଣି ରଙ୍ଗଟା କେବଳ ନାହିଁ । ମୋର ଯାହା ମନେପଡ଼େ ସେଦିନ ବାଇଗଣି ରଙ୍ଗ ଘରର ଗେଟ୍ ଖୋଲି ଆପଣ ହିଁ ଆସିଥିଲେ । ସବୁ ଠିକ୍ ଅଛି ,କିନ୍ତୁ ମୁଁ ବୁଝି ପାରୁନାହିଁ ସେଇ ବାଇଗଣି ରଙ୍ଗର ଘରଟା ଏଠୁ କୁଆଡ଼େ ଗଲା ?

ମାନବଙ୍କ କ୍ରୋଧର ପରିମାଣ ବହୁଗୁଣିତ ହୋଇ ଗଲା । ସେ ଚିତ୍କାର କଲେ- ଏଠି ବାଇଗଣି ରଙ୍ଗର ଘର ନାହିଁ କି କେବେ ନଥିଲା । ଆପଣ ଦୟାକରି ଏଠୁ ତୁରନ୍ତ ଚାଲି ଯାଆନ୍ତୁ ।

ମାନବ ଅତ୍ୟଧିକ କ୍ରୋଧରେ ଥରିବାକୁ ଲାଗିଲେ ।

ତଥାପି ସେ ଭଦ୍ରଲୋକ କହିଲେ-ଆପଣ ଅଯଥାରେ ଏତେ ବିରକ୍ତ ହୁଅନ୍ତୁ ନାହିଁ । ଏ ବୟସରେ ଏତେ ଉତ୍ୟକ୍ତ ହେବା ଆଦୌ ଠିକ୍ ନୁହଁ । ଆପଣଙ୍କ ରକ୍ତଚାପ ବଢ଼ିଯିବାର ଆଶଙ୍କା ଅଛି । ଛାଡ଼ନ୍ତୁ ,ମୁଁ ଆଉ ସେ ବାଇଗଣି ରଙ୍ଗର ଘର କଥା କହୁ ନାହିଁ । ଦୟା କରି କୁହନ୍ତୁ ଏଇ ପାଖରେ ଗୌରହରି ସାହୁଙ୍କ ଘର କେଉଁଠି ?

ମାନବ ପୁଣି ଗର୍ଜନ କଲେ-ଏ କଲୋନୀର କୌଣସି ଲୋକକୁ ମୁଁ ଚିହ୍ନେ ନାହିଁ କି ଜାଣେ ନାହିଁ । ଆପଣ ଏଠୁ ଦୟାକରି ଚାଲି ଯାଆନ୍ତୁ, ମୋତେ ଆଉ ଅଯଥାରେ ଅଧିକ ବିରକ୍ତ କରନ୍ତୁ ନାହିଁ ।

ମାନବ ଏତକ କହି ଅଧାମେଲା ଗେଟ୍‌ଟାକୁ ସେ ଭଦ୍ରଲୋକଙ୍କ ମୁହଁ ଉପରେ ଧଡ଼ ଧାଡ଼ ବନ୍ଦ୍ କରି ତାଲା ପକାଇ ଦେଲେ ଓ ରାଗରେ ଭାରି ଭାରି ପାଦ କଚାଡ଼ି କଚାଡ଼ି ଫେରି ଆସିବା ବେଳକୁ ନୀଳିମା ଆସି ତାଙ୍କ ଆଗରେ ଠିଆହୋଇ ଦେଖିଲେ ସେ ଭଦ୍ରଲୋକ କ'ଣ ସବୁ ଅନୁଚ୍ଚ କଣ୍ଠରେ କହି କହି ମୋଟର ସାଇକେଲ୍ ଷ୍ଟାର୍ଟ କରି ଚାଲି ଯାଉଛନ୍ତି ।

ମାନବଙ୍କ ମୁହଁ ଓ ଦେହ ମନ୍ଦାର ଫୁଲ ପରି ଲାଲ୍ ଦିଶୁଥିଲା । ନୀଳିମା ପଚାରିଲେ-କ'ଣ ହେଲା ? ସେ ଭଦ୍ରଲୋକଙ୍କ ସହିତ ଏତେ ପାଟିତୁଣ୍ଡ କ'ଣ ପାଇଁ କରୁଥିଲ ?

ମାନବ କିଛି ଉତ୍ତର ନଦେଇ ସେମିତି ଅପ୍ରମିତ କ୍ରୋଧରେ ଥରି ଥରି ଭାରି ଭାରି ପାଦ ପକାଇ ଘର ଭିତରକୁ ପଶିଗଲେ ।



ଆନନ୍ଦ ଚନ୍ଦ୍ର ପତି

Digitized by srujanika@gmail.com

# ଗଣତନ୍ତ୍ର ଗଣିତ

ସମୟ ପ୍ରଭାତ । ନା, ପ୍ରତ୍ୟୁଷ କହିଲେ ଅଧିକ ଠିକ୍ ହେବ । ବଳ୍ପଶୀଳ ରଜ୍ୟର ଶାସନମୁଖ୍ୟ ଶାକ୍ୟସିଂହଙ୍କ କାର୍ ରାଜଧାନୀ ଛାଡ଼ି ଜନମାନବ ଶୂନ୍ୟ ଅରଣ୍ୟ ଅଭିମୁଖେ ଅଗ୍ରସର ହେଲା । ସରକାରୀ ଗାଡ଼ି ନୁହେଁ, ନିଜ ଗାଡ଼ି ନିଜେ ଚଳାଉଛନ୍ତି ଶାକ୍ୟସିଂହ । ସାଙ୍ଗରେ ଡ୍ରାଇଭର ନାହିଁ, ବଡ଼ିଗାର୍ଡ଼ ନାହିଁ କି ପ୍ରିୟତମା ପତ୍ନୀ ପ୍ରିୟମ୍ବଦା ମଧ୍ୟ ନାହାଁନ୍ତି ।

ନିଘଞ୍ଚ ଜଙ୍ଗଲ ଭିତରେ ଗୋଟିଏ ଆଶ୍ରମର ଦ୍ୱାରଦେଶରେ କାର ପାର୍କ କରି ଆଶ୍ରମ ମଧ୍ୟକୁ ପ୍ରବେଶ କଲେ ଶାକ୍ୟସିଂହ । ତାଙ୍କର ପରିଧାନ ଥିଲା ପାଟଧୋତି ଓ ମଠା ପଞ୍ଜାବି । ବେକରୁ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିଲା ପାଟ ଚାଦର ।

ଆଶ୍ରମର ମନୋରମ ପ୍ରାକୃତିକ ଶୋଭା ସଂପଦ ଶାକ୍ୟସିଂହଙ୍କୁ ବିମୋହିତ କଲା । ଖୁବ୍ ଶାନ୍ତ, କାନ୍ତ ପରିବେଶ । ଆଶ୍ରମର ବଗିଚାରେ ଅନେକ ସୁନ୍ଦର ଓ ସୁରଭିତ ଫୁଲର ଫସଲ । ଆମ୍ବ, ପଣସ, ପିଜୁଳି, ଅମୃତଭଣ୍ଡା, କଦଳୀ ,ଜାମୁ,କାଜୁ, ସପେଟା ,ଗୁଆ ଓ ନାରିକେଳ ପ୍ରଭୃତି ବୃକ୍ଷମାନଙ୍କର ଶିର ଫଳଭାରରେ ଆନତ ।

ଆଶ୍ରମର ଚାରିକଡ଼କୁ ଦୃଷ୍ଟି ପହଁରାଇ ଆଣିଲେ ଶାକ୍ୟସିଂହ । ଆଶ୍ରମର ଅନ୍ତେବାସୀ ବଗିଚାରେ କାର୍ଯ୍ୟ ବ୍ୟସ୍ତ । ଆଶ୍ରମାଧୀପତି ସ୍ୱାମୀ ସଦାନନ୍ଦ ପ୍ରାଣାୟମ ରତ । ସ୍ୱାମୀଜୀଙ୍କ ଚକ୍ଷୁ ମୁଦ୍ରିତ । ଶାକ୍ୟସିଂହ କିଛି ସମୟ ଅପେକ୍ଷା କଲେ । ସ୍ୱାମୀଜୀ ତାଙ୍କ ଚକ୍ଷୁକୁ ସେହିପରି ମୁଦ୍ରିତ ରଖି ପ୍ରଶ୍ନ କଲେ-ବତ୍ସ ଶାକ୍ୟସିଂହ ! ତୁମର ସବୁ କୁଶଳ ତ ?

-ହଁ ସ୍ୱାମୀଜୀ ! ଆପଣଙ୍କ ଆଶୀର୍ବାଦରୁ ମୋର ସବୁ ମଙ୍ଗଳ ଓ କୁଶଳ । ମୁଁ ଶାସନମୁଖ୍ୟ ଭାବେ ରାଜ୍ୟ ଶାସନ ଭାର ଗ୍ରହଣ କରିବା ଦିନଠୁ ଆଜି ପର୍ଯ୍ୟନ୍ତ କିଛି ବି ବିଘ୍ନ ଘଟି ନାହିଁ । ମୋ ଦଳ ଭିତରୁ କି ବାହାରୁ ମୋର ଗାଦି ପ୍ରତି କିଛି ବି ଆହ୍ୱାନ କେବେ ଆସି ନାହିଁ । ଜନସାଧାରଣଙ୍କ ଅସନ୍ତୋଷ କି ଆନ୍ଦୋଳନ ଯାହା ବି ଯେବେ ଆସିଛି ସେ ସବୁକୁ ମୁଁ ଆପଣଙ୍କ ଆଶୀର୍ବାଦରୁ କୌଶଳକ୍ରମେ ନିୟନ୍ତ୍ରଣ କରି ପାରିଛି ।

-ଆଉ କଣ ପାଇଁ ଏତେ ପ୍ରତ୍ୟୁଷରୁ ମୋ ଆଶ୍ରମ କଥା ତୁମର ମନେ ପଡ଼ିଲା ?

ଆନଂଦ ଚଂଦ୍ର ପହି

Digitized by srujanika@gmail.com

-ଅନେକ ରାଜନେତା ରିଷ୍ଟ ଖଣ୍ଡନ ପାଇଁ ଓ ଚୌକି ବଞ୍ଚାଇବା ପାଇଁ ନାନା ଯାଗ,ଯଜ୍ଞ, ପୂଜାପାଠ କରନ୍ତି, ବିଭିନ୍ନ ପ୍ରକାର ବହୁମୂଲ୍ୟ ଧାତୁ ଖଚିତ ମୁଦ୍ରିକା ଅଙ୍ଗୁଳିରେ ଧାରଣ କରନ୍ତି । ଆଉ କିଛି ରାଜନେତା ବାହୁରେ ମନ୍ତୁରା ତାବିଜ ପିନ୍ଧିଥାନ୍ତି । ଆପଣଙ୍କ କୃପାରୁ ମୋତେ ସେସବୁ କିଛି କରିବାକୁ ପଡ଼ିନାହିଁ । ଆପଣଙ୍କ ଆଶୀର୍ବାଦ ମୋ ପାଇଁ ଯଥେଷ୍ଟ ।

ସ୍ୱାମୀଜୀ ଏଥର ଚକ୍ଷୁ ଖୋଲି ଶାକ୍ୟସିଂହଙ୍କ ମୁହଁକୁ ଚାହିଁ ସ୍ମିତହାସ୍ୟ କରି କହିଲେ-କିଛି ଗୋଟେ ସଂକଟର ସମ୍ମୁଖୀନ ହୋଇଛ ବୋଧ ହୁଏ । ସଂକୋଚ ନକରି ପ୍ରକାଶ କର ।

ଶାକ୍ୟସିଂହ କାନ କୁଣ୍ଡାଇ ଖୁବ୍ ବିନୀତ କଣ୍ଠରେ କହିଲେ-ନା, ସ୍ୱାମୀଜୀ ! ଆପଣ ଥାଉଁ,ଥାଉଁ ସଂକଟ ସାହସ କରିବ ନାହିଁ ମୋର ପାଖ ପଶିବାକୁ । ତେବେ....

-ତେବେ କଣ ବତ୍ସ ? ମନକଥା ସ୍ପଷ୍ଟକର । ମୁଁ ସର୍ବଜ୍ଞ କି ଅର୍ନ୍ତଯ୍ୟାମୀ ନୁହଁ । ତୁମେ ନକହିଲେ ମୁଁ ଜାଣିବି କେମିତି ?

ଶାକ୍ୟସିଂହ ଏଥର ନିଜକୁ ପ୍ରସ୍ତୁତ କରି ପ୍ରକାଶ କଲେ- ମୁଁ ଏ ରାଜ୍ୟର ଶାସନ ଭାର ଗ୍ରହଣ କରିବା ଚାରି ବର୍ଷ ସଂପୂର୍ଣ୍ଣ ହୋଇଗଲା । ଆଜିଠୁ ଆଉ ଠିକ୍ ଗୋଟିଏ ବର୍ଷ ପରେ ପୁନଶ୍ଚ ବିଧାନସଭା ନିର୍ବାଚନ ହେବ । ଆପଣ କୃପାକରି କୁହନ୍ତୁ ଆମ ଦଳ କ'ଣ ପୁର୍ନବାର ସଂଖ୍ୟା ଗରିଷ୍ଠ ଦଳ ଭାବେ ନିର୍ବାଚିତ ହେବ ଓ ମୁଁ କଣ ପୁଣି ଥରେ ମୋ ଆସନ ଫେରି ପାଇବି ?

-ମୁଁ ତ୍ରିକାଳଦର୍ଶୀ ନୁହଁ ବତ୍ସ ! ତୁମ କାମ ହିଁ ସୂଚନା ଦେବ ତୁମ ଦଳ ପୁନର୍ବାର ନିର୍ବାଚିତ ହେବ କି ନାହିଁ । ତୁମେ ଯଦି ଭଲକାମ କରିଥିବ , ଯଦି ଜନସାଧାରଣ ତୁମ ଉପରେ ସନ୍ତୁଷ୍ଟ ଥିବେ ତାହେଲେ ତୁମେ ପୁନର୍ବାର ନିଶ୍ଚୟ ନିଜ ଆସନ ଫେରି ପାଇବ । ତୁମ ଉପରେ ଜନସାଧାରଣ ସନ୍ତୁଷ୍ଟ ଅଛନ୍ତି କି ଅସନ୍ତୁଷ୍ଟ ଅଛନ୍ତି ତୁମେ ଉଦ୍ୟମ କଲେ ନିଜେ ଜାଣି ପାରିବ ।

-ମୁଁ ନିଜେ ଜାଣି ପାରିବି ? କିନ୍ତୁ କିପରି ? ସଥିପାଇଁ ଯଦି କିଛି ଉପାୟ ଥାଏ ତେବେ ମୋତେ କୁହନ୍ତୁ ସ୍ୱାମୀଜୀ ! ମୁଁ ତାହା ପ୍ରୟୋଗ କରିବି ।

ଏଥର ସ୍ୱାମୀ ସଦାନନ୍ଦଙ୍କ ମୁହଁ ପ୍ରସନ୍ନ ଦିଶିଲା । ସେ ହାତ ଠାରି ଶାକ୍ୟସିଂହଙ୍କୁ



Digitized by srujanika@gmail.com

ତାଙ୍କର ଅତି ନିକଟକୁ ଡ଼ାକିଲେ । ତାଙ୍କୁ ଖୁବ୍ ପାଖରେ ବସାଇ ପ୍ରଶ୍ନ କଲେ-ତୁମେ କିଛି ପୁରାଣ କିମ୍ବା ଇତିହାସ ପାଠ କରିଛ ?

ଶାକ୍ୟସିଂହ ମୁଣ୍ଡ ହଲାଇ ତାଙ୍କ କଥାରେ ସମ୍ମତି ଜଣାଇଲେ ।

ସ୍ୱାମୀଜୀ କହିଲେ-ରାଜା ଓ ସମ୍ରାଟମାନେ ନିଜେ ଛଦ୍ମବେଶରେ ସାଧାରଣ ପ୍ରଜାମାନଙ୍କ ପାଖକୁ ଯାଇ କିମ୍ବା ଗୁପ୍ତଚର ପଠାଇ ସେମାନଙ୍କ ଭଲ ମନ୍ଦ,ଦୁଃଖ ସୁଖ ବୁଝନ୍ତି ଓ ରାଜ୍ୟ ଶାସନ ବିଷୟରେ ସେମାନଙ୍କର ମତାମତ ସଂଗ୍ରହ କରିଥାନ୍ତି । ତୁମେ ସେହି ପନ୍ଥା ଅବଲମ୍ବନ କରି ତୁମ ଶାସନ ପ୍ରତି ,ତୁମ ଦଳ ପ୍ରତି ଓ ତୁମ ପ୍ରତି ଜନସାଧାରଣଙ୍କର ଧାରଣା କ'ଣ ଏବଂ ସେମାନେ କ'ଣ ଚାହୁଁଚନ୍ତି ତାହା ତୁମେ ସଂଗ୍ରହ କର । ଅବଶିଷ୍ଟ ଥିବା ଗୋଟିଏ ବର୍ଷର ଶାସନ କାଳ ଭିତରେ ଲୋକମାନଙ୍କ ମନ ମୁତାବକ କାମ କରି ସେମାନଙ୍କ ମନ ଓ ହୃଦୟ ଜୟକରିବାକୁ ଉଦ୍ୟମ କର । ଶାକ୍ୟସିଂହଙ୍କ ମନକୁ ସ୍ୱାମୀଜୀଙ୍କ ପରାମର୍ଶ ସ୍ପର୍ଶ କଲା । ସେ ସ୍ୱାମୀଜୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ପ୍ରଫୁଲ୍ଲ ମନରେ ଗାଡ଼ି ଚଲାଇ ବାସଭବନକୁ ପ୍ରତ୍ୟାବର୍ତ୍ତନ କଲେ ।

ପ୍ରିୟମ୍ବଦା ବିଭିନ୍ନ ସ୍ଥାନକୁ ଫୋନ୍ କରି ସ୍ୱାମୀଙ୍କ ଖୋଜ ଖବର କିଛି ନପାଇ ଶଙ୍କାକୁଳ ମନରେ ବାଲକୋନୀରେ ଗୋଟିଏ ଚେୟାର ପକାଇ ତାଙ୍କ ଫେରିବା ବାଟକୁ ଚାହିଁ ରହିଥିଲେ । ସକାଳ ଆଠଟା ବାଜିଲାଣି । ସେ ପର୍ଯ୍ୟନ୍ତ ପ୍ରିୟମ୍ବଦା ଚା'କପଟିଏ ମଧ୍ୟ ପିଇ ନାହାଁନ୍ତି । ତାଙ୍କ ମନକୁ ଅନେକ ଆଶଙ୍କା ଆସୁଥିଲା । ଡ୍ରାଇଭର୍ କି ସିକ୍ୟୁରିଟି କେହି କିଛି ଜାଣି ପାରିଲେ ନାହିଁ । ସିଏ କଣ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ? ଆଜିକାଲି ରାଜନୀତି ଯେଉଁ ସ୍ତରକୁ ଗଲାଣି ମୁଖ୍ୟମନ୍ତ୍ରୀଙ୍କୁ କେହି ଅପହରଣ କରିବା କିଛି ବିଚିତ୍ର ନୁହଁ । ପୋଲିସ୍‌କୁ ଜଣାଇଲେ କଥାଟା ମିଡ଼ିଆ କାନକୁ ଚାଲିଯିବ । ରାଜ୍ୟର ଶାସନମୁଖ୍ୟ ନିରୁଦ୍ଦିଷ୍ଟ ବୋଲି ଗୋଟେ ସୁସ୍ୱାଦୁ ସଂବାଦ ସଙ୍ଗେ ସଙ୍ଗେ ରେଡ଼ିଓ, ଟେଲିଭିଜନରେ ପ୍ରଚାରିତ ହୋଇଯିବ ଓ ସଂବାଦପତ୍ର ପୃଷ୍ଠାରେ ପ୍ରକାଶ ପାଇଯିବ । ସରକାରକୁ ସମାଲୋଚନା କରିବା ନିମନ୍ତେ ବିରୋଧୀ ଦଳକୁ ମୁଖରୋଚକ ଖୋରାକ ମିଳିଯିବ ।

ନିଜକୁ ଓ ନିଜ ବ୍ୟାକୁଳତାକୁ ନିଜ ନିୟନ୍ତ୍ରଣ ଭିତରେ ରଖି ବାଲକୋନୀରେ ଚୁପଚାପ୍ ବସି ରହିଥିଲେ ପ୍ରିୟମ୍ବଦା ।

ଠିକ୍ ସକାଳ ସାଢ଼େ ଆଠଟାରେ ଶାକ୍ୟସିଂହଙ୍କ କାର୍ ଫେରିଲା । ପ୍ରିୟମ୍ବଦା



Digitized by srujanika@gmail.com

ଉତ୍ସୁକ ହୋଇ ଧାଇଁଗଲେ କାର୍ ପାଖକୁ । ବାଟ ଓଗାଳି ଶାକ୍ୟସିଂହଙ୍କ ଆଗରେ ଠିଆ ହେଲେ ଓ ଉତ୍କଣ୍ଠିତ ହୋଇ ପ୍ରଶ୍ନ କଲେ- କାହାକୁ କିଛି ନଜଣାଇଁ , ଡ୍ରାଇଭର ଓ ସିକ୍ୟୁରିଟି ନନେଇ କି ମୋତେ ନନେଇ ତୁମେ ଏତେ ଭୋରରୁ କୁଆଡ଼େ ଚାଲି ଯାଇଥିଲ ଶୁଣେ ? ତୁମ ମୋବାଇଲ୍ ଫୋନ୍‌ର ସୁଇଚ କାହିଁକି ଅଫ୍ ଥିଲା ?

ପ୍ରିୟମ୍ବଦାଙ୍କର କୌଣସି ପ୍ରଶ୍ନର କିଛି ଜବାବ ନଦେଇ ନିଜ କୋଠରୀକୁ ପଶିଗଲେ ଶାକ୍ୟସିଂହ । ତାଙ୍କ ପଛେ ପଛେ ଗୋଡ଼େଇ ଗୋଡ଼େଇ ଯାଇ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଥିଲେ ପ୍ରିୟମ୍ବଦା । କିଛି ସମୟର ନିରବତା ପରେ ଶାକ୍ୟସିଂହ ନିଜ ମୁହଁଖୋଲିଲେ- ସବୁ କଥା ସମସ୍ତଙ୍କୁ କୁହାଯାଏ ନାହିଁ ।

-ମୁଁ ତୁମ ପତ୍ନୀ । ମୁଁ କ'ଣ ସମସ୍ତଙ୍କ ସହିତ ସମାନ ? ମୋତେ କହିବାରେ ତୁମର ଅସୁବିଧା କଣ ?

-ତୁମେ ଜଣେ ନାରୀ । ନାରୀକୁ କୌଣସି ଗୋପନ କଥା କୁହାଯାଏ ନାହିଁ, କାରଣ ସେମାନେ କୌଣସି କଥା ବେଶି ଦିନ ଗୋପନ ରଖିପାରନ୍ତି ନାହିଁ ।

-ଜଣେ ନାରୀ କେବଳ ଜଣେ ନାରୀ ନୁହଁ, ସେ ଜଣେ ଜନନୀ, ଜଣେ ପତ୍ନୀ, ଜଣେ ଭଗ୍ନୀ । ମୁଁ ତୁମର ପତ୍ନୀ, ତୁମ ସୁଖ ଦୁଃଖ ମୋର ସୁଖ ଦୁଃଖ ।

ଏତକ ଅଭିମାନ ଭରା କଣ୍ଠରେ କହି ରୁଷ୍ଟ ପ୍ରିୟମ୍ବଦା ଭାରି ଭାରି ପାଦ ପକାଇ ନିଜ କୋଠରିକୁ ଚାଲିଗଲେ ।

ଶାକ୍ୟସିଂହ ସେ ଦିନ ଯଥାଶୀଘ୍ର ସଚିବାଳୟକୁ ଯାଇ ତାଙ୍କ ନିଜ ନିର୍ବାଚନ ମଣ୍ଡଳୀରେ ଥିବା ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ କର୍ମୀ ଦିବାକର, ଅବନୀକାନ୍ତ, ଅଗଣି ଓ ସରୋଜଙ୍କ ସହିତ ଟେଲିଫୋନ୍‌ରେ କଥା ହେଲେ ଏବଂ ସେ ଚାରି ଜଣଙ୍କୁ ତାଙ୍କ ନିଜ ନିର୍ବାଚନ ମଣ୍ଡଳୀରୁ ଡକାଇ ଆଣି ରାଜଧାନୀଠୁ ଦୂରରେ ଥିବା ଏକ ପଞ୍ଚତାରକା ହୋଟେଲରେ ସେମାନଙ୍କ ରହିବା ଓ ଖାଇବାର ସୁବନ୍ଦୋବସ୍ତ କରିଦେଲେ । ଠିକ୍ ରାତି ବାରଟାରେ ଶାକ୍ୟସିଂହ ସେହି ହୋଟେଲର ନିର୍ଦ୍ଦିଷ୍ଟ କୋଠରୀରେ ପହଞ୍ଚି ସେମାନଙ୍କ ସହିତ ଗୋପନ ମନ୍ତ୍ରଣା କଲେ ଓ ସେମାନଙ୍କୁ ଗୋଟିଏ ଗୋଟିଏ ପ୍ୟାକେଟ୍ ଧରାଇ କହିଲେ-ଏ କାମ ଅତ୍ୟନ୍ତ ଗୋପନୀୟ । ତୁମେ ଆମ ରାଜ୍ୟର ସବୁ ନିର୍ବାଚନ ମଣ୍ଡଳୀକୁ ଯିବ । ଲୋକମାନଙ୍କ ସହିତ ମିଶିବ । ସେମାନଙ୍କ ମନ କଥା ଓ ମତାମତ ସଂଗ୍ରହ କରିବ । ସେମାନଙ୍କଠୁ ନିଗୁଢ଼ା



Digitized by srujanika@gmail.com

ସତ କଥା ବାହାର କରିବା ପାଇଁ ସବୁ ପ୍ରକାର ଉଦ୍ୟମ କରିବ । ମୋ ବିରୁଦ୍ଧରେ କି ଆମ ଦଳ ବିରୁଦ୍ଧରେ ଯଦି କାହାର କିଛି ଅଭିଯୋଗ ଥାଏ ତେବେ ସେ କଥା ମଧ୍ୟ ସଂଗ୍ରହ କରିବ । ତୁମମାନଙ୍କ ଗସ୍ତ ଖର୍ଚ୍ଚ ବାବଦକୁ ମୁଁ ପ୍ରତି ଲଫାପାରେ ଦୁଇ ଲକ୍ଷ ଟଙ୍କା ଲେଖାଏଁ ଦେଇଛି । ଅଧିକ ଆବଶ୍ୟକ ହେଲେ ସଂକୋଚ ନକରି ମୋତେ ଫୋନ୍ କରିବ ।  ଏ ତଥ୍ୟ ଗୋଟିଏ ମାସ ଭିତରେ ଆବଶ୍ୟକ ।  ଆଜି ରାତିଟା ତୁମେ ଏଇ ହୋଟେଲରେ ବିଶ୍ରାମ କର । କାଲି ସକାଳୁ ସରକାରୀ ଗାଡ଼ି ତୁମକୁ ନିଜ ନିଜ ଗାଆଁରେ ଛାଡ଼ି ଦେବ ।

ଚାରିଜଣ ଯାକ କୃତଜ୍ଞତାରେ ବତୁରିଯାଇ ଶାକ୍ୟସିଂହଙ୍କଠୁ ବିଦାୟ ନେଲେ । ସେମାନଙ୍କ ମୁହଁ ଆନନ୍ଦରେ ଉତ୍‌ଫୁଲ୍ଲିତ ଦିଶୁଥିଲା । ସକାଳୁ ସକାଳୁ ସରକାରୀ ଗାଡ଼ିରେ ନିଜ ନିଜ ଘରକୁ ଫେରି ଯାଇ ଶାକ୍ୟସିଂହ ଦେଇଥିବା କାମରେ ଜୋରସୋରରେ ଲାଗିଗଲେ ।

ଠିକ୍ ଗୋଟିଏ ମାସ ପରେ ଦିବାକର,ଅବନୀକାନ୍ତ, ଅଗଣି ଓ ସରୋଜ ନିଜ ନିଜ କାମ ସାରି ଭୁବନେଶ୍ୱର ଫେରି ସେମାନଙ୍କ ଗୋପନ ରିପୋର୍ଟ ଶାକ୍ୟସିଂହଙ୍କ ହାତରେ ଦେଲେ ଓ ସେମାନଙ୍କ ପ୍ରାପ୍ୟ ବାବଦକୁ ଆଉ ଗୋଟିଏ ଲେଖାଁ ମୁଦା ଲଫାପା ନେଇ କୃତ୍ୟ କୃତ୍ୟ ହୋଇ ଖୁସି ମନରେ ଘରକୁ ଫେରିଗଲେ ।

ମୁଖ୍ୟମନ୍ତ୍ରୀ ଶାକ୍ୟସିଂହ ଚାରୋଟିଯାକ ରିପୋର୍ଟ ମନଧ୍ୟାନ ଦେଇ ପଢ଼ି ଖୁବ୍ ବିଷର୍ଣ୍ଣ ଓ ବିବ୍ରତ ରହିଲେ । ରାତିକୁ ତାଙ୍କ ଦଳର କୋର୍ କମିଟିର ଗୋଟିଏ ଏକାନ୍ତ ଗୋପନ ବୈଠକ  ଡ଼ାକିଲେ । ରିପୋର୍ଟ ଚାରୋଟି କମିଟିରେ ଉପସ୍ଥାପିତ କଲେ ଶାକ୍ୟସିଂହ । ରିପୋର୍ଟରେ ସରକାରଙ୍କ କାର୍ଯ୍ୟକଳାପ ଉପରେ ରାଜ୍ୟର ଜନସାଧାରଣଙ୍କ ବିସ୍ତୃତ ମତାମତ ସ୍ଥାନ ପାଇଥିଲା । ସେଥିରୁ ସ୍ପଷ୍ଟ ହେଉଥିଲା ଯେ ଜନସାଧାରଣ ସରକାରଙ୍କ ଶାସନରେ ସନ୍ତୁଷ୍ଟ ନୁହଁନ୍ତି ; ବରଂ ସେମାନେ ଅତି ମାତ୍ରାରେ କ୍ଷୁବ୍ଧ । ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ପାଇଁ ସରକାର ନୂଆ କିଛି କାର୍ଯ୍ୟକ୍ରମ ହାତକୁ ନେଉ ନାହାଁନ୍ତି । ତେଣୁ ଗରିବ ଲୋକ ଅଧିକରୁ ଅଧିକ ଗରିବ  ହେଉଛି । ଦର ଦାମ୍ ଏ ସରକାରଙ୍କ ସମୟରେ ବଢ଼ି ବଢ଼ି ଆକାଶକୁ  ଛୁଇଁଲାଣି । କର ଟିକସ୍ ହୁ,ହୁ ହୋଇ ବଢ଼ି ଚାଲିଛି । ଚାଷୀ, ମୂଲିଆଙ୍କ ହାତ ଶୂନ୍ୟ ;କିନ୍ତୁ ସରକାରୀ କର୍ମଚାରୀ,ଏମ.ଏଲ.ଏ ଓ ମନ୍ତ୍ରୀ ସମସ୍ତଙ୍କ ହାତରେ ବିଡ଼ା ବିଡ଼ା ଟଙ୍କା । ଦରଦାମ ବଢ଼ିଲେ  ସେମାନଙ୍କ ଦରମା ଆଉ ଭତ୍ତା ସମୁଦ୍ର ଜୁଆର ପରି ବଢ଼ି



Digitized by srujanika@gmail.com

ଚାଲିଛି । କିଏ ମାସକୁ ପଚାଶ ,ଷାଠିଏ ହଜାର ଟଙ୍କା ହାତଉଛି ତ ଆଉ କିଏ ଲକ୍ଷେ ଦେଢ଼ଲକ୍ଷ, ଏପରିକି ଦୁଇ ତିନିଲକ୍ଷ । ଏ ସରକାର କେବଳ ସରକାରୀ କର୍ମଚାରୀ , ମନ୍ତ୍ରୀ, ଏମ.ଏଲ.ଏ,ଶିଳ୍ପପତି,ବ୍ୟବସାୟୀ ଓ ଠିକାଦାରଙ୍କ ପେଟ,ପାଟି ଆଉ ଅଣ୍ଟି ଭରି ଧନ ଧାନ୍ୟ ଢ଼ାଳିଦେଇଛି; କିନ୍ତୁ ରାଜ୍ୟର ଅବଶିଷ୍ଟ ନବେ ଭାଗ ଲୋକଙ୍କୁ ହତାଶ ଓ ନିରାଶ କରିଛି । ସେଇ ନବେ ଭାଗ ଲୋକଙ୍କ ରୋଷର ଶିକାର ନିଶ୍ଚୟ ଏ ସରକାର ହେବ ଓ ଆସନ୍ତା ବିଧାନ ସଭା ନିର୍ବାଚନରେ , ସରକାର ନିଶ୍ଚିତ ପରାଜିତ ହେବ ।

ରାଜ୍ୟର ବିକାଶ ନିମନ୍ତେ କୌଣସି ଜଳସେଚନ ଯୋଜନା, ବିଦ୍ୟୁତ ଉତ୍ପାଦନ ଯୋଜନା,ନୂତନ ଶିଳ୍ପ କିମ୍ବା କଳ, କାରଖାନା ସରକାରୀ ଉଦ୍ୟମରେ ସ୍ଥାପନ କରିବାର କୌଣସି ଯୋଜନା ସରକାରଙ୍କର ନାହିଁ । ଏସବୁ ଦାୟିତ୍ୱ ସରକାର ବିଦେଶୀ କମ୍ପାନୀ ହାତକୁ ଟେକି ଦେଇଚନ୍ତି । ସେମାନଙ୍କୁ ହଜାର ହଜାର ଏକର ଜମି ଓ କୋଟି କୋଟି ଟଙ୍କାର ଖଣିଜ ସଂପଦ ଦେଇ ଦେଉଛନ୍ତି । ସେମାନେ କଳ କାରଖାନା କିଛି ନ ବସାଇ ପାଇଥିବା ଜମି ଓ ଖଣିଜ ସଂପଦକୁ ଲୁଟି ଚାଲିଛନ୍ତି । ନିର୍ବାଚିତ ସ୍ୱଦେଶୀ ସରକାର ଯେଉଁ କାମ କରିବାକୁ ପଛଘୁଞ୍ଚା ଦେଉଚନ୍ତି ସେ କାମ ବିଦେଶୀ କମ୍ପାନୀମାନେ କରିବେ ବୋଲି ଆଶା କରିବା ମୂର୍ଖାମୀ ଛଡ଼ା ଅନ୍ୟ କିଛି ନହୋଇ ପାରେ ।

ରିପୋର୍ଟ ପାଠ କରାଯିବା ପରେ କୋର୍ କମିଟିର ମୁହଁ କଳା ପଡ଼ିଗଲା । ଶାକ୍ୟସିଂହ ସମସ୍ତଙ୍କ ମୁହଁକୁ ଚାହିଁଲେ । କାହାରି ମୁହଁରେ କିଛି କଥା ନାହିଁ । ରିପୋର୍ଟର ତଥ୍ୟ ଏକଦମ ସତ । ରାଜ୍ୟରେ ଆଉ କୌଣସି ବଡ଼ ଯୋଜନା କଥା ସରକାର ଚିନ୍ତା କରି ନହାଁନ୍ତି; କାରଣ ଯୋଜନା ପାଇଁ ଆବଶ୍ୟକ ଅର୍ଥ ସରକାରଙ୍କ ପାଖରେ ନାହିଁ । ରାଜ୍ୟରେ ଥିବା କ୍ଷେତର ଶତକଡ଼ା ପଚାଶ ଭାଗକୁ ଏପର୍ଯ୍ୟନ୍ତ ଜଳସେଚନ ସୁବିଧା ଯୋଗାଇ ଦିଆଯାଇ ପାରି ନଥିଲେ ମଧ୍ୟ ଆଉ କୌଣସି ନୂତନ ଜଳସେଚନ ଯୋଜନାର ପରିକଳ୍ପନା ସରକାର କରି ନାହାଁନ୍ତି । ଯଦିଓ ଆମ ରାଜ୍ୟରେ ପ୍ରଚୁର ଖଣିଜ ସଂପଦ ଗଚ୍ଛିତ ଅଛି ତଥାପି ସେ ସବୁକୁ ନେଇ ସରକାରୀ ଉଦ୍ୟମରେ କୌଣସି ଗୋଟିଏ ହେଲେ ଶିଳ୍ପ ପ୍ରତିଷ୍ଠା କରିବା କଥା ସରକାର ଚିନ୍ତା କରି ନାହାଁନ୍ତି । ବିଦ୍ୟୁତ ଶକ୍ତିର ଘୋର ଅଭାବ ଥିଲେ ମଧ୍ୟ କୌଣସି ଜଳବିଦ୍ୟୁତ୍ କିମ୍ବା ତାପଜ ବିଦ୍ୟୁତ ପ୍ରକଳ୍ପ ପ୍ରତିଷ୍ଠା କରିବା ପାଇଁ ଏ ସରକାର କିଛି ପଦକ୍ଷେପ ନେଇ ନାହାଁନ୍ତି । କେବଳ ଏ ସରକାର ନୁହଁ ବିଗତ କେତୋଟି



Digitized by srujanika@gmail.com

ସରକାର କିଛି ନୂଆ ପଞ୍ଚବାର୍ଷିକ ଯୋଜନା ହାତକୁ ନେଇ ନାହାଁନ୍ତି, କାରଣ ସେଥିପାଇଁ ହଜାର ହଜାର କୋଟି ଟଙ୍କା ଆବଶ୍ୟକ । ଏତେ ଟଙ୍କା ସରକାରଙ୍କ ହାତରେ ନାହିଁ । ସରକାରଙ୍କ ପାଣ୍ଠିକୁ ଦେଶର ମୁଷ୍ଟିମେୟ ରାଜନେତା,ମନ୍ତ୍ରୀ, ଯନ୍ତ୍ରୀ,ପ୍ରଶାସକ,ବ୍ୟବସାୟୀ, ପୁଞ୍ଜିପତି କୌଶଳକ୍ରମେ ଲୁଟିନେଇ ବିଦେଶୀ ବ୍ୟାଙ୍କରେ ଲୁଚାଇ ରଖିଛନ୍ତି । ଆମ ଦେଶର ଲକ୍ଷ ଲକ୍ଷ କୋଟି ଟଙ୍କାର କଳାଧନ ବିଦେଶରେ ଗଚ୍ଛିତ ଥିବାରୁ କୌଣସି ଯୋଜନା ପାଇଁ ପୁଞ୍ଜି ଯୋଗାଇବା ସରକାରଙ୍କ ପକ୍ଷେ ସମ୍ଭବ ହେଉନାହିଁ । ସେଥିପାଇଁ କୋଣସି ପ୍ରକଳ୍ପ କରିବା କଥା ଉଠିବା ମାତ୍ରେ ବିଦେଶୀ କମ୍ପାନୀଙ୍କ ସହଯୋଗ ଲୋଡ଼ାଯାଉଛି । ସେମାନଙ୍କ ସହିତ ସରକାର ବିଭିନ୍ନ ଚୁକ୍ତିପତ୍ର ସ୍ୱାକ୍ଷର କରୁଛନ୍ତି । ବିଦେଶୀ କମ୍ପାନୀମାନଙ୍କ ଲକ୍ଷ୍ୟ ଆମ ଦେଶର କି ରାଜ୍ୟର ବିକାଶ ନୁହଁ ; ସେମାନଙ୍କ ଅସଲ ଓ ଏକମାତ୍ର ଲକ୍ଷ୍ୟ ତାଙ୍କ ଲାଭ । ସେମାନେ ପ୍ରକଳ୍ପ କରିବା ନାଆଁରେ ପ୍ରଥମେ ସରକାରଙ୍କଠୁ ହଜାର ହଜାର ଏକର ଜାଗା ହାତେଇ ନିଅନ୍ତି । ତାପରେ କିଛି ଖଣିଜ ପଦାର୍ଥ ନିଜ ଦେଶକୁ ଚାଲାଣ କରନ୍ତି ।

ବୈଠକରେ ଭାଳେଣି ପଡ଼ିଲା ଯେ ଲୋକମାନେ ଏସବୁ କଥା ଜାଣି ଗଲେଣି । ତେଣୁ ଲୋକମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅନ୍ୟ କିଛି ବାଟ ଖୋଜି ବାହାର କରିବାକୁ ପଡ଼ିବ । ଲୋକମାନଙ୍କ ଦୃଷ୍ଟିକୁ ଅନ୍ୟ ଆଡ଼କୁ ଆକର୍ଷିତ କରିବାକୁ ପଡ଼ିବ ।

କିଛି ସମୟର ନିରବତା ପରେ ଜଣେ ପ୍ରସ୍ତାବ ଦେଲେ ଲୋକମାନେ ଏବେ ସରକାରଙ୍କ ଉପରେ ଅସନ୍ତୁଷ୍ଟ ଅଛନ୍ତି । ଏ କଥା ହୁଏତ ଠିକ୍ । କିନ୍ତୁ ନିର୍ବାଚନ ହେବାକୁ ଆହୁରି ବର୍ଷଟେ ବାକି ଅଛି । ଜନସ୍ମୃତି ଅତି କ୍ଷଣସ୍ଥାୟୀ । ଅଳ୍ପ ଦିନ ପରେ ସେମାନେ ଏ ସବୁ ଭୁଲିଯିବେ । ଠିକ୍ ନିର୍ବାଚନର ଅବ୍ୟବହିତ ପୂର୍ବରୁ କିଛି ବ୍ୟବସ୍ଥା କଲେ ଆମେ ସେମାନଙ୍କ ମତାମତକୁ ଆମ ସପକ୍ଷକୁ ନେଇ ଆସି ପାରିବା । ଏବେଠୁ ବ୍ୟସ୍ତ ହେବାର କିଛି କାରଣ ନାହିଁ ।

ଆଉ ଜଣେ ପ୍ରଶ୍ନ ଉଠାଇଲେ – ଏବେଠୁ କି ବର୍ଷକ ପରେ ହେଉ ଯେଉଁ ବ୍ୟବସ୍ଥା କରାଯିବା କଥା କୁହା ଯାଉଛି ସେଇ ବ୍ୟବସ୍ଥାଟି କଣ ?

ପୁଣି ସଭାରେ ନିରବତା ବିରାଜମାନ କଲା । ଗଭୀର ଚିନ୍ତାରେ ସମସ୍ତ ସଭ୍ୟ ବୁଡ଼ିଗଲେ । ଜଣେ ଯୁବ ସଭ୍ୟ ପ୍ରସ୍ତାବ ଦେଲେ ନିର୍ବାଚନେ ଆଠ ଦିନ ଆଗରୁ ପ୍ରତି ଗରିବ ପରିବାରକୁ ଗୋପନରେ ଆମ ଦଳ ପକ୍ଷରୁ ମୋଟା ଅଙ୍କର କିଛି ଟଙ୍କା ଦେଇଦେଲେ



Digitized by srujanika@gmail.com

ସେମାନେ ଆମ ଦଳକୁ ନିଶ୍ଚୟ ଭୋଟ ଦେବେ ।

ଏ ପ୍ରସ୍ତାବକୁ ଉପସ୍ଥିତ ସମସ୍ତ ସଭ୍ୟ ବିରୋଧ କଲେ । ଏହା ନିର୍ବାଚନ ଆଇନର ଉଲଘଂନ ହେବ । ସେମାନେ ମତ ଦେଲେ ଆମେ ଏମିତି କିଛି କରିବା ଯାହା ନିର୍ବାଚନ ଆଚରଣ ବିଧିର ଉଲଘଂନ କରୁନଥିବ, କିନ୍ତୁ ସର୍ବସାଧାରଣଙ୍କ ମନ କିଣି ପାରିବାକୁ ସକ୍ଷମ ହେଉଥିବ ।

ଆଉ ଜଣେ ସଭ୍ୟ ପ୍ରସ୍ତାବ ଦେଲେ ଆମ ସରକାର ସିନା ରାସ୍ତା,ପୋଲ, ନଦୀବନ୍ଧ,କେନାଲ,ଜଳବିଦ୍ୟୁତ୍ ପ୍ରକଳ୍ପ, ତାପଜ ବିଦ୍ୟୁତ ପ୍ରକଳ୍ପ, ଷ୍ଟିଲପ୍ଲାଣ୍ଟ, କଳ, କାରଖାନା କରିବାକୁ ପୁଞ୍ଜିର ଅଭାବ ଅଛି, କିନ୍ତୁ ଏ ସବୁ କରିବାର ଅଭିନୟ କରିବାକୁ ପୁଞ୍ଜିର କୌଣସି ଆବଶ୍ୟକତା ନାହିଁ । ଏଇ ଯେଉଁ ବର୍ଷଟିଏ ସମୟ ଆମ ହାତରେ ଅଛି ଏଇ ସମୟ ଭିତରେ ଏସବୁ କରିବା ପରି ସଫଳ ଅଭିନୟ କଲେ ଯଥେଷ୍ଟ ହେବ । ସରକାର ରାଜ୍ୟସାରା ବୁଲି ବିଭିନ୍ନ ଯୋଜନା କରିବା ନିମନ୍ତେ ସର୍ବେକ୍ଷଣ, ଅନୁସନ୍ଧାନ, ଭୁମି ଅଧିଗ୍ରହଣ,ଭୂମିପୂଜା,ଶିଳାନ୍ୟାସ ଇତ୍ୟାଦି ଜାରି ରଖନ୍ତୁ । ଅଳ୍ପ ଦିନ ଭିତରେ ଲୋକମାନଙ୍କ ଭିତରେ ପ୍ରଚାରିତ ହୋଇଯିବ ଯେ ସରକାର ରାଜ୍ୟର ବିକାଶ ଯୋଜନା ହାତକୁ ନେବାକୁ ଯାଉଛନ୍ତି । ଲୋକମତର ସୁଅ  ଆମ ସରକାରଙ୍କ ପକ୍ଷକୁ ଛୁଟିବା ସରଳ ଓ ସହଜ ହୋଇଯିବ ।

ଶାକ୍ୟସିଂହ ମୁହଁ ଖୋଲିଲେ-ଅଭିନୟ କରିବା ପ୍ରସ୍ତାବ ଅତ୍ୟନ୍ତ ଅଭିନବ । ଏ କୌଶଳ ପ୍ରୟୋଗ କରିବାରେ ସେମିତି କିଛି ଅସୁବିଧା ହୁଏତ ନାହିଁ । ରାଜ୍ୟର ବିକାଶ କରିବାର ଅଭିନୟ କରି ଆଗାମୀ ନିର୍ବାଚନରେ ଆମ ସରକାରକୁ ଜିତାଇବା ହୁଏତ ସମ୍ଭବ ହୋଇପାରେ । କିନ୍ତୁ ଜିତିକି ଆସି ସରକାର ଗଢ଼ିଲେ ସେ ସରକାରକୁ ବେଶି ଦିନ ବଞ୍ଚାଇ ହେବନାହିଁ । ଆମ ସରକାର ସହିତ ଆମ ଦଳ ମଧ୍ୟ ସବୁଦିନ ପାଇଁ ଲୋକମାନଙ୍କର ବିଶ୍ୱାସ ହରାଇ ବସିବ ଏବଂ ଖୁବ୍ ଅଳ୍ପ ଦିନ ଭିତରେ ମିଛ ଉପରେ ପ୍ରତିଷ୍ଠିତ ସରକାର ଭୁଷୁଡ଼ି ପଡ଼ିବ ।

ବୈଠକରେ ବସିଥିବା ସବୁ ସଭ୍ୟ ସମ ସ୍ୱରରେ ଶାକ୍ୟସିଂହଙ୍କ କଥାକୁ ସମର୍ଥନ କଲେ । ଅଭିନୟ ପ୍ରସ୍ତାବ କାଟ ଖାଇଗଲା । ଏମିତି ସଭାରେ ବସି କିଛି ଚିନ୍ତା କରିବା ସୁବିଧାଜନକ ନୁହଁ କି ସହଜ ବି ନୁହଁ । ସେ ଦିନର ବୈଠକ ସେଇଠି ଶେଷ ହେଲା ।

ଆନଂଦ ଚଂଦ୍ର ପଛି

Digitized by srujanika@gmail.com

କିଛି ଗୋଟେ ଭଲ ଉପାୟ ଚିନ୍ତା କରି ତାକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ଶାକ୍ୟସିଂହଙ୍କ ଉପରେ ନ୍ୟସ୍ତ କରାଗଲା । ଏଦିଗରେ ଯଦି କିଛି ସାହାଯ୍ୟ କି ପରାମର୍ଶ ସିଏ ଚାହିବେ ତାଙ୍କୁ ତାହା ଯୋଗାଇ ଦେବାକୁ ସମସ୍ତେ ପ୍ରସ୍ତୁତ ଅଛନ୍ତି ବୋଲି ଉପସ୍ଥିତ ସମସ୍ତ ସଭ୍ୟ ମତଦେଲେ ।

ଏଇ ବୈଠକର ଠିକ୍ ମାସକ ପରେ କ୍ୟାବିନେଟ୍ ବୈଠକ ବସାଇ ଶାକ୍ୟସିଂହ କିଛି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ପାଶ୍ କରାଇ ନେଲେ ଓ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ତାକୁ ସମସ୍ତ ଖବର କାଗଜକୁ ଦେଇ ଦେଲେ । ସେ ନିଷ୍ପତ୍ତିଗୁଡ଼ିକ ନିମ୍ନ ପ୍ରକାରେ :-

୧- ରାଜ୍ୟର ସମସ୍ତ ବେକାର ଯୁବକ,ଯୁବତୀ(ଶିକ୍ଷିତ ଓ ଅଶିକ୍ଷିତ)ମାସିକ ୨ହଜାର ଟଙ୍କା ଲେଖାଏଁ ବେକାରୀ ଭତ୍ତା ପାଇବେ ।

୨- ରାଜ୍ୟର ସମସ୍ତ ଶିଶୁ ଓ କିଶୋରଙ୍କୁ ପାଠପଢ଼ା ଖର୍ଚ୍ଚ ବାବଦକୁ ମାସିକ ୨ଶହ ଟଙ୍କା ମିଳିବ ।

୩- ରାଜ୍ୟର ସମସ୍ତ ପ୍ରସୂତିଙ୍କୁ ଗର୍ଭଧାରଣ, ପିଲାଜନ୍ମ, ପିଲାର ଲାଳନ ପାଳନ ଓ ଚିକିତ୍ସା ନିମନ୍ତେ ମାସିକ ୫ଶହ ଟଙ୍କା ଲେଖାଏଁ ଦୁଇବର୍ଷ ଯାଏ ମିଳିବ ।

୪- ବାର୍ଦ୍ଧକ୍ୟ ଭତ୍ତାର ପରିମାଣ ବୃଦ୍ଧି କରାଯାଇ ମାସିକ ୨ହଜାର ଟଙ୍କା କରାଯିବ ।

୫- ବିଧବା ଭତ୍ତାର ପରିମାଣ ବୃଦ୍ଧି କରାଯାଇ ମାସିକ ୨ହଜାର ଟଙ୍କା କରାଯିବ ।

୬- ପ୍ରତ୍ୟେକ ବି.ପି.ଏଲ ପରିବାରକୁ ମାସିକ ୫୦କିଲୋଗ୍ରାମ ଚାଉଳ ମାଗଣାରେ ଦିଆ ଯିବ ।

୭- ପ୍ରତ୍ୟେକ ବି.ପି.ଏଲ. ପରିବାରକୁ ଗୋଟିଏ ମୋବାଇଲ୍ ଫୋନ୍ ସହିତ ମୋବାଇଲ୍ ରିଚାର୍ଜ ଖର୍ଚ୍ଚ ବାବଦକୁ ବାର୍ଷିକ ଏକ ହଜାର ଟଙ୍କା ଦିଆଯିବ ।

୮- ପ୍ରତ୍ୟେକ ବି.ପି.ଏଲ. ପରିବାରକୁ ଗୋଟିଏ 'ଦରିଦ୍ର ଆବାସ' ମାଗଣାରେ ଦିଆଯିବ ।

୯- ପ୍ରତ୍ୟେକ ବି.ପି.ଏଲ. ପରିବାରକୁ ବର୍ଷକୁ ୨ହଜାର ଟଙ୍କା ଔଷଧ ଖର୍ଚ୍ଚ ବାବଦକୁ ଯୋଗାଇ ଦିଆଯିବ ।

୧୦- ହାଇସ୍କୁଲରେ ପଢୁଥିବା ସମସ୍ତ ବାଳକ ଓ ବାଳିକାଙ୍କୁ ମାଗଣାରେ ସାଇକେଲ୍ ଯୋଗାଇ ଦିଆଯିବ ।

୧୧- ପ୍ରାଥମିକ ସ୍କୁଲରେ ଏଣିକି ଆଉ ରନ୍ଧା ଖାଦ୍ୟ ଦିଆ ନଯାଇ ତା'ବଦଳରେ ପ୍ରତି



Digitized by srujanika@gmail.com

ଛାତ୍ର, ଛାତ୍ରୀଙ୍କୁ ମାସିକ ୫ଶହ ଟଙ୍କା ଦିଆ ଯିବ ଓ ସେଇ ଟଙ୍କାରେ ସେମାନେ ଟାଙ୍କ ନିଜ ଘରେ ମଧ୍ୟାହ୍ନ ଭୋଜନ କରିବେ ।

୧୨- ଗାଆଁରେ ରହୁଥିବା ପ୍ରତି ପରିବାରକୁ ଗୋଟିଏ ଲେଖାଁ ରଙ୍ଗିନ ଟିଭି ଦିଆଯିବ ।

୧୩- ପ୍ରତି ବି.ପି.ଏଲ. ପରିବାରର ମୁଖ୍ୟଙ୍କ ନାମରେ ନିକଟସ୍ଥ ବ୍ୟାଙ୍କରେ ଗୋଟିଏ ଆକାଉଣ୍ଟ ଖୋଲାଯାଇ ପ୍ରତ୍ୟେକ ଆକାଉଣ୍ଟରେ ୫ହଜାର ଟଙ୍କା ଜମାକରି ଦିଆଯିବ ।

୧୪- ପ୍ରତ୍ୟେକ କୃଷକଙ୍କୁ ଉନ୍ନତ ସାର , ବିହନ,କୀଟନଶକ ଓ ଆଧୁନିକ କୃଷି ଯନ୍ତ୍ରପାତି କିଣି ଉନ୍ନତ ପ୍ରଣାଳୀର ଚାଷ କରିବା ପାଇଁ ପ୍ରତ୍ୟେକ କୃଷକ ପରିବାରକୁ ବର୍ଷକୁ ୩ହଜାର ଟଙ୍କା ଯୋଗାଇ ଦିଆଯିବ ।

୧୫- ପ୍ରାଥମିକ ସ୍କୁଲଠାରୁ ଆରମ୍ଭ କରି କଲେଜ ଶିକ୍ଷା ଶେଷ ପର୍ଯ୍ୟନ୍ତ ଛାତ୍ର, ଛାତ୍ରୀମାନଙ୍କର ମାସିକ ଦରମା ଓ ପରୀକ୍ଷା ଫିସ୍ ଛାଡ଼ କରିଦିଆ ଯିବ ।

୧୬- ଚିନି, କିରୋସିନ, ଲୁଣ, ଆଳୁ, ପିଆଜ ଓ ଡାଲି ପରି ଅତ୍ୟାବଶ୍ୟକ ପଦାର୍ଥ କିଣିବା ନିମନ୍ତେ ପ୍ରତି ବି.ପି.ଏଲ. ପରିବାରକୁ ମାସିକ ଏକ ହଜାର ଟଙ୍କା ଲେଖାଏଁ ଦିଆଯିବ ।

୧୭- ପ୍ରତି ମଜୁରିଆ ପ୍ରତି ରବିବାର କାମକୁ ନଯାଇ ଘରେ ବିଶ୍ରାମ କରିବେ ଏବଂ ପ୍ରତି ମାସରେ ଯେତୋଟି ରବିବାର ପଡ଼ିବ ଗୋଟିଏ ରବିବାରକୁ ୨ଶହ ଟଙ୍କା ହିସାବରେ ବିଶ୍ରାମ ଭତ୍ତା ପାଇବେ ।

୧୮- ପ୍ରତି ବି.ପି.ଏଲ. ପରିବାରର ସତୁରି ବର୍ଷରୁ ଉର୍ଦ୍ଧ୍ୱ ବୁଢ଼ା, ବୁଢ଼ୀଙ୍କୁ ତୀର୍ଥଯାତ୍ରା ନିମନ୍ତେ ଜଣ ପ୍ରତି ବର୍ଷକୁ ଥରେ ତୀର୍ଥଯାତ୍ରା ଖର୍ଚ୍ଚ ବାବଦକୁ ୨ହଜାର ଟଙ୍କା ଲେଖାଏଁ ଦିଆ ଯିବ ।

୧୯- ପ୍ରାୟ ପ୍ରତି ବର୍ଷ ଜିନିଷପତ୍ରର ଦରଦାମ ବୃଦ୍ଧି ପାଉଥିବାରୁ ଲୋକମାନଙ୍କୁ ମହଙ୍ଗା ଭତ୍ତା ବାବଦକୁ ପ୍ରତି ବର୍ଷ ଜାନୁୟାରୀ ମାସରେ ପ୍ରତି ପରିବାରକୁ ୩ ହଜାର ଟଙ୍କା ଦିଆ ଯିବ ।

୨୦- କୌଣସି ଲୋକକୁ କର୍କଟ, ହୃଦ୍‌ଘାତ, ଏଡ଼ସ୍ ଇତ୍ୟାଦି ଅତି ମାରାତ୍ମକ ଓ ବ୍ୟୟ ବହୁଳ ରୋଗ ହେଲେ ତାର ସମସ୍ତ ଖର୍ଚ୍ଚ ସରକାର ବହନ କରିବେ ।

ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

୨୧- ପ୍ରତି ବି.ପି.ଏଲ. ପରିବାରଙ୍କୁ ମାସିକ ୫ ଲିଟର କିରୋସିନ, ୨କିଲୋ ଚିନି ଓ ୩ଲିଟର ପେଟ୍ରୋଲ୍ ମାଗଣାରେ ଯୋଗାଇ ଦିଆଯିବ ।

କ୍ୟାବିନେଟର ଏ ୨୧ଦଫା ନିଷ୍ପତ୍ତି ଖବରକାଗଜ, ରେଡ଼ିଓ ଓ ଟିଭିରେ ପ୍ରକାଶିତ ହେବା ପରେ ସର୍ବସାଧାରଣରେ ମିଶ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ଗରିବ, ଖଟିଖିଆ, ତଳପାହାଚିଆ,ଚାଷୀ, ମୂଲିଆ, ଯୁବକ, ବୃଦ୍ଧ, ଛାତ୍ରଛାତ୍ରୀ,ଆଦିବାସୀ, ହରିଜନ ସମସ୍ତେ ଖୁସୀହେଲେ । ସେମାନେ ଖୋଲାଖୋଲି ପ୍ରକାଶ କଲେଯେ ଏତେ ଦିନପରେ ସରକାର ତାଙ୍କ କଥା ଶୁଣିଲେ । ସରକାର ଆଜିଯାକେ କେବଳ ଧନୀ, ପୁଞ୍ଜିପତି, ବ୍ୟବସାୟୀ ଓ ସରକାରୀ ଚାକିରିଆଙ୍କ କଥା ଶୁଣୁଥିଲେ । ସେଇମାନେ ମୋଟା ଅଙ୍କର ଟଙ୍କା ନେଇ ବିଳାସ,ବ୍ୟସନରେ କାଳ କାଟୁଥିଲେ । ଏବେ କିଛି ପଇସା ଗରିବ,ନିଃସହାୟଙ୍କ ହାତକୁ ଆସିବ ।

କିନ୍ତୁ ଧନୀ,ପୁଞ୍ଜିପତି, ବୁଦ୍ଧିଜୀବୀ ଓ ସରକାରୀ ଚାକିରିଆମାନେ ଅବାକ ହେଲେ । ରାଜକୋଷକୁ ଏମିତି ଲୋକମାନଙ୍କୁ ବିତରଣ କରିଦେଲେ ଅଳ୍ପ ଦିନରେ ସରକାରୀ ଭଣ୍ଡାର ଶୂନ୍ୟ ହୋଇଯିବ । ରାଜ୍ୟ ଶାସନ ପରିଚାଳନା ପାଇଁ ସର୍ବନିମ୍ନ ପାଣ୍ଠି ମଧ୍ୟ ସରକାର ହରାଇ ବସିବେ ।

ବିରୋଧୀ ଦଳ ଚିତ୍କାର କଲେ-ନିର୍ବାଚନ ଆଉ ମାତ୍ର ଗୋଟିଏ ବର୍ଷ ଥିବାବେଳେ ସରକାରଙ୍କର ଏମିତି ଖୋଲାଖୋଲି ଟଙ୍କା ବଣ୍ଟନ ଅତି ନିର୍ଲଜ କାମ । ନିର୍ବାଚନ ପୂର୍ବରୁ ଟଙ୍କା ଦେଇ ଭୋଟ କିଣିବା ସହିତ ଏହା ସମାନ । ଏହା ନିର୍ବଚନ ଆଇନର ଖୋଲଖୋଲି ଉଲଘଂନ ।

ବିରୋଧୀଦଳ ତୁରନ୍ତ ନିର୍ବାଚନ କମିଶନ୍ ନିକଟରେ ଅଭିଯୋଗ ଫର୍ଦ୍ଦ ଦାଖଲ କଲେ । ରାଜ୍ୟର ରାଜନୈତିକ ବାତାବରଣ ସରଗରମ ହେଲା । ନିର୍ବାଚନ କମିଶନ୍ ସରକାରୀ ଦଳ, ବିରୋଧୀ ଦଳ, ରାଜ୍ୟର ବୁଦ୍ଧିଜୀବୀ ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ସହିତ ଆଲୋଚନା କରି ତାଙ୍କର ଚୂଡ଼ାନ୍ତ ରାୟ ଶୁଣାଇଲେ । ନିର୍ବାଚନ କମିଶନ ବିରୋଧୀଦଳର ଅଭିଯୋଗର ଜବାବରେ ଜଣାଇଲେ ଯେ ଆସନ୍ତା ବିଧାନସଭା ନିର୍ବାଚନ ଆହୁରି ଏକ ବର୍ଷ ସମୟ ଥିବାରୁ ଏହା ନିର୍ବାଚନ ଆଚରଣ ବିଧି ପରିସରଭୁକ୍ତ ନୁହେଁ । ସରକାର ରାଜ୍ୟର ଲୋକମାନଙ୍କ ପାଇଁ ଯେ କୌଣସି ଉନ୍ନୟନମୂଳକ ପଦକ୍ଷେପ ନେଇ ପାରିବେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ନିର୍ବାଚନ କମିଶନଙ୍କର ଏ ବିଷୟରେ କିଛି କହିବାର କି ଏହା ଉପରେ କୌଣସି ପ୍ରକାର ଅଙ୍କୁଶ ଲଗାଇବାର ଅଧିକାର ନାହିଁ ।

ବିରୋଧୀ ଦଳର ମୁଣ୍ଡ ଘୂରିଗଲା । ସେମାନେ ସରକାରଙ୍କ ଚତୁର ଚାଲ୍ ବୁଝି ପାରିଲେ । ସରକାର ରାଜକୋଷରୁ ଟଙ୍କା ଦେଇ ତାଙ୍କ ଦଳପାଇଁ ଭୋଟ୍ କ୍ରୟ କିରିବା ନିମନ୍ତେ ଯେଉଁ ଗୋଟି ଚାଳନା କରିଛନ୍ତି ତାକୁ ବିରୋଧୀଦଳ ପ୍ରତିହତ କରିବାର ବାଟ ନାହିଁ । ସରକାର ତାଙ୍କ ହୀନ ଚକ୍ରାନ୍ତରେ ନିଶ୍ଚୟ ସଫଳ ହେବେ ଓ ତାଙ୍କ ଦୁରଭିସନ୍ଧି ପୂରଣ ହେବ । ଆସନ୍ତା ବିଧାନସଭା ନିର୍ବାଚନରେ ସରକାରୀ ଦଳ ପ୍ରାୟ ତିନି/ଚତୁର୍ଥାଂଶ ଭୋଟ ପାଇ ପୁନଶ୍ଚ ଶାସନ ଗାଦି ଅକ୍ତିୟାର କରିବ । ତେବେ ସରକାରଙ୍କର ଏହି ଚାଲ୍ ବିରୋଧରେ ଜନ ସଚେତନତା ସୃଷ୍ଟି କରିବାହିଁ ବିରୋଧୀ ଦଳର ଏବେ ଏକମାତ୍ର ପନ୍ଥା ।

ବିରୋଧୀ ଦଳର କୋର୍ କମିଟିର ଗୋପନ ବୈଠକ ବସିଲା । ସରକାର ବିରୁଦ୍ଧରେ ଲୋକମାନଙ୍କୁ ସଚେତନ କରିବାକୁ ଯିବା ଆଗରୁ ସୁଚିନ୍ତିତ ରଣ କୌଶଳ ସ୍ଥିର କରାଯିବା ଜରୁରୀ । ଉପସ୍ଥିତ ସଭ୍ୟମାନଙ୍କ ଠାରୁ ବିଭିନ୍ନ ପ୍ରସ୍ତାବ ଆସିଲା, ଆଲୋଚିତ ହେଲା କିନ୍ତୁ ସବୁ ପ୍ରସ୍ତାବ କାଟ ଖାଇଗଲା । ନିର୍ଦ୍ଦିଷ୍ଟ କିଛି ରଣ କୌଶଳ ସ୍ଥିରିକୃତ ହୋଇ ପାରିଲା ନାହିଁ । ତେବେ ସରକାରୀ ପଦକ୍ଷେପକୁ ବିରୋଧ କରି ବିରୋଧୀ ଦଳର ତୀବ୍ର ପ୍ରତିକ୍ରୀୟା ସମସ୍ତ ଖବର କାଗଜରେ ନିମ୍ନ ପ୍ରକାରେ ପ୍ରକାଶ ପାଇଲା ।

ଖବରକାଗଜରେ ପ୍ରକାଶିତ ବିରୋଧୀ ଦଳର ପ୍ରତିକ୍ରିୟାର ଶୀରୋନାମା ଥିଲା- 'ନୀତିଭ୍ରଷ୍ଟ ସରକାରର ନିର୍ଲଜ ପଦକ୍ଷେପ' । ପ୍ରତିକ୍ରିୟାରେ ଲେଖା ଯାଇଥିଲା- ଏ ଯାବତ୍ ରାଜନୈତିକ ଦଳମାନେ ରାଜ୍ୟର ଉନ୍ନୟନ କାର୍ଯ୍ୟ କରିବା ନିମନ୍ତେ ନିର୍ବାଚନର ଠିକ୍ ପୂର୍ବରୁ ତାଙ୍କ ନିର୍ବାଚନ ଇସ୍ତାହାର ପ୍ରକାଶ କରୁଥିଲେ ଯେଉଁଥିରେ ରାଜ୍ୟର ଓ ରାଜ୍ୟର ଲୋକମାନଙ୍କର ବିଭିନ୍ନ ବିକାଶମୂଳକ କାର୍ଯ୍ୟ କରିବାର ପ୍ରତିଶ୍ରୁତି ଓ ଅଙ୍ଗୀକାର ସ୍ଥାନ ପାଉଥିଲା । କିନ୍ତୁ ଏ ସରକାର ନିର୍ବାଚିତ ହୋଇ ଶାସନ ଭାର ଗ୍ରହଣ କରିବା ଆଜିକୁ ଚାରି ବର୍ଷ ହୋଇଥିଲେ ମଧ୍ୟ କିଛି ହେଲେ ବିକଶମୂଳକ କାମ ନକରି ନିର୍ବାଚନର ବର୍ଷକ ଆଗରୁ ବିଭିନ୍ନ ଯୋଜନା ନାଆଁରେ ରାଜକୋଷକୁ ଲୋକମାନଙ୍କ ଭିତରେ ନିର୍ଲଜ ଭାବରେ ବିତରଣ କରିବାକୁ ଘୋଷଣା କରି ସାରିଲେଣି । ଏପରି ନୀତିଭ୍ରଷ୍ଟ ସରକାରଙ୍କର ଏ ଅନ୍ୟାୟ ତଥା ଅନୁଚିତ କାର୍ଯ୍ୟର ଆମଦଳ ତୀବ୍ର ନିନ୍ଦା ଓ ଦୃଢ଼ ପ୍ରତିବାଦ କରୁଛି ।

ଆନଂଦ ଚଂଦ୍ର ପଢ଼ି

Digitized by srujanika@gmail.com

ଲୋକମାନଙ୍କର  କିଛି ଉନ୍ନତି ନକରି ଦୀର୍ଘ ଚାରି ବର୍ଷ ହେଲା ଭୁଆଁ ବୁଲାଇବା ପରେ ନିର୍ବାଚନ ଆଉ ମାତ୍ର ବର୍ଷଟିଏ ଥିବାବେଳେ ଏ ସରକାର ରାଜ୍ୟର ଉନ୍ନୟନ କାମ ପାଇଁ ଥିବା ଅର୍ଥକୁ ସ୍ପଷ୍ଟ ଦିବାଲୋକରେ ଲୋକମାନଙ୍କ ମଧ୍ୟରେ ବିତରଣ କରି ଦେଉଛନ୍ତି ।

ସରକାର ଲୋକମାନଙ୍କ ମଧ୍ୟରେ ଏମିତି ସିଧା ସଳଖ  ଅର୍ଥ ଓ କିଛି ପଦାର୍ଥ ବିତରଣ କରିବା କାର୍ଯ୍ୟକୁ ଲୋକମାନଙ୍କୁ ଲାଞ୍ଚ ଦେଇ ପ୍ରଲୁବ୍ଧ କରୁଛନ୍ତି ବୋଲି କହିବା ଛଡ଼ା ଆଉ କ'ଣ କୁହାଯାଇପାରେ ? ଏଥିରୁ ଏ ସରକାରଙ୍କର ଅସଲ ଉଦ୍ଦେଶ୍ୟ ଧରାପଡ଼ି ଯାଉଛି । ଭୋଟ ପାଇବା ପାଇଁ ସରକାର ଏ ହୀନ ଓ ନିନ୍ଦନୀୟ ପନ୍ଥା ଖୁବ୍ ଶଠତାର ସହ ଗ୍ରହଣ କରିଛନ୍ତି । ରାଜ କୋଷର ଅର୍ଥକୁ ଏପରି ଦାତାକର୍ଣ୍ଣ ସାଜି ବିତରଣ କରିଦେଲେ ଆଉ କ'ଣ ଅବଶିଷ୍ଟ ରହିବ ଯେ ରାଜ୍ୟର କଳ କାରଖାନା, ରାସ୍ତା ଘାଟ,  ସ୍ୱାସ୍ଥ୍ୟ, ଶିକ୍ଷା,କୃଷି, ବନ୍ଧ, ବାଡ଼ର ଉନ୍ନତି କରାଯିବ ।  ସରକାର ଚତୁର ହେଲେବି ଆମ ରାଜ୍ୟର ଜନସାଧାରଣ ସରକାରଙ୍କଠୁ ଆହୁରି ଢ଼େର ଅଧିକ ଚାଲାଖ । ସରକାର ଯେଉଁ ଟଙ୍କା ଆଜି ବିତରଣ କରୁଛନ୍ତି ତାହା ଆମ ରାଜ୍ୟର ଜନସାଧାରଣଙ୍କ ଟଙ୍କା ବୋଲି ସେମାନେ ଭଲଭାବେ ଜାଣନ୍ତି ।  କଥାରେ ଅଛି-'ଆମରି ଧନ ଆମକୁ ଦେଇ, ମଝିରେ ମଇତ୍ର ବୋଲାଇ ।'

ଏ ଧୂର୍ତ୍ତ ସରକାର ଏବେ ଭୋଟ କିଣିବା ପାଇଁ ସମଗ୍ର ରାଜକୋଷକୁ ସର୍ବସାଧାରଣଙ୍କ ମଧ୍ୟରେ ବଣ୍ଟନ କରି ଭୋଟ ବୈତରଣୀ ପାରହୋଇ ରାଜଗାଦିକୁ ପୁଣି ଫେରି ଆସିବା ପରେ ଆପଣମାନେ ତାର ଅସଲ ଚେହେରା ଦେଖିବେ । ସେତେବେଳେ ରାଜକୋଷ ଖାଲି ହୋଇ ଯାଇଥିବ । ସରକାର ତାଙ୍କର ପ୍ରଥମ କ୍ୟାବିନେଟ୍‌ରେ ଆପଣମାନଙ୍କ ଉପରେ ବସାଇବେ ଅନେକ ଅଜଣା,ଅଶୁଣା ଓ ଅଚିହ୍ନା କର । ଏଇ ଯେମିତି କୃଷି କର, ଶିକ୍ଷାକର, ବୃତ୍ତିକର, ସ୍ୱାସ୍ଥ୍ୟ କର, ପଥ କର, ବିକାଶ କର, ପିଲାଜନ୍ମ କର, ନିଃଶ୍ୱାସ ପବନ କର, ପାନୀୟଜଳ କର,ବିବାହ କର, ମୃତ୍ୟୁ କର, ଜୀବନ ଜିଇବା କର ଇତ୍ୟାଦି ।

ବର୍ତ୍ତମାନ ଯେଉଁ କର ଟିକସ ପ୍ରଚଳିତ ଅଛି ଏସବୁକୁ ସ୍ଥଳ ବିଶେଷରେ ଦୁଇ ଗୁଣିତ, ତିନି ଗୁଣିତ ଓ ବହୁଗୁଣିତ କରି ଦିଆଯିବ । ଥରେ ଯେଉଁ କର ଟିକସ ଲାଗୁହେବ ତାହା କଦାପି ସରକାର ପରିହାର କରିବାର ପ୍ରଶ୍ନ ଉଠୁନାହିଁ । ରାଜ୍ୟର କର ଟିକସ ବୃଦ୍ଧି



Digitized by srujanika@gmail.com

ଘଟିଲେ ଆବଶ୍ୟକ ଓ ଅତ୍ୟାବଶ୍ୟକ ଜିନିଷର ଦରଦାମ୍‌ରେ ଯେ ସେହି ହାରରେ ବୃଦ୍ଧି ଘଟିବ ଏକଥା କହିବା ବାହୁଲ୍ୟ ମାତ୍ର । ତେଣୁ ଆମର ଦୃଢ଼ ଧାରଣା ଆମ ରାଜ୍ୟର ଜନସାଧାରଣ ଏ ସରକାରଙ୍କୁ ଉଚିତ ଜବାବ ଦେବେ । ଏ ସରକାର ଆଉଥରେ ଶାସନ ଗାଦିକୁ ଫେରିବାର ସୁଯୋଗ ଜନସାଧାରଣ କଦାପି ଦେବେ ନାହିଁ ।

ଆମେ ଆଶା କରୁଛୁ ସରକାରଙ୍କର ଏ ଅନୈତିକ ତଥା ଅନୁଚିତ କାର୍ଯ୍ୟର ବିରୋଧ କରିବେ ଆମ ରାଜ୍ୟର ସଚେତନ ଅଗଣିତ ସର୍ବସାଧାରଣ, ଅସଂଖ୍ୟ ବୁଦ୍ଧିଜୀବୀ, ସ୍ୱାଧୀନଚେତା ଓ ବିଜ୍ଞ ନାଗରିକ । ଏ ସରକାର ଆମ ରାଜ୍ୟର ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଭାଙ୍ଗି ଚୁରମାର କରି ଦେବାର ମସୁଧା କରୁଛନ୍ତି । ରାଜ୍ୟର ସର୍ବସାଧାରଣଙ୍କୁ ଭିକାରି କରିବାର ଇଏ ଏକ ସୁଚିନ୍ତିତ ଯୋଜନା । ଆସନ୍ତୁ ଆମେ ସମସ୍ତେ ସଂଘବଦ୍ଧ ହୋଇ ଏହାର ପ୍ରତିରୋଧ କରିବା । ଆମର ବିନମ୍ର ନିବେଦନ ଏ ସରକାର ଏବେ ଘୋଷଣା କରିଥିବା ଭିକ୍ଷା ବର୍ଜନ କରନ୍ତୁ ଓ ଗଣତନ୍ତ୍ର ତଥା ଗଣତାନ୍ତ୍ରିକ ବ୍ୟବସ୍ଥାକୁ ବଞ୍ଚାନ୍ତୁ ।

ଖବରକାଗଜରେ ବିରୋଧୀ ଦଳର ଉପର ଲିଖିତ ପ୍ରତିକ୍ରିୟା ପ୍ରକାଶିତ ହେବା ପରେ ଶାକ୍ୟସିଂହ ଏକ ସାବାଂଦିକ ସମ୍ମିଳନୀ ଡକାଇ ସ୍ପଷ୍ଟିକରଣ ଦେଲେ-ଆମ ସରକାର ଘୋଷଣା କରିଥିବା ୨୧ଦଫା କାର୍ଯ୍ୟକ୍ରମ ଏକ ଅନନ୍ୟ ଓ ଅନୁପମ କାର୍ଯ୍ୟକ୍ରମ । ଏହା ଦ୍ୱରା ଲୋକମାନେ ସିଧା ସଳଖ ଉପକୃତ ହେବେ । କିଛି ଯୋଜନା କରାଗଲେ ସେଥିରେ ବିନିଯୋଗ କରାଯାଉଥିବା ଅର୍ଥ ବିଭିନ୍ନ ଏଜେନ୍ସି ମାଧ୍ୟମରେ ଖର୍ଚ୍ଚ ହୁଏ ଏବଂ ଯୋଜନା ଅର୍ଥର ପ୍ରାୟ ଶତକଡ଼ା ୫୦ପ୍ରତିଶତ ବାଟ ମାରଣା ହୋଇଯାଏ । ଫଳରେ ଯୋଜନା ନିର୍ମାଣ ଦାୟିତ୍ୱରେ ଥିବା ଠିକାଦାର, ଯନ୍ତ୍ରି ଓ ଅଧିକାରୀମାନେ ଲାଭବାନ ହୁଅନ୍ତି: କିନ୍ତୁ ପ୍ରକୃତ ହିତାଧିକାରୀ ପ୍ରତାରିତ ହୁଅନ୍ତି । ଆମ ସରକାର ହିତାଧିକରୀମାନଙ୍କୁ ସିଧା ସଳଖ ଟଙ୍କା ଯୋଗାଇ ଦେବାକୁ ଘୋଷଣା କରିଛି । ଏହା ଦ୍ୱାରା ଲୋକମାନେ ନିଶ୍ଚିତ ଉପକୃତ ହେବେ । ରାଜ୍ୟର ଅର୍ଥ ତୋଷରପାତ ହେବା କିମ୍ବା ବାଟମାରଣା ହେବାର ଆଦୌ ଆଶଙ୍କା ରହିବ ନାହିଁ । ଧନୀ ଗରିବ ମଧ୍ୟରେ ଥିବା ବ୍ୟବଧାନ ନିଶ୍ଚୟ କମିବ । କୌଣସି ଲୋକର ଆଉ କିଛି ଅଭାବ ରହିବ ନାହିଁ । ରାଜ୍ୟରୁ ଗରିବୀ ସମୂଳେ ଲୋପ ପାଇବ । ଏଭଳି ଏକ ଜନହିତକର କାର୍ଯ୍ୟକ୍ରମ ଆମ ସରକାର ବହୁତ ଦିନ ଆଗରୁ ହାତକୁ ନେବାର ଥିଲା । ବିଳମ୍ବ ହେଲେ ବି ଏହା ଏକ ସ୍ୱାଗତଯୋଗ୍ୟ କାର୍ଯ୍ୟକ୍ରମ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଆମର ବହୁ ପଡ଼ୋଶୀ ରାଜ୍ୟ ଆମର ଏହି ନୂତନ କାର୍ଯ୍ୟକ୍ରମକୁ ପ୍ରଶଂସା କରି ଚିଠି ଦେଲେଣି । ସେମାନେ ମଧ୍ୟ ଏହି ଅଭିନବ କାର୍ଯ୍ୟକ୍ରମକୁ ତାଙ୍କ ରାଜ୍ୟରେ ଲାଗୁ କରିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । କିନ୍ତୁ ଦୁଃଖର କଥା ଆମ ରାଜ୍ୟର ବିରୋଧୀ ଦଳ ଏହି କାର୍ଯ୍ୟକ୍ରମକୁ ବିରୋଧ କରୁଛନ୍ତି । ଯେଣୁ ସେମାନେ ବିରୋଧୀ ଦଳରେ ବସୁଛନ୍ତି ତେଣୁ ସରକାରଙ୍କର ସବୁ କାମକୁ ବିରୋଧ କରିବା ତାଙ୍କର ଧର୍ମ ବୋଲି ସେମାନେ ଧରି ନେଇଛନ୍ତି ।

ସବୁଠୁ ବଡ଼କଥା ଆମ ସରକାର ଏମିତି ଏକ ଅପୂର୍ବ ଜନହିତକର ଯୋଜନା କାର୍ଯ୍ୟକାରୀ କଲେ ଲୋକପ୍ରିୟ ହୋଇଯିବ ବୋଲି ତାଙ୍କର ଗାତ୍ରଦାହ ହେଉଛି । ସେମାନଙ୍କ ଛାତିରେ ମଧ୍ୟ ଛନକା ପଶିଯାଇଚିଯେ ଏ କାର୍ଯ୍ୟକ୍ରମ ଲାଗୁହେଲେ ଆମ ସରକାରଙ୍କର ସୁନାମ ବଢ଼ିବ ଓ ଆସନ୍ତା ନିର୍ବାଚନରେ ଆମ ଦଳ ତିନି/ଚତୁର୍ଥାଂଶ ଭୋଟ ପାଇ ପୁଣି ସରକାର ଗଠନ କରିବ । ଆମର ଏ ଲୋକପ୍ରିୟ ଯୋଜନାର ସେମାନେ କିପରି ଗତିରୋଧ କରିବେ ସେଇ ଭାଳେଣି ପଡ଼ିଛି ବିରୋଧୀ ଦଳରେ । ସେମାନେ ଏହାର ପ୍ରତିରୋଧ କରିବା ପାଇଁ କିମ୍ବା ମୁକାବିଲା କରିବା ପାଇଁ କିଛି ହେଲେ ବାଟ ଖୋଜି ପାଉନାହାଁନ୍ତି । ସେମାନଙ୍କ ଅକଲ ଗୁଡୁମ୍ । ଗୋଟିଏ ଲୋକକଥା ଅଛି-'ଗାଇକୁ ମାଇଲେ ମଲି, ଗାଇ ମାଇଲେ ମଲି' । ଆମ ବିରୋଧୀ ଦଳର ଅବସ୍ଥା ଏବେ ସେଇଆ ହୋଇଛି । ସେମାନେ ଏହି ଲୋକପ୍ରିୟ କାର୍ଯ୍ୟକ୍ରମକୁ ବିରୋଧ କଲେ ଲୋକମତ ସେମାନଙ୍କ ବିରୋଧରେ ଯିବ ଆଉ ସେମାନେ ଯଦି ଏହି କାର୍ଯ୍ୟକ୍ରମକୁ ସମର୍ଥନ କରନ୍ତି ତେବେ ଜନମତ ଆମ ସପକ୍ଷରେ ଯିବ । ଆମେ ଜାଣି ପାରୁଛୁ ସେମାନେ ନାଚାର ।ଏହାର ପ୍ରତିରୋଧ କରିବାକୁ ତାଙ୍କ ଶିବିରରେ ବିକଳ୍ପ ପନ୍ଥା ନାହିଁ କି ପ୍ରତିଅସ୍ତ୍ର ପ୍ରୟୋଗ କରିବାକୁ ତାଙ୍କ ତୂଣୀରରେ ଉପଯୁକ୍ତ ତୀର ନାହିଁ ।

ବିଚରା ବିରୋଧୀ ଦଳ ।



ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

# ଶେଷ ପାହୁଣ୍ଡ

ସ୍ତ୍ରୀ ଅନୁରାଧା ଅତ୍ୟନ୍ତ ପଜେସିଭ୍ । ସେ ଚାହିଁଥିଲେ ଭୁବନେଶ୍ୱରରେ ଜାଗା କିଣି ତାଙ୍କ ଇଚ୍ଛା ଓ ରୁଚି ଅନୁସାରେ ଗୋଟିଏ ଡ୍ୟୁପ୍ଲେକ୍ସ ଘର ତିଆରି କରିବେ । ତାଙ୍କ ଜିଦ୍ ଓ ଝୁଙ୍କ ଯୋଗୁ ଭୁବନେଶ୍ୱରରେ ଜାଗା କିଣାହେଲା । ତାଙ୍କର ଇଚ୍ଛାଥିଲା ତାଙ୍କ ପୁଅ ବୋହୂ ଓ ଝିଅ ଜ୍ୱାଇଁ ଭୁବନେଶ୍ୱର ଆସିଲେ ସେମାନେ ଆରାମରେ ଉପର ମହଲାରେ ରହିବେ । ସେମାନଙ୍କ ପ୍ରାଇଭେସି ଓ ସ୍ୱାଧୀନତାରେ କିଛି ହେଲେ ଆଞ୍ଚ ଆସିବ ନାହିଁ ।

କିନ୍ତୁ ଅସୀମ ଚାହିଁଥିଲେ ସମସ୍ତେ ଯେମିତି ଦୁଇ ମହଲା ଘର କରି ଗ୍ରାଉଣ୍ଡ ଫ୍ଲୋର୍‌କୁ ଭଡ଼ାଦେଇ ଫାଷ୍ଟ ଫ୍ଲୋର୍‌ରେ ରହୁଛନ୍ତି, ସିଏ ସେମିତି କରିବେ । ଦରକାର ହେଲେ ଉପରଘରେ ତାଲା ପକାଇ ସେମାନେ ତୀର୍ଥ କରିବାକୁ କିମ୍ବା ପୁଅ ବୋହୂ କି ଝିଅ ଜ୍ୱାଇଁଙ୍କ ପାଖକୁ କିଛିଦିନ ପାଇଁ ଯାଇ ପାରିବେ ।

କିନ୍ତୁ ଅନୁରାଧା ଯୁକ୍ତି ବାଢ଼ିଲେ-ନା, ତୀର୍ଥ କରିବାକୁ ମୋର ଇଚ୍ଛା ନାହିଁ । ଭଗବାନ ସବୁଠି ଅଛନ୍ତି । ତେବେ ନିହାତି ଯଦି ତୀର୍ଥ କରିବାକୁ ତୁମର ଇଚ୍ଛା ତେବେ ଓଡ଼ିଶାରେ ଯେତେ ତୀର୍ଥସ୍ଥାନ ଅଛି ଆମେ ସେ ସବୁ ସ୍ଥାନ ବୁଲି ଆସିଲେ ଢ଼େରହେବ । ସେ ସବୁ ସ୍ଥାନକୁ ଭୁବନେଶ୍ୱରରୁ ସକାଳୁ ବାହାରିଲେ ସଂଧ୍ୟାବେଳକୁ ଫେରି ଆସିହେବ । ଆଉ ରହିଲା ପୁଅ ବୋହୂ କି ଝିଅ ଜ୍ୱାଇଁଙ୍କ ପାଖକୁ ଆମେରିକା ଓ ଅଷ୍ଟ୍ରେଲିଆ ଯିବାକଥା । ସେଠିକି ଯିବାକୁ ପାସପୋର୍ଟ ଆଉ ଭିସା ମିଳିବାରେ ସମସ୍ୟା ଅନେକ । ଏ ବାର୍ଦ୍ଧକ୍ୟରେ ଆମେ ଏତେ ସମସ୍ୟାକୁ ଆମନ୍ତ୍ରଣ କରିବା କାହିଁକି ? ଏମିତି ସେମାନେ ବର୍ଷେ ଦୁଇ ବର୍ଷରେ ଥରେ ଭୁବନେଶ୍ୱର ଆସୁଛନ୍ତି,ସେତକ ଆମ ପାଇଁ ଯଥେଷ୍ଟ ।ସେମାନେ ଯେମିତି ଏଠି ସ୍ୱଚ୍ଛନ୍ଦରେ ମାସେ ଦୁଇମାସ ରହି ପାରିବେ ସେଥିପାଇଁ ମୁଁ ଚାହୁଁଛି ଆମେ ଡ୍ୟୁପ୍ଲେକ୍ସ ଘରଟିଏ ତିଆରି କରିବା । ଆଗରେ ପୋର୍ଟିକୋ , ଗ୍ୟାରେଜ ଓ ଫୁଲ ବଗିଚା ପାଇଁ ଯଥେଷ୍ଟ ଜାଗାଥିବ ।

ଅସୀମ ତାଙ୍କ ରିଟାୟାରମେଣ୍ଟ ପରେ ପରେ ସ୍ତ୍ରୀଙ୍କ ଇଚ୍ଛାକୁ ସାକାର କରିବା ପାଇଁ ଭୁବନେଶ୍ୱରରେ ତାଙ୍କର ଥିବା ପ୍ଲଟରେ ତିଆରି କଲେ ଡ୍ୟୁପ୍ଲେକ୍ସ ଘର । ତଳ ମହଲାରେ ରହିଲା ଗୋଟିଏ ବେଡ଼ରୁମ୍,ଡ୍ରଇଁରୁମ୍, ଡାଇନିଙ୍ଗରୁମ୍ , କିଚିନ୍ , ପୂଜାଘର , ଷ୍ଟୋର ରୁମ୍ ଓ ଦୁଇଟି ଟଏଲେଟ୍ ଆଉ ଉପର ମହଲାରେ ରହିଲା ଦୁଇଟି ବେଡରୁମ୍, ଗେଷ୍ଟରୁମ୍,ବାଲକୋନୀ ଓ ଦୁଇଟି ଟଏଲେଟ୍ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଘରଟି ଅତ୍ୟାଧୁନିକ ଡିଜାଇନରେ ରୁଚିପୂର୍ଣ୍ଣ ଭାବେ ତିଆର କଲେ ଅନୁରାଧା ଓ ଅସୀମ । ଘର ତିଆରି କରିବା ଭିତରେ ପୁଅଠୁ କି ଝିଅଠୁ କିଛି ଅର୍ଥ ସାହାଯ୍ୟ ଚାହି ନାହାଁନ୍ତି ଅସୀମ । ଗାଆଁ ଜମିବାଡି ସାନ ଭାଇଠୁ ଭାଗକରି ଆଣି ବିକ୍ରି କରିଦେବା କଥା ଉଠାଇଥିଲେ ଅନୁରାଧା । କିନ୍ତୁ ଅସୀମ ତାଙ୍କ କଥାକୁ ଉପେକ୍ଷା କରି ନିଅଣ୍ଟ ଅର୍ଥ ବ୍ୟାଙ୍କରୁ ଲୋନ୍ କରିଥିଲେ । ଗାଆଁର ଜମି ଓ ଘର ତାଙ୍କ ଅତୀତ ସ୍ମୃତିର ସ୍ୱାକ୍ଷର ବହନ କରେ । ଗାଆଁରେ ତାଙ୍କ ପିଲାଦିନ ତାଙ୍କ ସ୍ମୃତି ସିଲଟରେ ଏବେବି ଜୀବିତ ଅଛି । ଗାଆଁ ଜମି କିମ୍ବା ଘର ବିକ୍ରି କରିଦେଲେ ଗାଆଁ ଯିବା ବାଟରେ କଣ୍ଟା ପଡ଼ିଯିବ ।

ତାଙ୍କ ଡ୍ୟୁପ୍ଲେକ୍ସ ଘର ତିଆରି ପାଇଁ ଅର୍ଥର ଅଭାବ ହେଲାନାହିଁ । ଗୋଟିଏ ବର୍ଷ ଭିତରେ ଘର ଠିଆ ହୋଇଗଲା । ଘର ପ୍ରତିଷ୍ଠାକୁ ଆମେରିକାରୁ ପୁଅ ପ୍ରଜ୍ଞାନ ଓ ବୋହୂ ଶୈଳଜା, ଅଷ୍ଟ୍ରେଲିଆରୁ ଝିଅ ବିଥିକା ଓ ଜ୍ୱାଇଁ ବିଜ୍ଞାନ ଆସି ପହଞ୍ଚିଲେ । ନୂଆଘର ଦେଖି ସେମାନେ ବହୁତ ଖୁସିହେଲେ । ତାଙ୍କର ସେ ସମଗ୍ର କଲୋନୀରେ ଥିବା ସମସ୍ତ ଘରଠୁ ତାଙ୍କ ଘର ସ୍ୱତନ୍ତ୍ର ଡିଜାଇନ୍‌ର ଥିଲା ।

ପିଲାମାନେ କହିଲେ ନୂଆଘର ପାଇଁ ସମସ୍ତ ଆସବାବପତ୍ର ନୂଆ ହେବ । ପୁଅ ଓ ଝିଅ ଦୁହେଁ ପ୍ରସ୍ତାବ ରଖିଲେ ବାପା ଓ ବୋଉ ତାଙ୍କ ନିଜ ସମ୍ବଳରେ ସମୁଦାୟ ଘରଟା ତିଆରି କଲେ, ଆମେ ଆମ ପସନ୍ଦରେ ଘରର ଫର୍ଣ୍ଣିଚର ,ସ୍କ୍ରିନ୍ , ଟିଭି, ଫ୍ରିଜ , ୱାସିଙ୍ଗ ମେସିନ୍ , ଖଟ, ସୋଫାସେଟ, ଡାଇନିଙ୍ଗସେଟ ଇତ୍ୟାଦି ଘର ପାଇଁ ଯାହା ଦରକାର ହେବ ସବୁ ଆମ ପଇସାରେ କିଣିବୁ । ଏ ପ୍ରସ୍ତାବଟିକୁ ଅନୁରାଧା ଓ ଅସୀମ ଆଗ୍ରହର ସହିତ ଅନୁମୋଦନ କଲେ ।

ଦୁଇ ଦିନ ଭିତରେ ସବୁ ଜିନିଷ କିଣାହୋଇ ଆସିଲା ।ନିର୍ଦ୍ଦିଷ୍ଟ ଦିନରେ ଖୁବ୍ ଜାକ୍‌ଜମକ୍‌ରେ ଘର ପ୍ରତିଷ୍ଠା ଉତ୍ସବ ପାଳନ କରାଗଲା । ତଳ ମହଲାରେ ରହିଲେ ଅନୁରାଧା ଓ ଅସୀମ । ଉପର ମହଲାରେ ରହିଲେ ପ୍ରଜ୍ଞାନ ଓ ଶୈଳଜା, ବିଜ୍ଞାନ ଓ ବିଥିକା ତାଙ୍କ ପାଇଁ ତିଆରି ହୋଇ ଥିବା ଦୁଇଟି ସୁସଜ୍ଜିତ ବେଡ୍‌ରୁମ୍‌ରେ । ପ୍ରତିଦିନ ତଳମହଲାରେ ଥିବା ଡାଇନିଙ୍ଗହଲ୍‌ରେ ମଧ୍ୟାହ୍ନରେ ଓ ରାତିରେ ସମସ୍ତେ ଏକାଠି ବସି ଖାଇବା ଭିତରେ ନାନା ହସ ,ଖୁସୀର କଥା ଆଲୋଚନା ହେଲା । ସୁଖର ଦିନଗୁଡ଼ିକ ପବନଠୁ ଅଧିକ ବେଗରେ ଉଡ଼ିଯାଏ । ପିଲାମାନେ ଆଣିଥିବା ତିରିଶ ଦିନର ଛୁଟି କେତେବେଳେ ସରିଗଲା ସେମାନେ ଜାଣି ପାରିଲେ ନାହିଁ ।

ଝିଅ ଜ୍ୱାଇଁ ଓ ପୁଅ ବୋହୂ ନିଜ ନିଜର କର୍ମକ୍ଷେତ୍ରକୁ ଫେରିଯିବା ପୂର୍ବ ରାତିରେ ଡାଇନିଙ୍ଗ ଟେବୁଲ୍‌ରେ ସମସ୍ତେ ବସିଥିବା ବେଳେ ଅନୁରାଧା କହିଲେ-ଆଗରୁ ଭୁବନେଶ୍ୱରରେ ଆମର ନିଜଘର ନଥିଲା, ଆମେ ଭଡ଼ାଘରେ ରହୁଥିଲେ । ଏବେ ଆମର



Digitized by srujanika@gmail.com

ନିଜର ଗୋଟିଏ ଡ୍ୟୁପ୍ଲେକ୍ସ ଘର ହେଲା । ଆମେ ଦୁହେଁ ତଳ ମହଲାରେ ରହିବୁ । ଉପର ମହଲାଟା ଭଡ଼ାଦେବା ପାଇଁ ଆମେ କରିନାହୁଁ । ତାହା ଖାସ୍ ତୁମମାନଙ୍କ ପାଇଁ ତିଆରି ହୋଇଛି । ତୁମେ ଆସି ସେ ଘରେ ମାସଟିଏ ରହିଲ । ଆମ ଘର ଖୁସିରେ ପୂରି ଉଠିଲା । ତୁମେ ଚାଲିଗଲା ପରେ ତୁମେ ପୁଣିଥରେ ଆସିବା ପର୍ଯ୍ୟନ୍ତ ସେଘର ସେମିତି ଖାଲି ରହିବ । ସେଇ ଖାଲି ଘରକୁ ଦେଖିବା ମାତ୍ରେ ଆମର ତୁମମାନଙ୍କ କଥା ମନେପଡ଼ିବ । ତୁମ ନିଜ ନିଜର କର୍ମକ୍ଷେତ୍ର ଅଛି । ତୁମେମାନେ କାଲି ସେଠାକୁ ଫେରିଯିବ । ଆମେ କିନ୍ତୁ ଆଶା କରିବୁ ପ୍ରତିବର୍ଷ ନହେଲେ ବି ଦୁଇବର୍ଷରେ ଥରେ ମାସେ କି ଦୁଇମାସ ଛୁଟିନେଇ ତୁମେମାନେ ଭୁବନେଶ୍ୱର ଆସିବ । ଏ ଘର ଗହଳି ଚହଳିରେ ପୁଣି ପୂରି ଉଠିବ । ସେଇ ଦୁଇ ମାସର ଖୁସି ଓ ସୁଖକୁ ଆମେ ପୁଞ୍ଜିକରି ଆଉ ଦୁଇ ବର୍ଷ ଖୁସି ଖୁସିରେ ବଞ୍ଚିଯିବୁ । ତୁମେମାନେ ହିଁ ଆମ ସଂସାର, ଆମ ଖୁସି, ଆମ ସୁଖ, ଆମ ଜୀବନ । ତୁମମାନଙ୍କୁ ଛାଡ଼ି ଆମର ଆଉ କିଏ ଅଛି, କ'ଣ ବା ଅଛି ? ତୁମେ ନିଶ୍ଚୟ ଆସିବ ।

ପିଲାମାନେ ଭୁବନେଶ୍ୱର ମାଟିଛାଡ଼ି ଆମେରିକା ଓ ଅଷ୍ଟ୍ରେଲିଆ ଉଡ଼ିଯିବା ଆଗରୁ ବାପାମାଆଙ୍କ ପାଖରେ ପ୍ରମିଜ କରି ଗଲେ ପ୍ରତି ଦୁଇ ବର୍ଷରେ ଥରେ ସେମାନେ ନିଶ୍ଚୟ ଭୁବନେଶ୍ୱର ଆସିବେ । ତାଙ୍କ ସାଙ୍ଗରେ ଅତି କମରେ ମାସଟେ କଟାଇବେ ।

ପିଲାମାନେ ନିଜ ନିଜର କର୍ମକ୍ଷେତ୍ରକୁ ଫେରିଯିବା ପରେ ଅନୁରାଧା ଓ ଅସୀମ ବିଭିନ୍ନ ନର୍ସରିକୁ ଯାଇ ଖୁବ୍ ଭଲ ଭଲ ଭେରାଇଟିର ଫୁଲଚାରା, ଡେକୋରେଟିଭ୍ ପ୍ଲାଣ୍ଟର ଚାରା ଆଣି ନିଜର ଗାର୍ଡ଼େନ ତିଆରିରେ ଲାଗିଗଲେ ।ଜଣେ ମାଟି ଖୋଳିଲେ ଆର ଜଣକ ଘାସବାଛି ମନ୍ଦା ତିଆରି କଲା । ଜଣେ ଫୁଲଗଛ ଲଗାଇଲେ ଅନ୍ୟ ଜଣକ ତା'ଚାରିପଟେ ହୁଡ଼ା ଟେକି ଜନ୍ମପାଣି ଢ଼ାଳିଲା ।

ଦୁହିଁଙ୍କ ସ୍ନେହ, ଶ୍ରଦ୍ଧା,ଆଗ୍ରହ ଓ ଆନ୍ତରିକତାର ସ୍ପର୍ଶ ପାଇ ବଗିଚାଟି ମାସ ଚାରିଟାରେ ଆଶ୍ଚର୍ଯ୍ୟଜନକ ଭାବେ ବଢ଼ି ପଡ଼ୋଶୀମାନଙ୍କ ଦୃଷ୍ଟି ଆକର୍ଷଣ କଲା । ଅନୁରାଧା ଓ ଅସୀମ ସେଇ ବଗିଚାରେ ବସି ସୁନ୍ଦର ଫୁଲ, ବିଭିନ୍ନ ଭେରାଇଟିର ଡେକୋରେଟିଭ ଗଛର ଶୋଭା ସଂପଦର ସୌନ୍ଦର୍ଯ୍ୟରେ ବିଭୋର ହେବା ସଙ୍ଗେ ସଙ୍ଗେ ସାନ୍ଧ୍ୟ ସମୀରଣ ସେବନ କରି ଆନନ୍ଦିତ ହୁଅନ୍ତି । ସେମାନେ ଭାବନ୍ତି ଏତେ ସୁନ୍ଦର ଫୁଲ ଓ ଫୁଲ ବଗିଚା ଦେଖିଲେ ଆମ ପିଲାମାନେ ଖୁବ୍ ଖୁସି ହେବେ ।

ଅନୁରାଧା ତାଙ୍କ ଡିଜିଟାଲ କ୍ୟାମେରାରେ ଘର ସହିତ ତାଙ୍କ ଫୁଲ ବଗିଚାର ବିଭିନ୍ନ ଆଙ୍ଗଲର ଫଟୋ ଉଠାଇ ପିଲାମାନଙ୍କ ପାଖକୁ ହ୍ୱାଟସ୍‌ଆପରେ ପଠାନ୍ତି ।ପିଲାମାନେ ସେ ସବୁ ଦେଖି ଖୁସି ହୁଅନ୍ତି । ଅନୁରାଧା ସେମାନଙ୍କୁ ଅନୁରୋଧ କରନ୍ତି ବସନ୍ତ ଋତୁରେ ଭୁବନେଶ୍ୱର ଆସିବାକୁ ; କରଣ ସେତେବେଳେ ହିଁ ତାଙ୍କର ଏ ଫୁଲ ବଗିଚାର ସୌନ୍ଦର୍ଯ୍ୟ



Digitized by srujanika@gmail.com

ସେମାନେ ଉପଭୋଗ କରିବାର ମଜ୍ଜା ଉଠାଇ ପାରିବେ ।

କଲୋନୀର ଅଧିକାଂଶ ପଡ଼ୋଶୀ ତାଙ୍କ ସୀମିତ ପ୍ଲଟରେ ଏତେ ଅଧିକ ଆୟତନର ଘର ତିଆରି କରିଥାନ୍ତି ଯେ ଫୁଲଗଛଟିଏ ପୋତିବାକୁ ତାଙ୍କୁ ଚାଖଣ୍ଡେ ମାଟି ମିଳେନାହିଁ ।କିନ୍ତୁ ନିଜେ ମନମୁତାବକ ଘର ଓ ଫୁଲ ବଗିଚା କରି ପାରିଥିବାରୁ ଅସୀମ ଯେତିକି ଖୁସି ହୁଅନ୍ତି ତାଠୁ ଢ଼େର ଅଧିକ ଆନନ୍ଦିତ ହୁଅନ୍ତି ଅନୁରାଧା । ଦୁହେଁ ଘରଠୁ କିଛି ଦୂରରେ ଠିଆହୋଇ ନିଜର ଡ୍ୟୁପ୍ଲେକ୍ସ ଘରକୁ ଚାହିଁ ଆତ୍ମସନ୍ତୋଷରେ ଫୁଲି ଉଠନ୍ତି । କିନ୍ତୁ କେହି କେହି ପଡୋଶୀ ତାଙ୍କ ଘର ବୁଲି ଦେଖିବା ପରେ ମତାମତ ଦିଅନ୍ତି-ଦୁଇମହଲା ବିଶିଷ୍ଟ ଏତେ ବଡ଼ ଘରଟାରେ କେବଳ ଆପଣ ଦୁଇ ଜଣହିଁ ରହୁଛନ୍ତି । ଉପର ମହଲାଟି ପୂରାପୂରି ଖାଲି ପଡ଼ିଛି । ଉପର ମହଲାଟା କାହାକୁ ଭଡ଼ା ଲଗାଇ ଦେଲେ ମାସକୁ ସାତ ଆଠ ହଜାର ଟଙ୍କା ମିଳି ଯାଆନ୍ତା । ସେଥିରେ ଆପଣଙ୍କ ଏଦୁଇ ମହଲା ଘରର ବାର୍ଷିକ ମେଣ୍ଟିନାନ୍ସ ଖର୍ଚ୍ଚଟା ମେଣ୍ଟି ଯାଆନ୍ତା । ଏବେ ଏଘରଟା ନୂଆ ଅଛି , କିନ୍ତୁ ଆଉ ପାଞ୍ଚ ବର୍ଷପରେ ମେଣ୍ଟିନାନ୍ସ ମାଗିବ । ତାଛଡ଼ା ଆପଣମାନେ ପୁଅ ପାଖକୁ କି ଝିଅ ପାଖକୁ ଆମେରିକା କିମ୍ବା ଅଷ୍ଟ୍ରେଲିଆ ଗଲାବେଳେ ଭଡ଼ାଟିଆ ଆପଣଙ୍କ ଘରର ଦାୟିତ୍ୱ ନିଅନ୍ତା ।

ଅନୁରାଧା ହସି ହସି ଉତ୍ତର ଦିଅନ୍ତି-ଆମେ ଘର ଭଡ଼ାଦେବୁ ନାହିଁ ବୋଲି ଡ୍ୟୁପ୍ଲେକ୍ସ ଘର ତିଆରି କରିଛୁ । ଉପର ଘରେ କିଚିନ ରୁମ୍‌ର ବ୍ୟବସ୍ଥା ନାହିଁ । ଘରର ମେଣ୍ଟିନାନ୍ସ ପାଇଁ ଆମେ ମାସିକ ପେନସନ୍ ଟଙ୍କାରୁ କିଛି କିଛି ଅଲଗା ରଖୁଛୁ । ଆମେ ଏବାର୍ଦ୍ଧକ୍ୟରେ ଆମେରିକା କି ଅଷ୍ଟ୍ରେଲିଆ ଯିବାକୁ ଆଦୌ ଆଗ୍ରହୀ ନାହୁଁ । ଆମେ ପିଲାମାନଙ୍କୁ କହିଛୁ ସେମାନେ ପ୍ରତି ଦୁଇ ବର୍ଷରେ ଥରେ ଏଠିକି ଆସିବେ ଓ ଆମ ସହିତ ଉପର ମହଲାରେ ରହିବେ ।ଉପର ମହଲାଟା ଆମ ପିଲାମାନଙ୍କ ପାଇଁ ତିଆରି ହୋଇଛି, ଭଡ଼ା ଦେବା ପାଇଁ ନୁହଁ ।

ପଡ଼ୋଶୀମାନେ ଥରେ ଦୁଇ ଥର ଏମିତି ଶୁଣିବା ପରେ ଆଉ କେହି ତାଙ୍କ ମୁହଁରେ କିଛି ନକହି ପଛରେ କୁହା କୁହି ହୁଅନ୍ତି-ଏ ଦୁଇଟା ଅଜବ ଖିଆଲର ଆଡ଼ବାୟା ମଣିଷ । ଅଯଥାରେ ଏତେ ବଡ଼ ଘରଟାକୁ ଖାଲି ପକାଇଛନ୍ତି ।

ଘର ତିଆରିର ଦୁଇ ବର୍ଷ ପର୍ଯ୍ୟନ୍ତ ଅନୁରାଧା ଓ ଅସୀମ ଖୁବ୍ ଖୁସି ରହିଲେ । ଅପେକ୍ଷା କଲେ ତୃତୀୟ ବର୍ଷ ପୁଅ ବୋହୂ ଓ ଝିଅ ଜ୍ୱାଇଁ ଆସିବେ । ଘର ପୂରି ଉଠିବ । ପଡ଼ୋଶୀମାନେ ଦେଖିଲେ ଜାଣି ପାରିବେ ଆମେ କାହିଁକି ଉପର ମହଲାଟା ଏତେ ଦିନ ଧରି ଖାଲି ପକାଇ ଥିଲୁ । ମାତ୍ର ତୃତୀୟ ବର୍ଷ ଶେଷ ହେବାକୁ ବସିଲା ପିଲାମାନେ କେହି ଆସି ପହଞ୍ଚିଲେ ନାହିଁ । ଅନୁରାଧାଙ୍କ ବ୍ୟାକୁଳତା ବଢ଼ି ବଢ଼ି ଚାଲିଲା । ସିଏ ପ୍ରଜ୍ଞାନକୁ ଫୋନ୍ କରି ମନେପକାଇ ଦେଲେ ଭୁବନେଶ୍ୱର ଆସିବା କଥା । କିନ୍ତୁ ସିଏ ତାର ଅକ୍ଷମତା



Digitized by srujanika@gmail.com

ପ୍ରକାଶ କରି କହିଲା-ନା, ବୋଉ! ଏବର୍ଷ ଆମେ ଆଦୌ ଯାଇପାରିବୁ ନାହିଁ । ମୋ କଂପାନୀ ଛୁଟି ଦେବାକୁ ମନାକଲା । ଆମେ ଆସନ୍ତା ବର୍ଷ ଯିବାକୁ ଚେଷ୍ଟା କରିବୁ ।

ବିଥିକାକୁ ଫୋନ୍ କରିବାରୁ ସିଏ ମଧ୍ୟ ଅନୁରୂପ ଉତ୍ତର ଦେଲା । ତା' ସ୍ୱାମୀ ଏଇ ଅଳ୍ପ ଦିନହେଲା ଗୋଟେ ନୂଆ କଂପାନୀରେ ଜଏନ କରିଛନ୍ତି । ଏବର୍ଷ ତାଙ୍କୁ ଛୁଟି ମିଳିବାର ସମ୍ଭାବନା ନାହିଁ । ସେମାନେ ଆସନ୍ତା ବର୍ଷକୁ ଆସିବାକୁ ଚେଷ୍ଟା କରିବେ ।

ଅନୁରାଧା ସ୍ୱଭାବତଃ ଖୁବ୍ ସ୍ୱାଭିମାନୀ । ଅନୁରାଧାଙ୍କ ମନରେ ଆଘାତ ଲାଗିଲା । ସିଏ ଆଙ୍କିଥିବା ଚିତ୍ରରେ କାଳି ଢ଼ାଳିହୋଇ ବିଶ୍ରୀ ଦିଶିଲା । ସେ ତାଙ୍କ ଛାତିରେ ଯନ୍ତ୍ରଣା ଅନୁଭବ କଲେ ।ତାଙ୍କୁ ଲାଗିଲା ତାଙ୍କ ପିଲାମାନେ ତାଙ୍କ ନିୟନ୍ତ୍ରଣ ବାହାରକୁ ଚାଲି ଯାଇଛନ୍ତି ।ସେମାନେ ଆଉ ତାଙ୍କ କଥାରେ ନାହାଁନ୍ତି କି ତାଙ୍କ କଥା ସେତେ ଭାବୁ ନାହାଁନ୍ତି ଯେତେ ସିଏ ତାଙ୍କ ନିଜ ନିଜ ହିଁ କଥା ଭାବୁଛନ୍ତି ।ତାଙ୍କ ଛାତି ଭିତରେ ହଠାତ୍ କ'ଣ ଗୋଟେ ଗଳିଗଲା । ଅନୁରାଧା ଠିଆହୋଇଥିବା ସ୍ଥାନରେ ଟଳିପଡ଼ିଲେ । ଅସୀମ ତାଙ୍କୁ ସଙ୍ଗେ ସଙ୍ଗେ ଆମ୍ବୁଲାନ୍ସରେ ନେଇଗଲେ ଡାକ୍ତରଖାନାକୁ । ଡାକ୍ତର ପରୀକ୍ଷାକରି କହିଲେ –ଅନୁରାଧାଙ୍କର ଏଇଟା ପ୍ରଥମ ଷ୍ଟ୍ରୋକ୍ ହେଲେ ବି ତାଙ୍କ ଅବସ୍ଥା କ୍ରିଟିକାଲ୍ ।

ଅନୁରାଧାଙ୍କୁ ସଙ୍ଗେ ସଙ୍ଗେ ଅପରେସନ୍ ଥିଏଟରକୁ ନିଆଗଲା ।

ଅସୀମ ତାଙ୍କ ପୁଅ ବୋହୂ ଓ ଝିଅ ଜ୍ୱାଇଁଙ୍କୁ ଫୋନ୍ କରି ଜଣାଇବା ପୂର୍ବରୁ ଡାକ୍ତର ଜଣାଇଲେଯେ ଅନୁରାଧାଙ୍କୁ ଅପରେସନ୍ ଥିଏଟରକୁ ନେବା ବାଟରେ ସେ ଶେଷ ନିଃଶ୍ୱାସ ତ୍ୟାଗକଲେ । କିନ୍ତୁ ତାଙ୍କ ପିଲାମାନେ ଭୁବନେଶ୍ୱରରେ ପହଞ୍ଚିବାକୁ ଲାଗିଗଲା ତିନି ଦିନ । ଅନୁରାଧାଙ୍କ ଶବକୁ ସ୍ୱର୍ଗଦ୍ୱାର ନେଇ ତାଙ୍କର ଅନ୍ତେଷ୍ଟିକ୍ରିୟା କରିବା ପାଇଁ ନିଜର ଲୋକ ଆଉ କେହି ଜଣେ ହେଲେ ଭୁବନେଶ୍ୱରରେ ଅସୀମ ପାଇଲେ ନାହିଁ । ସେ ଅତି ଅସହାୟ ମନେକଲେ । ଶବ ସତ୍କାର ପାଇଁ ଅତି କମ୍‌ରେ ଆଉ ତିନି ଜଣ ଲୋକ ଦରକାର । ଭୁବନେଶ୍ୱରରେ ଭାଇଚାରାର ସଂପର୍କ ନାହିଁ । ଏଟା ଗୋଟେ ଉଠା ଗଣ୍ଠିଆଙ୍କ କଲୋନୀ ।ଏଠି କାହା ଘରେ କିଛି ଅଘଟଣ ଘଟିଲେ ପଡ଼ିଶାମାନେ କବାଟ କିଳି ଘର କୋଣରେ ଲୁଚନ୍ତି, ଝରକା ଫାଙ୍କରୁ ଖୁବ୍ ନିରାପଦ ଦୂରତାରୁ ନିରିକ୍ଷଣ କରି ମଜ୍ଜା ନିଅନ୍ତି । ଅସୀମ ଯାହା କବାଟ ଠକ୍ ଠକ୍ କଲେ କେହି କବାଟ ଖୋଲିଲେ ନାହିଁ , ଯାହାକୁ ଫୋନ୍‌କଲେ ସେମାନେ କେହି ଫୋନ୍ ଉଠାଇଲେ ନାହିଁ । ଗାଆଁ କଥା ନିଆରା । ସେଠି ନଡାକୁଣ୍ଡ ଭାଇ ସାହି ଦଶ ପଚିଶ ଲୋକ ବାହାରି ପଡ଼ିବେ ଶବଦାହ କରିବାକୁ । ବହୁ କଷ୍ଟରେ ଆଉ ତିନି ଜଣ ଲୋକ ଯୋଗାଡ଼ କରି ଅନୁରାଧାଙ୍କ ଶବଦାହ ପାଇଁ ପୁରୀ ନେଲେ ଅସୀମ ।

ଶୁଦ୍ଧିକ୍ରିୟା ବେଳକୁ ଆସି ପହଞ୍ଚିଲେ ପୁଅ ବୋହୂ, ଝିଅ ଜ୍ୱାଇଁ ଏବଂ ଅନ୍ୟାନ୍ୟ



Digitized by srujanika@gmail.com

ବନ୍ଧୁବାନ୍ଧବ । ଅନୁରାଧାଙ୍କ ଶୁଦ୍ଧିକ୍ରିୟା ଗୋଟେ ଦମ୍‌ରେ କରିଗଲେ ଅସୀମ । କିନ୍ତୁ ତାପରେ ଉହାସ ଓ ହତାଶ ଭାବ ତାଙ୍କ ଦେହ ଓ ମନକୁ ଗ୍ରାସ କଲା । ତାଙ୍କୁ ଲାଗିଲା ତାଙ୍କର ପିଣ୍ଡ ଅଛି, ପ୍ରାଣ ନାହିଁ । ତାଙ୍କର ଆଖି ଅଛି କିନ୍ତୁ ସେ କିଛି ହେଲେ ଦେଖି ପାରୁ ନାହାଁନ୍ତି । ତାଙ୍କର କାନ ଅଛି ,କିନ୍ତୁ ସେ କିଛି ଶୁଣି ପାରୁ ନାହାଁନ୍ତି । ସେ ନିର୍ବାକ ଆଉ ଦୁର୍ବଳ ହୋଇ ବିଛଣାରେ ପଡ଼ି ରହିଲେ ।

ପୁଅ ପ୍ରଜ୍ଞାନ ଓ ବୋହୂ ଶୈଳଜା କହିଲେ-ଆପଣଙ୍କୁ ଆମେ ଏଠି ଏମିତି ଏକୁଟିଆ ଛାଡ଼ି ଆମେରିକା ଯାଇ ପାରିବୁ ନାହିଁ । ବୋଉ ନାହିଁ,ରୋଷେଇବାସ ଓ ଘରକାମ କିଏ କରିବ ? ଦୁଇ ମହଲା ବିଶିଷ୍ଟ ଏତେବଡ଼ ଘର୍‌ଟାକୁ ଆପଣ ଏକୁଟିଆ ମଣିଷ । ତାହା ଆପଣଙ୍କୁ ଭୂତକୋଠି ପରି ଡରାଇବ । ଏଠି ଏକୁଟିଆ କେମିତି ସମୟ କାଟିବେ ? ଏତେ ବଡ଼ ଘରେ କେବଳ ଜଣେ ବୟସ୍କ ଲୋକଥିବା ଜାଣିଲେ ଅନେକ ଅସୁବିଧା ହେବ । ଏ ପରିସ୍ଥିତିରେ ଆପଣଙ୍କ ଜୀବନ ପ୍ରତି ଯଥେଷ୍ଟ ବିପଦ ଅଛି ।ଏକୁଟିଆ ଥିବା ବୟସ୍କ ଲୋକକୁ ମାରି ତାର ସମସ୍ତ ଟଙ୍କା ,ସୁନା ନେଇ ଚାଲିଯାଉଛନ୍ତି । ପୋଲିସ୍ ତାଙ୍କର କିଛି ହେଲେ ସନ୍ଧାନ ପାଉ ନାହାଁନ୍ତି । ଏମିତି ଦୁଃସମ୍ବାଦ ଆପଣ ନିଶ୍ଚୟ ଖବରକାଗଜରେ ପଢ଼ିଥିବେ । ଆପଣ ଏଘରର ମୋହ ଛାଡ଼ନ୍ତୁ । ଯୋଉ ବୋଉ ଏଘରକୁ ପ୍ରାଣଠୁ ଅଧିକ ଭଲ ପାଉଥିଲା ସିଏ ସମସ୍ତ ମାୟାମୋହ ପରିତ୍ୟାଗ କରି ଆରପାରିକୁ ଚାଲିଗଲା । ଆପଣ କାହିଁକି ଏଘରର ମୋହରେ ବାନ୍ଧିହୋଇ ଏଠି ପଡ଼ି ରହିବେ ? ଏଘରଟା ବ୍ୟତୀତ ଆପଣଙ୍କର ଏଠି ଆଉ କିଏ ଅଛି ? ଆମେ ଭାବୁଛୁ ଏ ଘରଟାକୁ ବିକ୍ରିକରି ସେ ଟଙ୍କାକୁ ଆପଣଙ୍କ ନାଆଁରେ ବ୍ୟାଙ୍କରେ ଡିପୋଜିଟ୍ କରିଦେବୁ । ଆପଣ ସେ ଟଙ୍କାକୁ ଆପଣଙ୍କ ଇଛା ଅନୁସାରେ ଖର୍ଚ୍ଚ କରିବେ । ଆପଣ ଆମ ସାଙ୍ଗରେ ଆମେରିକା ଚାଲନ୍ତୁ ।ଏଠି ଆପଣ ଏକୁଟିଆ ରହିବା ନିରାପଦ ନୁହଁ ।

ବିଜ୍ଞାନ ଓ ବିଥିକା ମଧ୍ୟ ଅସୀମଙ୍କୁ ଅନେକ ଅନୁରୋଧ କଲେ ତାଙ୍କ ସହିତ ଅଷ୍ଟ୍ରେଲିଆ ଯାଇ ଶେଷ ଜୀବନ କଟାଇବାକୁ । କିନ୍ତୁ ଅସୀମ ଦୀର୍ଘ ସମୟର ନିରବତା ପରେ ଗୋଟିଏ ପଦ କହିଲେ-ଏ ଘର ଯାହାକୁ ମୁଁ ଓ ତୁମ ବୋଉ ପ୍ରାଣ ଢ଼ାଳି ତିଆରି କରିଥିଲୁ , ଯାହାକୁ ପ୍ରାଣଠୁ ଅଧିକ ଭଲ ପାଉଥିଲୁ ଆଉ ଭାବିଥିଲୁ ମଝିରେ ମଝିରେ ତୁମେ ସବୁ କିଛି ଦିନ ପାଇଁ ଏଠି ଆମ ସାଙ୍ଗରେ ରହିବ ସେଘରକୁ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ବିକ୍ରି କରି ପାରିବି ନାହିଁ ।ସେମିତି କଲେ ତୁମ ବୋଉର ଆତ୍ମା ଶାନ୍ତି ପାଇବ ନାହିଁ । ତୁମର ଛୁଟି ସରିଗଲାଣି, ଏବେ ତୁମେ ତୁମର କର୍ମକ୍ଷେତ୍ରକୁ ଫେରିଯାଅ । ମୁଁ ମୋ ପ୍ରିୟ ଜନ୍ମଭୂମି ଭାରତକୁ ଛାଡ଼ି କୁଆଡ଼େ ଯିବି ନାହିଁ । ମୁଁ ମଲେ ମୋ ଜନ୍ମଭୂମିରେ ମରିବି ।

ପୁଅ ବୋହୂ ଓ ଝିଅ ଜ୍ୱାଇଁ ତାଙ୍କର କର୍ମକ୍ଷେତ୍ରକୁ ଫେରଯିବା ବେଳେ ଅସୀମ



Digitized by srujanika@gmail.com

ଉଦାସ ଆଖିରେ ସେମାନଙ୍କ ଯିବା ବାଟକୁ ଚାହିଁ ରହିଲେ । ପିଲାମାନେ ଫେରିଯିବାର ମାସକ ପରେ ଅପରାହ୍ନରେ ଅସୀମଙ୍କ ମୋବାଇଲ ଫୋନ୍ ରିଙ୍ଗ ହେଲା । ସେ ଫୋନ୍ ଉଠାଇଲେ-ହ୍ୟାଲୋ ! କିଏ ? ବିଶ୍ୱନାଥ ? କୋଉ ବିଶ୍ୱନାଥ ?

ଫୋନ୍‌ରୁ ଶୁଭିଲା ଜଣେ ବୟସ୍କ ଲୋକର କଣ୍ଠସ୍ୱର-ମୁଁ ବିଶ୍ୱନାଥ ଜେନା କହୁଚି । ତୋ ପିଲା ଦିନର ସାଙ୍ଗ ଯାହାକୁ ତୁ ଡାକୁଥିଲୁ ବିଶୁ । ପିଲାଦିନର ସାଙ୍ଗକୁ କ'ଣ ଏତେ ଶୀଘ୍ର ଭୁଲିଗଲୁ ? ହଁ, ବଡ଼ଲୋକ ହୋଇଗଲୁ, ଭୁବନେଶ୍ୱରରେ ବଡ଼କୋଠା ତୋଳିଲୁ, ତୋ ପୁଅ ଝିଅ ଆମେରିକା ଆଉ ଅଷ୍ଟ୍ରେଲିଆରେ ଚାକିରି କଲେ । ତୋ ଆଖି ବଡ଼ ବଡ଼ ହୋଇଗଲା । ତୁ ପିଲା ଦିନର ଏଗାଉଁଲି ସାଙ୍ଗକୁ ଆଉ ଚିହ୍ନିବୁ କାହିଁକି ?

-ବିଶୁ ! ତୁ ଏବେ ରାଉରକେଲାରେ ନା ? ତୋ ବଡ଼ ପୁଅ ପରା ଦୁବାଇରେ ଆଉ ସାନ ପୁଅ ଦିଲ୍ଲୀରେ ଚାକରି କରିଛନ୍ତି ? ତୁ ରାଉରକେଲାରେ ଥ୍ରି ଷ୍ଟୋରିଡ଼ ବିଲ୍‌ଡ଼ିଙ୍ଗ କରିଛୁନା ?

-ଅସୀମ ! ମୁଁ ତୋତେ ମିଛରେ ଭୁଲ୍ ବୁଝୁଥିଲି । ତୁ ତାହେଲେ ମୋର ସବୁ ଖବର ରଖିଛୁ ? ପଢ଼ିବା ବେଳେ ତୁ ବ୍ରିଲିଆଣ୍ଟ ସ୍କଲାର ଥିଲୁ । ମୁଁ ଦେଖୁଛି ତୁ ଏବେବି ସେମିତି ବ୍ରିଲିଆଣ୍ଟ ମଣିଷ ଅଛୁ । ତୋତେ କୌଣସି କଥାରେ କି କାମରେ କେହି ପାରିବେ ନାହିଁ । ଆରେ ତୋ ମିସେସ୍‌ଙ୍କର କ'ଣ ଏମିତି ହେଲାଯେ ସେ ହଠାତ୍ ଚାଲିଗଲେ ? ତାଙ୍କର ଏଇଟା ଦ୍ୱିତୀୟ ନା ତୃତୀୟ ଷ୍ଟ୍ରୋକ୍ ଥିଲା ?

-ବିଶୁ ! ଏଇଟା ଅନୁରାଧାଙ୍କର ଏକମାତ୍ର ଷ୍ଟ୍ରୋକ୍ ଥିଲା ଯାହାକୁ ସିଏ ସମ୍ଭାଳି ପାରିଲେ ନାହିଁ ।

-ତୋ ମିସେସ୍‌ଙ୍କର କ'ଣ ରକ୍ତଚାପ କି ଡାଇବେଟିସ୍ ଥିଲା କି ?

-ନା, ସେ ସବୁ ତାଙ୍କର କିଛି ନଥିଲା । ସେ ସଂପୂର୍ଣ୍ଣ ସୁସ୍ଥ ଥିଲେ । କିନ୍ତୁ ସେ ଅତ୍ୟନ୍ତ ସ୍ୱାଭିମାନୀ ଥିଲେ । ସେଇ ସ୍ୱାଭିମାନ ହିଁ ତାଙ୍କ ହାର୍ଟ ଆଟାକର ଏକମାତ୍ର କାରଣ ବୋଲି ମୁଁ ଆଶଙ୍କା କରୁଛି । ଆଚ୍ଛା, ତୁ ଏବେ କହ କ'ଣ ପାଇଁ ଫୋନ୍ କରିଥିଲୁ ?

ଏ ପ୍ରଶ୍ନ ପାଇଁ ପ୍ରସ୍ତୁତ ନଥିବା ପରି ହଡ଼ବଡ଼େଇ ଗଲେ ବିଶ୍ୱନାଥ । ତାପରେ କହିଲେ-ତୋ ଠିକଣା ପାଇବା ପାଇଁ ମୁଁ ଅନେକ କଷ୍ଟ ଉଠେଇଛି । ତୁ ତୋ ଚାକିରି କାଳ ଭିତରେ କେତେଥର ତୋ ଠିକଣା ବଦଳାଇଛୁ ? ମୋ ପାଖରେ ଯାହା ଖବର ଅଛି ତୁ ଆଜିଯାଏ ତିନି ତିନି ଥର ତୋ ସରକାରୀ କ୍ୱାର୍ଟରସ ବଦଳାଇ ସାରିଛୁ । ତୋର ଶେଷ ସରକାରୀ କ୍ୱାର୍ଟରସ୍ ଥିଲା ୟୁନିଟ୍ ସିକ୍ସରେ । ତାପରେ ତୁ କେବେଠୁ ନିଜ ଘର କରି ତୋ ନୂଆ ଘରକୁ ଚାଲି ଗଲୁଣି ମୋ ପାଖରେ ତାର ଖବର ନଥିଲା । ମୁଁ ତମ ଗାଆଁକୁ ଯାଇ ତୋ ସାନ ଭାଇଠୁ ତୋ ମୋବାଇଲ ଫୋନ୍ ନମ୍ବର ଆଣିଲି । ଏତେଥର ତୁ ତୋ ଠିକଣା



Digitized by srujanika@gmail.com

ବଦଳାଇ ସାରିଲୁଣ୍ଣି, ଭବିଷ୍ୟତରେ ଆଉ ବଦଳାଇବାର ସମ୍ଭାବନା ନାହିଁତ ?

ଅସୀମ ତାଙ୍କର ସମସ୍ତ ଦୁଃଖକୁ ଭୁଲି ଠୋ ଠୋ ହୋଇ ବଡ଼ପାଟିରେ ଗୋଟେ ମନଖୋଲା ହସହସି ସାରିବା ପରେ ଉତ୍ତର ଦେଲେ-ନା,ବିଶୁ ! ଏଇଟା ମୋର ଶେଷ ଠିକଣା । ଏଇଠୁ ମୁଁ ଆଉ ଉଠିବି ନାହିଁ କି କୁଆଡ଼େ ଯିବି ନାହିଁ । ଯଦି ଏଠୁ ଉଠିବାର କଥା ହୁଏ ତାହେଲେ ମୋର ଶବ ଏଠୁ ଉଠିବ, ମୁଁ ନୁହେଁ ।

ବିଶ୍ୱନାଥ ଟିକେ ରହିଯାଇ ପ୍ରଶ୍ନକଲେ-ଆଛା, ଅସୀମ ! ମୁଁ ଶୁଣିଥିଲି ତୋ ପିଲାମାନେ କୁଆଡ଼େ ଚାହୁଛନ୍ତି ତତେ ସେମାନଙ୍କ ପାଖକୁ ଆମେରିକା ନେଇଯିବେ ? ତୋର ଏଇ ଡ୍ୟୁପ୍ଲେକ୍ସ ବିଲ୍‌ଡ଼ିଙ୍ଗଟା ବିକ୍ରି କରିଦେବେ ?

-ନା ବିଶୁ ! ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ତାହା ହେବାକୁ କେବେ ଦେବି ନାହିଁ । ତୁ କ'ଣ ମୋ ଘର କିଣିବୁ ବୋଲି ମୋତେ ଫୋନ୍ କରିଥିଲୁ କି ?

ବିଶ୍ୱନାଥ ହଡ଼ବଡ଼େଇ ଯାଇ କହିଲେ- ନା, କଥାଟା ଏକଜାକୁଲି ସେଇଆ ନହେଲେ ବି ସେଇଆ ବୋଲି ଧରିନେଇ ପାରୁ । ମୋତେ କିଏ ଗୋଟେ ଖବର ଦେଲା ତୋ ଘର ବିକ୍ରି ହେଉଛି ବୋଲି । ସେଥିପାଇଁ ତୋତେ ସିଧା ପଚାରି ଦେଲି । ଯଦି ତୁ ଘର ବିକ୍ରି କରୁଥାଉ ତେବେ ଅନ୍ୟଲୋକକୁ ବିକ୍ରି କରିବା ଅପେକ୍ଷା ମୋ ପୁଅକୁ ବିକ୍ରିକଲେ କ୍ଷତି କ'ଣ ? ମୋ ବଡ଼ପୁଅ ଯିଏ ଦୁବାଇରେ ଚାକିରି କରେ ସିଏ ଭୁବନେଶ୍ୱରରେ ଗୋଟେ ଘର କିଣିବାକୁ ଚାହୁଛି । ସେଥି ପାଇଁ ପଚାରିଦେଲି । କିଛି ମନେକରିବୁ ନାହିଁ ।

ଟେଲିଫୋନ୍ ରଖିଦେଲେ ଅସୀମ । ଉଦାସ ଆଖିରେ ଚାହିଁଲେ ଆକାଶକୁ । ଭାବିଲେ ଅନୁରାଧା ଆଜି ଆକାଶରେ ତାରା ପାଲଟି ଯାଇଛନ୍ତି । ଘର ତିଆରି ସରିବା ପରେ ପରେ ଅସୀମ ନିଜେ ଅନେକ ଥର ଅନୁରାଧାଙ୍କୁ କହିଥିବାର ତାଙ୍କର ସ୍ପଷ୍ଟ ମନେଅଛି-ଏଇଟା ତୁମ ଘର ଅନୁରାଧା ! ମୁଁ କେବଳ ଏ ଘରେ କେଇଟା ଦିନର ଅତିଥି । ମୁଁ ତୁମଠୁ ବୟସରେ ସାତ ବର୍ଷ ବଡ଼ । ମୋତେ ଆସି ପଅଁଷଠି ଛୁଇଁଲାଣି । ସତ କହିବାକୁ ଗଲେ ମୃତ୍ୟୁ ମୋତେ ଧକ୍କା ମାରିଲାଣି । ମୃତ୍ୟୁର ଧକ୍କାରେ ମୋର ଦେହ ଦୋହଲି ଗଲାଣି । ମୁଣ୍ଡରୁ ବାଳ ଉପୁଡ଼ି ଚନ୍ଦା ହୋଇ ଗଲାଣି,ପାଞ୍ଚ ଛଅଟା ଦାନ୍ତ ଝଡ଼ି ଗଲାଣି, ଖାଦ୍ୟ ଭଲରେ ହଜମ ହେଉନାହିଁ, ରାତିରେ ଭଲ ନିଦ ହେଉନାହିଁ । ତେଣୁ ତୁମଠୁ ମୁଁ ନିଶ୍ଚୟ ଆଗେ ଏ ପୃଥିବୀ ଛାଡ଼ି ଆରପାରିକୁ ଚାଲିଯିବି । ତେଣୁ ନିଅ ରଖ ଆମ ଘରର ସମସ୍ତ କାଗଜପତ୍ର, ରେଭିନିଉ ରେକର୍ଡ଼ , ବ୍ୟାଙ୍କ ପାଶବୁକ୍ ଇତ୍ୟାଦି ସବୁ କାଗଜ ତୁମେ ରଖ । ମୋ ପରେ ତୁମେ ଫ୍ୟାମିଲି ପେନ୍‌ସନ୍ ପାଇବ । ଏ ପେନ୍‌ସନ୍ ବହିଟା ସମ୍ଭାଳିକି ସାଇତି ରଖ । ତୁମ ପୁଅ,ବୋହୂ ଆମେରିକାରେ ଅଛନ୍ତି । ତାଙ୍କର ଏସବୁ ରଖିବାକୁ ଆଗ୍ରହ ନାହିଁ କି ସମୟ ନାହିଁ ।

ଆନନ୍ଦ ଚନ୍ଦ୍ର ପଣ୍ଡି

Digitized by srujanika@gmail.com

ଅନୁରାଧା ମୁହଁ ଫୁଲାଇ ଅଭିମାନି ସ୍ୱରରେ କୁହନ୍ତି-ତୁମେ ସେ ଅଲକ୍ଷଣା କଥାଗୁଡ଼ା କାହିଁକି କୁହ ? ମୋ ଜାତକରେ ଅଛି ମୁଁ କଦାପି ବିଧବା ହେବିନାହିଁ । କାହାର ବୟସ କମ୍ ବେଶିରେ କିଛି ଯାଏଆସ ନାହିଁ ।ତମେ ଜାଣିଛ ରେଳ ଷ୍ଟେସନରେ ଯେଉଁ ଗାଡ଼ି ଆଗେ ପହଞ୍ଚେ ସେ ଗାଡ଼ିକୁ ଅଟକାଇ ପଛରେ ଆସିଥିବା ଗାଡ଼ିକୁ ଆଗ ଛାଡ଼ିଦିଆ ଯାଏ ? କେତେବେଳେ କେଉଁ ସ୍ଥାନରେ କି ନିୟମ ଲାଗୁକରାଯାଏ ତାହା ଜାଣିବା ମଣିଷ ପକ୍ଷେ ସମ୍ଭବ ନୁହଁ ।

ତମଘର, ତମ କାଗଜପତ୍ର, ତମେ ରଖିଛ ସେମିତି ରଖିଥିବ । ମୁଁ ସଧବା ବେଶରେ ତୁମ ଆଗେ ଆଗେ ସେପାରିକୁ ଚାଲିଯିବି । ସେ କାଗଜପତ୍ରରେ ମୋର ମୁଣ୍ଡ ପୂରାଇବା ମୋତେ ଦରକାର ନାହିଁ ।

ଅସୀମ ପ୍ରବୋଧନା ଦେଇ କୁହନ୍ତି-ତମେ ଭୟ କରୁଛ କି ସମାଜ ତୁମକୁ ବୈଧବ ଯନ୍ତ୍ରଣାଦେବ ବୋଲି ? ମୁଁ ମରିବା ପୂର୍ବରୁ ଗୋଟେ ଇଚ୍ଛାପତ୍ର ଲେଖିଦେଇ ଯିବି ଯେ ମୋର ମୃତ୍ୟୁପରେ ମଧ୍ୟ ମୋ ସ୍ତ୍ରୀ ରଙ୍ଗିନ ଶାଢ଼ି, ଚୂଡ଼ି ଓ ମଥାରେ ସିନ୍ଦୂର ପିନ୍ଧିବେ । ଆମ ଘରର ସମସ୍ତ ମାଙ୍ଗଳିକ କାମରେ ଅଂଶଗ୍ରହଣ କରି ପାରିବେ ।

ଅସୀମ ଏସବୁ ପ୍ରତିଶ୍ରୁତି ଅନୁରାଧାଙ୍କୁ ଦେଇ ସାରିଥିଲେ ମଧ୍ୟ ଏ ପୁରୁଷ ପ୍ରଧାନ ସମାଜର କଠୋର ଶାସନକୁ ହୁଏତ ଭୟ କରି ସେ ଆଗତୁରା ଚାଲିଗଲେ । ଜୀବନକୁ ଯାହା ଯେମିତି ଜିଇବେ ବୋଲି ଅସୀମ ଭାବିଥିଲେ ଅନୁରାଧା ଚାଲିଯିବା ପରେ ସବୁ ଓଲଟ ପାଲଟ ହୋଇଗଲା । ତଥାପି କୌଣସି ଗୋଟେ ବହିରେ ପଢ଼ିଥିବାର ତାଙ୍କର ମନେପଡ଼ିଲା ଯେ ଜୀବନଟା ଗୋଟେ ପୁସ୍ତକ ଓ ଆମ ଜୀବନର ପ୍ରତ୍ୟେକ ଦିନ ତାର ଗୋଟିଏ ଗୋଟିଏ ପୃଷ୍ଠା । ଯାହାସବୁ ଜୀବନ ପୁସ୍ତକରେ ଲେଖା ସରିଯାଇଛି ତାକୁ ଲିଭାଇ ହେବ ନାହିଁକି ବଦଳାଇ ହେବ ନାହିଁ । କିନ୍ତୁ ଆମ ଜୀବନର ଅବଶିଷ୍ଟ ପୃଷ୍ଠା ଗୁଡ଼ିକୁ ଭଲଭାବରେ ଲେଖି ଆମ ଜୀବନ ପୁସ୍ତକର ପରିସମାପ୍ତିକୁ ସୁନ୍ଦର କରିବାକୁ ଏବେ ବି ସମୟ ଅଛି ।

ଅସୀମ ଉଦାସ ହୋଇ ବସିଥିବା ସ୍ଥାନରୁ ଉଠି ଠିଆହେଲେ ଓ ସଂକଳ୍ପ ନେଲେ ସେ ନିଜେ ଭାଙ୍ଗି ନପଡ଼ି ଅବଶିଷ୍ଟ ଜୀବନକୁ ନିଜ ପାଇଁ ନୁହଁ ସମାଜ ପାଇଁ ଜିଇବେ ଏବଂ ସମାଜର ମଙ୍ଗଳ ପାଇଁ କାମ କରିବେ ।

ଅସୀମ ତାଙ୍କ ବ୍ୟାଙ୍କ ପାସବୁକ୍ ଖୋଲି ଦେଖିଲେ ଘରଲୋନ୍ ପରିଶୋଧ କରି ସାରିବା ପରେ ମଧ୍ୟ ସେ ତାଙ୍କ ଦେହ ପାଆ ପାଇଁ ଫିକ୍ସଡ୍ ଡ଼ିପୋଜିଟ କରିଥିବା ଦୁଇ ଲକ୍ଷ ଟଙ୍କା ସୁଧ ସହ ତିନି ଲକ୍ଷ ହୋଇ ଯାଇଛି । ତାଙ୍କ ପେନସନ ଆକାଉଣ୍ଟରେ ବାଲାନ୍ସ ଅଛି ପାଞ୍ଚ ଲକ୍ଷ ଚାଳିଶ ହଜାର ଟଙ୍କା । ଅନୁରାଧାଙ୍କ ଚିକିତ୍ସା ପାଇଁ କିଛି ଖର୍ଚ୍ଚ କରିବାର ସୁବିଧା



Digitized by srujanika@gmail.com

ତାଙ୍କୁ ମିଳିଲା ନାହିଁ । ଅସୀମଙ୍କ ନିଜ ଦେହ ଅସୁସ୍ଥ ହେଲେ ଯେ ତାଙ୍କର ଏଟଙ୍କା କାମରେ ଲାଗିବ ତାର କିଛି ନିଶ୍ଚିତତା ନାହିଁ ।

ତାଙ୍କ ପିଲାମାନେ ତାଙ୍କର ଏଟଙ୍କା ପାଇଁ ଆଦୌ ଆଶାୟି ନୁହଁନ୍ତି ; କାରଣ ତାଙ୍କ ରୋଜଗାର ତୁଳନାରେ ଏଟଙ୍କା କିଛି ନୁହଁ । ଏତେଗୁଡ଼େ ଟଙ୍କା ତାଙ୍କର କି କାମରେ ଆଉ ଆସିବ ? ତାଙ୍କୁ ଏପୃଥିବୀ କେଉଁ ମୁହୂର୍ତ୍ତରେ ଛାଡ଼ିବାକୁ ପଡ଼ିବ ତାହା ତାଙ୍କୁ ଜଣା ନାହିଁ । ତେଣୁ ସେ ଆଖି ବୁଜିବା ପୂର୍ବରୁ ଏ ସବୁ ଟଙ୍କାର ସଦ୍‌ବିନିଯୋଗ କରିଦେଇ ଯିବା ଉଚିତ ହେବ ।

ଦିନେ ଦଶଟା ବେଳକୁ ଅସୀମ ପହଞ୍ଚିଲେ ଭୁବନେଶ୍ୱରର ଉପକଣ୍ଠରେ ଥିବା ଅନାଥାଶ୍ରମରେ । ତାଙ୍କ ମୁଖ୍ୟଙ୍କ ସହିତ କଥାବାର୍ତ୍ତା କଲେ । ଅନାଥ ପିଲାମାନଙ୍କର ଚିକିତ୍ସା ପାଇଁ ତିନି ଲକ୍ଷ ଟଙ୍କାର ଚେକ୍ ଲେଖି ଅନାଥାଶ୍ରମର ମୁଖ୍ୟଙ୍କ ହାତକୁ ବଢ଼ାଇଦେଇ ଚାଲି ଆସିଲେ ।ସେ ଦିନ ଅସୀମ ଆତ୍ମତୃପ୍ତିରେ ଗୋଟିଏ ନିଃଶ୍ୱାସ ମାରିଲେ । ନିଜ ଭିତରେ ଉତ୍‌ଫୁଲ୍ଲିତ ହେଲେ ।

ଦିନେ ସକାଳ ବସ୍‌ରେ ଗାଆଁକୁ ବାହାରିଲେ ଅସୀମ । ଭୁବନେଶ୍ୱରରୁ ତାଙ୍କ ଗାଆଁର ଦୂରତା ପ୍ରାୟ ଶହେ କିଲୋମିଟର । ଗାଆଁରେ ପହଞ୍ଚିଲା ବେଳକୁ ଦିନ ବାରଟା । ଅନେକ ବର୍ଷ ପରେ ଗାଆଁକୁ ଆସିଛନ୍ତି ସେ । ଗାଆଁର ଚିତ୍ରରେ ଅନେକ ପରିବର୍ତ୍ତନ । ଗାଆଁ ଏବେ ଟାଉନ୍ ହେବା ବାଟରେ ପାଦ ଦେଇଛି ; କିନ୍ତୁ ସଂପୂର୍ଣ୍ଣ ଟାଉନ୍ ହୋଇ ପାରିନାହିଁ । ଆହୁରି ଢ଼େର ବର୍ଷ ଲାଗିବ ଟାଉନର ସମସ୍ତ ସୁବିଧା, ସୁଯୋଗ ଗାଆଁରେ ଉପଲବ୍ଧ ହେବା ନିମନ୍ତେ । ଗାଆଁ ମୁଣ୍ଡ ଛକରେ କିଛି ଦୋକାନ ବସିଛି । ଗୋଟିଏ ମିଠା ଦୋକାନରୁ କିଛି ମିଠା ପୁଡୁରା, ଝିଆରିଙ୍କ ପିଲାମାନଙ୍କ ପାଇଁ କିଣିଲେ ଓ ଚାଲିଲେ ଗାଆଁରେ ଥିବା ନିଜ ଘରକୁ । ସାନଭାଇ ସଂଗ୍ରାମକୁ ପାଖକୁ ଡାକି ତା'ହାତକୁ ମିଠା ପ୍ୟାକେଟ୍‌ଟି ବଢ଼ାଇ ଦେଲେ ।

ସଂଗ୍ରାମ ଆଶ୍ଚର୍ଯ୍ୟ ହୋଇ ବଡ଼ଭାଇଙ୍କ ମୁହଁକୁ ଚାହିଁଲା, କିଛି ଉତ୍ତର ଦେଲା ନାହିଁ । କିଛି ଦିନ ତଳେ ସରପଞ୍ଚ କହୁଥିଲେ ଭାଇ କୁଆଡ଼େ ଭୁବନେଶ୍ୱରରେ ଆଉ ଗୋଟେ ପ୍ଲଟ କିଣିବା ପାଇଁ ଗାଆଁ ଜମିରୁ ଭାଗ ନେବା ନିମନ୍ତେ ଗାଆଁକୁ ଆସିବାର ଅଛି । ସିଏ ଭାବିଥିଲା ଭାଇ ଆଜି ଆସିଛନ୍ତି ପୈତୃକ ସଂପତ୍ତିରୁ ତାଙ୍କ ଭାଗ ନେବା ପାଇଁ ।କିନ୍ତୁ ଭାଇ ତ ତାକୁ ସେକଥା କିଛି କହିଲେ ନାହିଁ ।

ରାତିରେ ଗାଆଁ ଭାଗବତ ଘରକୁ ଗଲେ ଅସୀମ । ଭାଗବତ ଘରର ଦେଖାଶୁଣା କରୁଥିବା ଲୋକମାନଙ୍କୁ ଡକାଇ ଏକାଠି କଲେ ଓ ସେମାନଙ୍କ ହାତରେ ଦୁଇ ଲକ୍ଷ ଟଙ୍କାର ଗୋଟିଏ ନୋଟ ବିଡ଼ା ଥୋଇଦେଇ କହିଲେ-ଏତକ ମୋ ତରଫରୁ ଭାଗବତ



Digitized by srujanika@gmail.com

ଘର ପାଇଁ ରଖନ୍ତୁ ।

ଗାଆଁ ଲୋକମାନେ ଆଶ୍ଚର୍ଯ୍ୟ ଆଖିରେ ପରସ୍ପରଙ୍କ ମୁହଁକୁ ଚାହିଁଲେ । ସେମାନଙ୍କ ମନରେ ମସ୍ତ ବଡ଼ ପ୍ରଶ୍ନବାଚି । ଦିନେକାଳେ କେବେ ଭାଗବତ ଘରର କୌଣସି କାମରେ ଟଙ୍କାଟିଏ ଦାନ କରି ନଥିବା ଲୋକର ହୃଦୟରେ ଏ ପରିବର୍ତ୍ତନ କେମିତି ସମ୍ଭବ ହେଲା ?

ତାପର ଦିନ ସକାଳ ବସ୍‌ରେ ଅସୀମ ଭୁବନେଶ୍ୱର ଫେରିଆସିଲେ । କିନ୍ତୁ ଏତେବଡ଼ ଘରଟାରେ ଏକୁଟିଆ ରହିବା ଅସୀମଙ୍କ ପକ୍ଷେ କଷ୍ଟକର ହେଲା । ସବୁବେଳେ ଅନୁରାଧାଙ୍କ କଥା ମନେ ପଡ଼ିଲା । ଖାଦ୍ୟ ଭଲ ଲାଗିଲାନାହିଁ । ରାତିରେ ଭଲ ନିଦ ହେଲାନାହିଁ । ରାତି ଦୁଇଟା ପରେ ସେ ଆଉ ଶୋଇ ପାରିଲେ ନାହିଁ ।ଧୀରେ ଧୀରେ ଅସୀମ ଅସୁସ୍ଥ ହୋଇ ପଡ଼ିଲେ । ଡାକ୍ତର ପରୀକ୍ଷା କରି ଦେଖିଲେ ତାଙ୍କର କିଛି ହେଲେ ରୋଗ ନାହିଁ ।

ଅସୀମଙ୍କୁ ଲାଗିଲା ତାଙ୍କ ଜୀବନର କାମ ସରିଯାଇଛି । ଏ ପୃଥିବୀରେ ଆଉ ବଞ୍ଚିବାର ସାମାନ୍ୟତମ ଆଗ୍ରହ ନାହିଁ । ହଠାତ୍ ଦିନେ ସେ ବେହୋସ ହୋଇ ପଡ଼ିଲେ । ତାଙ୍କୁ ପଡ଼ୋଶୀମାନେ ଆମ୍ବୁଲାନ୍ସ ଯୋଗେ ଡାକ୍ତରଖାନା ନେଇଗଲେ । ଡାକ୍ତର ପରୀକ୍ଷା କରି ଦେଖିଲେ ଅସୀମ କୋମାକୁ ଚାଲି ଯାଇଚନ୍ତି । ତାଙ୍କ ପୁଅ ଓ ଝିଅଙ୍କ ପାଖକୁ ଅସୀମଙ୍କ ମୋବାଇଲ ଫୋନ୍‌ରୁ କଣ୍ଟାକ୍ଟ କରି ଜଣାଇ ଦିଆଗଲା ।

ଫୋନ୍ ପାଇ ପୁଅ ବୋହୂ ଓ ଝିଅ ଜ୍ୱାଇଁ ଦୁଇ ଦିନ ଭିତରେ ଡାକ୍ତରଖାନାରେ ପହଞ୍ଚିଲେ ।କିନ୍ତୁ ଅସୀମଙ୍କୁ ଆଉ ଆରୋଗ୍ୟ କରାଇ ପାରିଲେ ନାହିଁ । ତାଙ୍କର ସବୁ ପ୍ରକାର ଚେଷ୍ଟା ବିଫଳ ହେଲା । ସେ କୋମାରୁ ଆଉ ମୁକ୍ତ ହୋଇ ନପାରି ସେଇ କୋମାରେ ଥିବା ଅବସ୍ଥାରେ ଶେଷ ନିଃଶ୍ୱାସ ତ୍ୟାଗକଲେ । ପୁଅ ପ୍ରଜ୍ଞାନ ଆମ୍ବୁଲାନ୍ସ ବୁକ୍ କଲେ ବାପାଙ୍କୁ ସ୍ୱର୍ଗଦ୍ୱାର ନେଇ ତାଙ୍କର ଅନ୍ତେଷ୍ଟିକ୍ରିୟା କରିବା ପାଇଁ । କିନ୍ତୁ ଡାକ୍ତରଖାନାର କର୍ତ୍ତୃପକ୍ଷ କହିଲେ-ଆପଣ ଅସୀମବାବୁଙ୍କ ଶବକୁ ନେଇ ପାରିବେ ନାହିଁ ।

ପୁଅ ପ୍ରଜ୍ଞାନ ଓ ଜ୍ୱାଇଁ ବିଜ୍ଞାନ ପ୍ରଶ୍ନକଲେ –କାହିଁକି ଆମେ ନେଇ ପାରିବୁ ନାହିଁ ? ଆମେ ପହଞ୍ଚିବା ପୂର୍ବରୁ ଆପଣଙ୍କ ଡାକ୍ତରଖାନାରେ ଯଦି ବାପାଙ୍କ ପାଇଁ ଅଧିକ କିଛି ଟଙ୍କା ତାଙ୍କ ଚିକିତ୍ସା ବାବଦକୁ ଆପଣ ଖର୍ଚ୍ଚ କରିଛନ୍ତି କୁହନ୍ତୁ, ଆମେ ତାହା ପେମେଣ୍ଟ କରିବାକୁ ପ୍ରସ୍ତୁତ ଅଛୁ ।

ଡାକ୍ତର କହିଲେ-ନା, ସେ କଥା ନୁହଁ । ତାଙ୍କ ଚିକିତ୍ସା ପାଇଁ ଯାହା ଖର୍ଚ୍ଚ ହୋଇଥିଲା ସେସବୁ ଆପଣ ପେମେଣ୍ଟ କରି ସାରିଛନ୍ତି । କିନ୍ତୁ କଥା ସେଠି ନାହିଁ । ପ୍ରକୃତ କଥା ହେଲା ,ଆପଣଙ୍କ ବାପା ଏଠି ଚିକିତ୍ସିତ ହେବାର ଚାରି ମାସ ପୂର୍ବରୁ ତାଙ୍କର ସଂପୂର୍ଣ୍ଣ ଶରୀରକୁ ଆମ ଡାକ୍ତରଖାନାକୁ ଦାନକରି ଯାଇଛନ୍ତି ।ଏହା ସମାଜର ବହୁ ଲୋକଙ୍କ



Digitized by srujanika@gmail.com

କଲ୍ୟାଣରେ ବିନିଯୋଗ ହେବ । ଏଇ ନିଅନ୍ତୁ ଆପଣଙ୍କ ବାପା ସ୍ୱାକ୍ଷର କରି ଯାଇଥିବା ତାଙ୍କ ଶରୀରର ଦାନପତ୍ର ପଢ଼ନ୍ତୁ ।

ସେହି ଦାନପତ୍ରଟି ବିଜ୍ଞାନ ଓ ପ୍ରଜ୍ଞାନ ପଢ଼ିସାରି ପରସ୍ପରଙ୍କ ମୁହଁକୁ ଚାହିଁଲେ ଓ ନିରବରେ ସେହି ଦାନପତ୍ରଟି ଡାକ୍ତରଙ୍କ ହାତକୁ ବଢ଼ାଇ ଦେଲେ ।ସେମାନଙ୍କ ମୁହଁରେ ଲଜ୍ଜା ଓ ଅପରାଧ ଭାବର ଫେଣ୍ଟା ଫେଣ୍ଟି ଏକ ରଙ୍ଗ ବୋଲି ହୋଇଯାଇଥିଲା । ସେମାନେ ସେ ରଙ୍ଗକୁ ରୁମାଲ ଘଷି ଯେତେ ଛଡ଼ାଇଲେ ବି ତାହା ଆଦୌ ଛାଡୁ ନଥିଲା ।

ଡାକ୍ତର ସେମାନଙ୍କୁ କହିଲେ-ଏଥିରେ ଆପଣମାନେ ଲଜ୍ଜିତ କି ଅପମାନିତ ନହୋଇ ଗର୍ବ କରିବା କଥା । ଆପଣଙ୍କ ବାପା ଯାହା କରିଛନ୍ତି ତାହା ଆମ ସମାଜ ପାଇଁ ଏକ ଉଜ୍ଜ୍ୱଳ ଆଦର୍ଶ କାମ । ଅନ୍ୟମାନେ ତାଙ୍କ ପଦାଙ୍କ ଅନୁସରଣ କଲେ ସମାଜର ଢ଼େର କଲ୍ୟାଣ ହୁଅନ୍ତା । ଆପଣଙ୍କ ବାପାଙ୍କ ଏ ଶରୀରର ବିଭିନ୍ନ ଅଂଶ ବହୁତ ରୋଗୀଙ୍କୁ ଆରୋଗ୍ୟ କରିବାରେ ସହାୟକ ହେବ । ତାଙ୍କ ଚକ୍ଷୁ କେଉଁ ଆଜୀବନ ଅନ୍ଧକୁ ଚକ୍ଷୁଷ୍ମାନ କରିବ ତ ତାଙ୍କ କିଡ଼ିନୀ ଆଉ କେଉଁ କିଡ଼ିନୀ ହରାଇଥିବା ଲୋକକୁ ନବଜୀବନ ଦେବ । ସେହିପରି ତାଙ୍କ ଶରୀରର ଅନ୍ୟାନ୍ୟ ଅଙ୍ଗ ଯଥା-ହୃତପିଣ୍ଡ ଫୁସଫୁସ୍ ଯକୃତ,ଅଗ୍ନାଶୟ,ଚର୍ମ,ହାଡ଼, ମାଂସପେଶୀ,ମଧ୍ୟକାନ, ଧମନୀ ଇତ୍ୟାଦି ଅନ୍ୟ ଲୋକମାନଙ୍କଠାରେ ରୋପଣ କରାଯାଇ ତାଙ୍କୁ ସୁସ୍ଥ କରାଯାଇ ପାରିବ । ତାଙ୍କ ସ୍କେଲିଟନ୍ ଡାକ୍ତରି ପଢୁଥିବା ଛାତ୍ର ଛାତ୍ରୀମାନଙ୍କ ପାଠ ପଢ଼ାରେ ସାହାଯ୍ୟ କରିବ ।ପୃଥିବୀରେ ଯେତେ ପ୍ରକାର ଦାନ ଅଛି ସେ ସବୁଠୁ ଶରୀର ଦାନ ହେଉଛି ସର୍ବଶ୍ରେଷ୍ଠଦାନ । ଆପଣଙ୍କ ବାପା ମୃତ୍ୟୁ ପରେ ବି ଅମର ହୋଇ ରହିବେ ।

ଡାକ୍ତରଙ୍କ କଥା ଶୁଣିବା ପରେ ପ୍ରଜ୍ଞାନ, ଶୈଳଜା, ବିଜ୍ଞାନ ଓ ବିଥିକାଙ୍କ ମୁହଁ ଧୀରେ ଧୀରେ ପ୍ରଶାନ୍ତ ଓ ପ୍ରସନ୍ନ ଦିଶିଲା ।



ଆନନ୍ଦ ଚନ୍ଦ୍ର ପଣ୍ଡି

Digitized by srujanika@gmail.com

# ବାଟ ଅବାଟ

ଚାକିରିରୁ ଅବସର ନେବା ଆଜିକୁ ପାଞ୍ଚ ବର୍ଷ ହୋଇଗଲାଣି ତଥାପି ପ୍ରଫେସର ଅବକାଶ ଜେନାଙ୍କର ମୁଣ୍ଡବାଳ ଗୋଟିଏ ହେଲେ ଝଡ଼ିନାହିଁ । ଅବଶ୍ୟ ଶତକଡ଼ା ସାତ/ଆଠ ଭାଗ ମୁଣ୍ଡବାଳର ରଙ୍ଗ ଧଳା ହୋଇ ଯାଇଛି । କିନ୍ତୁ ଦୂରରୁ ତାଙ୍କ ମୁଣ୍ଡବାଳ କଳା ଦିଶେ । ସିଏ ତାଙ୍କ ଗାଆଁ ସହିତ କିଛି ସଂପର୍କ ରଖି ନାହାଁନ୍ତି । ବାପା ମାଆଙ୍କ ପରଲୋକ ଗମନ ପରେ ଆଉ ଥରଟେ ମଧ୍ୟ ଗାଆଁକୁ ଯାଇ ନାହାଁନ୍ତି କି ଯିବାକୁ ସିଏ ଇଚ୍ଛା କରନ୍ତି ନାହିଁ । ତାଙ୍କୁ ଗାଆଁ କଥା କିଏ ପଚାରିଲେ ଆଭଏଡ଼ କରନ୍ତି । ଗାଆଁରେ ଥିବା ତାଙ୍କର ପୈତୃକ ଘର,ବାରି ଓ ଜମି ବିକ୍ରିକରି ସେ ଟଙ୍କା ବ୍ୟାଙ୍କରେ ଜମା କରି ଦେଇଛନ୍ତି । ତାଙ୍କର ଦୁଇଟା ବିବାହିତା ଭଉଣୀ ଅଛନ୍ତି । ସେମାନେ କି ତାଙ୍କ ପିଲାମାନେ କେହି କେବେ ଭୁବନେଶ୍ୱର ଆସିବାକୁ ଆଗ୍ରହ ପ୍ରକାଶ କରନ୍ତି ନାହିଁ କାରଣ ସେମାନଙ୍କ ପ୍ରତି ପ୍ରଫେସର କି ତାଙ୍କ ପତ୍ନୀ ପ୍ରିୟମ୍ବଦାଙ୍କ ବ୍ୟବହାରରେ ସ୍ନେହ,ଆଦର ନଥାଏ । ପ୍ରଫେସରଙ୍କ ଏକମାତ୍ର ସନ୍ତାନ ଅମ୍ଲାନ ମଧ୍ୟ ତାଙ୍କ ଗାଆଁ ମାଟି ମାଡ଼ିବାର କେବେ ସୁଯୋଗ ପାଇନାହିଁ ।

ଭୁବନେଶ୍ୱରର କେନ୍ଦ୍ରସ୍ଥଳରେ ତାଙ୍କର ତିନି ମହଲା ବିଶିଷ୍ଟ କୋଠାଘର । ଗ୍ରାଉଣ୍ଡ ଫ୍ଲୋର ଆଉ ସେକେଣ୍ଡ ଫ୍ଲୋର୍ ଭଡ଼ା ଦିଆ ଯାଇଛି । ସ୍ତ୍ରୀ ପ୍ରିୟମ୍ବଦାଙ୍କ ସହିତ ସିଏ ଫାଷ୍ଟ ଫ୍ଲୋରରେ ରହୁଛନ୍ତି । ଆଜିକାଲି ସବୁ ଘରମାଲିକ ଫାଷ୍ଟଫ୍ଲୋର୍‌ରେ ରହିବାକୁ ପସନ୍ଦ କରୁଛନ୍ତି । କାରଣ ସେଠାରେ ବିଲେଇ,କୁକୁର,ସାପ,ବେଙ୍ଗ,ମଶା ମାଛି, ଭଣ କି ଚୋର କାହାର ଦୌରାତ୍ମ୍ୟ ନାହିଁ । ଏପରିକି ବୁଲା ବିକାଳି କି ଭିକାରିମାନଙ୍କ ଝମେଲା ବି ନାହିଁ । ରାତିରେ ଝରକା ଖୋଲି ଆରାମରେ ଓ ନିରାପଦରେ ଶୋଇ ହାଉଆ ଖାଇହେବ । ତାଛଡ଼ା ଉପରେ ଆଉ ଗୋଟେ ଫ୍ଲୋର ଅଛି, ତେଣୁ ଖରାଦିନେ ଗରମ ହେବ ନାହିଁ ।

ଅବିନାଶ ଓ ତାଙ୍କ ସ୍ତ୍ରୀ ନିଜ ସ୍ୱାସ୍ଥ୍ୟ ପ୍ରତି ଅତ୍ୟନ୍ତ ଯତ୍ନବାନ । ପ୍ରତିଦିନ ସକାଳେ ଓ ସଂଜେ କିଛି ବାଟ କଲୋନୀ ରାସ୍ତାରେ ଚାଲନ୍ତି । ପ୍ରତିବର୍ଷ ତାଙ୍କ ସ୍ୱାସ୍ଥ୍ୟର ମେଡ଼ିକାଲ ଚେକ୍‌ଅପ୍ କରାନ୍ତି । ପ୍ରଫେସର ଦମ୍ପତି ନିଜ ସ୍ୱାସ୍ଥ୍ୟ ପ୍ରତି ଯେମିତି ଯତ୍ନବାନ ନିଜର ଖର୍ଚ୍ଚବାର୍ଚ୍ଚ ପ୍ରତି ସେମିତି ସଚେତନ ।

ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

କିଛି ଅଯଥା ଖର୍ଚ୍ଚ କରନ୍ତି ନାହିଁ । ମୋବାଇଲ୍ ଫୋନ୍ ରିଚାର୍ଜ୍ଜ କଲାବେଳେ କିଛି ଅଫର୍ ଥିଲେ ଖୋଜି ଖୋଜି ସେସବୁ ଆଭେଲ୍ କରନ୍ତି । ନିଜ କାର୍‌ରେ ପେଟ୍ରୋଲ ପକାଇବା ବେଳେ ମଧ୍ୟ କାର୍ଡ଼କରି ସେଥିରେ ଥିବା ଅଫର୍ ଉପଭୋଗ କରନ୍ତି ।ଏକୁଟିଆ କୁଆଡ଼େ ପାଖଆଖକୁ ଗଲେ ବାଇକ୍‌ରେ ଯାଆନ୍ତି । ଡ୍ରେସ୍, ଶାଢ଼ି କି ଗହଣା କିଣିବା ବେଳେ କେଉଁଠି ରିହାତି ମିଳୁଛି ଆଉ କେଉଁଠି ସେଲ୍ ପଡ଼ିଛି ସେସବୁ ହିସାବ କରି ଦେଖନ୍ତି ।

ମୋଟାମୋଟି ପ୍ରଫେସର ଜେନା ଓ ତାଙ୍କ ପତ୍ନୀ ପ୍ରିୟମ୍ବଦା ଦୁହେଁ ଖୁବ୍ ହିସାବୀ ଓ ମିତବ୍ୟୟୀ । କିଛି ଅଯଥା ଖର୍ଚ୍ଚ ନିଜେ କରନ୍ତି ନାହିଁ କି କିଛି ଜିନିଷ ଅଯଥାରେ ନଷ୍ଟ ହେବାକୁ ଦିଅନ୍ତି ନାହିଁ । ପ୍ରତିଦିନ ନିଜ ଖର୍ଚ୍ଚର ହିସାବ ଗୋଟିଏ ଡ଼ାଇରିରେ ଲେଖନ୍ତି । କେଉଁ ମାସରେ କେଉଁ ହେଡ଼ରେ ଅଧିକ ଖର୍ଚ୍ଚ ହୋଇଯାଇଥିଲେ ପରବର୍ତ୍ତୀ ମାସରେ ତାକୁ ନିୟନ୍ତ୍ରଣରେ ରଖିବାକୁ ଉଦ୍ୟମ କରନ୍ତି ।

କିନ୍ତୁ ତାଙ୍କର ଏକମାତ୍ର ସନ୍ତାନ ଅମ୍ଳାନ ଏତେଟା ହିସାବ କରି ଚଳିବାଟାକୁ ନାପସନ୍ଦ କରେ । ସିଏ କହେ ସବୁକଥାକୁ ଏତେ ହିସାବ କରି ଚଳିଲେ ଜୀବନଟା ଜଟିଳ ଗଣିତ ପରି ବୋରିଙ୍ଗ୍ ଲାଗିବ । ବଞ୍ଚିବାର ସବୁ ମଜା ହିସାବ ଭିତରେ ହଜିଯିବ,ଯେତେ ଖୋଜିଲେ ବି ଆଉ ମିଳିବ ନାହିଁ ।ଏତେ ହିସାବ କିତାପ ଭିତରେ ମନ ଓ ଜୀବନ ଛନ୍ଦି ହୋଇଯିବ ।

ଦୁଇ ଦିନ ହେଲା ଅମ୍ଳାନ ମୁମ୍ବାଇରୁ ଭୁବନେଶ୍ୱର ଆସିଛି । ଅମ୍ଳାନ ମୁମ୍ବାଇର ଗୋଟେ ମଲ୍ଟିନେସନାଲ୍ କଂପାନୀରେ ସଫ୍ଟ ଓୟାର ଇଂଜିନିୟର । ଖୁବ୍ ବେପରୁଆ ଖର୍ଚ୍ଚ ତାର । ବାପା ମାଆଙ୍କ ପାଖକୁ କେବେହେଲେ କିଛି ଟଙ୍କା ପଠାଏ ନାହିଁ । ଘରକୁ ଆସିଲେ ବାପାଙ୍କ ପାଇଁ କିମ୍ବା ମାଆଙ୍କ ପାଇଁ କେବେ କେବେ କିଛି ଗିଫ୍ଟ ଆଣେ , ଆଉ କେବେ ଖାଲି ଖାଲି ଆସେ ।

ଦୁଇ ଦିନ ହେଲା ଅମ୍ଳାନ ଭୁବନେଶ୍ୱର ଆସିଛି । ରାତି ଗୋଟାଏ ଦୁଇଟା ପର୍ଯ୍ୟନ୍ତ ଲ୍ୟାପ୍‌ଟପ୍ ଆଉ ମୋବାଇଲ ଫୋନ୍ ଧରି କ'ଣ କରୁଛି, ସକାଳ ଦଶଟା ଯାଏ ଶୋଇ ରହୁଛି । ନିତ୍ୟକର୍ମ କରିବାରେ ଠିକ୍ ଠିକଣା ନାହିଁ । କେବେ ଦିନ ବାରଟାରେ ଦାନ୍ତ ଘଷିଲାଣି ତ କେବେ ଚାରିଟା ବେଳେ ଗାଧୋଇଲାଣି । ପଚାରିଲେ କହୁଛି ବିଳମ୍ବ ରାତି ଯାଏ ସିଏ ବାକିଆ ଅଫିସ୍ କାମ କରୁଛି, ଫେସ୍‌ବୁକ୍ ଦେଖୁଛି ଆଉ ମେଲ୍ ଚେକ୍ କରୁଛି । ପ୍ରିୟମ୍ବଦାଙ୍କୁ କି ଅବକାଶଙ୍କୁ ଏସବୁ ଭଲ ଲାଗୁନାହିଁ । ରାତି ଦଶଟା କି ଏଗାରଟା ଯାଏ



Digitized by srujanika@gmail.com

ଏସବୁ କାମ କରି ସକାଳ ଛଅଟାରେ ଉଠି ବାକି କାମ ଅକ୍ଳେଶରେ ଓ ଆରାମରେ କରି ହୁଅନ୍ତା । ସକାଳର ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟାତ୍ୟାଗ କରି ବାହାରେ ଘେରାଏ ବୁଲି ଆସିଲେ କି ବାହାରେ ନରମ ଖରାରେ ପନ୍ଦର ମିନିଟ ବସିଗଲେ ମନ ଓ ଦେହ କେମିତି ଖୁସି ଖୁସିରେ ଭରିଯାଏ ସେ ଅନୁଭବ ଏମାନଙ୍କୁ ବୁଝାଇବା ସହଜ ନୁହେଁ । ରାତି ଦଶଟାରେ ଶୋଇ ସକାଳ ଛଅଟାରେ ଶଯ୍ୟା ତ୍ୟାଗକଲେ ଦିନଟା କେତେ ଭଲ ଲାଗେ ଆଉ ବଡ଼ ଲାଗେ ସେକଥା ଅନୁଭବୀ ହିଁ ଜାଣେ । ପ୍ରିୟମ୍ବଦା ପୁଅକୁ ଏକଥା ବୁଝାଇବାକୁ ଚେଷ୍ଟା କରି ଅନେକ ବାର ବିଫଳ ହୋଇଛନ୍ତି । ଅମ୍ଳାନ ଓଲଟା ଯୁକ୍ତି କରିଛି -ତୁମ ଲାଇଫ୍ ଷ୍ଟାଇଲ୍ ଆମ ଉପରେ କାହିଁକି ଲଦିବାକୁ ଚେଷ୍ଟା କରୁଛ ମମି ? ମେଟ୍ରୋସିଟିର ଲାଇଫ୍ ଷ୍ଟାଇଲ୍ ଭୁବନେଶ୍ୱର ପରି ଛୋଟ ଛୋଟ ସହରର ଲାଇଫ୍ ଷ୍ଟାଇଲ୍ ଠାରୁ ଖୁବ୍ ଅଲଗା । ଗାଆଁର ଜୀବନ ଶୈଳୀକୁ ଯେମିତି ଭୁବନେଶ୍ୱରରେ ଆପଣାଇ ହେବ ନାହିଁ, ଭୁବନେଶ୍ୱରର ଜୀବନ ଶୈଳୀକୁ ସେମିତି ମୁମ୍ବେଇ ପରି ମେଟ୍ରୋସିଟିରେ ଆଡ଼ପ୍ଟ କରି ହେବ ନାହିଁ । ଗାଆଁରେ ରାତି ଆଠଟା ବେଳକୁ ଆଲୁଅ ଲିଭାଇ ସମସ୍ତେ ନିଦ ଯାଆନ୍ତି । ଭୁବନେଶ୍ୱରରେ କ'ଣ ସେମିତି ହୁଏ ନା ହୋଇ ପାରିବ ?

ଅମ୍ଳାନର ଉତ୍ତର ପ୍ରିୟମ୍ବଦା କି ଅବକାଶ କାହାକୁ ହେଲେ ସନ୍ତୁଷ୍ଟ କରି ପାରେନାହିଁ । ମେଟ୍ରୋସିଟିର ଲାଇଫ୍ ଷ୍ଟାଇଲ୍ ନାଆଁରେ ବିଶୃଙ୍ଖଳାକୁ ପ୍ରଶ୍ରୟ ଦେବାକୁ ତାଙ୍କ ମନ କି ବିବେକ ପ୍ରସ୍ତୁତ ନୁହଁ ।ଏତେରାତି ଯାଏ ଉଜାଗର ରହିବା ପଛରେ ଯେ ଅଫିସ୍ କାମ ଏକ ବାହାନା ଏକଥା ବୁଝିବାରେ ଅବକାଶଙ୍କୁ କିଛି କଷ୍ଟ ହୋଇ ନଥିଲା । ସିଏ ଜଣେ ପ୍ରଫେସର ଭାବେ ଅନେକ ପିଲାଙ୍କୁ ଶୃଙ୍ଖଳା ଶିଖାଇ ବାଟକୁ ଆଣିଥିବା ବେଳେ ତାଙ୍କ ପୁଅ ତାଙ୍କ ଆଖି ଆଗରେ ବିଗିଡ଼ି ଯାଉଛି, ଅଥଚ ସିଏ କିଛି କରି ପାରୁ ନାହାଁନ୍ତି ।

ଦିନେ ମଧ୍ୟାହ୍ନ ଭୋଜନ ଟେବୁଲ୍ ପାଖରେ ଅବକାଶ ମୁହଁ ଖୋଲି ପୁଅକୁ କହିଲେ ପ୍ରତିମାସରେ କିଛି କିଛି ଟଙ୍କା ତାଙ୍କ ଆକାଉଣ୍ଟକୁ ଟ୍ରାସଫର୍ କରି ଦେବା ପାଇଁ । ଏକଥାରେ ଅମ୍ଳାନ କରକ୍ତି ପ୍ରକାଶ କରି କହିଲା-ମୋ ଦ୍ୱାରା ଏ କାମ ହୋଇ ପାରିବ ନାହିଁ । କିଏ ପ୍ରତିମାସରେ ବ୍ୟାଙ୍କକୁ ଯାଇ ତୁମ ଆକାଉଣ୍ଟକୁ ଟଙ୍କା ଟ୍ରାନ୍ସଫର କରିବ ? ଅଫିସ୍ କାମରେ ମୁଁ ଓଭର ବିଜି । ଏସବୁ ଫାଲତୁ କାମ କରିବାକୁ ମୋ ପାଖରେ ସମୟ ନାହିଁ କି ମୋର ମାନସିକ ପ୍ରସ୍ତୁତି ନାହିଁ । ତୁମ ପାଖରେ କ'ଣ ଟଙ୍କାର ଅଭାବ ଅଛି ? ତୁମେ ପ୍ରତି ମାସରେ ପଚସ୍ତରି ହଜାର ଟଙ୍କା ପେନସନ୍ ପାଉଛ । ଦୁଇଟା ଫ୍ଲୋରର ଘରଭଡ଼ା ମଧ୍ୟ ମିଳୁଚି । ତାଛଡ଼ା ୩୫ କି ୪୦ଲକ୍ଷ ଟଙ୍କାର ବ୍ୟାଙ୍କ ବାଲାନ୍ସ ତୁମର ଅଛି ।



Digitized by srujanika@gmail.com

ଅବକାଶ କିଛି ସମୟ ନିରବ ରହି ପୁଣି ପଚାରିଲେ-ତୋର ବାର୍ଷିକ ଦରମା ପ୍ୟାକେଜ୍ ୧୫ଲକ୍ଷ ଟଙ୍କା ।ଏତେ ଟଙ୍କା ଦରମା ପାଇ କ'ଣ କରୁଛୁ ? ତୁ ତିନି ବର୍ଷହେଲା ଚାକିରି କଲୁଣ୍ଣି, ତୋ ଆକାଉଣ୍ଟରେ କେତେ ଟଙ୍କା ସଂଚୟ ଅଛି ?

ଅମ୍ଳାନ ଏଥର ଅତ୍ୟନ୍ତ ଉତ୍ୟକ୍ତ ହୋଇ ଚିତ୍କାର କରି କହିଲା-ତୁମେ ତୁମ ଦରମା ଟଙ୍କା ତୁମ ବାପାଙ୍କ ପାଖକୁ କ'ଣ ପ୍ରତିମାସରେ ମନିଅର୍ଡ଼ର କରି ପଠାଉ ଥିଲ ନା ଘରେ ନେଇ ବାପାଙ୍କ ହାତରେ ଦେଇ ଆସୁଥିଲ ? ସିଏ ବିଚରା ବିଲରେ ଝାଳବୁହା ପରିଶ୍ରମ କରି ପେଟରୁ କାଟି ତୁମକୁ କଟକ ଭୁବନେଶ୍ୱରରେ ପାଠ ପଢ଼ାଇ ଥିଲେ । ସିଏ ତୁମକୁ ନେଇ କେତେ ସ୍ୱପ୍ନ ଦେଖିଥିବେ । ଗାଆଁରେ କୋଠାଘର ତୋଳିବେ କି ଅଧିକ ଜମିବାଡ଼ି କିଣିବେ ।ତୁମେ କ'ଣ ତାଙ୍କ ସ୍ୱପ୍ନକୁ ସାକାର କରିଛ ? ତୁମେ ତୁମ ଦରମା ଟଙ୍କାର ହିସାବ କେବେ ତାଙ୍କୁ ଦେଇଥିଲ ? ନାଇଁ କେବେ ଦେଇନା । ଭିକାରିକୁ ଭିକ ଦେବାପରି ଯାହା ତାଙ୍କୁ ଦେଇଛ ସେତିକି ନେଇ ସିଏ ମୁହଁବୁଜି ଗାଆଁରେ ରହୁଥିଲେ । ସିଏ କେବେ ଭୁବନେଶ୍ୱର ଆସି ତୁମଠୁ କିଛି ଦାବି କରି ନାହାଁନ୍ତି କି ପ୍ରତିମାସରେ ପାଞ୍ଚ କି ଦଶ ହଜାର ଟଙ୍କା ତାଙ୍କ ପାଖକୁ ମନିଅର୍ଡ଼ର କରିବାକୁ କହି ନାହାଁନ୍ତି ।

ପ୍ରିୟମ୍ବାଦା ପୁଅର କଟୂକ୍ତି ସମ୍ଭାଳି ନପାରି ମୁହଁ ଖୋଲିଲେ-ତୁ କାଲିକା ପିଲା । ତୁ ସେ ସବୁ ବିଷୟରେ କେତେ ଜାଣିଛୁ ? ବଡ଼ମାନଙ୍କୁ କ'ଣ ଏମିତି କଥା କୁହନ୍ତି ? ତୋ ଭଲ ପାଇଁ ସିଏ କହୁଛନ୍ତି । ତୁ ଏତେ ରାଗୁଛୁ କ'ଣ ପାଇଁ ? ତୋ ଡାଡ଼ି ତାଙ୍କ ଘରପାଇଁ କ'ଣ ନକରିଛନ୍ତି ? ତାଙ୍କ ଭଉଣୀମାନଙ୍କର ବାହାଘର ପାଇଁ ଯେତେ ଟଙ୍କା ଦରକାର ହେଲା ସବୁ ସିଏ ଦେଇଛନ୍ତି । ତାଙ୍କ ବାପା ଓ ମାଆଙ୍କ ଚିକିତ୍ସା ଆଉ ତାଙ୍କ ଶୁଦ୍ଧିରେ ଯେତେଯାହା ଖର୍ଚ୍ଚହେଲା ସବୁ ତୋ ଡ଼ାଡ଼ି କରିଛନ୍ତି ।

ଅମ୍ଳାନ ଯୁକ୍ତିକଲା-ସେ ପରିସ୍ଥିତି ଭିନ୍ନଥିଲା । ଜେଜେଙ୍କର ଆୟର ସୋର୍ସ କିଛି ନଥିଲା । ସେଥିପାଇଁ ସେସବୁ କରିବାକୁ ଡ଼ାଡ଼ି ବାଧ୍ୟ ହୋଇଥିବେ । ତାଛଡ଼ା ଜେଜେ କି ଜେଜେମା ବଞ୍ଚିଥିଲେ ସିଏ କହିଥାନ୍ତେ ତାଙ୍କ ଝିଅ ବାହାଘରକୁ କେତେ ଟଙ୍କା ମୋ ଡ଼ାଡ଼ି ଦେଇଥିଲେ ଆଉ ଜେଜେ କେତେ ଏକର ଜମି ବିକ୍ରିକରି ତାଙ୍କ ଝିଅଙ୍କ ବାହାଘରର ଅବଶିଷ୍ଟ ଖର୍ଚ୍ଚ ଉଠାଇଥିଲେ ? ଜେଜେଙ୍କ ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ଡ଼ାଡ଼ି ଗାଆଁରେ ଥିବା ପୈତୃକ ଘର, ବାରି ଆଉ ଜମି ବିକ୍ରିକରି ତାଙ୍କ ବ୍ୟାଙ୍କ ବାଲାନ୍ସ ବୃଦ୍ଧିକଲେ । ଗାଆଁରୁ ଜେଜେବାପା, ଜେଜେମାଙ୍କ ନାମ ନିଶାଣ ସବୁ ପୋଛି ଲିଭାଇ ଦେଲେ । ସବୁ ଦିନ ପାଇଁ ଆମ ଗାଆଁ ରାସ୍ତା ଆମ ପାଇଁ ବନ୍ଦ୍ ହୋଇଗଲା । ଆମର ଗାଆଁ ଅଛି କିନ୍ତୁ



Digitized by srujanika@gmail.com

ଆମେ ମୁଣ୍ଡ ଗୁଞ୍ଜିବା ପାଇଁ ସେ ଗାଆଁରେ ଆମର ଘର ନାହିଁ କି ଗୋଡ଼ ଥୋଇବା ପାଇଁ ଆମ ନିଜର ମାଟି ଅରାଏ ନାହିଁ ।

ଢେଙ୍କେବାପା ବଞ୍ଚିଥିଲେ କହିଥାନ୍ତେ ସିଏ କେତେ ସନ୍ତୁଷ୍ଟ ଥିଲେ ତାଙ୍କ ପୁଅବୋହୂଙ୍କ ଉପରେ । ତାଙ୍କ ପୁଅଠୁ ସିଏ କ'ଣ ଆଶା କରୁଥିଲେ ଆଉ କେତେ କ'ଣ ପାଇଲେ ?

ଅବକାଶ ପୁଅକୁ ବୁଝାଇବା ସ୍ୱରରେ କହିଲେ-ଏ ସବୁ ବାଜେ କଥା ବନ୍ଦ୍‌କର । ଆମେ ତୋର ବାପା ମାଆ । ଆମେ ତୋ ଭବିଷ୍ୟତ ମଙ୍ଗଳ କଥା ଚିନ୍ତା କରୁଛୁ । ଏବେଠୁ ତୁ କିଛି କିଛି ସଂଚୟ କରି ଶିଖିବା ଉଚିତ । ମୁଁ ଭାବୁଛି ଭୁବନେଶ୍ୱରରେ କି ମୁମ୍ୱାଇରେ ତୋ ପାଇଁ ଗୋଟେ ଫ୍ଲାଟ କିଣିବା ପାଇଁ । ସେଥି ପାଇଁ ମୁଁ କହୁଥିଲି..

ଅବକାଶଙ୍କୁ କଥା ଶେଷ କରିବାକୁ ନଦେଇ ଅମ୍ଳାନ କହିଲା- ବାସ୍, ବହୁତ ହୋଇଗଲା ଡାଡ଼ି ! ଚାକିରି ଜୀବନ ସାରା ଛାତ୍ର ଛାତ୍ରୀମାନଙ୍କୁ ଉପଦେଶ ଦେଇ ଦେଇ ତୁମର ସେଇ ମାଷ୍ଟ୍ରିଆ ଦୋଷଟା ଆଜିଯାଏ ତୁମଠି ରହିଯାଇଛି । ସେ ସବୁ ବନ୍ଦ୍‌କର , ମୁଁ ଆଉ ଛାତ୍ର ନୁହଁ । ମୁଁ ସେ ସ୍ତର ପାରିହୋଇ ଚାକିରି କଲିଣି । ମୋ ଜୀବନକୁ ମୋ ପସନ୍ଦ ଅନୁସାରେ ଜିଇବାକୁ ଦିଅ । ତୁମେ ଅବସର ଗ୍ରହଣ କରିବାକୁ ଦୁଇ ତିନି ବର୍ଷଥିଲା ଭୁବନେଶ୍ୱରରେ ଘର ତିଆରି କଲ । ମୋର ଚାକିରି ଦୁଇ ତିନି ବର୍ଷ ନପୂରୁଣୁ କାହିଁକି ଘର କିଣିବା ପରି ଘୋର ସମସ୍ୟା ଭିତରକୁ ମୋତେ ଠେଲି ଦେବାକୁ ଉଦ୍ୟମ କରୁଛ ? ତାଛଡ଼ା ଆମର ଭୁବନେଶ୍ୱରରେ ତିନି ମହଲା ବିଶିଷ୍ଟ ଏତେବଡ଼ ଆଉ ଏତେ ସୁନ୍ଦର ବିଲ୍‌ଡ଼ିଙ୍ଗ ଥାଉ ଥାଉ ଆଉ ଗୋଟେ ଘର କ'ଣ ଦରକାର ?

ପ୍ରିୟମ୍ୱଦା ଅମ୍ଳାନର ଦୃଷ୍ଟିକୁ ଅନ୍ୟ ଆଡ଼କୁ ଆକର୍ଷିତ କରିବା ପାଇଁ କହିଲେ- ଆମ ଏଇ କଲୋନୀରେ ଥିବା ସଂଜୟବାବୁଙ୍କର ଭାରି ସୁନ୍ଦରୀ ଝିଅଟିଏ ଅଛି । ସିଏ କାଲକାଟାରେ ଫେସନ ଡ଼ିଜାଇନ ପଢୁଛି । ଝିଅଟି ଦେଖିବାକୁ ସୁନ୍ଦର ଯେମିତି ଭଦ୍ର, ନମ୍ର ସେମିତି । ରଙ୍ଗ ଗୋରା, ପତଳୀ ଡ଼େଙ୍ଗୀ । ଭାରି ଷ୍ଟାଇଲିଷ୍ଟ ଝିଅ । ତୋ ଡ଼ାଡ଼ି ଆଉ ମୋର ଭାରି ପସନ୍ଦ । କହିବୁ ଯଦି ତାର ଫଟୋ ଆଉ ବାୟୋଡ଼ାଟା ମଗାଇବି ।

ଅମ୍ଳାନ କହିଲା-ତୁମର କ'ଣ ଆଉ କିଛି କଥା ନାହିଁ ? କେବଳ ଏଇ ସବୁ କଥା । ମୁଁ ଏତେ ଶୀଘ୍ର ବାହାହୋଇ ପାରିବି ନାହିଁ । କ୍ୟାରିଅର ଗଢ଼ିବା ଟାଇମ ଏଇଟା । ମିନିମମ୍ ଆଉ ତିନି ଚାରି ବର୍ଷ ଯାଏ ମୋ ବାହାଘର କଥା ତୁମେ ଭୁଲିଯାଅ ।

ପ୍ରିୟମ୍ୱଦା ପ୍ରଶ୍ନକଲେ-ତୋର ଯଦି ସେଠି କିଏ ଗାର୍ଲଫ୍ରେଣ୍ଡ ଅଛି ଆମକୁ କହ ।



Digitized by srujanika@gmail.com

ଆମେ ଅଯଥାରେ କାହିଁକି ସେ ବିଷୟରେ ମୁଣ୍ଡ ଖେଳେଇବୁ ? ଆଜିକାଲି ତ ସେ ସବୁ ଚାଲିଲାଣି । ଲାଜ କରିବାରେ କ'ଣ ଅଛି ? କେବଳ ମୁସଲମାନ କି ଖ୍ରିଷ୍ଟୀୟାନ ଝିଅ ନହେଲେ ହେଲା ।

ଅମ୍ଳାନ ବିରକ୍ତି ପ୍ରକାଶ କରି କହିଲା-ପ୍ଲିଜ୍, ସେ ସବୁ ବାଜେକଥା ବନ୍ଦ୍‌କର ମମି ! ମୋ ବାହାଘର କଥା ମୋ ଉପରେ ଛାଡ଼ି ଦିଅ । ସେ ସମୟ ଆସିଲେ ମୁଁ ତୁମକୁ ଜଣାଇବି ।

ସେଦିନ କଥାବାର୍ତ୍ତା ସେଇଠି ଶେଷହେଲା । ଅମ୍ଳାନ ପନ୍ଦର ଦିନ ଛୁଟିନେଇ ଘରକୁ ଆସିଥିଲା ଡାଡ଼ି,ମମିଙ୍କ ସହିତ ଖୁସି ମନାଇବା ପାଇଁ । କିନ୍ତୁ ମାତ୍ର ଚାରିଦିନ ପରେ ଅଫିସ୍ କାମର ଆଳ ଦେଖାଇ ଫ୍ଲାଇଟରେ ମୁମ୍ବାଇ ଫେରିଗଲା । ଡ଼ାଡ଼ି କି ମମି କାହାରି ଅନୁରୋଧ ରଖିଲା ନାହିଁ ।

ଅମ୍ଳାନ ଏମିତି ଅଚାନକ ମୁମ୍ବାଇ ଫେରିଯିବାଟା ଅବକାଶ ଓ ପ୍ରିୟମ୍ବଦାଙ୍କୁ ଖୁବ୍ ଆଘାତ ଦେଲା । ତାପର ଦିନ ମର୍ଣିଙ୍ଗଓ୍ବାକ ବେଳେ ଅବକାଶ ତାଙ୍କ ବନ୍ଧୁ ନିରଂଜନଙ୍କୁ ପ୍ରସଙ୍ଗକ୍ରମେ ତାଙ୍କ ପୁଅ ଅମ୍ଳାନର ମନୋବୃତ୍ତି ସଂପର୍କରେ ଜଣାଇଲେ । ନିରଂଜନ ଅବସରପ୍ରାପ୍ତ ମୁଖ୍ୟଯନ୍ତ୍ରୀ । ସିଏ କହିଲେ-କେବଳ ଆପଣଙ୍କ ପୁଅ ଅମ୍ଳାନ ନୁହଁ ଏବେ ସବୁ ଶିକ୍ଷିତ ଯୁବକଙ୍କ କଥା ଆଉ କାମ ସମାନ । ଆମ ଦୃଷ୍ଟିଭଙ୍ଗୀ ଆଉ ଜୀବନଶୈଳୀଠୁ ସେମାନଙ୍କ ଦୃଷ୍ଟିଭଙ୍ଗୀ ଓ ଜୀବନଶୈଳୀ ଖୁବ୍ ନିଆରା । ସେମାନେ ଆମକୁ ବୃଦ୍ଧ, ପୁରାତନପନ୍ଥୀ, ପରଂପରାବାଦୀ ବୋଲି ଭାବୁଛନ୍ତି । ସେମାନେ ଆଗକୁ କି ପଛକୁ ନଚାହିଁ କେବଳ ଆଗକୁ ଆଗକୁ ମାଡ଼ି ଚାଲିବାରେ ଆନନ୍ଦ ପାଆନ୍ତି । ସେମାନଙ୍କ ମତରେ ପରିବର୍ତ୍ତନ ସହିତ ପାଦ ମିଳାଇ ଆଗକୁ ଆଗକୁ ଚାଲିବା ହିଁ ଜୀବନ । ଗୋଟେ ଇଣ୍ଟେରେଷ୍ଟିଙ୍ଗ୍ କଥା ଶୁଣିବେ ଅବକାଶବାବୁ ?

ଅବକାଶ ଉତ୍କଣ୍ଠାର ସହ କହିଲେ –କୁହନ୍ତୁନା ?

ନିରଂଜନ କହିଲେ- ମୋ ଚାକିରିର ଶେଷବର୍ଷ । ଆମ ବିଭାଗରେ କିଛି ଯୁବ ଇଂଜିନିୟରଙ୍କୁ କଣ୍ଟାକଚୁଆଲ ବେସିସରେ ନିଯୁକ୍ତି ଦେବା ପାଇଁ ଆମେ ଇଣ୍ଟରଭିୟୁ କରିଥିଲୁ । ପୋଷ୍ଟଥିଲା ସାତଟା କିନ୍ତୁ କ୍ୟାଣ୍ଡିଡ଼େଟ ଥିଲେ ଶହେ । ଆମ ସଂସ୍କୃତି, ପରଂପରା ଆଉ ଆମ ଐତିହ୍ୟ ବିଷୟରେ ସେମାନଙ୍କ ସାଧାରଣଜ୍ଞାନ ପରୀକ୍ଷା କରିବା ପାଇଁ ଆମେ କିଛି ପ୍ରଶ୍ନ ତାଙ୍କୁ ପଚାରିଥିଲୁ । ସେ ପ୍ରଶ୍ନଗୁଡ଼ିକ ଥିଲା- ଆମ ରାଜ୍ୟରେ ରଜ, ଦଶହରା, ଦୋଳପର୍ବ କେଉଁ ମାସରେ ପାଳିତ ହୁଏ ? ଓଡ଼ିଆ ବର୍ଣ୍ଣବୋଧ, ଭାଗବତ, ମହାଭାରତ ଓ



Digitized by srujanika@gmail.com

ରାମାୟଣ କିଏ ରଚନା କରିଥିଲେ ? ଫକୀର ମୋହନ ସେନାପତି, ପଠାଣି ସାମନ୍ତ,ଉପେନ୍ଦ୍ର ଭଞ୍ଜ, ହରେକୃଷ୍ଣ ମହତାବ ଓ ଗୋପବନ୍ଧୁ ଦାସ କେଉଁ କେଉଁ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲେ ? ଓଡ଼ିଶାର ଜିଲ୍ଲା ସଂଖ୍ୟା ଓ ସେମାନଙ୍କ ନାମ କ'ଣ ? ଏ ସବୁ ପ୍ରଶ୍ନର କିମ୍ଭୁତ କିମ୍ଭାକାର ଉତ୍ତର ସେମାନେ ଦେଇଥିଲେ ଯାହା ଶୁଣି ଆମେ ବିସ୍ମିତ ହୋଇ ଯାଇଥିଲୁ ।

ଅବକାଶ ହସିଦେଇ କହିଲେ-ମୁଁ ମୋ ଚାକିରି କାଳ ମଧ୍ୟରେ ଅନେକ ଛାତ୍ରଛାତ୍ରୀଙ୍କ ସଂସ୍ପର୍ଶରେ ଆସିଛି । ସେମାନଙ୍କୁ ଖୁବ୍ ନିକଟରୁ ଦେଖିଛି । ସେମାନେ ବିଦେଶ କଥା ଜାଣିବାକୁ ଯେତେ ଆଗ୍ରହୀ ନିଜ ମାଟି, ନିଜ ସଂସ୍କୃତି କି ନିଜ ଐତିହ୍ୟ କଥା ଜାଣିବାକୁ ସେତିକି ଅନାଗ୍ରହୀ । ଅନେକ ପିଲା ନିଜ ଜେଜେବାପା , ଜେଜେମାଆଙ୍କ ନାଆଁ କହିବାକୁ ଅସମର୍ଥ । ସେକଥା ଛାଡ଼ନ୍ତୁ ନିରଂଜନବାବୁ ! ଆମ ପରି ବାପମାଆଙ୍କର ସମସ୍ୟା ହେଉଛି ଆମ ରାଜ୍ୟରେ ଆମ ପିଲାମାନଙ୍କ ପାଇଁ ଉପଯୁକ୍ତ କର୍ମସଂସ୍ଥାନ ନଥିବାରୁ ସେମାନେ ବାଧ୍ୟ ହେଉଛନ୍ତି ଆମଠୁ ଦୂରରେ ମୁମ୍ବାଇ, ଦିଲ୍ଲୀ, ବାଙ୍ଗାଲୋର ପରି ମେଟ୍ରୋସିଟିରେ ଚାକିରି କରିବା ପାଇଁ । ସେମାନେ ସେଠି କେମିତି ଚଳୁଛନ୍ତି, କ'ଣ କରୁଛନ୍ତି ଆମେ ସେ ବିଷୟରେ ସଂପୂର୍ଣ୍ଣ ଅନ୍ଧାରରେ ରହୁଛୁ । ସେଇଥି ପାଇଁ ଆମର ଭୟ ହେଉଛି ସେମାନେ ଅବାଟରେ ଯାଉ ନାହାଁନ୍ତି ତ ?

ନିରଂଜନ ସବୁ ଶୁଣିବା ପରେ କହିଲେ-ମୋ ମତରେ ଏ ବୟସରେ ଅତ୍ୟଧିକ ସ୍ୱାଧୀନତା ଓ ଆର୍ଥିକ ସ୍ୱଚ୍ଛଳତା କିଛି ଯୁବକଙ୍କୁ ଅବାଟକୁ ନେଇଯାଏ । କେତେକ ଅତ୍ୟଧିକ ମଦ୍ୟପାନ କରି ଆଉ କେତେକ କୁସଙ୍ଗରେ ପଡ଼ି ଅବାଟକୁ ପାଦ ବଢ଼ାନ୍ତି । ଏମିତି ଅନେକ ନଜିର ଅଛି । ସମୟ ଥାଉଁ ଥାଉଁ କିଛି ନକଲେ ପଛରେ କେବଳ ଅନୁତାପ କରିବା ହିଁ ସାରହେବ । ପ୍ରଥମେ ବୁଝନ୍ତୁ ତାର ସେଠି କିଏ ଗାର୍ଲଫ୍ରେଣ୍ଡ ଅଛି । ମୋ ଜାଣିବାରେ ଆଜିକାଲିକା ଯୁବକମାନଙ୍କର କେହି ଫ୍ରେଣ୍ଡ ନଥାଇ ପାରନ୍ତି , ଗାର୍ଲଫ୍ରେଣ୍ଡ ନିଶ୍ଚୟ ଥିବେ ।

ବନ୍ଧୁ ନିରଂଜନଙ୍କ କଥାଟା ଅବକାଶଙ୍କ ମନକୁ ଅଧିକ ଭାରାକ୍ରାନ୍ତ କଲା । ସେ ଦିନସାରା ସିଏ ପ୍ରିୟମ୍ବଦାଙ୍କ ସହିତ ଏବିଷୟରେ ଆଲୋଚନା କଲେ । ପୁଅ ସଂପୂର୍ଣ୍ଣ ବିଗିଡ଼ି ଯିବା ପୂର୍ବରୁ ତାକୁ ବାଟକୁ ଆଣିବାକୁ ପଡ଼ିବ । ଏକଥାରେ ଦୁହେଁ ଏକମତ ହେଲେ । ତେବେ କେମିତି ଅମ୍ଳାନକୁ ବାଟକୁ ଆଣିବେ ? ସିଏ କାହାରି କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ ।

ପ୍ରିୟମ୍ବଦା ବହୁତ ଭାବିଚିନ୍ତି କହିଲେ- ସିଏ ମୁମ୍ବାଇରେ କ'ଣ କରୁଛି, କେମିତି ଚଳୁଛି, କାହା ସାଙ୍ଗରେ ମିଶୁଛି ଆଉ କେମିତିଆ ପିଲାଙ୍କ ସହିତ ବନ୍ଧୁତା କରୁଛି ସେକଥା



Digitized by srujanika@gmail.com

ଆମେ ଭୁବନେଶ୍ୱରରେ ଥାଇ ଜାଣିବା ସମ୍ଭବ ନୁହଁ । ସମସ୍ତ କଥା ଜାଣି ତାକୁ ସୁଧାରିବାକୁ ହେଲେ ଆମକୁ କିଛି ଦିନ ତା'ପାଖରେ ରହିବାକୁ ହେବ ।

ଅବକାଶଙ୍କ ମନକୁ ପ୍ରିୟମ୍ବଦାଙ୍କ କଥାଟା ପାଇଲା । ସେ କହିଲେ- ତୁମେ ଠିକ୍ କଥା କହିଚ ପ୍ରିୟମ୍ବଦା ! କିନ୍ତୁ ତା' ପାଖରେ ଆଠ ପନ୍ଦର ଦିନ ରହିଲେ କିଛି ଲାଭ ହେବ ନାହିଁ । ଆମକୁ ତା ସହିତ ବର୍ଷେ ଦେଢ଼ବର୍ଷ ରହିବାକୁ ହେବ । କିନ୍ତୁ ଆମେ ମୁମ୍ବାଇରେ ଏତେଦିନ ରହିଲେ ଆମ ଏ ଭୁବନେଶ୍ୱର ଘର କଥା କିଏ ବୁଝିବ ? ଘରେ ତାଲା ପକାଇ ଏତେ ଦିନ ବାହାରେ ରହିଲେ ଘରର ଅବସ୍ଥା କ'ଣ ହେବ ? କବାଟ , ଝରକାରେ ଉଈ ଲାଗିଯିବେ,ଚାରିଆଡ଼ ଅଳନ୍ଧୁ ଭର୍ତ୍ତିହେଇଯିବ । ଆମେ ଫେରିବା ବେଳକୁ ଘରଟା ଭୂତକୋଠି ପାଲଟି ଯାଇଥିବ ।

ରାତିଭୋଜନ ପରେ ଶୋଇବାକୁ ଗଲେ ଅବକାଶ ଓ ପ୍ରିୟମ୍ବଦା । ରାତି ଦଶଟା ପରେ ବିଛଣା ଧରିବା ମାତ୍ରେ ଅବକାଶଙ୍କ ଆଖିକୁ ନିଦ ଆସିଯାଏ । କିନ୍ତୁ ଆଜି ରାତି ବାରଟା ବାଜିଲା ତଥାପି ତାଙ୍କ ଆଖିକୁ ନିଦ ଆସିଲା ନାହିଁ । ତାଙ୍କ ପାଖରେ ପ୍ରିୟମ୍ବଦା ନିଘୋଡ଼ ନିଦରେ ଶୋଇଗଲେ । ଅବକାଶ ଅନେକ ସମୟ ପର୍ଯ୍ୟନ୍ତ ବିଛଣାରେ ଏପଟ ସେପଟ ଗଡ଼ିଲେ । ତାଙ୍କର ଏକମାତ୍ର ସନ୍ତାନ ବିଶୃଙ୍ଖଳିତ ରାସ୍ତାରେ ପାଦ ଦେଇଥିବା ଆଶଙ୍କା ତାଙ୍କ ମନର ସମସ୍ତ ଶାନ୍ତି ଚୋରାଇ ନେଇଛି । ତାଙ୍କର ମନେପଡ଼ିଲା ସମରେନ୍ଦ୍ରବାବୁ ଜଣେ ବିଶିଷ୍ଟ ଆଡ଼ଭୋକେଟ୍ । ତାଙ୍କ ପୁଅ ବାଙ୍ଗାଲୋରରେ ଇଂଜିନିୟର । ସିଏ ଗୋଟେ ମୁସଲମାନ ଝିଅକୁ ଭଲ ପାଉଛି । ଯିଦ୍ ଧରିଛି ସେଇଝିଅକୁ ବିବାହ କରିବା ପାଇଁ । ମାତ୍ର ସେ ମୁସଲମାନ ଝିଅର ପ୍ରଥମ ସର୍ତ୍ତ ବିବାହ ପୂର୍ବରୁ ପୁଅକୁ ମୁସଲମାନ ଧର୍ମ ଗ୍ରହଣ କରିବାକୁ ପଡ଼ିବ ।

ଅମ୍ଳାନ ଯଦି ଏମିତି କିଛି କରିବସେ ତେବେ ପ୍ରିୟିମ୍ବଦା କି ସିଏ କ'ଣ ଗ୍ରହଣ କରି ପାରିବେ ? ସିଏ ଆମେରିକାନ କି ଇଂରାଜୀ ଝିଅଟିଏ ଯଦି ବାଛିଲା ତାହେଲେ କଥା ସରିଲା । ଓଡ଼ିଆ ଝିଅ ନହେଲେ ନାହିଁ ବଙ୍ଗାଳି ଝିଅ, ପଂଜାବି ଝିଅ,ଗୁଜୁରାଟି କି ମରାଠି ଝିଅଟିଏ ବାଛିଲେ ହୁଏତ ସେମାନେ କୌଣସି ମତେ ଚଳାଇ ନେବେ । ଯେଉଁ ଜାତିର ହେଉ ଓଡ଼ିଆ ଝିଅଟିଏ ବୋହୂ ହୋଇ ଆସିଲେ ଖୁସି ଲାଗନ୍ତା । ସିଏ ଶାଶୁ ଶ୍ୱଶୁରଙ୍କର କିଛି ସେବା କରୁ ନକରୁ ସେମାନେ ତା' ସହିତ ଦୁଃଖ ସୁଖ ବିପଦ କଥାହୋଇ ପାରନ୍ତେ ।

କିନ୍ତୁ ଅମ୍ଳାନର ମତିଗତି ଯେମିତି ସିଏ କେଉଁ ଧର୍ମର ଝିଅ ପସନ୍ଦ କରିବ ତାର କିଛି ସ୍ଥିରତା ନାହିଁ । ତେବେ ତା'ପାଖେ ପାଖେ ରହି ତା'କାନରେ ତାଙ୍କ ପସନ୍ଦ ଅପସନ୍ଦ



Digitized by srujanika@gmail.com

କଥାଟା ବାରମ୍ବାର ପକାଇବାକୁ ପଡ଼ିବ । ବିଦେଶରେ ଚାକିରି କରିବା ,ବିଦେଶୀ ଝିଅ ବାହାହେବା ଆଉ ବିଦେଶର ନାଗରିକତ୍ୱ ଗ୍ରହଣ କରି ସବୁଦିନ ନିଉୟର୍କ, ଲଣ୍ଡନ କି ପ୍ୟାରିସ୍ ପରି ବଡ଼ ବଡ଼ ସହରରେ ରହିବା ଆଜିକାଲିକା ପିଲାମାନଙ୍କର ଗୋଟେ ଅଭିଳାଷ । କିନ୍ତୁ ଅବକାଶଙ୍କର ଗୋଟିଏ ସନ୍ତାନ । ସିଏ ଯଦି ବିଦେଶରେ ସ୍ଥାୟୀ ବାସିନ୍ଦା ହୁଏ, ତାଙ୍କର ଭୁବନେଶ୍ୱରର ଏଘର କ'ଣ ହେବ ? ଅମ୍ଳାନଠୁ ଏତେ ଦୂରରେ ଥାଇ ସିଏ କ'ଣ କେମିତି କରିବେ ? ଅମ୍ଳାନ ଅତି ଲଗାମଛଡ଼ା ଜୀବନ ବିତାଇ ଚାଲିଛି । ସିଏ ବାପା,ମାଆଙ୍କ ଠାରୁ ଦୂରରେ ବୋର୍ଡ଼ିଙ୍ଗ ସ୍କୁଲରେ ରହି ମ୍ୟାଟ୍ରିକ ପଢ଼ିଲା । ଇଂଜିନିୟରିଙ୍ଗ ମଧ୍ୟ ସିଏ ପଢ଼ିଲା ରାଉରକେଲାରେ ହଷ୍ଟେଲ୍‌ରେ ରହି । ତାପରେ ମୁମ୍ବାଇରେ ଚାକିରି । ବାପା ମାଆଙ୍କ ସହିତ ସମୟ କଟାଇବା କି ତାଙ୍କ ମନକଥା ବୁଝିବା ପାଇଁ ସିଏ ଅବସର ପାଇନାହିଁ ।

ଅବକାଶ ବିଛଣାରେ ପଡ଼ି ଖୋଜି ଚାଲିଛନ୍ତି ଅମ୍ଳାନକୁ ସୁଧାରିବାର ବାଟ । ସିଏ ଭୁବନେଶ୍ୱରରେ ରହି ଆଶଙ୍କାରେ ଦିନ କାଟିଲେ ସମସ୍ୟାର ସମାଧାନ ଆଦୌ ହେବନାହିଁ । ତା ପାଖକୁ ଯାଇ ବେଶ୍ କିଛି ମାସ ତା' ସହିତ ରହି ତାକୁ ସଜାଡ଼ିବାକୁ ପଡ଼ିବ ।

କିଛି ସମୟ ପରେ ହଠାତ୍ ତାଙ୍କ ମୁଣ୍ଡକୁ ଗୋଟେ ଆଇଡ଼ିଆ ଆସିଲା । ସିଏ ଆନନ୍ଦରେ ଆତ୍ମହରା ହୋଇ ପ୍ରିୟମ୍ବଦାଙ୍କୁ ନିଦରୁ ଉଠାଇ କହିଲେ-ଆମେ ଆସନ୍ତା ଦୁଇ ତିନି ସପ୍ତାହ ଭିତରେ ଅମ୍ଳାନ ପାଖକୁ ଯିବା । ତା'ପାଖରେ ରହିଲେ ହୁଏତ ଆମେ ତାକୁ ବାଟକୁ ଆଣିବା ପାଇଁ ଚେଷ୍ଟା କରି ପାରିବା । ଭୁବନେଶ୍ୱରରେ ଆମେ ରହିଲେ ସେସବୁ କେବେହେଲେ ସମ୍ଭବ ହେବନାହିଁ ।

ସେମିତି ନିଦୁଆ ଆଖିରେ ପ୍ରିୟମ୍ବଦା ପ୍ରଶ୍ନକଲେ-ସେଇଟା ତ ଠିକ୍ କଥା । କିନ୍ତୁ ତାହା କେମିତି ସମ୍ଭବ ହେବ ? ବର୍ଷେ କି ଛମାସ ଆମେ ଯେତିକି ଦିନ ମୁମ୍ବାଇରେ ରହିବା ସେ ସମୟରେ ଆମ ଘରର ଦାୟିତ୍ୱ କିଏ ନେବ ?

-ତୁମେ ସେଥିପାଇଁ ଚିନ୍ତା କରନା । ମୁଁ ସେ ବ୍ୟବସ୍ଥା କଥା ମଧ୍ୟ ଚିନ୍ତା କରିଛି । ଆମେ ଯେମିତି ଆମ ଗ୍ରାଉଣ୍ଡ ଫ୍ଲୋର ଆଉ ସେକେଣ୍ଡ ଫ୍ଲୋର ଭଡ଼ା ଦେଇଛେ ଏବେ ସେମିତି ଫାଷ୍ଟ ଫ୍ଲୋରଟାକୁ ବି ଭଡ଼ା ଦେଇଦେବା । ଆମ ଆସବାବପତ୍ର ସବୁ ସେକଣ୍ଡ ଫ୍ଲୋର ଉପରେ ଥିବା ଷ୍ଟୋର ରୁମ୍‌ରେ ରଖିଦେଇ ଚାଲିଯିବା ।

ପ୍ରିୟମ୍ବଦା କିଛି ସମୟ ଚିନ୍ତା କରି କହିଲେ- ହଁ, ସେମିତି କରିହେବ । କିନ୍ତୁ ଆମ କାର୍ ଆଉ କୁକୁର । ସେସବୁ କାହା ଦାୟିତ୍ୱରେ ଦେଇଯିବା ? କାରଟା ହୁଏତ କାହା



Digitized by srujanika@gmail.com

ଗ୍ୟାରେଜରେ ରଖିଦେଇ ଯାଇହେବ । କିନ୍ତୁ ମଝିରେ ମଝିରେ ତାକୁ ନଚଲାଇଲେ ଖରାପ ହୋଇ ଯିବାର ଆଶଙ୍କା ଅଛି ।

-ମୁଁ ଭାବୁଛି କଟକରେ ତୁମ ଭାଇଙ୍କ ପାଖରେ ଆମ କାର୍‌ଟା ଦେଇଯିବା । ତାଙ୍କର ଗ୍ୟାରେଜ ବଡ଼ । ଦୁଇଟା ଗାଡ଼ି ଆରାମରେ ରହିଯିବ ।

-ହଁ ସେଇୟା କରିବା । କିନ୍ତୁ କୁକୁରଟାକୁ କିଏ ରଖିବ ? ମୋ ଭାଇଙ୍କର କୁକୁର ପ୍ରତି ଏଲର୍ଜି । କୁକୁର ନା ଶୁଣିଲେ ସିଏ ନାକ ଟେକିବେ ।

-ବୁଝିଲ ପ୍ରିୟମ୍ବଦା ! କୁକୁରଟାକୁ ରଖିବାକୁ ଆମେ କାହାକୁ ବା କହିବା ? ମୋ ସାଙ୍ଗ ଇନ୍ଦ୍ରଜିତ ସାମନ୍ତରାୟ ଆମ କୁକୁର ପରି ଗୋଟେ ଆଲସିସିଆନ ଖୋଜୁଥିଲା । ମୁଁ ଭାବୁଛି ତାକୁ ବିକ୍ରି କରିଦେବା । ମୁମ୍ବାଇରୁ ଫେରିଲେ ସେଇ ଭେରାଇଟ୍‌ର ଆଉ ଗୋଟେ କୁକୁର କିଣିବା ।

ମାସକ ଭିତରେ ଅବକାଶ ସବୁ ବ୍ୟବସ୍ଥା ଯଥାରୀତି କରିଦେଲେ । ଫ୍ଲାଇଟ ଟିକେଟ୍ ମଧ୍ୟ ବୁକ୍ ହୋଇଗଲା । ମୁମ୍ବାଇ ଯିବାର ସମସ୍ତ ପ୍ରସ୍ତୁତି ସରିଯିବା ପରେ ପ୍ରିୟମ୍ବଦା କହିଲେ-ଏଥର ଆମ ଯିବା କଥାଟା ଅମ୍ଳାନକୁ ଫୋନ୍‌କରି ଜଣାଇ ଦିଅ ।

ଅବକାଶ ମୁରୁକି ହସି କହିଲେ-ନା, ତାକୁ ଏବେ ଜଣାଇବା ଠିକ୍ ହେବନାହିଁ । ଆମେ ଏମିତି ଯାଇ ତା'ପାଖରେ ଏତେଦିନ ରହିବା କଥାଟା ତାର ପସନ୍ଦ ନହୋଇ ପାରେ । ତେଣୁ ତାକୁ ଜଣାଇଲେ ସିଏ ଯଦି ଆମ ଯିବା ପ୍ରସ୍ତାବରେ ରାଜି ନହୁଏ , ତାହେଲେ ଏବେ ଆମେ କ'ଣ କରିବା ? ଆମେ ତ ଆମଘର ଭଡ଼ା ଦେଇ ସାରିଲେଣି , କୋଉଠି ରହିବା ? ମୋ ମତରେ ଆମେ ଯାଇ ଅଚାନକ ତା ପାଖରେ ପହଞ୍ଚି ତାକୁ ସର୍‌ପ୍ରାଇଜ ଦେବା ।

ଅମ୍ଳାନ ହଠାତ୍ ମୁମ୍ବାଇ ପଳାଇ ଯିବାରୁ ତାର ପ୍ରିୟ ନରାଜ ଚିଙ୍ଗୁଡ଼ିମାଛର ତର୍କାରି ତାକୁ ଏଥର ଖୁଆଇ ପାରି ନଥିଲେ ପ୍ରିୟମ୍ବଦା । ସେଥିପାଇଁ ମୁମ୍ବାଇ ଯିବା ପୂର୍ବ ଦିନ ଦୁଇ କିଲୋ ବଡ଼ ବଡ଼ ନରାଜ ଚିଙ୍ଗୁଡ଼ି ମଗାଇ ତାକୁ ଭଲ ଭାବରେ ଭାଜି ପ୍ୟାକ୍ କଲେ । ତା ସହିତ ରାଶିବଡ଼ି ଓ କୋଳି ଆଚାର କିଛି ଦୁଇଟି ଛୋଟ ଛୋଟ ପ୍ଲାଷ୍ଟିକ ଡ଼ବାରେ ଭର୍ତିକଲେ । ଦେଶୀ ଗୁଆଘିଅ ଖାଇବାକୁ ଅମ୍ଳାନ ଭଲପାଏ । ଅଧ କିଲୋ ଗୁଆଘିଅର ଡ଼ବାଟିଏ ବ୍ୟାଗ୍‌ରେ ରଖିଲେ ।

ଅବକାଶ ଏସବୁ ଜିନିଷ ଦେଖି ବିରକ୍ତ ହେଲେ- ଫ୍ଲାଇଟରେ ଅନେକ ଚେକିଙ୍ଗ ଆଉ ରେଷ୍ଟ୍ରିକସନ୍ । ମାଛ କି ଆଚାର ନେଇ ହେବ କି ନାହିଁ କିଏ କହିବ ? ତାଛଡ଼ା



Digitized by srujanika@gmail.com

ଏତେ ଲଗେଜ ନେଇହେବ ନାହିଁ ।

ପ୍ରିୟମ୍ବଦା ଯୁକ୍ତିକଲେ-କେତେ ଜିନିଷ ଆମେ ନେଉଚେ କି ? ମାତ୍ର ଏଇ ବ୍ୟାଗ ଦୁଇଟା ତ । ମାଛ, ଆଚାର ଅଛି ବୋଲି କିଏ କେମିତି ଜାଣିବ ? ମୁଁ ଏସବୁକୁ ବ୍ୟାଗର ସବାତଳେ ଲୁଚେଇ ଦେବି ।

ତା'ପରଦିନ ସକାଳ ସାତଟାରେ ଉଡ଼ାଜାହାଜ ଚଢ଼ିଲେ ଅବକାଶ ଓ ପ୍ରିୟମ୍ବଦା । ଦୁଇ ଘଣ୍ଟାର ଉଡ଼ାଣ ପରେ ସେମାନେ ମୁମ୍ବାଇ ଏରୋଡ୍ରମରେ ପହଞ୍ଚିଲେ । ସଙ୍ଗେ ସଙ୍ଗେ ଗୋଟିଏ ଟ୍ୟାକ୍ସି ଧରି ଅମ୍ଲାନର ଫ୍ଲାଟ ଆଗରେ ଓହ୍ଲାଇ ପଡ଼ିଲେ । ଗତବର୍ଷ ଏଇ ଫ୍ଲାଟକୁ ଆସିଥିଲେ ଅବକାଶ । ତେଣୁ ଅମ୍ଲାନର ଫ୍ଲାଟ ପାଇବାରେ କିଛି ଅସୁବିଧା ହେଲା ନାହିଁ । କଲିଙ୍ଗବେଲ୍‌ରେ ହାତ ମାରିବାକୁ ଗଲାବେଳେ ଦେଖିଲେ ଡ଼ୋରରେ ତାଲା ପଡ଼ିଛି ।

ପ୍ରିୟମ୍ବଦା କହିଲେ- ଅମ୍ଲାନ ବୋଧହୁଏ ଅଫିସ୍ ଚାଲିଗଲାଣି । ତାକୁ ଫୋନ୍‌କର ।

ଅବକାଶ ଫୋନ୍ କରିବା ବେଳେ ଦେଖିଲେ ତାଙ୍କ ମୋବାଇଲ୍ ସୁଇଚଅଫ୍ ଅଛି । ମୋବାଇଲ ସୁଇଚ ଅନ୍ କଲାମାତ୍ରେ ଗୋଟିଏ ମେସେଜ୍ ଆସିଲା । ସେ ମେସେଜଟି ଥିଲା ଅମ୍ଲାନର । ମେସେଜରେ ଲେଖାଥିଲା-ଡାଡ଼ ! ଆମ କଂପାନୀ ମୋତେ ତିନି ବର୍ଷ ପାଇଁ ଆମେରିକା ପଠାଇଛି । ମୁଁ ଏକଥା ମାସେ ପୂର୍ବରୁ ଜାଣିଥିଲି । ତୁମେ କି ମମି କାଳେ ମୋ ଆମେରିକା ଯିବା ପ୍ରସ୍ତାବରେ ଅରାଜି ହେବ ସେଥିପାଇଁ ମୁଁ ଏକଥା ତୁମକୁ ଆଗରୁ ଜଣାଇ ନଥିଲି । ମୁଁ ଏକଥା ଜଣାଇବା ପାଇଁ ଆଜି ସକାଳ ଆଠଟାରେ ତୁମକୁ ଫୋନ୍ କରିଥିଲି; କିନ୍ତୁ ତୁମ ଫୋନ୍ ସୁଇଚଅଫ୍ ଥିଲା । ମୋ ଫ୍ଲାଇଟ୍ ଆଉ ଅଳ୍ପ ସମୟ ପରେ ମୁମ୍ବାଇ ଛାଡ଼ିବ । ମୁଁ ଆମେରିକାରେ ପହଞ୍ଚି ତୁମକୁ ଫୋନ୍ କରିବି ।

ଏ ମେସେଜ ପଢ଼ିବା ପରେ ଅବକାଶଙ୍କ ମୁଣ୍ଡ ବୁଲାଇ ଦେଲା । ସିଏ ଅମ୍ଲାନର ଫ୍ଲାଟ ସାମନା ଚଟାଣରେ ବସି ପଡ଼ିଲେ ।

'ତୁମର କ'ଣ ହେଲା' ବୋଲି କହି ପ୍ରିୟମ୍ବଦା ଅବକାଶଙ୍କ ହାତଧରି ତାଙ୍କୁ ତଳୁ ଉଠାଇବା ବେଳେ ସିଏ କିଛି ଉତ୍ତର ନଦେଇ ମୋବାଇଲ ଫୋନ୍‌ର ମେସେଜଟା ପଢ଼ିବା ପାଇଁ ତାଙ୍କ ହାତକୁ ଫୋନ୍‌ଟା ବଢ଼ାଇ ଦେଲେ ।

ପ୍ରିୟମ୍ବଦା ମେସେଜଟା ପଢ଼ି କହିଲେ- ଆଜି କାଲିକା ପିଲାଙ୍କୁ ପାରିହେବ ନାହିଁ । ଆମେ କ'ଣ ତାକୁ ସରପ୍ରାଇଜ୍ ଦେବା ? ସିଏ ତ ଆମକୁ ବଡ଼ ସରପ୍ରାଇଜ୍ ଦେଲା ।



ଆନଂଦ ଚଂଦ୍ର ପାଢ଼ି

Digitized by srujanika@gmail.com

# ଦୋଛକିରେ ସୁମିତ୍ରା

ଦେବାଶୀଷ ମାର୍କେଟ ଯିବା ବାଟରେ ଲୋକ ଗହଳି ଦେଖି ଅଟକି ଗଲେ । ଚର୍ଚ୍ଚ ସାମନାରେ ବହୁତ ଲୋକ ଗୁଣ୍ଡ ହୋଇଥିଲେ । ରବିବାର ଦିନ ଚର୍ଚ୍ଚ ସାମନାରେ ଏମିତି ଲୋକ ଗହଳି କିଛି ଅସାଧାରଣ କଥା ନୁହେଁ । କିନ୍ତୁ ସେଠି ପୋଲିସ୍ ଇନିସ୍‌ପେକ୍ଟର କାହିଁକି ? କିଛି ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେଲାକି ? ସିଏ ଭିଡ଼ ଭିତରେ ପଶି ସେକଥା ଜାଣିବାକୁ ଚେଷ୍ଟାକଲେ । ପୋଲିସ୍ ଜଣେ ମହିଳାଙ୍କୁ କଷ୍ଟୋଡ଼ିକୁ ନେବାକୁ ଚେଷ୍ଟା କରୁଛି ।

ସେ ମହିଳା ଜଣକ ତାଙ୍କୁ ଚିହ୍ନା ଚିହ୍ନା ଲାଗିଲେ । ଦେବାଶୀଷ ଆଉ ସ୍ଥିର ହୋଇ ରହି ନପାରି ଭିଡ଼ଠେଲି ସେ ମହିଳାଙ୍କ ପାଖରେ ପହଞ୍ଚିଲେ । ସିଏ ଚିହ୍ନିପାରିଲେ ତାଙ୍କୁ । ଇଏତ ସୁମିତ୍ରା । ସୁମିତ୍ରା ଜାନି । ଏ ମହିଳାଙ୍କୁ ତ ସିଏ ଭଲଭାବରେ ଚିହ୍ନିଛନ୍ତି, ଜାଣିଛନ୍ତି । ଦେବାଶୀଷ ଶିକ୍ଷା ବିଭାଗରେ ଅନୁଶାସନ ସଚିବ ଥିବାବେଳେ ଖବରକାଗଜରେ ଫଟୋ ସହିତ ପ୍ରକାଶ ପାଇଥିଲା ଗୋଟିଏ ସଂବାଦ । ଫଟୋଟି ଥିଲା ଏଇ ସୁମିତ୍ରାଙ୍କର । ସିଏ ପାଇଥିଲେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଯୁବ ଔପନ୍ୟାସିକା ପୁରସ୍କାର । ସୁମିତ୍ରା ସେତେବେଳେ ସେଇ ଶିକ୍ଷା ବିଭାଗର ଥିଲେ ଜଣେ କର୍ମଚାରୀ । ଦେବାଶୀଷ ସେଦିନ ସୁମିତ୍ରାଙ୍କୁ ଡକାଇ ତାଙ୍କୁ ଗୋଟିଏ ଫୁଲତୋଡ଼ା ଦେଇ ଅଭିନନ୍ଦନ ଜଣାଇ ଥିଲେ । ସୁମିତ୍ରାଙ୍କ ଠାରେ ସିଏ ଅନେକ ସମ୍ଭାବନା ଦେଖି ତାଙ୍କୁ କହିଥିଲେ-ତୁମେ ଚାହିଁଲେ ତୁମ ଆଦିବାସୀ ସଂସ୍କୃତି, ପରଂପରା ଆଉ ସାହିତ୍ୟକୁ ଉପଯୋଗ କରି ତୁମ ସୃଷ୍ଟିକୁ ସମୃଦ୍ଧ କରି ପାରିବ । ତୁମେ ଜାଣିଥିବ ଆମ ଓଡ଼ିଆ ସାହିତ୍ୟର ଖ୍ୟାତନାମା ଔପନ୍ୟାସିକ ଗୋପିନାଥ ମହାନ୍ତିଙ୍କ କଥା । ସିଏ ଆଦିବାସୀ ସଂସ୍କୃତି, ସମାଜ ଓ ଚଳଣି ଉପରେ ଦାଦିବୁଢ଼ା, ଅମୃତର ସନ୍ତାନ ଆଉ ପରଜା ଏମିତି ତିନୋଟି ଉଚ୍ଚକୋଟୀର କାଳଜୟୀ ଉପନ୍ୟାସ ଲେଖିଯାଇଛନ୍ତି ।ଏଇ ସବୁ ଉପନ୍ୟାସ ଲେଖିବା ପାଇଁ ସିଏ ଆଦିବାସୀ ଅଞ୍ଚଳରେ ରହି ତାଙ୍କ ଚାଲି ,ଚଳଣି, ସଂସ୍କୃତି ଓ ପରଂପରା ବିଷୟରେ ତଥ୍ୟ ସଂଗ୍ରହ କରିଥିଲେ । ତୁମେ ତ ସେଇ ପାଣି ପବନ, ପରଂପରା ଭିତରୁ ଆସିଛ । ତେଣୁ ଏସବୁ ଲେଖିବାକୁ ସହଜ ହେବ । ମୁଁ ଆଶା କରୁଛି ସେହିପରି ଉଚ୍ଚକୋଟୀର ଉପନ୍ୟାସ ଲେଖିବାକୁ ତୁମେ ସମର୍ଥ ହେବ ।

ସେଦିନର ସୁମିତ୍ରା ଆଜି ପୂର୍ଣ୍ଣ ବୟସର ଜଣେ ଭଦ୍ରମହିଳା । କିନ୍ତୁ ସିଏ ଆଜି ଏପରି ଏକ ପରିସ୍ଥିତିରେ କାହିଁକି ପଡ଼ିଲେ ? ସେ କଥା ଜାଣିବା ପାଇଁ ପୋଲିସ

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ଇନିସପେକ୍ଟରଙ୍କୁ ପଚାରିଲେ ଦେବାଶୀଷ। ସିଏ ଜଣାଇଲେ ଯେ ଏ ଭଦ୍ରମହିଳା ଚର୍ଚ୍ଚ ଭିତରେ ପ୍ରାର୍ଥନା କରିବା ସମୟରେ ଆଉ ଜଣେ ଭଦ୍ରମହିଳାଙ୍କ ବହୁମୂଲ୍ୟ ସୁନାହାର ଚୋରି କରିଛନ୍ତି। ସୁନାହାରଟି ବର୍ତ୍ତମାନ ତାଙ୍କ ପାଖରେ ନାହିଁ । ସିଏ ହାରଟିକୁ ତାଙ୍କ ସ୍ୱାମୀଙ୍କ ହାତରେ ଚର୍ଚ୍ଚ ବାହାରକୁ ପଠାଇ ଦେଇଛନ୍ତି।

ଏଇ ଭଦ୍ରମହିଳା ଯେ ହାରଟିକୁ ଚୋରି କରିଛନ୍ତି ତାର କିଛି ପ୍ରମାଣ କି ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀ ଅଛନ୍ତି କି ନାହାଁନ୍ତି ସେକଥା ଜାଣିବାକୁ ଚାହିଁବାରୁ ପୋଲିସ୍ ଏତିକି ମାତ୍ର କହିଲେ ଯେ ଯେଉଁ ଭଦ୍ରମହିଳାଙ୍କ ହାର ଚୋରି ଯାଇଛି ତାଙ୍କ ନିକଟସ୍ଥ ଚେୟାରରେ ଏଇ ମହିଳା ହିଁ ବସିଥିଲେ ଆଉ ହାରଟି ଚୋରି ଯିବା ପରେ ପରେ ଏ ମହିଳାଙ୍କ ସ୍ୱାମୀ ଚର୍ଚ୍ଚଛାଡ଼ି ବାହାରକୁ ଚାଲି ଯାଇଛନ୍ତି, ଏପର୍ଯ୍ୟନ୍ତ ଫେରି ନାହାଁନ୍ତି।

ଦେବାଶୀଷ ଯୁକ୍ତି ବାଢ଼ିଲେ-ଏତିକି ଯଥେଷ୍ଟ ପ୍ରମାଣ ନୁହେଁ ଜଣକୁ ଦୋଷୀ ସାବ୍ୟସ୍ତ କରିବା ପାଇଁ।

ପୋଲିସ ଇନିସ୍‌ପେକ୍ଟର ଉତ୍ତର ଦେଲେ-ତାଙ୍କୁ ଥାନାକୁ ନେଇ ପଚରା ଉଚରା କରିବା ପାଇଁ ଏତିକି ତଥ୍ୟ ଆମ ପାଇଁ ଯଥେଷ୍ଟ। ଆପଣ ଏଥିରେ ମୁଣ୍ଡ ପୂରାଇବା କି ଆମ କାମରେ ବାଧା ସୃଷ୍ଟି କରିବା ଉଚିତ ହେଉନାହିଁ। ଆମକୁ ଆମ କାମ କରିବାକୁ ଦିଅନ୍ତୁ।

ଦେବାଶୀଷ ଚାହିଁଲେ ସୁମିତ୍ରାଙ୍କ ମୁହଁକୁ। ସିଏ ଲାଜ ଆଉ ଅପମାନରେ ଝାଉଁଳି ପଡ଼ିଥିଲେ। ମୁହଁ ଉଠାଇ ଦେବାଶୀଷଙ୍କୁ ଚାହିଁ ପାରୁ ନଥିଲେ। ଦେବାଶୀଷ ନମ୍ର ଭାବରେ ନିବେଦନ କଲେ-ଦେଖନ୍ତୁ ଇନିସ୍‌ପେକ୍ଟର! ସୁମିତ୍ରାଦେବୀ ଜଣେ ପ୍ରତିଭାଶାଳୀ ଓଡ଼ିଆ ଔପନ୍ୟାସିକା। ମୁଁ ତାଙ୍କୁ ଚିହ୍ନିଛି , ଜାଣିଛି। ସିଏ ଚୋରି ପରି ଘୃଣ୍ୟକାମ କଦାପି କରି ପାରିବେ ନାହିଁ।

ସୁମିତ୍ରା ଏଥର ତାଙ୍କର ସଫେଇ ଦେବାକୁ ଯାଇ କାନ୍ଦ କାନ୍ଦ ହୋଇ କହିଲେ-ମୁଁ କାହାରି ସୁନାହାର ଚୋରି କରିନାହିଁ। ଚୋରି ପରି ଘୃଣ୍ୟକାମ କରିବା ତ ଦୂରର କଥା ସେକଥା ମୁଁ କେବେ ଚିନ୍ତା ବି କରି ପାରିବି ନାହିଁ। ମୋ ସ୍ୱାମୀଙ୍କର ଜଣେ ଫ୍ରେଣ୍ଡଙ୍କର ଆକ୍ସିଡ଼େଣ୍ଟ ହେବା ଖବର ପାଇ ସିଏ ଚର୍ଚ୍ଚ ବାହାରକୁ ଯାଇଛନ୍ତି। ସିଏ ତାଙ୍କ ବନ୍ଧୁଙ୍କୁ ଦେଖାକରି ଖୁବ୍ ଶୀଘ୍ର ଫେରି ଆସିବେ। ମୋତେ ବିଶ୍ୱାସ କରନ୍ତୁ।

ହଠାତ୍ ଭିଡ଼ ଠେଲି ଜଣେ ଭଦ୍ରଲୋକ ପୋଲିସ୍ ଇନିସ୍‌ପେକ୍ଟରଙ୍କ ପାଖକୁ ଛୁଟିଆସି ଖୁବ ତରତର କଣ୍ଠରେ ଜଣାଇଲେ-ସାର୍ ଆମ ହାର ମିଳିଗଲା। ଏ ଭଦ୍ରମହିଳା



Digitized by srujanika@gmail.com

ସଂପୂର୍ଣ୍ଣ ନିର୍ଦ୍ଦୋଷ, ଯାଙ୍କୁ ଛାଡ଼ି ଦିଅନ୍ତୁ ।

ହାରଟି କିପରି ଓ କେଉଁଠୁ ମିଳିଲା ତାର ବିସ୍ତୃତ ବିବରଣୀ ପୋଲିସ୍ ଆଗରେ ଦେବାକୁ ଯାଇ ସିଏ କହିଲେ-ହାରଟି ଆମ କାର୍ ଭିତରେ ଭୁଲ୍‌ରେ ପଡ଼ିଯାଇଥିଲା । ହୁଏତ ହାରଟିର ହୁକ୍ ଢ଼ିଲାଥିଲା । ପୁଅକୁ ହରଲିକସ୍ ଦେବା ପାଇଁ ଗଲାବେଳକୁ ହାରଟି ମୋ ସ୍ତ୍ରୀଙ୍କ ଆଖିରେ ପଡ଼ିଲା ।

ପୋଲିସ୍ ସୁମିତ୍ରାଙ୍କୁ ଛାଡ଼ିଦେଲେ । ଭିଡ଼ ଭାଙ୍ଗିଗଲା । ଦେବାଶୀଷଙ୍କ ଅଯାଚିତ ସାହାଯ୍ୟ ପାଇଁ ତାଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇଲେ ସୁମିତ୍ରା ।

ଏତିକି ବେଳେ ସୁମିତ୍ରାଙ୍କ ସ୍ୱାମୀ ଆସି ପହଞ୍ଚି ଗଲେ । ସୁମିତ୍ରା ଲାଜ ଲାଜ କଣ୍ଠରେ ପରିଚୟ କରାଇ ଦେଲେ-ଏ ହେଉଛନ୍ତି ମୋ ସ୍ୱାମୀ ସମରେନ୍ଦ୍ର ଜେମସ୍ । ଆଉ ଇଏ ହେଉଛନ୍ତି ଦେବାଶୀଷ ସାର୍ । ବିଶିଷ୍ଟ ଗାଳ୍ପିକ ଦେବାଶୀଷ ସାମନ୍ତରାୟ , ଜଣେ ବରିଷ୍ଠ ହୃଦୟବାନ ଓ ଦକ୍ଷ ପ୍ରଶାସନିକ ଅଫିସର୍ ।

ସେଦିନ ସୁମିତ୍ରା ଓ ସମରେନ୍ଦ୍ର ଦୁହେଁ ଫେରିଯାଇଥିଲେ ତାଙ୍କ ବାସଭବନକୁ । ଯିବାପୂର୍ବରୁ ଦେବାଶୀଷ ପଚାରିଥିଲେ-ଏବେ କ'ଣ ତୁମେ ସେଇ ଶିକ୍ଷା ବିଭାଗରେ ଅଛ ସୁମିତ୍ରା ? ତୁମ ମିଷ୍ଟର କ'ଣ କରନ୍ତି ? କିଛି ଜବ୍ ନା ବିଜିନେସ୍ ?

-ହଁ, ସାର୍ ! ମୁଁ ସେଇ ବିଭାଗରେ ଅଛି ?ମୋ ହଜବ୍ୟାଣ୍ଡ ବିଜନେସ୍ କରନ୍ତି । ବହି ଆଉ ମ୍ୟାଗାଜିନ୍‌ର ଛୋଟ ଧରଣର ଗୋଟେ ଷ୍ଟଲ୍ ।

ଦେବାଶୀଷ ହସି ହସି କହିଲେ-ଠିକ୍ ଅଛି । ସ୍ତ୍ରୀ ସାହିତ୍ୟିକା , ସ୍ୱାମୀଙ୍କର ବହି ଆଉ ମ୍ୟାଗାଜିନ୍‌ର ବିଜନେସ୍ । ଖୁବ୍ ଭଲ । ଭେରି ଗୁଡ୍ କମ୍ବିନେସନ୍ ।

ସୁମିତ୍ରା ପ୍ରଶ୍ନକଲେ-ସାର୍ ! ଆପଣ ଏବେ କେଉଁଠି ?

-ମୋର କିଛି ସ୍ଥିରତା ନାହିଁ । ମୁଁ ଏବେ ସମ୍ବଲପୁରରେ । ସେଠି ତିନି ବର୍ଷ ହୋଇ ଗଲାଣି । କୌଣସି ମୁହୂର୍ତ୍ତରେ ଅନ୍ୟ କେଉଁଠାକୁ ଟ୍ରାନ୍ସଫର୍ ହୋଇ ଯାଇପାରେ ।

ଏଇ ଘଟଣାର ଠିକ୍ ଗୋଟିଏ ବର୍ଷ ନପୂରୁଣୁ ପୁରୀ ଶ୍ରୀମନ୍ଦିର ସିଂହଦ୍ୱାର ଠାରେ ଦେବାଶୀଷଙ୍କର ପୁଣି ଭେଟହେଲା ସୁମିତ୍ରା ଓ ତାଙ୍କ ସ୍ୱାମୀ ସମରେନ୍ଦ୍ରଙ୍କ ସହିତ, ଏକ ଭିନ୍ନ ପରିସ୍ଥିତିରେ । ସେବାୟତମାନେ ଘେରିଥିଲେ ସେ ଦୁହିଁଙ୍କୁ । ମନ୍ଦିର ଭିତରକୁ ଅନଧିକାର ପ୍ରବେଶ ଅପରାଧରେ ତାଙ୍କୁ ଅଟକ ରଖି ସେ ଦୁହିଁଙ୍କୁ ପୋଲିସ୍‌କୁ ହ୍ୟାଣ୍ଡ ଓଭର କରିଦେବାର ଭୟ ଦେଖାଉ ଥିଲେ ।

ମନ୍ଦିର ପ୍ରଶାସକ ଭାବେ ନିଜେ ଏଘଟଣାରେ ହସ୍ତକ୍ଷେପ କରି ଦେବାଶୀଷ



Digitized by srujanika@gmail.com

ସେବାୟତ ଓ ପୋଲିସ୍ ଉଭୟଙ୍କୁ ସେଠାରୁ ବିଦା କରିଦେଇ ସୁମିତ୍ରା ଓ ତାଙ୍କ ସ୍ୱାମୀଙ୍କୁ ଡକାଇ ନେଲେ ନିଜ ଅଫିସ୍‌କୁ । ସୁମିତ୍ରା ନିଜ ଆବେଗକୁ ଚାପି ନପାରି କାନ୍ଦି ପକାଇଲେ ଓ ଆବେଗ ଭରା କଣ୍ଠରେ କହିଲେ-ମୋ ଜୀବନରେ ବାରମ୍ବାର ଏମିତି କାହିଁକି ଘଟୁଛି ମୁଁ କିଛି ଜାଣି ପାରୁ ନାହିଁ ସାର୍! ସେ ଦିନ ଚର୍ଚ୍ଚରେ ମୋ ସହିତ ଯାହା ଯେମିତି ଘଟିଲା ସେସବୁ ଆପଣ ଜାଣିଛନ୍ତି । ମୋର ସେଥିରେ କିଛି ବି ଦୋଷ ନଥିଲା ।

ଆଜିର ଘଟଣା ମଧ୍ୟ ସେମିତି । ଆପଣଙ୍କ ସହିତ ଦେଖା ନହୋଇଥିଲେ ଆମ ଅବସ୍ଥା କ'ଣ ହୋଇଥାନ୍ତା କିଏ ଜାଣେ ? ଆମେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବା କ'ଣ ଏତେବଡ଼ ଅପରାଧ ? ଆମେ କାହିଁକି ମନ୍ଦିରରେ ପଶି ପାରିବୁ ନାହିଁ ?

ଦେବାଶୀଷ କିଛି ସମୟ ନିରବ ରହିବା ପରେ କହିଲେ-ତୁମେ ଜଣେ ପ୍ରତିଭାଶାଳୀ ଔପନ୍ୟାସିକା ଓ ଉଚ୍ଚାଭିଳାଷୀ ମଣିଷ ଏକଥା ମୁଁ ଜାଣିଛି । ତୁମେ ତୁମ ଆଦିବାସୀ ସଂପ୍ରଦାୟର କାହାକୁ ବିବାହ ନକରି ତୁମେ ଭଲ ପାଉଥିବା ଜଣେ ମଣିଷକୁ ବିବାହ କଲ । ସେକଥା ବି ଅତି ଉତ୍ତମ । ତୁମେ ବିବାହ କରିଥିଲ ସମରେନ୍ଦ୍ର ମହାପାତ୍ରଙ୍କୁ ; କିନ୍ତୁ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବା କ'ଣ ନିହାତି ଆବଶ୍ୟକ ଥିଲା ?

ସୁମିତ୍ରା କୋହ ଚାପି ଉତ୍ତର ଦେଲେ-ଆମ ଆଦିବାସୀ ସଂପ୍ରଦାୟ କି ମୋ ଶ୍ୱଶୁରଘର ଲୋକମାନେ କେହି ଆମ ସଂପର୍କକୁ ସ୍ୱୀକୃତି ଦେବା ପାଇଁ ସମ୍ମତ ହେଲେ ନାହିଁ । ଆମେ କୋର୍ଟରେ ରେଜିଷ୍ଟ୍ରି ମ୍ୟାରେଜ କଲୁ । ଆମେ ଭାବିଥିଲୁ କିଛି ଦିନ ପରେ ହୁଏତ ଏ ବିରୋଧ ଥମିଯିବ । କିନ୍ତୁ ଆମ ବିଭାଘରର ପାଞ୍ଚ ବର୍ଷ ପରେ ମଧ୍ୟ ଅବସ୍ଥାର ପରିବର୍ତ୍ତନ ହେଲା ନାହିଁ । ଭୁବନେଶ୍ୱରରେ ମୋ ଶ୍ୱଶୁରଙ୍କର ନିଜଘର ଥିଲେ ବି ଆମେ ଭଡ଼ାଘରେ ରହିଲୁ । ସିଏ ଆମକୁ ଘରକୁ ପୂରାଇ ଦେଲେ ନାହିଁ । ନଣନ୍ଦଙ୍କର ବିଭାଘର ହେଲା, ଶ୍ୱଶୁରଙ୍କର ମୃତ୍ୟୁହେଲା, ଆମ ଗାଆଁରେ ମୋ ଜେଜେମାଆଙ୍କର ମୃତ୍ୟୁହେଲା । କିନ୍ତୁ ଆମେ କୌଣସି ଫଙ୍କସନ୍ କି କ୍ରିୟାକର୍ମରେ ଅଂଶ ଗ୍ରହଣ କରିବାକୁ ଅନୁମତି ପାଇଲୁ ନାହିଁ । ଆମେ ସେସବୁ କାର୍ଯ୍ୟରେ ଯୋଗଦେବାକୁ ଯାଇ ଅପମାନିତ ହୋଇ ଫେରିଲୁ । ଆମେ ଅସାମାଜିକ ହୋଇଗଲୁ । ସବୁଥାଇ ଆମର କିଛି ନାହିଁ, ସମସ୍ତେ ଥାଇ କେହି ନାହାଁନ୍ତି ।

ଘୋର ଅନିଚ୍ଛାସତ୍ୱେ ଆମେ ବାଧ୍ୟହେଲୁ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାକୁ । ଆଶା ଥିଲା ଆମେ ଗୋଟେ ସମାଜରେ ଅବାଧରେ ମିଶି ପାରିବୁ, ଏକାଠି ବସି ପାରିବୁ , ଏମାନଙ୍କ ସହିତ ଚଳିପାରିବୁ । ଏଠି ଆମକୁ କେହି ଆଉ ନ୍ୟୁନ ଦୃଷ୍ଟିରେ ଦେଖିବେ



Digitized by srujanika@gmail.com

ନାହିଁ । କିନ୍ତୁ ତାହା ବି ସମ୍ଭବ ହେଲାନାହିଁ ।ଏଠି ମଧ୍ୟ ଉଚ୍ଚନୀଚ , ଭେଦଭାବର ପାଚେରି ବାଟ ଓଗାଳି ଠିଆ ହୋଇଛି । ସେଦିନ ଚର୍ଚ୍ଚ ସାମନାରେ ଆପଣ ଯେଉଁ ଘଟଣା ଦେଖିଲେ ତାହା ସେହି ଭେଦଭାବର ଫଳ । ସୁନାହାର ଚୋରୀ ପାଇଁ ଆଉ କାହାକୁ ସନ୍ଦେହ କରା ନଯାଇ ମୋତେହିଁ ସନ୍ଦେହ କରାଗଲା ; କାରଣ ଆମେ ଥିଲୁ କନଭର୍ଟେଡ୍ ଖ୍ରୀଷ୍ଟିୟାନ । ଖ୍ରୀଷ୍ଟିୟାନ ସମାଜରେ ଆମେ ନିଜକୁ ଖାପ ଖୁଆଇ ପାରୁନାହୁଁ । ପାଣି ବାହାରର ମାଛ ପରି ଏବେ ଆମ ଅବସ୍ଥା ।

ଯୁଆଡ଼େ ଗଲେବି ମୋ ଦେହରୁ ମୋର ମୂଳ ସଂପ୍ରଦାୟର ମୋହର ଲିଭୁନାହିଁ । ମୁଁ ଏବେ କ'ଣ କରିବି କିଛି ସ୍ଥିର କରି ପାରୁନାହିଁ । ମୁଁ ମୋ ବାପା ମାଆ ,ଆମ ସମାଜ, ସଂସ୍କୃତି, ସଂପ୍ରଦାୟ ,ପରଂପରା ସବୁ ଛାଡ଼ିଛି ।

ମୁଁ ବଣ ପାହାଡ଼ର ଝରଣା ଛାଡ଼ି ନଈକୁ ଗଲି ତଥାପି ମୋ ଶୋଷ ମେଣ୍ଟିଲା ନାହିଁ । ନଈକୁ ଛାଡ଼ି ସମୁଦ୍ର ଆଡ଼କୁ ମୁହାଁଇଲି ।ସମୁଦ୍ରର ଲୁଣିପାଣିରେ ମୋ ଶୋଷ ମେଣ୍ଟିବ କ'ଣ, କଣ୍ଠ ରୁଦ୍ଧ ହୋଇ ଯାଉଛି । ମୁଁ ଶୋଷରେ ଆଉଟୁ ପାଉଟୁ ହେଉଛି । ଏମିତି ଅବସ୍ଥାରେ ମୁଁ ସାହିତ୍ୟ କରିବି କେମିତି ନା ସଂସାର କରିବି କେମିତି ?

ଦେବାଶୀଷ ଏତେ ସମୟ ଧରି ସୁମିତ୍ରାଙ୍କ କଥା ନିରବରେ ଶୁଣି ସାରିବା ପରେ କହିଲେ-ଏସବୁ ସମସ୍ୟା ତୁମେ ନିଜେ ତିଆରି କରିଛ ସୁମିତ୍ରା ! ତୁମେ ଯେତେଦିନ ପର୍ଯ୍ୟନ୍ତ ନିଜ ମାଟି,ପାଣି, ପବନରେ ବଢ଼ି ସେଇ ଭିତ୍ତିଭୂମି ଉପରେ ଠିଆହୋଇ ଆଗକୁ ଆଗକୁ ଚାଲୁଥିଲ ସେତେଦିନ ପର୍ଯ୍ୟନ୍ତ  ସବୁ ତୁମ ପାଇଁ ସ୍ୱାଭାବିକ ଥିଲା, ଅନୁକୂଳ ଥିଲା । ତୁମେ ସ୍ୱଚ୍ଛନ୍ଦ ଥିଲ ।ତୁମେ ପାଠ ପଢ଼ିଲ,ଉପନ୍ୟାସ ଲେଖିଲ, ଚାକିରି କଲ ,ସାହିତ୍ୟ ପାଇଁ ପୁରସ୍କାର ପାଇଲ । ସମସ୍ତଙ୍କ ଠାରୁ ବାହାବାଃ ପାଇଲ ।

କିନ୍ତୁ ତୁମେ ତୁମମାଟି,ପାଣି,ପବନ,ସଂସ୍କୃତି ଓ ପରଂପରା ବାହାରର ମଣିଷକୁ ଭଲ ପାଇ ବିବାହ କଲ । ସେଠି ସବୁ ବାଧା ବନ୍ଧନ, ପ୍ରତିବନ୍ଧକକୁ ସାମନା କରି ସମସ୍ତଙ୍କୁ ଆପଣାଇ ପାରିଥିଲେ ହୁଏତ ତୁମେ ସେଠି ନିଜକୁ ପ୍ରତିଷ୍ଠିତ କରି ପାରିଥାନ୍ତ । ମାତ୍ର ତୁମେ ସେସବୁ କିଛି ନକରି ଖ୍ରୀଷ୍ଟିୟାନ ହୋଇ ଅନ୍ୟ ଗୋଟିଏ ସମାଜରେ ମିଶି ନିଜକୁ ଓ ନିଜ ସଂସାରକୁ ଆଗକୁ ନେବାକୁ ଚାହିଁଲ । ଏତେ ଶୀଘ୍ର ଏତେ ସବୁ କଥା ସବୁବେଳେ ସମ୍ଭବ ହୁଏନା ସୁମିତ୍ରା !ଏସବୁ କାମ ପାଇଁ କିଛି ସମୟ ଦରକାର । ସବୁଠି ପ୍ରତିବନ୍ଧକ ଆସିବ ।ତାକୁ ସାମନା କରିବାକୁ ହେବ ଓ ଧୈର୍ଯ୍ୟର ସହ ତାର ସମାଧାନର ବାଟ ବାହାର କରିବାକୁ ପଡ଼ିବ । ତାହେଲେ ତୁମେ ତୁମ ଚାରି ପାଖରେ ପତିଆରାର ପରିବେଶଟିଏ ସୃଷ୍ଟି କରିବାକୁ



Digitized by srujanika@gmail.com

ସମର୍ଥ ହେବ ଆଉ ତାଭିତରେ ନିଜକୁ ପ୍ରତିଷ୍ଠିତ କରି ପାରିବ । ଆନ୍ତରିକ ଉଦ୍ୟମ କଲେ ତୁମେ ସେଇ ଖ୍ରୀଷ୍ଟିୟାନ ସମାଜରେ ମଧ୍ୟ ନିଜର ପରିଆରା ସୃଷ୍ଟି କରିପାରିବ ଆଉ ନିଜକୁ ସେମାନଙ୍କ ମଧ୍ୟରେ ପ୍ରତିଷ୍ଠିତ କରି ପାରିବ । ନିଜର ଗୋଟେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରି ପାରିବ । କୌଣସି କାମ ଅସମ୍ଭବ ନୁହଁ କିନ୍ତୁ ସମୟ ସାପେକ୍ଷ ।

ତୁମେ ଯଦି ତାହା କରିବାକୁ କୁଣ୍ଠିତ ତେବେ ଏବେବି ତୁମ ପାଇଁ ଆଉ ଏକ ବିକଳ୍ପ ଖୋଲା ଅଛି ।ତୁମେ ଚାହିଁଲେ ଜେମସ୍‌ରୁ ଜାନି ନହୋଇ ମଧ୍ୟ ତୁମ ମାଟି,ପାଣି,ପବନ ଓ ପରିବେଶ ଭିତରକୁ ଫେରି ପାରିବ । ତୁମ ମାଟିରେ ତୁମେ ଅଣ୍ଟା ସଳଖି ଠିଆ ହୋଇପାରିବ । ନିଜକୁ ପ୍ରତିଷ୍ଠିତ କରାଇ ପାରିବ । ତୁମେ ଇଚ୍ଛାକଲେ ତୁମ ସଂପ୍ରଦାୟର ଶିକ୍ଷା, ସଂସ୍କାର ଓ ଆର୍ଥିକ ଅବସ୍ଥାର ସାମୁହିକ ବିକାଶ କରି ପାରିବ । ସେମାନଙ୍କର ବିକାଶ ହେଲେ ତୁମେ ବିକଶିତ ହେବ , ତୁମର ବିଶ୍ୱାସ ବଢ଼ିବ, ତୁମର ପ୍ରତିଷ୍ଠା ବଢ଼ିବ ।

ଏଇଠି ନଜିର ଅଛି ତୁମ ନିଜ ସଂପ୍ରଦାୟ ଭିତରେ ରହି ସବୁ ପ୍ରତିବନ୍ଧକର ସାମନା କରି ପାଠପଢ଼ି ଡାକ୍ତର, ଇଂଜିନିୟର, ପ୍ରଶାସନିକ ଅଫିସର୍ ହୋଇ ଲୋକ ନାଆଁ କରିଛନ୍ତି । କିଛି ଆଦିବାସୀ ମହିଳା ସମାଜସେବା କରି ପଦ୍ମଶ୍ରୀ, ପଦ୍ମବିଭୂଷଣ ଉପାଧି ପାଇଛନ୍ତି , କିଛି ଆଦିବାସୀ ତାଙ୍କ ସାହିତ୍ୟ ସଂସ୍କୃତିକୁ ନେଇ ସାଧନା କରି ସୁନାମ ଅର୍ଜନ କରିଛନ୍ତି । ଆଉ କିଛି ଆଦିବାସୀ ମହିଳା ମନ୍ତ୍ରୀ ଆଉ ରାଜ୍ୟପାଳ ମଧ୍ୟ ହୋଇ ପାରିଛନ୍ତି ।

ମୁଁ ତୁମଠି ସେମିତି କିଛି ପ୍ରତିଭା ଓ ସମ୍ଭାବନା ଥିବାର ସୂଚନା ପାଇଥିଲି ସୁମିତ୍ରା ! ତୁମେ କିନ୍ତୁ ତାର ଉପଯୋଗ କଲନାହିଁ । ଏବେ ବି ସେମିତି କିଛି ବିଳମ୍ବ ହୋଇ ଯାଇନାହିଁ । ତୁମେ ଭାଙ୍ଗି ନପଡ଼ି ଅଣ୍ଟା ସଳଖି ଠିଆହୁଅ, ଲକ୍ଷ୍ୟ ସ୍ଥିର କର , ଆଗକୁ ଆଗକୁ ଆଗେଇ ଚାଲ । ମୋ ଆଶା ଓ ବିଶ୍ୱାସ , ତୁମେ ପାରିବ । ନିଶ୍ଚୟ ପାରିବ ।

ସୁମିତ୍ରା କିଛି ଉତ୍ତର ନଦେଇ ନିରବରେ ଠିଆହୋଇ ମନେମନେ ହିସାବ କରୁଥିଲେ ସିଏ କେତେ ଠିକ୍ କରିଛନ୍ତି ଆଉ କେତେ ଭୁଲ୍ । ତାଙ୍କ ଭିତରେ ଏବେ ବି କେତେ ପ୍ରତିଭା ଅଛି ଆଉ କେତେ ସମ୍ଭାବନା ? ତାଙ୍କ ଭିତରେ ଥିବା ସମସ୍ତ ସମ୍ଭାବନାର ସଂଧ୍ୟା ଆସି ଯାଇଛି ନା ସମ୍ଭାବନାର ସକାଳ ତାଙ୍କୁ ଅପେକ୍ଷା କରିଛି ?



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଅପରାଧ

ଭୁବନେଶ୍ୱରର କେନ୍ଦ୍ରସ୍ଥଳରେ ଥିବା ଷ୍ଟେଟବ୍ୟାଙ୍କ । ମାସର ପ୍ରଥମ ସପ୍ତାହ । ସମୟ ଦିନ ଏଗାରଟା ପନ୍ଦର ମିନିଟ୍ । ସବୁ କାଉଣ୍ଟରରେ ଲୋକ ଗହଳି ଲାଗି ରହିଛି । ବ୍ୟାଙ୍କ୍‌ର ପ୍ରଥମ ଗେଟ୍ ପାଖରେ ଦୁଇ ଜଣ ବନ୍ଧୁକଧାରୀ ସିକ୍ୟୁରିଟି ଗାର୍ଡ଼ ଡିଉଟି କରୁଛନ୍ତି । ହଠାତ୍ କ୍ୟାସିଅର ଚିତ୍କାର କଲେ-ଚୋର, ଚୋର ।

ଲୋକମାନେ କ୍ୟାସିଅରଙ୍କ ଆଡ଼କୁ ଚାହିଁଲେ । ଛବିଶ ସତେଇଶ ବର୍ଷର ଜଣେ ଜିନ୍‌ପ୍ୟାଣ୍ଟ ପିନ୍ଧା ଯୁବକ ଛୁରା ଧରି କ୍ୟାସିଅରଙ୍କ ଆଡ଼କୁ ମାଡ଼ି ଆସିବା ବେଳକୁ ବନ୍ଧୁକଧାରୀ ଗାର୍ଡ଼ ଦୁଇ ଜଣ ତାକୁ ମାଡ଼ିବସି କାବୁ କରିନେଲେ । ରାଜଧାନୀର ମଧ୍ୟସ୍ଥଳରେ ଓ ସ୍ୱଚ୍ଛ ଦିବାଲୋକରେ ଏମିତି ଗୋଟେ ଅତ୍ୟନ୍ତ ଦୁଃସାହସିକ କାଣ୍ଡ ଘଟିଯିବା ଦେଖି ସେଠାରେ ଉପସ୍ଥିତ ଥିବା ସମସ୍ତ ଲୋକ ଭୟ ଓ ବିସ୍ମୟରେ ଅଭିଭୁତ ହେଲେ ।

ସଙ୍ଗେ ସଙ୍ଗେ ବ୍ୟାଙ୍କ ମ୍ୟାନେଜର୍ ପୋଲିସ ଷ୍ଟେସନ୍‌କୁ ଫୋନ୍ କଲେ ଓ ପୋଲିସ୍ ଗାଡ଼ି ଆସିଲା । ଡକାୟତ  ହାତରେ ହ୍ୟାଣ୍ଡକପ୍ ପକାଇ ଥାନାକୁ ନେଇଗଲା । ଥାନାରେ ପୋଲିସ୍ ପଚରା ଉଚରା କରିବା ବେଳେ ଗୋଟିଏ ଚାପୁଡ଼ା ଖାଇବା ପରେ ଡକାୟତ ଜଣକ ହଠାତ୍ ମୂର୍ଚ୍ଛାହୋଇ ତଳେ ପଡ଼ିଗଲା । ପୋଲିସ ପ୍ରଥମେ ଭାବିଲେ ମାଡ଼ ଭୟରେ  ସିଏ ମିଛରେ ଅଚେତ ହେବାର ନାଟକ କରୁଛି । ତେଣୁ ପୋଲିସ୍ ତା'ମୁହଁରେ ପାଣି ଛାଟି ତାକୁ ଚେତା କରାଇବାକୁ ଚେଷ୍ଟା କଲେ । ଯେତେ ଯାହା କଲେ ମଧ୍ୟ ଯୁବକର ଚେତା ନଫେରିବାରୁ ପୋଲିସ୍ ଗାଡ଼ିରେ ପକାଇ ତାକୁ ମୁଖ୍ୟ ଡାକ୍ତରଖାନାକୁ ନିଆଗଲା ।ସେଠାରେ ଡାକ୍ତରମାନେ ବହୁତ ଚେଷ୍ଟା କଲା ପରେ ମଧ୍ୟ ତାର ହୋସ ଫେରିଲା ନାହିଁ । ବିଭିନ୍ନ ଡାକ୍ତରୀ ପରୀକ୍ଷା କରିବା ପରେ ଜଣା ପଡ଼ିଲା ଯେ  ଯୁବକ ରକ୍ତ କର୍କଟ ରୋଗରେ ପୀଡ଼ିତ । ତାର ତୁରନ୍ତ ଉପଯୁକ୍ତ ଚିକିତ୍ସା କରା ନଗଲେ କେତେବେଳେ ସିଏ ମରିଯିବ ସେକଥା କହିହେବ ନାହିଁ ।

ତୁରନ୍ତ ଏସ୍.ପି.ଙ୍କ ପାଖକୁ ଖବର ଗଲା ଓ ସେ ତାଙ୍କର ସବୁକାମ ଛାଡ଼ି ଡାକ୍ତରଖାନାରେ ପହଞ୍ଚିଲେ । ଯୁବକର ସ୍ୱାସ୍ଥ୍ୟ ଅତିଶୟ ଶୋଚନୀୟ ବୋଲି ହୃଦୟଙ୍ଗମ କରି ମୁଖ୍ୟଚିକିତ୍ସକଙ୍କ ସହିତ ଆଲୋଚନା କଲେ । ମୁଖ୍ୟଚିକିତ୍ସକ ଏମିତି ଗୋଟେ ସ୍ପର୍ଶକାତର କେସ୍‌କୁ ହାତକୁ ନେବାକୁ ଭୟକଲେ । ସେ କହିଲେ- ଦେଖନ୍ତୁ ସାର୍ ! ଏ ରୋଗର ଫଳପ୍ରଦ ଚିକିତ୍ସା ବ୍ୟବସ୍ଥା ଆମ ହସପିଟାଲ୍‌ରେ ନାହିଁ । ତୁରନ୍ତ ରୋଗୀକୁ କଟକରେ

ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

ଥିବା ସରକାରୀ କର୍କଟ ହସପିଟାଲକୁ ସିଫ୍ଟ କରାନ୍ତୁ ।

ଏସ୍. ପି.ଙ୍କ କହିବା ଅନୁସାରେ ମୁଖ୍ୟ ଚିକିତ୍ସକ କର୍କଟ ହସପିଟାଲର ମୁଖ୍ୟଙ୍କ ସହିତ ଯୋଗାଯୋଗ କଲେ । ଯୁବକର ରୋଗର ଅବସ୍ଥା ବିଷୟରେ ସବିଶେଷ ଆଲୋଚନା କଲା ପରେ କର୍କଟ ହସ୍‌ପିଟାଲର ମୁଖ୍ୟ ତାଙ୍କର ଅକ୍ଷମତା ପ୍ରକାଶ କାରି କହିଲେ-ନା ସେପରି ରୋଗୀର ଫଳପ୍ରଦ ଚିକିତ୍ସା ବ୍ୟବସ୍ଥା ଆମ ହସପିଟାଲ୍‌ରେ ଏପର୍ଯ୍ୟନ୍ତ ନାହିଁ । ରୋଗୀକୁ ବମ୍ବେର ଟାଟା ମେମୋରିଆଲ ହସ୍‌ପିଟାଲ୍‌କୁ ସ୍ଥାନାନ୍ତର ନକଲେ ଶତକଡ଼ା ଶହେ ବିପଦ ଅଛି । ଯଦି ଭଲ ମନ୍ଦ କିଛି ହୋଇ ଯାଏ ତାହେଲେ ଟିଭି ଆଉ ଖବର କାଗଜବାଲା ତିଳକୁ ତାଳ କରି ପ୍ରଚାର କରିବେ ଆଉ ଲୋକମାନେ କିଛି ନବୁଝି ହସପିଟାଲ୍‌ରେ ପଶି ଭଙ୍ଗାରୁଜା ଓ ବାଡ଼ିଆ ପିଟା ଆରମ୍ଭ କରିଦେବେ । ଏଠି ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇଯିବ । ଦୟାକରି ରୋଗୀକୁ ଏଠିକୁ ରେଫର ନକରି ଟାଟା ମେମୋରିଆଲ ହସପିଟାଲକୁ ତୁରନ୍ତ ପଠାଇବାର ବନ୍ଦୋବସ୍ତ କରନ୍ତୁ ।

ଏସ.ପି ଖୁବ୍ ଅଡୁଆରେ ପଡ଼ିଲେ । ଯୁବକକୁ ଏମିତି ଅବସ୍ଥାରେ ଥାନାକୁ ନେଲେ ସେଠି ଯଦି ସିଏ ପ୍ରାଣ ହରାଏ ତାହେଲେ ତାଙ୍କ ଉପରେ ରେସପନ୍‌ସିବିଲିଟି ଫିକ୍ସ ହେବ । ମିଡିଆବାଲାଏ ପୋଲିସ୍ ଓ ସରକାର ବିରୁଦ୍ଧରେ ଯାକୁ ଗୋଟେ ବଡ଼ ଇସୁ କରି ହଲାଗୁଲା କରିବେ । ବିରୋଧୀ ଦଳକୁ ମଧ୍ୟ ଏଇଟା ଭଲ ଖୋରାକ ଯୋଗାଇବ । ଏତେ ବଡ଼ ଦାୟିତ୍ୱ ଏକା ଏକା ନିଜ ମୁଣ୍ଡକୁ ନ ନେଇ ଆଇ.ଜି.ଙ୍କ ଅର୍ଡ଼ର ନେଇଯିବା ସବୁଠୁ ନିରାପଦ ହେବ । ସିଏ ସଙ୍ଗେ ସଙ୍ଗେ ଆଇ.ଜି.ଙ୍କୁ ଫୋନ୍ ଲଗାଇଲେ । ସବୁ ଶୁଣିବା ପରେ ଆଇ.ଜି. ବିରକ୍ତ ହେଲେ-ଆପଣମାନେ ନିଜେ ହଇରାଣ ହେବେ ଆଉ ସମସ୍ତଙ୍କୁ ହଇରାଣ କରିବେ । ଆଉ ଲୋକ ମିଳିଲେ ନାହିଁ ଯେ ଗୋଟେ କ୍ୟାନସର୍ ରୋଗୀକୁ ବ୍ୟାଙ୍କ ଡକାୟତି କେସ୍‌ରେ ଆରେଷ୍ଟ କଲେ ? ଠିକ୍ ଅଛି, ଆପଣ ଆଉ ଗୋଟେ କାମ କରନ୍ତୁ , ସେ କ୍ୟାନସର୍ ପେସେଣ୍ଟକୁ ଛାଡ଼ି ଦିଅନ୍ତୁ । ତା' ସ୍ଥାନରେ ଆଉ ଗୋଟେ ପୁରୁଣା ଦାଗୀକୁ ଆରେଷ୍ଟ କରି ବ୍ୟାଙ୍କ ଡକାୟତି କେସ୍‌ରେ ବୁକ୍ କରି କୋର୍ଟ ଚାଲାଣ କରି ଦିଅନ୍ତୁ । ତେଣିକି ଯାହାହେବ ସେ କଥା ମୁଁ ବୁଝିବି ।

ଏସ୍.ପି. କହିଲେ–ନାଇଁ ସାର୍, କଥାଟା ଅଡୁଆ ହୋଇ ଯାଇଛି । ବ୍ୟାଙ୍କର କ୍ଲୋଜ ସର୍କିଟ କ୍ୟାମେରାରେ ସେ ଯୁବକ ଡକାୟତି କରିବାକୁ ଉଦ୍ୟମ କଲାବେଳେ ଫଟୋ ଉଠି ଯାଇଛି । ତାଛଡ଼ା ସେ ଯୁବକକୁ ଆରେଷ୍ଟ କଲାବେଳେ କେତେ ଜଣ ଟିଭି ସାମ୍ବାଦିକ ତା'ର ଫଟୋ ନେଇ ଯାଇଛନ୍ତି । ତେଣୁ ତା'ଜାଗାରେ ଆଉ କାହାକୁ ଆରେଷ୍ଟ କରିବା ସମ୍ଭବ ନୁହଁ ସାର୍ । ବରଂ ଆଉ ଡେରି ନକରି ଏ ଯୁବକର ଶୀଘ୍ର ଚିକିତ୍ସା ବ୍ୟବସ୍ଥା କଲେ ଭଲ ହେବ । ଆପଣ ଟିକେ ଏବିଷୟରେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସହିତ କଥା ହେଲେ



Digitized by srujanika@gmail.com

ଭଲ ହୁଅନ୍ତା ସାର୍ ।

ଆଇ.ଜି. କହିଲେ-ଠିକ୍ ଅଛି, ମୁଁ ଆଗ ହୋମ୍ ମିନିଷ୍ଟରଙ୍କ କାନରେ କଥାଟା ପକାଏ । ସିଏ କ'ଣ କହୁଛନ୍ତି ଦେଖିବା । ଆପଣ ଏବେ ଗୋଟେ କାମ କରନ୍ତୁ , ସେ ଯୁବକକୁ ଆ.ସି.ୟୁ.ରେ ଭର୍ତ୍ତି କରି ଦିଅନ୍ତୁ ଓ ପାଖେ ପାଖେ ନିଜେ ରୁହନ୍ତୁ । ହଁ, ଆମ ରାଜ୍ୟରେ ଯାହା ଚିକିତ୍ସା ସମ୍ଭବ ସେ ସବୁ ଯେମିତି ତାକୁ ଯୋଗାଇ ଦିଆଯାଏ ସେଥିପ୍ରତି ଦୃଷ୍ଟି ଦିଅନ୍ତୁ । ପୂରା ଡାକ୍ତରଖାନାକୁ ହାଇ ଆଲଟ୍ ରଖନ୍ତୁ । ଆଉ ଗୋଟେ କଥା, ଆଉ କୌଣସି ଜଣେ ହେଲେ ସାମ୍ବାଦିକ କିମ୍ବା ଫଟୋଗ୍ରାଫର ସେଠିକି ଯେମିତି ନଯାଆନ୍ତି ।

ଆଇ.ଜି. ହୋମ୍ ମିନିଷ୍ଟରଙ୍କ ସହିତ ଫୋନ୍‌ରେ କଥା ହେଲେ । ସିଏ ଏକଥା ଶୁଣି ବହୁତ ରାଗି ଯାଇ କହିଲେ-ଗୋଟେ ଅପରାଧୀକୁ ଆପଣ ସମ୍ଭାଳି ପାରୁ ନାହାନ୍ତି, ଏ ସମଗ୍ର ରାଜ୍ୟର ଆଇନ୍ ଶୃଙ୍ଖଳା ପରିସ୍ଥିତି କ'ଣ ସମ୍ଭାଳିବେ ? ଆପଣଙ୍କ ମୁଣ୍ଡରେ କିଛି ହେଲେ ବୁଦ୍ଧି ନାହିଁ । ମୋ ମୁଣ୍ଡରେ ଦୁନିଆ ଯାକର ଟେନସନ୍ ,ଆପଣ ପୁଣି ଗୋଟେ ଅଯଥା ଟେନସନ୍ ସୃଷ୍ଟି କରୁଛନ୍ତି । ଆଚ୍ଛା ସେଟା ମାଓବାଦୀ ନୁହଁତ ? ତାର ସବୁ ରେକର୍ଡ଼ ଭେରିଫାଏ କରିଛନ୍ତି ? ଆପଣ ସିଓର ସିଏ ମାଓବାଦୀ କି ଆତଙ୍କବାଦୀ ନୁହଁ ? ହଁ, ଆଉ ଗୋଟେ କଥା । ଆପଣ ତଦନ୍ତ କରି ଦେଖନ୍ତୁ ସେ ଯୁବକ କିଏ ? ତା ଘର କେଉଁଠି ? ତାର ଟିକ୍‌ନିଖ୍ ବାୟୋଡ଼ାଟା ସଂଗ୍ରହ କରନ୍ତୁ । ତାର ଆଉ କୌଣସି ଡକାୟତ ଦଳ ସହିତ କିଛି ସଂପର୍କ ଅଛିକି ନାହିଁ ସେକଥା ମଧ୍ୟ ଅନୁସନ୍ଧାନ କରନ୍ତୁ । ତେବେ ଠିକ୍ ଅଛି, ଆପଣ ଏବେ ଦେଖନ୍ତୁ କିଛି ବ୍ୟବସ୍ଥା ନହେଲା ପର୍ଯ୍ୟନ୍ତ ସେ ଯୁବକ ଯେମିତି ମରି ନଯାଏ । ମରିଗଲେ ମହା ଅନର୍ଥ କରିବେ ବିରୋଧୀ ଦଳ ଆଉ ମିଡ଼ିଆବାଲା । ମୁଁ ସ୍ୱାସ୍ଥ୍ୟ ମନ୍ତ୍ରୀଙ୍କ ସହିତ ଆଲୋଚନା କଲା ପରେ କହିବି କ'ଣ କରାଯିବ । ତାକୁ ଟାଟା ମେମୋରିଆଲ ହସ୍‌ପିଟାଲ୍‌କୁ ପଠାଇବାକୁ ହେଲେ ଉଡ଼ାଜାହାଜରେ ପଠାଇବାକୁ ପଡ଼ିବ । ଟ୍ରେନରେ ଗଲେ ଦୁଇ ଦିନ ଲାଗିବ । ବାଟରେ ଯଦି ସିଏ ମରିଯାଏ ତାହେଲେ ଏ ବିରୋଧୀ ଦଳର ଲୋକମାନେ ଆମକୁ ହଲାପଟା କରିବେ ।

ଆଇ.ଜିଙ୍କ ଫୋନ୍ ପାଇ ଗୃହମନ୍ତ୍ରୀ ତୁରନ୍ତ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସହିତ ଆଲୋଚନା କଲେ । ସ୍ୱାସ୍ଥ୍ୟମନ୍ତ୍ରୀ ବି ଡରିଲେ କିଛି ଠୋସ୍ ନିଷ୍ପତ୍ତି ନେବା ପାଇଁ । ତାଙ୍କୁ କଥାଟା ଅଡୁଆ ଲାଗିଲା ଏଇଥି ପାଇଁ ଯେ ବ୍ୟାଙ୍କ ଡକାୟତି କରୁଥିବା ଓ କ୍ୟାସିଅରକୁ ହତ୍ୟାକରିବାକୁ ଉଦ୍ୟମ କରିଥିବା ଗୋଟେ ଦୁର୍ଦ୍ଦାନ୍ତ ଡକାୟତର ଚିକିତ୍ସା ଲାଗି ରାଜ୍ୟ ରାଜକୋଷରୁ ଏତେ ଗୁଡ଼େ ଅର୍ଥ ଶ୍ରାଦ୍ଧକରି ତାକୁ ତୁରନ୍ତ ବମ୍ବେ ପଠାଇବାକୁ ପଡ଼ିବ । ଏ ମିଡ଼ିଆବାଲା ଆଉ ବିରୋଧୀ ଦଳଙ୍କର ବ୍ଲେଡ଼ ପରି ଦୁଇ ପାଖରେ ଧାର । ସେ ଯୁବକଟା ଯଦି ପୋଲିସ୍ ହାଜତରେ ମରେ ତେବେ ମହା ଝମେଲା । ମାନବ ଅଧୀକାର କମିଶନ୍ ପର୍ଯ୍ୟନ୍ତ କଥା



Digitized by srujanika@gmail.com

ଯିବ । ରେଡ଼ିଓ,ଟିଭି, ଖବର କାଗଜ ଓ ବିରୋଧୀ ଦଳ ଶବକୁ ଚିଲ ଶାଗୁଣା ବେଢ଼ିବା ପରି ଘେରିଯିବେ ଆଉ ଆମକୁ ଝୁଣି ପକାଇବେ । ତେଣୁ ସେ ପ୍ରସ୍ତାବ ଦେଲେ ଏ ବିଷୟରେ ମୁଖ୍ୟମନ୍ତ୍ରୀଙ୍କ ସହିତ ପରାମର୍ଶ କରିବା ପାଇଁ ।

ଗୃହମନ୍ତ୍ରୀ ନିଜେ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ଚ୍ୟାମ୍ବରରେ ସାକ୍ଷାତ କଲେ । ମୁଖ୍ୟମନ୍ତ୍ରୀ ସବୁ ଶୁଣିବା ପରେ କହିଲେ-ଠିକ୍ ଅଛି, ତାକୁ ଗୋଟେ ସ୍ୱତନ୍ତ୍ର ହେଲିକ୍ୟାପ୍ଟରରେ ଟାଟାମୋମୋରିଆଲ ହସପିଟାଲ୍‌କୁ ତୁରନ୍ତ ପଠାଇବାର ବ୍ୟବସ୍ଥା କର । ମହାରାଷ୍ଟ୍ରର ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ କହି ତା'ର ଚିକିତ୍ସାର ବ୍ୟବସ୍ଥା କରାଅ । ସେ ଯୁବକ ବମ୍ବେକୁ ଯିବା ବାଟରେ ମରି ନଯାଏ ଯେପରି ସେଥିପ୍ରତି ଦୃଷ୍ଟିଦେବ । ଏ ସବୁ କାମ ତୁରନ୍ତ ହେବା ଆବଶ୍ୟକ ।

ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀଙ୍କ ଆଦେଶ ପାଳିତ ହେଲା । ସେ ଯୁବକକୁ ବମ୍ବେର ଟାଟା ମେମୋରିୟାଲ ହସପିଟାଲକୁ ସ୍ଥାନାନ୍ତର କରାଗଲା । ତା ସହିତ ଜଣେ ଡାକ୍ତର,ଜଣେ ନର୍ସ ଓ ସଂପୃକ୍ତ ଥାନାର ଦୁଇଜଣ ପୋଲିସ୍ ଗଲେ । ଏସବୁ କାମ ଖୁବ୍ ଗୋପନୀୟ ଭାବେ କରାଗଲା । ତଥାପି ତାପର ଦିନ ସବୁ ଖବର କାଗଜର ପ୍ରଥମ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇଲା-ଦୁର୍ଦ୍ଧାନ୍ତ ବ୍ୟାଙ୍କ ଡକାୟତର ରକ୍ତ କର୍କଟ ରୋଗର ବ୍ୟୟବହୁଳ ଚକିତ୍ସା ରାଜ୍ୟ ସରକାର ବମ୍ବେର ଟାଟାମେମୋରିଆଲ ହସପିଟାଲ୍‌ରେ କରୁଛନ୍ତି । ଏହା ଆମ ରାଜ୍ୟ ସରକାରଙ୍କର ତାଜୁବ ବିଚାର । ଆମ ରାଜ୍ୟରେ ହଜାର ହଜାର ଦରିଦ୍ର, ଅସହାୟ ଲୋକ ସାମାନ୍ୟ ଚିକିତ୍ସା ନପାଇ ରାସ୍ତା କଡ଼ରେ ପଡ଼ି ପୋକ ମାଛି ପରି ମରୁଥିବା ବେଳେ ଜଣେ ଦୁର୍ଦ୍ଧାନ୍ତ ଅପରାଧୀ ପ୍ରତି ରାଜ୍ୟ ସରକାରଙ୍କର ଏ ଅହେତୁକ ଅନୁକମ୍ପା ଓ ଅନୁଗ୍ରହ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଛି । ଏ ବିଷୟରେ ଗୃହମନ୍ତ୍ରୀ ସ୍ପଷ୍ଟିକରଣ ଦେବାକୁ ସର୍ବସାଧାରଣରେ ପ୍ରବଳ ଦାବି ହେଉଛି ।

ଖବର କାଗଜ ପୃଷ୍ଠାରେ ବିତର୍କ ଆରମ୍ଭ ହୋଇଗଲା । ବିରୋଧୀ ଦଳ ବିଧାନ ସଭାରେ ଖୁବ୍ ପାଟି ତୁଣ୍ଡ କଲେ ।ଚୋରର ଚିକିତ୍ସା ଚାଲିଲା ।କିନ୍ତୁ ଇଏତ ଏମିତି ସେମିତି ରୋଗ ନୁହେଁ, ରକ୍ତ କର୍କଟ ରୋଗ । ଡାକ୍ତର ପରାମର୍ଶ ଦେଲେ ଦୀର୍ଘ ଦିନ ଚିକିତ୍ସା ଦରକାର ।

ଏହି ସମୟ ମଧ୍ୟରେ ଡକାୟତର ପରିଚୟ ପାଇଁ ପୋଲିସ୍ ତଦନ୍ତ ଚାଲିଲା ।କିନ୍ତୁ ତା ବିଷୟରେ କିଛି ହେଲେ ତଥ୍ୟ କେଉଁଠି ମିଳିଲା ନାହିଁ । ତେବେ ଏତିକି ସ୍ପଷ୍ଟ ହେଲାଯେ ସେ ଯୁବକ ଜଣେ ପ୍ରଫେସନାଲ ଚୋର କି ଡକାୟତ ନୁହଁ । କୌଣସି ଥାନାରେ ତା ବିରୁଦ୍ଧରେ କୌଣସି ଅଭିଯୋଗ ନାହିଁ କି କିଛି ରେକର୍ଡ଼ ନାହିଁ । ତେଣୁ ପୋଲିସ ବାଧ୍ୟହୋଇ ଓଡ଼ିଶାର ସବୁ ଖବର କାଗଜରେ ସେ ଯୁବକର ଫଟୋ ପ୍ରକାଶ କରିବା ସହିତ ବିଜ୍ଞପ୍ତି



Digitized by srujanika@gmail.com

ଜାରି କଲେ ଯେ ଯୁବକ ଜଣକ ବ୍ୟାଙ୍କ ଡକାୟତି କରିବା ବେଳେ ପୋଲିସ୍ ହାତରେ ଧରା ପଡ଼ିଛି ଏବଂ ପୋଲିସ ହାଜତରେ ଥିବାବେଳେ ଜଣା ପଡ଼ିଲା ଯେ ସେ ଦୁରାରୋଗ୍ୟ ରକ୍ତ କର୍କଟ ରୋଗରେ ପୀଡ଼ିତ । ତେଣୁ ଯଦି ତାଙ୍କର କେହି ନିକଟ ସଂପର୍କୀୟ ଥାଆନ୍ତି ତାହେଲେ କ୍ୟାପିଟାଲ ପୋଲିସ୍ ଷ୍ଟେସନରେ ଯୋଗାଯୋଗ କରନ୍ତୁ ।

ଏ ଖବର ପ୍ରକାଶ ପାଇବାର ଗୋଟିଏ ସପ୍ତାହ ବିତି ଯାଇଥିଲେ ମଧ୍ୟ କାହାରି ଠାରୁ କିଛି ପ୍ରତିକ୍ରିୟା ମିଳିଲା ନାହିଁ । ପୋଲିସ ଏସ.ପି ବାରମ୍ବାର ଥାନାକୁ ଫୋନ୍ କରି ଗାଳିଦେଲେ-ତୁମେ ସବୁ ଅପଦାର୍ଥ, ଅଯୋଗ୍ୟ । ସାମାନ୍ୟ ଗୋଟେ ଡକାୟତର ପରିଚୟ ଯୋଗାଡ଼ କରି ପାରିଲ ନାହିଁ । ତୁମକୁ ସବୁ କୋରାପୁଟ କି କଳାହାଣ୍ଡି ଟ୍ରାନସ୍ଫର କରିବି ନଚେତ ସସପେଣ୍ଡ କରିବି । ଦେଖ, ମୁଁ ତୁମକୁ ଆଉ ଦୁଇ ଦିନ ସମୟ ଦେଲି । ଏଇ ଦୁଇ ଦିନ ଭିତରେ ତୁମେ ଯଦି ସେ ଯୁବକର ସମସ୍ତ ତଥ୍ୟ ସଂଗ୍ରହ କରି ନପାର ତାହେଲେ ତମେ ମତେ ଚିହ୍ନିବ ।

ଥାନାର ଇନିସପେକ୍ଟର , ସବ ଇନ୍ସପେକ୍ଟର ଓ ସମସ୍ତ କନେଷ୍ଟବଳ ପ୍ରମାଦ ଗଣିଲେ । କିନ୍ତୁ ସେମାନେ ନାଚାର । ସେ ଯୁବକ ବିଷୟରେ କେହି କିଛି ତଥ୍ୟ ଦେଇ ପାରୁ ନାହାଁନ୍ତି କି କୌଣସି ଥାନାରୁ କିଛି ରେକର୍ଡ ମିଳୁ ନାହିଁ ।ସମସ୍ତେ ମୁଣ୍ଡରେ ହାତ ଦେଇ ବସିଲେ ।ତାଙ୍କର ସମସ୍ତ ଉଦ୍ୟମ ପଣ୍ଡ ହୋଇଛି ।

ତେବେ ଏସ୍.ପି. ବିଚାର କଲେ ଏଯୁବକର କିଛି ହେଲେ ତଥ୍ୟ ଆମ ରାଜ୍ୟରେ ନମିଳିବାର କାରଣ କ'ଣ ? ଏ ଯୁବକ କ'ଣ ଅନ୍ୟ ରାଜ୍ୟର ? ପଡ଼ୋଶୀ ରାଜ୍ୟ ପଶ୍ଚିମ ବଙ୍ଗ କି ମଧ୍ୟ ପ୍ରଦେଶର ନୁହଁତ ? ବଙ୍ଗଳାଦେଶୀ ମଧ୍ୟ ହୋଇ ପାରେ ।

ତେଣୁ ଏସ୍.ପି ଆଦେଶ କଲେ ପ୍ରଥମେ ପଶ୍ଚିମ ବଙ୍ଗ ଓ ପରେ ମଧ୍ୟ ପ୍ରଦେଶ ପୋଲିସ୍ ସହିତ ପରାମର୍ଶ କାରାଯିବ ।ପୋଲିସ୍ ଇନିସପେକ୍ଟର ସବୁ ରେକର୍ଡ଼ପତ୍ର ଧରି କଲିକତା ଯିବାକୁ ପ୍ରସ୍ତୁତ ହେଉଥିବାବେଳେ ହଠାତ୍ ଜଣେ ଯୁବତୀ ଥାନାରେ ପହଞ୍ଚି ଇନିସପେକ୍ଟରଙ୍କ ଆଗରେ ଯୁବକଟିର ଫଟୋ ପ୍ରକାଶ ପାଇଥିବା ଗୋଟିଏ ଖବର କାଗଜ ଥୋଇ ଅଭିଯୋଗ କଲେ-ଏମିତି ଏକ ମିଥ୍ୟା ବିଜ୍ଞାପନ ଆପଣ କି ଅଭିସନ୍ଧି ରଖି ପ୍ରକାଶ କରିଛନ୍ତି ? ସଂବିତ ଜଣେ ଉଚ୍ଚ ଶିକ୍ଷିତ ମେଧାବୀ ଛାତ୍ର । ତାଙ୍କୁ ଆପଣ କାହିଁକି ଆରେଷ୍ଟ କରିଛନ୍ତି ? ସିଏ ତାଙ୍କ ଜୀବନରେ କେବେ ଚୋରି କରି ନାହାଁନ୍ତି । ତାଙ୍କ ପରି ଜଣେ ସାଧୁ, ଶାନ୍ତ, ଶିଷ୍ଟ,ସୁଧାର ଓ ଶିକ୍ଷିତ ଯୁବକ କେବେ ଚୋରି କରି ପାରିବେ ନାହିଁ । ତାଛଡ଼ା ଆପଣମାନେ ଆଉ ଗୋଟେ ମିଛ କଥା ମଧ୍ୟ ଏଥିରେ ଲେଖିଛନ୍ତି ଯେ ସିଏ ରକ୍ତ କର୍କଟ ରୋଗରେ ପୀଡ଼ିତ । ଏ ସବୁ ଡାହା ମିଛ । ମୁଁ ଜାଣିବାରେ ତାଙ୍କଠି ସେପରି କିଛି ମାରାତ୍ମକ ରୋଗ ନାହିଁ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ପୋଲିସ ଇନସପେକ୍ଟରଙ୍କ ମୁହଁ ହଠାତ୍ ଉଜ୍ଜଳ ଦିଶିଲା । ଯୁବକର ପ୍ରକୃତ ପରିଚୟ ପର୍ଯ୍ୟନ୍ତ ପହଞ୍ଚିବାର ଗୋଟେ ସୂତ୍ର ମିଳିଗଲା । ଯୁବତୀଙ୍କୁ ଗୋଟିଏ ଚେୟାରରେ ବସାଇଲେ । ଯୁବତୀଙ୍କ ବେଶ ପୋଷାକ ଓ କଥାବାର୍ତ୍ତାରୁ ଜଣା ପଡୁଥିଲା ସିଏ ଉଚ୍ଚ ଶିକ୍ଷିତା । ସୁନ୍ଦର ସ୍ୱାସ୍ଥ୍ୟ ଓ ଆକର୍ଷଣୀୟ ରୂପ । ବୟସ ଚବିଶ ପଚିଶ । ଯୁବତୀଙ୍କର କୌଣସି ପ୍ରଶ୍ନର ଉତ୍ତର ନଦେଇ ପୋଲିସ ଇନିସପେକ୍ଟର ତାଙ୍କୁ ପ୍ରଶ୍ନକଲେ-ଏ ଯୁବକଙ୍କୁ ଆପଣ ତାହେଲେ ଚିହ୍ନନ୍ତି ? ଯାଙ୍କ ନାଆଁ ତେବେ ସଂବିତ ? ଆପଣଙ୍କ ନାଁ କ'ଣ ଓ ସଂବିତଙ୍କ ସହିତ ଆପଣଙ୍କର ସଂପର୍କ କ'ଣ ?

ଯୁବତୀଙ୍କ ଉତ୍ତର ଥିଲା-ମୋ ନାମ ଶାଶ୍ୱତୀ ସାମଲ । ସଂବିତ ମୋର ଫ୍ରେଣ୍ଡ ।

-ଫ୍ରେଣ୍ଡ ନା ବଏଫ୍ରେଣ୍ଡ , ପ୍ରେମିକ ?

- ମୁଁ ତାଙ୍କର ବାଗଦତ୍ତା । ଆମେ ଦୁହେଁ ବିବାହ କରିବାକୁ ଏକ ରକମ ସ୍ଥିର କରିଛୁ ।

-ତାଙ୍କ ବାପା, ମାଆଙ୍କ ନାମ ଓ ତାଙ୍କର ପ୍ରକୃତ ଠିକଣା କ'ଣ ?

ଶାଶ୍ୱତୀ ନିର୍ବିକାର ଭାବରେ ଉତ୍ତର ଦେଲେ-ମୁଁ ସେ ସବୁ କିଛି ଜାଣି ନାହିଁ ।

ଏଥର ଇନିସପେକ୍ଟର କଠୋର କଣ୍ଠରେ ପ୍ରଶ୍ନକଲେ-ଜାଣି ନାହାଁନ୍ତି ନା ଜଣାଇବାକୁ ଚାହୁଁ ନାହାଁନ୍ତି ? ଯାହାକୁ ଆପଣ ପ୍ରେମ କରୁଛନ୍ତି ଆଉ ବିବାହ କରିବାକୁ ସ୍ଥିର କରିଛନ୍ତି , ତା' ବିଷୟରେ ଆପଣ କିଛି ଜାଣି ନାହାଁନ୍ତି ? ଦେଖନ୍ତୁ, ପୋଲିସ୍‌କୁ ଆପଣଙ୍କୁ ସହଯୋଗ କରିବାକୁ ପଡ଼ିବ । ଆପଣ ଯଦି ଭଲରେ ଭଲରେ ସଂବିତଙ୍କ ଘରର ଠିକଣା ନବତାଇବେ ତାହେଲେ ଆମକୁ କଠୋର ପନ୍ଥା ଗ୍ରହଣ କରିବାକୁ ହେବ । ମୁଁ ଆପଣଙ୍କୁ ଆରେଷ୍ଟ କରିବାକୁ ବାଧ୍ୟ ହେବି ।

ଶାଶ୍ୱତୀ ଏଥର ଟିକେ ନରମି ଯାଇ କହିଲେ- ନାଇଁ ସାର୍ ! ମୁଁ ପ୍ରକୃତରେ ସଂବିତଙ୍କ ପ୍ରକୃତ ଠିକଣା ନିଜେ ଜାଣି ନାହିଁ ।

-ନା, ଆମେ ଆପଣଙ୍କର ଏ କଥାକୁ ଗ୍ରହଣ କରି ପାରିବୁ ନାହିଁ । ଆପଣ ତାଙ୍କର ପ୍ରେମିକା, ତାଙ୍କୁ ବିବାହ କରିବାକୁ ଯାଉଛନ୍ତି ଅଥଚ ଆପଣ ତାଙ୍କ ସଂପର୍କରେ କିଛି ଜାଣି ନାହାଁନ୍ତି । ଏ କଥା କେହି ବିଶ୍ୱାସ କରିବେ ନାହିଁ ।

-ମୋତେ ବିଶ୍ୱାସ କରନ୍ତୁ ସାର୍ ! ନିଜର ପ୍ରକୃତ ପରିଚୟ ସଂବିତ ନିଜେ ବି ଜାଣନ୍ତି ନାହିଁ ।

- ସଂବିତ ନିଜେ ନିଜର ପରିଚୟ ଜାଣନ୍ତି ନାହିଁ, ଏଟା କେମତି ସମ୍ଭବ ? ତାଙ୍କର ଜଣେ ମାଆ ଥିବେ, ଜଣେ ବାପା ଥିବେ ଆଉ ତାଙ୍କର ଗୋଟେ ଜନ୍ମସ୍ଥାନ ଥିବ । ଏସବୁ ନଥାଇ ଜଣେ ମଣିଷ କ'ଣ ଆକାଶରୁ ଗଳି ପଡ଼ିବ ? ଆପଣ ଆମ ପାଖରେ



Digitized by srujanika@gmail.com

ଚାଲାଖି ଦେଖାନ୍ତୁ ନାହିଁ । ଏନଫ୍ ଇଜ ଏନଫ୍ । ଏଥର ସତ କଥା ପ୍ରକାଶ କରନ୍ତୁ ନଚେତ ଆପଣ ଭୁଲି ଯାଅନ୍ତୁ ନାହିଁ ଯେ ଆପଣ ଜଣେ ପୋଲିସ୍ ଅଫିସରଙ୍କ ଆଗରେ ବସିଛନ୍ତି । ଆମକୁ ସତକଥା ବାହାର କରି ଆସିବ ।

ଶାଶ୍ୱତୀ ଅପେକ୍ଷାକୃତ ନରମ ଗଳାରେ ଉତ୍ତର ଦେଲେ-ମୋ କଥା ବିଶ୍ୱାସ କରନ୍ତୁ ସାର୍ ! ମୁଁ ସତ କହୁଛି । ସଂବିତଙ୍କର ବାପା, ମାଆ ନିଶ୍ଚୟ କେଉଁଠି ଥାଇ ପାରନ୍ତି କିନ୍ତୁ ସିଏ ତାଙ୍କୁ ଜାଣନ୍ତି ନାହିଁ କି ତାଙ୍କର ଠିକଣା ଜାଣନ୍ତି ନାହିଁ ।

-ଏଇଟା ଆଦୌ ବିଶ୍ୱାସ ଯୋଗ୍ୟ କଥା ନୁହଁ । ତାଙ୍କ ବାପା ମାଆଙ୍କୁ ସିଏ କେମିତି ନଜାଣିବେ ?

-ସଂବିତ ଜଣେ ଅନାଥ ଶିଶୁ ଭାବରେ ମାଲକାନଗିରିର ଗୋଟିଏ ଛୋଟ ଅନାଥାଶ୍ରମରେ ବଢ଼ିଛନ୍ତି । ସିଏ ଅତ୍ୟନ୍ତ ମେଧାବୀ ହୋଇଥିବାରୁ ବୃତ୍ତି ପାଇ ପାଠ ପଢ଼ିଛନ୍ତି । ପଢ଼ା ଖର୍ଚ୍ଚ ତୁଲାଇବା ପାଇଁ ସିଏ ଟିଉସନ କରୁଥିଲେ । ତାଛଡ଼ା ସିଏ କୌଣସି ବ୍ୟୟବହୁଳ ବୈଷୟିକ ଶିକ୍ଷା ନେଇ ନାହାଁନ୍ତି । ସଂବିତ ଅର୍ଥନୀତିରେ ଏମ.ଏ ପାସ କରିବା ପରେ ସିଭିଲ ସର୍ଭିସ ପାଇଁ ପ୍ରସ୍ତୁତ ହେଉଥିଲେ ଓ ପରୀକ୍ଷା ଦେଇଛନ୍ତି । ରିଟିନ୍ କ୍ୱାଲିଫାଏ କରି ଭାଇବା ମଧ୍ୟ ଦେଇଛନ୍ତି । ସିଏ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ । ମୋର ପୂର୍ଣ୍ଣ ବିଶ୍ୱାସ ଅଛି ସିଏ ନିଶ୍ଚୟ ଆଇ.ଏ.ଏସ୍ ପାଇବେ । ଆଉ କିଛିଦିନ ପରେ ରେଜଲ୍ଟ ପ୍ରକାଶ ପାଇବ ।

ପୋଲିସ ଇନିସପେକ୍ଟର କିଛି ସମୟ ଚିନ୍ତାକଲା ପରେ କହିଲେ-ଧରନ୍ତୁ ଆପଣଙ୍କ କଥା ସତ ଯେ ସଂବିତ ଜଣେ ଅନାଥ ଆଉ ସିଏ କୌଣସି ଅନାଥାଶ୍ରମରେ ବଢ଼ିଛନ୍ତି; କିନ୍ତୁ ଜଣେ ଶିକ୍ଷିତ ମେଧାବୀ ଛାତ୍ର ଯିଏ ଆଇ.ଏ.ଏସ୍ ପରୀକ୍ଷା ଦେଇଛି ସିଏ କାହିଁକି ଦିବାଲୋକରେ ବ୍ୟାଙ୍କ ଡକାୟତି କରୁଥିଲା ? ଆପଣ ହୁଏତ ଏକଥା ବିଶ୍ୱାସ କରି ନପାରନ୍ତି ; କିନ୍ତୁ ଏହା ସତ୍ୟ । ସଂବିତ ବ୍ୟାଙ୍କରୁ ଚୋରି କରୁଥିବା ଅବସ୍ଥାରେ ବ୍ୟାଙ୍କ ଷ୍ଟାଫ୍‌ଙ୍କ ଦ୍ୱାରା ରେଡ୍ ହ୍ୟାଣ୍ଡେଡ୍ ଧରା ପଡ଼ିଚି । ଆପଣ କହୁଛନ୍ତି ସଂବିତ ଜଣେ ଭଲ ମଣିଷ । ତେବେ ସିଏ ଚୋରି କଲା କାହିଁକି ?

ଏ ପ୍ରଶ୍ନର ଉତ୍ତର ଶାଶ୍ୱତୀ ମଧ୍ୟ ଦେଇ ପାରିଲେ ନାହିଁ । ଏ ପ୍ରଶ୍ନର ସଠିକ୍ ଉତ୍ତର ତାଙ୍କ ପାଖରେ ନାହିଁ ବୋଲି ସିଏ ସ୍ୱୀକାର କଲେ ।କିନ୍ତୁ ସିଏ ଯୋଡ଼ ହସ୍ତରେ ପୋଲିସ୍ ଇନିସପେକ୍ଟରଙ୍କୁ ନିବେଦନ କଲେ - ସଂବିତ ଜଣେ ଭଲ ମଣିଷ । ମୋର ବିଶ୍ୱାସ ସିଏ କେବେ ହଠାତ୍ ବଡ଼ଲୋକ ହେବା ଉଦ୍ଦେଶ୍ୟରେ ବ୍ୟାଙ୍କ ଡକାୟତି କରି ନଥିବେ ।ଯିଏ ଖୁବ୍ ଶୀଘ୍ର ଆଇ.ଏ.ଏସ୍. ପାଇବାକୁ ଯାଉଛି ସିଏ କାହିଁକି ବ୍ୟାଙ୍କ ଡକାୟତି ପରି ଘୃଣ୍ୟ କାମ କରିବାକୁ ଯିବ ? ସିଏ କ'ଣ ପାଇଁ ସେପରି କାମ କରିଛନ୍ତି ତାଙ୍କୁ



Digitized by srujanika@gmail.com

ପଚାରିଲେ ସିଏ ନିଶ୍ଚୟ ସତ କହିବେ ବୋଲି ମୋର ଦୃଢ଼ ବିଶ୍ୱାସ । ତେବେ ମୁଁ ଏବେ ଯାଉଛି ତାଙ୍କୁ ବମ୍ବେର ଟାଟା ମେମୋରିଆଲ ହସପିଟାଲରେ ସାକ୍ଷାତ କରିବି ।ଦୟା କରି ମୋତେ ଏଠୁ ଯିବାକୁ ଅନୁମତି ଦିଅନ୍ତୁ ।

ଇନିସପେକ୍ଟର ଗୋଟେ କାଗଜରେ ଶାଶ୍ୱତୀଙ୍କ ବୟାନ ରେକର୍ଡ଼ କରି ସେଥିରେ ତାଙ୍କର ଠିକଣା, ଫୋନ୍ ନମ୍ବର ଓ ସ୍ୱାକ୍ଷର ନେବା ପରେ ତାଙ୍କୁ କହିଲେ-ଆପଣ ଏଥର ଯାଇ ପାରନ୍ତି ମିସ୍ ଶାଶ୍ୱତୀ ! ଆବଶ୍ୟକ ହେଲେ ଆମେ ଆପଣଙ୍କୁ ଡକାଇବୁ । ହଁ, ଆଉ ଗୋଟେ କଥା । ସଂବିତ ବର୍ତ୍ତମାନ ପୋଲିସ କଷ୍ଟୋଡ଼ିରେ ଅଛି । ତେଣୁ ଟାଟା ମେମୋରଆଲ୍‌ରେ ମଧ୍ୟ ଆପଣ ତାଙ୍କୁ ସାକ୍ଷାତ କରିବାର ସୁଯୋଗ ପାଇ ପାରିବେ ନାହିଁ । ଏବେ ଆପଣ ଅଯଥା ବମ୍ବେ ଯାଆନ୍ତୁ ନାହିଁ । ସଂବିତ ସୁସ୍ଥ ହୋଇ ଭୁବନେଶ୍ୱର ଫେରିବା ପରେ ତାଙ୍କୁ ଆପଣ ସାକ୍ଷାତ କରି ପାରିବେ । ତେବେ ଆପଣଙ୍କୁ ମୋର ଗୋଟେ ଅନୁରୋଧ ସଂବିତ କାହିଁକି ବ୍ୟାଙ୍କ ଡକାୟତି କରିବାକୁ ଉଦ୍ୟମ କରିଥିଲା ସେ ସଂପର୍କରେ ଯଦି କିଛି ତଥ୍ୟ ପାଆନ୍ତି ମୋତେ ଜଣାଇବେ ।

ସେଇ ଦିନ ପୋଲିସ ଇନିସପେକ୍ଟର ଚାଲିଲେ ମାଲକାନଗିରି । ସେଠାରେ ସଂପୃକ୍ତ ଅନାଥାଶ୍ରମଟିକୁ ଖୋଜି ବାହାର କରିବାକୁ ଆଦୌ କଷ୍ଟହେଲା ନାହିଁ । ଅନାଥାଶ୍ରମର ପୁରୁଣା ରେକର୍ଡ଼ରୁ ସଂବିତର ନାଆଁ ଓ ଫଟୋ ମିଳିଗଲା ।ତାପରେ ସଂବିତ ପଢ଼ିଥିବା ହାଇସ୍କୁଲ ଓ କଲେଜର ରେକର୍ଡ଼ ଦେଖି ଇନିସପେକ୍ଟର ଜାଣି ପାରିଲେ ଯେ ସଂବିତ ଜଣେ ଅତି ମେଧାବୀ ଛାତ୍ରଥିଲା । ସଂବିତର କିଛି ପୁରୁଣା ସାଙ୍ଗ ସାଥି ଓ ଶିକ୍ଷକଙ୍କୁ ସାକ୍ଷାତ କରି ତାଙ୍କ ଠାରୁ ସଂବିତର ସ୍ୱଭାବ ,ଚରିତ୍ର ଓ ସାଧୁତା ବିଷୟରେ ଜାଣିବାକୁ ପାଇଲେ । ସମସ୍ତେ ସଂବିତର ସ୍ୱଭାବ ବିଷୟରେ ଅତ୍ୟନ୍ତ ଉଚ୍ଚ ଧାରଣା ଦେଲେ ।

ଗୋଟିଏ ମାସ ଟାଟାମେମୋରିଆଲରେ ଚିକିତ୍ସା ପରେ ସଂବିତର ସ୍ୱାସ୍ଥ୍ୟ ଅବସ୍ଥାରେ କିଛିଟା ସୁଧାର ଆସିଲା । ଜଣା ପଡ଼ିଲା ଏଇଟା ସଂବିତଙ୍କ କର୍କଟ ରୋଗର ପ୍ରାଥମିକ ଅବସ୍ଥା । ଡାକ୍ତର ସଂବିତଙ୍କୁ ଡାକ୍ତରଖାନାରୁ ଡିସଚାର୍ଜ କରିଦେଲେ । ନିୟମିତ ଚିକିତ୍ସା କରାଗଲେ ସଂବିତ ସଂପୂର୍ଣ୍ଣ ଆରୋଗ୍ୟ ହୋଇ ଯିବେ ବୋଲି ତାଙ୍କୁ ଚିକିତ୍ସା କରୁଥିବା ଡାକ୍ତର ମତଦେଲେ । ପରବର୍ତ୍ତି ଚିକିତ୍ସା ଓଡ଼ିଶାରେ ଉପଲବ୍ଧ ବୋଲି ମଧ୍ୟ ଡିସଚାର୍ଜ ପେପରରେ ଉଲ୍ଲେଖ କରିଦେଲେ । ନିର୍ଦ୍ଦିଷ୍ଟ ଦିନରେ ଉଡ଼ାଜାହାଜ ଯୋଗେ ଓଡ଼ିଶା ପୋଲିସଙ୍କ ତତ୍ୱାବଧାନରେ ସଂବିତଙ୍କୁ ଭୁବନେଶ୍ୱର ଫେରାଇ ଅଣାଗଲା ।

ପୋଲିସ୍ ଏସ.ପିଙ୍କ ଉପସ୍ଥିତିରେ ସଂବିତଙ୍କ ବୟାନ ନିଆଗଲା । ସଂବିତ ସ୍ୱୀକାର କଲେ ଯେ ସିଏ ବ୍ୟାଙ୍କ ଡକାୟତି କାରବାରରେ ସଂପୃକ୍ତ ଥିଲେ ।କିନ୍ତୁ କାହିଁକି ଏପରି ଅପରାଧ କଲେ ତାର ଉତ୍ତର ନଦେଇ ମୁଣ୍ଡ ତଳକୁ କରି ଚୁପ୍ ରହିଲେ । ତାଙ୍କୁ ବାରମ୍ବାର



Digitized by srujanika@gmail.com

ସେଇ ପ୍ରଶ୍ନ  ଧମକ ଚମକ ଦେଇ ପୋଲିସ ପଚାରିବାରୁ ସିଏ ନରମ ଗଳାରେ କହିଲେ- ଆଇ.ଏ.ଏସ  ଭାଇବା ସାରି ମୁଁ ରାଜଧାନୀ ଟ୍ରେନରେ ଭୁବନେଶ୍ୱର ଫେରିବା ବେଳେ ମୋଗଲ ସରାଇ  ଷ୍ଟେସନରେ ମୁଁ ଜଳଖିଆ ଖାଇବା ପାଇଁ ପ୍ଲାଟଫର୍ମର ଗୋଟିଏ ଜଳଖିଆ ଟ୍ରଲି ପାଖକୁ ଯାଇଥିଲି । ସେଠାରେ ମୋ ମୁଣ୍ଡ ବୁଲାଇ ଦେଲା । ମୁଁ ତଳେ ପଡ଼ିଗଲି । ମୋର ଚେତା ରହିଲା ନାହିଁ । ମୋର ଚେତା ଫେରିବା ବେଳକୁ ମୁଁ ଜାଣି ପାରିଲି ଯେ ମୁଁ ମୋଗଲ ସରାଇର ଗୋଟେ ହସପିଟାଲ୍ ବେଡ଼ରେ ଶୋଇଛି । ତାପରେ ମୋତେ ଡାକ୍ତରଖାନା ତରଫରୁ ଜଣାଇ ଦିଆ ଗଲାଯେ ମୁଁ ରକ୍ତ କର୍କଟ ରୋଗରେ ପୀଡ଼ିତ । ଏଇଟା ପ୍ରଥମିକ ଅବସ୍ଥା ।ଏଇ ପ୍ରାଥମିକ ଅବସ୍ଥାରେ ଉପଯୁକ୍ତ ଚିକିତ୍ସା କରାଗଲେ ମୁଁ ରୋଗମୁକ୍ତ ହୋଇ ପାରିବି । ମୁଁ ଡାକ୍ତରଖାନାରୁ ଡିସଚାର୍ଜ ହେବା ପରେ ଭୁବନେଶ୍ୱର ଫେରି ଆସିଲି ।ମୋ ଚିକିତ୍ସା ପାଇଁ ପ୍ରଚୁର ଟଙ୍କାର ଆବଶ୍ୟକ,  କିନ୍ତୁ ମୋ ପାଖରେ କିଛି ହେଲେ ଟଙ୍କା ନଥିଲା ।

ଏସ.ପି. ପ୍ରଶ୍ନକଲେ- ତୁମେ ଜଣେ ଉଚ୍ଚ ଶିକ୍ଷିତ ଆଉ ମେଧାବୀ ଯୁବକ । ପରୀକ୍ଷା ଫଳ ପ୍ରକାଶ ପାଇଲେ ଯଦି ଆଇ.ଏ.ଏସ ପାଇଯାଅ ତେବେ ଦେଶର ଜଣେ ଦାୟିତ୍ୱବାନ ପ୍ରଶାସକ ହେବ । ବ୍ୟାଙ୍କ ଡକାୟତି ପରି ଗୋଟେ ଅପରାଧ କରିବା ତୁମ ପକ୍ଷେ ଉଚିତ ହୋଇ ନାହିଁ । ଜାଣି ଜାଣି ଆଇନକୁ ହାତକୁ ନେଇ ତୁମେ ଦଣ୍ଡନୀୟ ଅପରାଧ କରିଛ । ଆମେ ତୁମକୁ କୋର୍ଟ ଫରୱାର୍ଡ଼ କରିବୁ । ତୁମ ଅପରାଧର  ବିଚାର କୋର୍ଟରେ ହିଁ ହେବ ।

ପୋଲିସ କୋର୍ଟ ଫରୱାର୍ଡ କରିବା ପୂର୍ବରୁ  ଥାନାରୁ ସଂବିତଙ୍କୁ ବେଲ୍‌ରେ ନେବା ପାଇଁ  ଶାଶ୍ୱତୀ ଉଦ୍ୟମ କରିଥିଲେ । କିନ୍ତୁ ଏ କେସ୍‌ଟା ଖୁବ୍ ସେନସିଟିଭ ଥିଲା ଓ ଏ କେସ୍ ବିଷୟରେ ସମଗ୍ର ଘରୋଇ ବିଭାଗ, ସ୍ୱାସ୍ଥ୍ୟ ବିଭାଗ, ମୁଖ୍ୟମନ୍ତ୍ରୀ  ଓ ମିଡ଼ିଆ ସଚେତନ ଥିବାରୁ ପୋଲିସ୍ ତାଙ୍କୁ ବେଲ୍‌ରେ ନଛାଡ଼ି କୋର୍ଟ ଫରୱାର୍ଡ କରିଦେଲେ । ସେଇ ଦିନ ସଂଧ୍ୟାବେଳକୁ ଖବର କାଗଜ ଓ ଟେଲିଭିଜନରେ ଏ କେସ୍ ବିଷୟରେ ସଂପୂର୍ଣ୍ଣ ବିବରଣୀ ପ୍ରକାଶ ପାଇ ଯାଇଥିଲା ।

ପରଦିନ କୋର୍ଟରେ ଜାମିନ ଆବେଦନ କଲେ ଶାଶ୍ୱତୀଙ୍କ ଆଡ଼ଭୋକେଟ୍ । ସଂବିତଙ୍କ ଜାମିନର ଶୁଣାଣି ବେଳକୁ ବିଚରାଳୟରେ ନାହିଁ ନଥିବା ଭିଡ଼ । ସଂବିତ କାଠଗଡ଼ାରେ ଠିଆହୋଇ ବ୍ୟାଙ୍କ ଡକାୟତି କଥା ସ୍ୱୀକାର କଲେ ;କିନ୍ତୁ ଆଉ ଗୋଟେ ଅତି ଆଶ୍ଚର୍ଯ୍ୟଜନକ ବୟାନ ଦେଲେ । ସିଏ କହିଲେ –ମୁଁ ପ୍ରକୃତରେ ଡକାୟତି କରି ନାହିଁ , କିଛି ଟଙ୍କା ଚୋରି କରି ନାହିଁ, ମୁଁ ସାଙ୍ଗରେ ନେଇଥିବା ଛୁରୀରେ କାହାକୁ ଆଘାତ କରିନାହିଁ ।କେବଳ ବ୍ୟାଙ୍କ ଡକାୟତିର ଅଭିନୟ ପ୍ରଦର୍ଶନ କରିବା ହିଁ ମୋର ଅଭିପ୍ରାୟ



Digitized by srujanika@gmail.com

ଥିଲା ଏବଂ ମୁଁ ସେ ଅଭିନୟ ସଫଳ ଭାବେ କରି ପାରିଚି ।

ବିଚାରପତି, ଉପସ୍ଥିତଥିବା ସମସ୍ତ ପୋଲିସ , ସମସ୍ତ ଦର୍ଶକ ଓ ନିଜେ ଶାଶ୍ୱତୀ ଆଶ୍ଚର୍ଯ୍ୟ ହୋଇଗଲେ ସଂବିତଙ୍କର ଏପରି ବୟାନ ଶୁଣି । କିଛି ସମୟର ନିରବତା ପରେ ବିଚାରପତି ପ୍ରଶ୍ନ କଲେ- ଡକାୟତି କରିବାର ଅଭିନୟ କରିବା ମଧ୍ୟ ଦଣ୍ଡନୀୟ ଅପରାଧ । ଏଥି ପାଇଁ ଆପଣଙ୍କୁ ଦଣ୍ଡ ଭୋଗିବାକୁ ପଡ଼ିବ ।ତେବେ ଏମିତି ଅଭନୟ କରିବା ପଛରେ ଆପଣଙ୍କର କି ଉଦ୍ଦେଶ୍ୟ ଥିଲା କହିବେ କି ?

ଆବେଗ ଜଡ଼ିତ କଣ୍ଠରେ ସଂବିତ ଉତ୍ତର ଦେଲେ-ମୋ ପାଖରେ ଆଉ କିଛି ଉପାୟ ନଥିଲା ସାର୍ । ମୁଁ କର୍କଟ ରୋଗରେ ଆକ୍ରାନ୍ତ ବୋଲି ଜାଣିବା ପରେ ଖୁବ୍ ଭୟ ପାଇଯାଇ ଥିଲି ।ମୁଁ ମରିବାକୁ ଚାହୁଁ ନଥିଲି । କାରଣ ମୋର ଜୀବନର ସ୍ୱପ୍ନ ଥିଲା ମୁଁ ଜଣେ ଆଇ.ଏ.ଏସ୍ ଅଫିସର୍ ହୋଇ ଓଡ଼ିଶାର ସେବା କରିବି । ମୋପରି ଅସହାୟ, ସମ୍ବଳହୀନ, ଦରିଦ୍ରମାନଙ୍କ ପାଇଁ କିଛି କରିବି ।ସେମାନଙ୍କୁ ନ୍ୟାୟ ଦେବି । କିନ୍ତୁ ଏ ରକ୍ତ କର୍କଟ ରୋଗର ଉପଯୁକ୍ତ ଚିକିତ୍ସା ଉପଯୁକ୍ତ ସମୟରେ ନହୋଇ ପାରିଲେ ମୋର ମୃତ୍ୟୁ ଅନିବାର୍ଯ୍ୟ ।ମୋ ରୋଗର ଚିକିତ୍ସା ପାଇଁ ଅନେକ ଟଙ୍କା ଦରକାର ; କିନ୍ତୁ ମୁଁ କପର୍ଦ୍ଦକ ଶୂନ୍ୟ । ଏତେ ଟଙ୍କା ମୋତେ କିଏ ଦେବ ? ସେଇ ଚିନ୍ତାରେ ଗୋଟିଏ ସପ୍ତାହ ବିତିଗଲା । ମାତ୍ର କିଛି ହେଲେ ଉପାୟ ମୋତେ ମିଳିଲା ନାହିଁ । ଗୋଟେ ମୁହୂର୍ତ୍ତରେ ମୁଁ ଭାବଥିଲି ମୋ ଗାର୍ଲଫ୍ରେଣ୍ଡ ଶାଶ୍ୱତୀଙ୍କୁ ସାହାଯ୍ୟ ମାଗିବି । ତାଙ୍କ ବାପା ଜଣେ ଶିଳ୍ପପତି । ସିଏ ଇଚ୍ଛାକଲେ ଆବଶ୍ୟକ ହେଉଥିବା ଚିକିତ୍ସାର ବ୍ୟୟଭାର ବହନ କରି ପାରିଥାନ୍ତେ । କିନ୍ତୁ ମୁଁ ପରକ୍ଷଣରେ ଭାବିଲି ସିଏ ଯେଉଁ ମୁହୂର୍ତ୍ତରେ ଜାଣିବେ ଯେ ମୁଁ କର୍କଟ ରୋଗରେ ଆକ୍ରାନ୍ତ ସିଏ କଦାପି ମୋତେ ସାହାଯ୍ୟ କରିବାକୁ ଆଗେଇ ଆସିବେ ନାହିଁ । କାରଣ କେହି ଚାହିଁବ ନାହିଁ ତା ଝିଅକୁ ଗୋଟେ କର୍କଟ ରୋଗୀ ହାତରେ ଟେକି ଦେବାକୁ ।

ଦର୍ଶକ ଗହଳି ଭିତରୁ ଶାଶ୍ୱତୀ ଚିତ୍କାର କରି କହିଲେ-ତୁମେ ସେଇଠି ଭୁଲ୍ କଲ ସଂବିତ । ମୋତେ ଜଣାଇ ଥିଲେ ତୁମ ଚିକିତ୍ସା ପାଇଁ ଅର୍ଥର ଅଭାବ ହୋଇ ନଥାନ୍ତା ।ମୋ ବାପାଙ୍କର ମୁଁ ଏକମାତ୍ର ସନ୍ତାନ । ମୋ କଥା ମୋ ବାପା କେବେ ଏଡ଼ାଇ ଦେଇ ନଥାନ୍ତେ ।

ବିଚାରପତି ପ୍ରଶ୍ନକଲେ-କୁହନ୍ତୁ ସଂବିତ । ଆପଣ ବ୍ୟାଙ୍କ୍ ଡକାୟତି କରିବାର ଅଭିନୟ କରିବାକୁ କାହିଁକି ନିଷ୍ପତ୍ତି ନେଲେ ?

- ଏମିତି ଗୋଟେ ନିଷ୍ପତ୍ତି ନେବା ପୂର୍ବରୁ ମୋ ଚିକିତ୍ସା ପାଇଁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ଫଣ୍ଡରୁ ଟଙ୍କା ପାଇବା ନିମନ୍ତେ ମୁଁ ଆବେଦନ କରିଥିଲି । ବହୁ ଉଦ୍ୟମ କରି ମଧ୍ୟ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରି ପାରିଲି ନାହିଁ । ତାଙ୍କ ଅଫିସ୍‌ର ଜଣେ ଉଚ୍ଚ ଅଧିକାରୀ ମୋର ସମସ୍ତ କାଗଜ ପତ୍ର ଦେଖିଲେ । ମୋତେ କହିଲେ -ଆପଣଙ୍କ ଦରଖାସ୍ତ ମୁଖ୍ୟମନ୍ତ୍ରୀଙ୍କ



Digitized by srujanika@gmail.com

ପାଖକୁ ପୁଟ ଅପ୍ କରାଯିବ । ଏବେ ଯାଆନ୍ତୁ , ଖୁବ୍ ଶୀଘ୍ର ଆପଣଙ୍କୁ ମୁଖ୍ୟମନ୍ତ୍ରୀଙ୍କ ନିଷ୍ପତ୍ତି ଜଣାଇ ଦିଆଯିବ ।

ମୁଁ ସେ ଦିନ ନିରାଶ ହୋଇ ଫେରି ଆସିଲି । ତଥାପି ସଂପୂର୍ଣ୍ଣ ଆଶା ହରାଇ ନଥିଲି । କିନ୍ତୁ ପନ୍ଦର ଦିନ ଅପେକ୍ଷା କରିବା ପରେ ମଧ୍ୟ କିଛି ଆଦେଶ ମିଳିଲା ନାହିଁ । ପୁଣି ଥରେ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରକୁ ଯାଇ ଫେରିଲି । ମୋତେ ଜଣାଇ ଦିଆଗଲା ଯେ ଫାଇଲି ପୁଟ ଅପ୍ ହୋଇଛି । ଆଉ କିଛି ଦିନ ଅପେକ୍ଷା କରନ୍ତୁ । ମୋ ହାତରେ କିନ୍ତୁ ଆଉ ସମୟ ନଥିଲା । ମୋତେ ଶୀଘ୍ର କିଛି କରିବାକୁ ହେବ ।

ତେଣୁ ମୁଁ ପୁଣି ଆସି ମୋ ରୁମ୍‌ରେ ଚିନ୍ତାକଲି । କ'ଣ କରିବି ? ଚିକିତ୍ସାର ବ୍ୟବସ୍ଥା କେମିତି କରିବି ?କେବଳଯେ ମୋ ପାଖରେ ଟଙ୍କା ନାହିଁ ସେକଥା ନୁହଁ । ମୁଁ ଏକଦମ ଏକୁଟିଆ । ମୋ ଚିକିତ୍ସା ବେଳେ ମୋର ସେବା କରିବା ପାଇଁ କେହି ଆଟେଣ୍ଡାଣ୍ଟ ମଧ୍ୟ ନାହାଁନ୍ତି । ଏଇ ସମୟରେ ମୋ ବାପା ମାଆଙ୍କ କଥା ମୋର ମନେ ପଡ଼ିଲା । ମୋର ଯଦି କେହି ବାପା କି ମାଆ ଥାଆନ୍ତେ ସେମାନେ ନିଶ୍ଚୟ ଏ ଦୁର୍ଦ୍ଦିନରେ ମୋର ସହାୟତା କରିଥାନ୍ତେ । ଆଜି ଯାଏ ମୁଁ ମୋ ବାପା,ମାଆଙ୍କ ଆବଶ୍ୟକତା କେବେ ଏତେଟା ଅନୁଭବ କରି ନଥିଲି । ସତରେ ଯାହାଙ୍କ ମୁଣ୍ଡ ଉପରେ ବାପା,ମାଆଙ୍କର ଆଶୀର୍ବାଦର ହାତ ଅଛି ସେମାନେ କେତେ ଭାଗ୍ୟବାନ ।

ହଠାତ୍ ମୋ ମୁଣ୍ଡକୁ ଗୋଟେ ଆଇଡ଼ିଆ ଆସିଲା । ମୁଁ ଯଦି କୌଣସି ଉପାୟରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ପାରିବି ତାହେଲେ ମୋ ସମାସ୍ୟାର ସମାଧାନ ହୋଇ ଯିବ । କିନ୍ତୁ କେମିତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବି ? ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାର ଦୁଇଟି ବାଟ ଖୋଲା ଅଛି । ସେଥିରୁ ଗୋଟିଏ ହେଲା ଅତି ଭଲକାମ କଲେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ହେବ । ମାତ୍ର ଏତେ ଅଳ୍ପ ସମୟ ଭିତରେ କି ଭଲ କାମ ମୁଁ କରି ପାରିବି ପୁଣି ଏମିତି ରୋଗାକ୍ରନ୍ତ ଅବସ୍ଥାରେ ?

ଏଥର ମୁଁ ଦ୍ୱିତୀୟ ବାଟ କଥା ଚିନ୍ତା କଲି । ମୁଁ ହଠାତ୍ ଏମିତି କିଛି ଖରାପ କାମ କରିବି ଯାହା ସମଗ୍ର ରାଜ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିବ ଓ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବ । ବହୁତ ଭାବିଚିନ୍ତି ମୁଁ ଏଇ ବ୍ୟାଙ୍କ ଡକାୟତି କରିବାକୁ ସ୍ଥିର କଲି । କିନ୍ତୁ ବ୍ୟାଙ୍କ ଡକାୟତି ପରି ଏକ ଦୁର୍ଦ୍ଦାନ୍ତ ତଥା ଦୁଃସାହାସିକ କାମ କରିବା ପରି ଅଭିଜ୍ଞତା କି ତାଲିମ ମୋର ନାହିଁ ।ମୋ ପାଖରେ ବନ୍ଧୁକ କି ରିଭଲ୍‌ଭରଟିଏ ମଧ୍ୟ ନାହିଁ । ତେଣୁ ନିଷ୍ପତ୍ତି ନେଲି ଯେ ବ୍ୟାଙ୍କ ଡକାୟତି ନକରି ବ୍ୟାଙ୍କ ଡକାୟତି କରିବାର ଏକ ଅଭିନୟ ମୁଁ କରିବି । ହାତରେ ଛୁରୀଟିଏ ଧରିଥିବି କିନ୍ତୁ କାହାକୁ ସେଥିରେ ଆଘାତ କରିବି ନାହିଁ କି ବ୍ୟାଙ୍କରୁ କୌଣସି ଟଙ୍କା ନେବି ନାହିଁ, କେବଳ ବ୍ୟାଙ୍କର କ୍ୟାସିଅରଙ୍କୁ ଆକ୍ରମଣ କରିବାର



Digitized by srujanika@gmail.com

ଅଭିନୟ କରିବି । ଏତକ କାମ ମୁଁ ଯେ ସଫଳତାର ସହ କରି ପାରିବି ଏ ବିଶ୍ୱାସ ମୋର ନଥିଲା । ତଥାପି ପ୍ରାଣପଣେ ତାହା କଲି । ମୋର ଏଇ ଯୋଜନା ହିଁ ଶେଷରେ ସଫଳ ହେଲା । ଜଣେ ଡକାୟତ ଭାବରେ ମୋତେ ପୋଲିସ ଆରେଷ୍ଟ କଲେ ଓ ତାଙ୍କ କଷ୍ଟୋଡ଼ିକୁ ନେଲେ । ମୁଁ ଏବେ ସରକାରଙ୍କ ତତ୍ୱାବଧାନରେ ଯାଇ ଭାରତର ସର୍ବଶ୍ରେଷ୍ଠ କ୍ୟାନସର ହସପିଟାଲ୍ ମୁମ୍ବାଇର ଟାଟା ମେମୋରେିଆଲ୍‌ରେ ଚିକିତ୍ସିତ ହୋଇ ଫେରିଛି । ଏବେ ମୋର ଯେଉଁ ଚିକିତ୍ସା ଆବଶ୍ୟକ ତାହା ଓଡ଼ିଶାରେ ଉପଲବ୍ଧ ।

ସଂବିତଙ୍କ ବୟାନ ଶୁଣିବା ପରେ ସରକାରୀ ପକ୍ଷ ଓ ଅଭିଯୁକ୍ତଙ୍କ ଆଡ଼ଭୋକେଟ୍‌ଙ୍କ ଯୁକ୍ତିତର୍କ ବିଚାରପତି ମନଦେଇ ଶୁଣିଲେ । ଶେଷରେ ସଂବିତଙ୍କ ପରବର୍ତ୍ତୀ ଚିକିତ୍ସାର ଆବଶ୍ୟକତା ଦୃଷ୍ଟିରୁ ତାଙ୍କ ଜାମିନ ଆବେଦନକୁ ଗ୍ରହଣ କଲେ ; କିନ୍ତୁ ତାଙ୍କ ବିରୋଧରେ ଆସିଥିବା ବ୍ୟାଙ୍କ ଡକାୟତି ଅଭିଯୋଗର ବିଚାର ପାଇଁ ମୋକଦ୍ଦମାଟିକୁ ଆଡ଼ମିଟ୍ କରିବାକୁ ଅନୁମତି ପ୍ରଦାନ କଲେ ।

ସଂବିତଙ୍କୁ ଜାମିନ ମିଳିବାର ପନ୍ଦର ଦିନ ଭିତରେ ଭାରତୀୟ ସିଭିଲ ସର୍ଭିସର ରେଜଲ୍ଟ ପ୍ରକାଶ ପାଇଲା । ସଂବିତ ଆଇ.ଏ.ଏସ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଛନ୍ତି । ତାଙ୍କ ପାଖକୁ ତାଙ୍କ ସାଙ୍ଗ, ସାଥୀମାନଙ୍କ ଠାରୁ ଅଭିନନ୍ଦନ ବାର୍ତ୍ତାମାନ ବହୁ ସଂଖ୍ୟାରେ ଆସିବାକୁ ଲାଗିଲା । ଏପରିକି ରାଜ୍ୟର ମୁଖ୍ୟମନ୍ତ୍ରୀ ନିଜେ ସଂବିତଙ୍କୁ ତାଙ୍କର ଏହି ବିରଳ କୃତିତ୍ୱ ପାଇଁ ବଧାଇ ଜଣାଇଲେ । ସଂବିତଙ୍କର ଏ ସଫଳତାରେ ଶାଶ୍ୱତୀ ସବୁଠୁ ବେଶି ଖୁସିହେଲେ । ତାଙ୍କର ଏଇ ସଫଳତାକୁ ସେଲିବ୍ରେଟ କରିବାକୁ ପଞ୍ଚ ତାରକା ହୋଟେଲରେ ଗୋଟେ ପାର୍ଟିର ଆୟୋଜନ କଲେ ।

ସଂବିତଙ୍କ ସଫଳତାର କାହାଣୀକୁ ନେଇ ରାଜ୍ୟର ବିଭିନ୍ନ ଅଗ୍ରଣୀ ସଂବାଦପତ୍ରରେ ଓ ଟିଭି ଚ୍ୟାନେଲରେ ସଂବିତଙ୍କର ସାକ୍ଷାତକାର ପ୍ରକାଶ ପାଇଲା ଯେଉଁଥିରେ ଜଣେ ମେଧାବୀ ଅନାଥ ଯୁବକର କୃତିତ୍ୱକୁ ହାଇଲାଇଟ କରାଯାଇଥିଲା । ସଂବିତଙ୍କ କାହାଣୀ ସାରା ରାଜ୍ୟରେ ହଇଚଇ ସୃଷ୍ଟି କରିଥିଲା । ସବୁଠୁ ବଡ଼ କଥା ନିଜେ ମୁଖ୍ୟମନ୍ତ୍ରୀ ସଂବିତଙ୍କ ବିରଳ ପ୍ରତିଭା ତଥା ସଫଳତା ପାଇଁ ବଧାଇ ଜଣାଇ ଥିଲେ । ଖୁବ୍ ଅଳ୍ପ ଦିନ ଭିତରେ ସଂବିତ ଓଡ଼ିଶାର ଯୁବ ସମାଜର ଆଦର୍ଶ ଭାବେ ଉଭାହେଲେ ଏବଂ ହିରୋ ପାଲଟି ଗଲେ । ତେଣୁ ସମସ୍ତଙ୍କ ମନରେ ଧାରଣା ସୃଷ୍ଟି ହୋଇ ଥିଲାଯେ ସଂବିତଙ୍କ ବିରୁଦ୍ଧରେ କରାଯାଇଥିବା ମୋକଦ୍ଦମାଟିକୁ ସରକାର କୋର୍ଟରୁ ଉଠାଇ ଆଣିବେ ।

କିନ୍ତୁ ସେମିତି କିଛି ଘଟିଲା ନାହିଁ ।ସମସ୍ତଙ୍କୁ ଚକିତ କରି ଆଇ.ଏ.ଏସ ରେଜଲ୍ଟ ପ୍ରକାଶ ପାଇବାର ଗୋଟିଏ ସପ୍ତାହ ପରେ ବିଚାରପତିଙ୍କ କୋର୍ଟରୁ ସଂବିତଙ୍କ ପାଖକୁ ନୋଟିସ ଆସିଲା । ସଂବିତଙ୍କ ବିରୁଦ୍ଧରେ କେସ୍ ଚାଲିବ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଏ କେସ୍ ସଂବାଦ ଖବର କାଗଜରେ ପ୍ରକାଶ ପାଇବା ମାତ୍ରେ ସାରା ଓଡ଼ିଶାରେ ପୁଣି ଏକ ହଇଚଇ ସୃଷ୍ଟିହେଲା ।ପ୍ରତିଦିନ ଖବର କାଗଜରେ ସଂବିତଙ୍କ ସପକ୍ଷରେ ମତାମତ ପ୍ରକାଶ ପାଇଲା । କେତେକ ଯୁକ୍ତି ବାଢ଼ିଲେ ସଂବିତ ଡକାୟତି କରିବାକୁ ବ୍ୟାଙ୍କକୁ ଯାଇ ନଥିଲେ । ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା ତାଙ୍କ କର୍କଟ ରୋଗର ଚିକିତ୍ସା ।ସେ ଟଙ୍କା ଚୋରି କରି ନାହାଁନ୍ତି କି କାହାକୁ ଛୁରୀରେ ଆଘାତ କରି ନାହାଁନ୍ତି । ଏକଥା ସିଏ କୋର୍ଟରେ ବିଚାରପତିଙ୍କ ସମ୍ମୁଖରେ ପ୍ରକାଶ କରି ସାରିଛନ୍ତି । ସେ ଯଦି ସେପରି ବ୍ୟାଙ୍କ ଡକାୟତିର ଅଭିନୟ କରି ନଥାନ୍ତେ ତାହେଲେ ତାଙ୍କ ପରି ଜଣେ ଓଡ଼ିଆ ଯୁବ ପ୍ରତିଭାର ଅକାଳ ମୃତ୍ୟୁ ଘଟିଥାନ୍ତା । ସେ କୌଣସି ଅପରାଧ କରି ନାହାଁନ୍ତି କି ତାଙ୍କର ଅପରାଧ କରିବା ଉଦ୍ଦେଶ୍ୟ ନଥିଲା । ତାଙ୍କୁ ରାଜ କ୍ଷମା ଦିଆଯାଇ କୋର୍ଟ କେସ୍‌କୁ ଡିସମିସ୍ କରି ଦିଆଯିବା ଉଚିତ ।

କଥାଟା ବିଧାନ ସଭାରେ ମଧ୍ୟ ଆଲୋଚିତ ହେଲା । ବିରୋଧୀ ଦଳର କିଛି ସଦସ୍ୟ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଶ୍ନବାଣରେ ଜର୍ଜରିତ କଲେ ।ସେମାନଙ୍କର ଯୁକ୍ତିଥିଲା ସଂବିତ ଆଇ.ଏ.ଏସ୍ ପରୀକ୍ଷାରେ ପ୍ରଥମ ସ୍ଥାନ ପାଇ ଓଡ଼ିଶାର ସୁନାମ ବଢ଼ାଇ ଥିବାର ଜାଣି ମୁଖ୍ୟମନ୍ତ୍ରୀ ତାଙ୍କୁ ସମ୍ବର୍ଦ୍ଧନା ଦେବାବେଳେ କ'ଣ ଜାଣି ନଥିଲେ ଯେ ସେ ବ୍ୟାଙ୍କ ଡକାୟତି କେସ୍‌ରେ ଅଭିଯୁକ୍ତ ବୋଲି ? ବିଧାନସଭାର ସରକାରୀ ଦଳର ସଦସ୍ୟମାନଙ୍କ ମଧ୍ୟରୁ କିଛି ଯୁକ୍ତି ବାଢ଼ିଲେ ସଂବିତର ଉଦ୍ଦେଶ୍ୟ ମନ୍ଦ ନଥିବାରୁ ତାଙ୍କୁ ରାଜ କ୍ଷମା ମିଳିବା ଉଚିତ ହେବ ।

କିଛି ଶିକ୍ଷିତ ଯୁବକ ଯୁବତୀ ମୁଖ୍ୟମନ୍ତ୍ରୀ ଓ ବିଚାରପତିଙ୍କ ବାସଗୃହ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କଲେ । ସଂବିତଙ୍କ ସପକ୍ଷରେ ନାନା ପ୍ରକାର ସ୍ଲୋଗାନ ଦେଲେ ।ସେମାନେ ଯୁକ୍ତି ବାଢ଼ିଲେ ସଂବିତଙ୍କ କେସ୍ ବିଚରାଳୟରୁ ଉଠାଇ ନଆଣିଲେ ସିଏ ପାଇଥିବା ଆଇ.ଏ.ଏସ ଚାକିରି ହରାଇବେ । ଓଡ଼ିଶା ମଧ୍ୟ ହରାଇବ ଜଣେ ଓଡ଼ିଆ ସର୍ବଭାରତୀୟ ସିଭିଲ ସର୍ଭିସରେ ପ୍ରଥମ ସ୍ଥାନ ହାସଲ କରିବାର ଗୌରବ ।

ସେହି ଶିକ୍ଷିତ ଯୁବକମାନେ ଏତିକିରେ ଚୁପ ହୋଇ ବସି ନଯାଇ ସଂବିତଙ୍କୁ ରାଜକ୍ଷମା ଦେବାକୁ ନିବେଦନ କରି କୋର୍ଟରେ ଗୋଟିଏ ଜନସ୍ୱାର୍ଥ ମୋକଦ୍ଦମା ଫାଇଲ କଲେ । କୋର୍ଟରେ ସଂବିତଙ୍କ କେଶ୍ ବିଚାର ଦିନ ବହୁଲୋକ ରୁଣ୍ଡ ହୋଇଥିଲେ ।

ସମସ୍ତେ ଉତ୍କଣ୍ଠିତ ହୋଇ ଅପେକ୍ଷା କଲେ ସଂବିତଙ୍କ ଏଇ କେସ୍‌ରେ ବିଚାରପତିଙ୍କ ରାୟକୁ ଆଉ ସରକାରଙ୍କ କାର୍ଯ୍ୟାନୁଷ୍ଠାନକୁ ।



ଆନଂଦ ଚଂଦ୍ର ପତି

Digitized by srujanika@gmail.com

# ବନ୍ଧୁବାସ

ନର୍ମଦାଙ୍କ ଶୁଦ୍ଧିକ୍ରୀୟା ଖୁବ୍ ଧୁମ୍‌ଧାମ୍‌ରେ ପାଳିଲେ ପିଲାମାନେ । ବନ୍ଧୁବାନ୍ଧବ, ସଂପର୍କୀୟ, ପଡ଼ୋଶୀ ସମସ୍ତେ ଏଥିରେ ଯୋଗ ଦେଇଥିଲେ । କ୍ରୀୟାକର୍ମ, ବ୍ରାହ୍ମଣ ଭୋଜନ,ଦାନଧର୍ମ ସବୁ ବିଧି ମୁତାବକ ହେଲା । ଶୁଦ୍ଧିକ୍ରୀୟା ସରିବାର ଦୁଇଦିନ ପରେ ସବୁ ବନ୍ଧୁ ଓ ସଂପର୍କୀୟ ନିଜନିଜ ଘରକୁ ଫେରିଗଲେ । ପୁଅବୋହୂ, ଝିଅଜ୍ୱାଇଁ ନିଜନିଜ ଚାକିରି କ୍ଷେତ୍ରକୁ ଫେରିଯିବା ପାଇଁ ତାଙ୍କ ଜିନିଷ ପ୍ୟାକିଙ୍ଗ୍ ଆରମ୍ଭ କଲେ ।

ସେମାନେ ନିର୍ଦ୍ଦିଷ୍ଟ ଦିନରେ କର୍ମକ୍ଷେତ୍ରକୁ ଫେରିଯିବେ । ପୁଅବୋହୂ ଆମେରିକା ଓ ଝିଅଜ୍ୱାଇଁ ଲଣ୍ଡନ ଯିବେ । ସେମାନେ ଫେରିଯିବା ପୂର୍ବରୁ ଡ୍ରଇଁରୁମ୍‌ରେ ଗୋଟିଏ ଆଲୋଚନା ସଭା ବସିଲା । ସେ ସଭାରେ ଥିଲେ ପୁଅ ସଂକେତ, ବୋହୂ ବନାନୀ, ଝିଅ ଅସୀମା ,ଜ୍ୱାଇଁ ସଂଜୟ ଓ ନିଜେ ନିଳାମ୍ବର । ଆଲୋଚନାର ବିଷୟବସ୍ତୁ ଥିଲା ମାଆଙ୍କ ଦେହାନ୍ତ ପରେ ଭୁବନେଶ୍ୱରର ଏତେବଡ଼ ବିଲଡ଼ିଙ୍ଗରେ ବାପା ଏକୁଟିଆ । ଏ ସହରୀ ସଂସ୍କୃତିରେ ବିନା କାରଣରେ କେହି କାହାରି ଘରକୁ ଯାଆନ୍ତି ନାହିଁ । ଏହାର ସୁଯୋଗ ନେଇ ଚୋର ଡକାୟତ ଓ ଲୁଟେରାମାନେ ନିଃସଙ୍ଗ ବରିଷ୍ଠ ନାଗରିକମାନଙ୍କୁ ଟାର୍ଗେଟ କରନ୍ତି । ତଳଘରେ ଭଡ଼ାଟିଆ ରହୁଛନ୍ତି କିନ୍ତୁ ସେମାନଙ୍କ ଦାୟିତ୍ୱରେ ବାପାଙ୍କୁ ଛାଡ଼ି ଯିବାଟା ଆଦୌ ଗ୍ରହଣୀୟ ନୁହେଁ ।

ସଂକେତ ପ୍ରଥମେ ପ୍ରସ୍ତାବ ଦେଲା-ମୋ ଚାକିରି ଛାଡ଼ି ତ ମୁଁ ଏଠି ବାପାଙ୍କ ପାଖରେ ସବୁଦିନ ରହି ପାରିବି ନାହିଁ । ତେଣୁ ମୁଁ ଭାବୁଛି ବାପାଙ୍କୁ ମୋ ସହିତ ଅଷ୍ଟ୍ରେଲିୟା ନେଇଯିବି । ସିଏ ଆମ ପାଖରେ ରହିବେ । ଏ ବୟସରେ ବାପାଙ୍କ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦିଆଯିବା ନିହାତି ଜରୁରୀ ।

ଏତକ କହିସାରି ସଂକେତ ତାଙ୍କ ପତ୍ନୀ ବନାନୀଙ୍କ ମୁହଁକୁ ଚାହିଁଲେ ତାଙ୍କର ଅନୁମୋଦନ ଆଶାରେ । ବନାନୀ ତୁରନ୍ତ ତାଙ୍କର ସହମତି ପ୍ରକାଶ କରିବାକୁ ଯାଇ କହିଲେ- ବାପା ଆମ ସାଙ୍ଗରେ ଗଲେ ମୁଁ ସବୁଠୁ ବେଶି ଖୁସିହେବି । ମାଆଙ୍କ ଅବର୍ତ୍ତମାନରେ ବାପାଙ୍କ ସେବା କରିବା ମୋର କର୍ତ୍ତବ୍ୟ । ବାପା ଯଦି ଆମ ସହିତ ଯିବେ ମୋତେ ସେ ସୁଯୋଗ ମିଳିବ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଝିଅ ଅସୀମା ପ୍ରତିବାଦ ଜଣାଇଲା-ଭାଉଜ ଆଉ ଭାଇ ଦୁହେଁ ଚାକିରି କରୁଥିବାରୁ ସେମାନେ ବାପାଙ୍କ ଦାୟିତ୍ୱ ନେଇ ପାରିବେ ନାହିଁ । ମୁଁ ଭାବୁଛି ବାପା ମୋ ସହିତ ଲଣ୍ଡନ ଗଲେ ଭଲହେବ । ମୁଁ ଚାକିରି କରୁନି । ମୁଁ ତାଙ୍କ ସେବା କରିବି ।

ଅସୀମାର କଥାକୁ ଜ୍ୱାଇଁ ସମର୍ଥନ ଜଣାଇଲେ ।

ନୀଳାମ୍ବର ସୋଫା ଚେୟାରରେ ସଜାଡ଼ି ହୋଇ ଅଣ୍ଟା ସଳଖି ବସି କହିଲେ- ମୋ ପ୍ରତି ତୁମମାନଙ୍କର ଦାୟିତ୍ୱବୋଧ ଓ ସ୍ନେହ, ଶ୍ରଦ୍ଧା ଅଛି । ଏ କଥା ମୁଁ ଜାଣିଛି ଓ ସେଥିପାଇଁ ଗର୍ବ ଅନୁଭବ କରୁଛି । ତୁମ ବୋଉ ବଞ୍ଚିଥିଲେ ଜାଣି ଭାରି ଖୁସି ହୋଇଥାନ୍ତା ଯେ ସିଏ ତୁମମାନଙ୍କୁ ଦେଇଥିବା ସଂସ୍କାର ତୁମମାନଙ୍କ ଚରିତ୍ର ଓ ବ୍ୟକ୍ତିତ୍ୱକୁ ମଜଭୁତ କରିଛି । ମୋ କଥା ତୁମେମାନେ ଏତେ ଭାବୁଛ ସେଇଟା ସବୁଠୁ ବଡ଼କଥା ।

ତୁମ ବୋଉ ଚାଲିଗଲା ପରେ ମୁଁ ଏକୁଟିଆ ହୋଇ ଯାଇଛି ସତ କିନ୍ତୁ ଭାଙ୍ଗିପଡ଼ିନାହିଁ । ମୁଁ ମୋ ଜୀବନକାଳ ଭିତରେ ପୁଅ, ଝିଅ, ବୋହୂ, ଜ୍ୱାଇଁ, ନାତି, ନାତୁଣୀ ଦେଖିବାର ସୁଯୋଗ ପାଇଛି ଓ ସେମାନଙ୍କ ସହିତ ହସଖୁସିରେ ସମୟ ବିତାଇଛି । ତୁମ ବୋଉ ଏସବୁ ଦେଖିବାକୁ , ଅନୁଭବ କରିବାକୁ ଏଯାବତ ଥିଲା ।ଏଇ ମୋ ପାଇଁ ଢ଼େର । ତୁମେ ଏଥର ତୁମ କର୍ମକ୍ଷେତ୍ରକୁ ଯାଅ । ଆଜି ନୁହଁ, ତୁମେମାନେ ବଡ଼ହୋଇ ପାଠ ପଢ଼ିବା ଦିନଠୁ ବାହାରେ ରହିଛ । ଚାକିରି ଜୀବନରେ ବି ବାହାରେ ରହିବ । ଏଇଟା ଆମ ଦେହସୁହା ହୋଇଯାଇଛି ।

ଏଠି ତୁମ ବୋଉ ଏବେ ନଥିଲେ ବି ଅନ୍ୟ ଅନେକ କଥା ଅଛି । ଏଇ ଯେମିତି ଆମର ଏ ଘର ଯୋଉଠି ଆମେ ଅନେକ ଦିନହେଲା ରହୁଛେ, ସାଙ୍ଗ,ସାଥୀ ପଡ଼ୋଶୀମାନେ, ଏ ଭୁବନେଶ୍ୱରର ମାଟି,ପାଣି,ପବନ,ସହର,ବଜାର ମନ୍ଦିର, ଏଠିକା ପରିବେଶ ସବୁ ଆଗପରି ଅଛି ।ଏସବୁ ଛାଡ଼ି ମୁଁ ତୁମମାନଙ୍କ ସହିତ ଆମେରିକା କି ଲଣ୍ଡନ ଚାଲିଗଲେ ସେଠାରେ ମୋତେ ପାଣି ବାହାରର ମାଛ ପରି ଅଣନିଃଶ୍ୱାସୀ ଲାଗିବ । ଏ ସବୁକୁ ମୁଁ ଖୁବ୍ ମିସ୍ କରିବି । ମୁଁ ଏଠି କିଛି ଦିନ ତୁମ ବୋଉର ଅନୁପସ୍ଥିତି ଅବଶ୍ୟ ଅନୁଭବ କରିବି । ତାକୁ ଧୀରେ ଧୀରେ ସହିନେବି ବୋଲି ଆଶାକରୁଛି କାରଣ ମୃତ୍ୟୁ ହିଁ ଜୀବନର ସବୁଠୁ ବଡ଼ ସତ୍ୟ । ତାକୁ ଗ୍ରହଣ କରିବାକୁ ହେବ ।

ତୁମେମାନେ ଏବେ ନିଜନିଜ କର୍ମକ୍ଷେତ୍ରକୁ ଯାଅ । ମଝିରେ ମଝିରେ ଫୋନ୍ କରୁଥିବ, ବର୍ଷରେ କି ଦୁଇ ବର୍ଷରେ ଥରେ ସୁବିଧା କରି ଆସି ମୋ ପାଖରେ ମାସେ ପନ୍ଦର ଦିନ କଟାଇ ଯାଉଥିବ ।ଟଙ୍କା ପଇସା ପଠାଇବା ଦରକାର ନାହିଁ । ମୋର ପେନସନ୍



Digitized by srujanika@gmail.com

ଅଛି । ଦେହ ପା'ପାଇଁ କେବେ ଯଦି ଅଧିକ ଟଙ୍କା ପଇସା କି ତୁମର ସେବା,ଯତ୍ନ ଦରକାର ପଡ଼େ ତେବେ ଜଣାଇବି ।

ତଥାପି ପିଲାମାନେ ବାପାଙ୍କ ଏକୁଟିଆ ରହିବା କଥାଟାକୁ ଗ୍ରହଣ କରିପାରିଲେ ନାହିଁ । ନୀଳାମ୍ବର ତାଙ୍କୁ ବୁଝାଇଲେ ଯେ ଏବେ ସରକାର ବରିଷ୍ଠ ନାଗରିକମାନଙ୍କ ସୁରକ୍ଷା ପାଇଁ କିଛି ବ୍ୟବସ୍ଥା କରୁଛନ୍ତି । ସେଥିପାଇଁ ନିକଟସ୍ଥ ପୋଲିସ ଷ୍ଟେସନରୁ ଫର୍ମ ଆଣି ରେଜିଷ୍ଟ୍ରେସନ କରିବାକୁ ପଡ଼ିବ ଏବଂ ଠିକ୍ ସମୟରେ ସିଏ ତାହା କରିଦେବେ ।

ପିଲାମାନେ ବାପାଙ୍କୁ ଅଧିକ କିଛି କହି ତାଙ୍କୁ ସାଙ୍ଗରେ ନେବାପାଇଁ ବାଧ୍ୟକଲେ ନାହିଁ । କାରଣ ସେମାନେ ମଧ୍ୟ ନିଜ ଲିମିଟେସନ୍ ବିଷୟରେ ସଚେତନ ଅଛନ୍ତି । ବାପାଙ୍କୁ ବିଦେଶ ଭୂଇଁରେ ସନ୍ତୁଷ୍ଟ ରଖି ପାରିବା ଅତ୍ୟନ୍ତ କଷ୍ଟକର କଥା । ନିଜ ପରିବେଶ ବାହାରେ କେହି ସହଜରେ ସନ୍ତୁଷ୍ଟ ହୋଇ ପାରେନା ।

ନୀଳାମ୍ବର ଖୁସିମନରେ ପିଲାମାନଙ୍କୁ ବିଦାୟ ଦେଲେ । ସେମାନେ ନିଜନିଜର କର୍ମକ୍ଷେତ୍ରରେ ଭଲରେ ପହଞ୍ଚି ଫୋନ୍ କରି ତାଙ୍କୁ ଜଣାଇ ଦେଲେ ।

ଏବେ ନିଳାମ୍ବର ନିଜଘରେ ଏକୁଟିଆ । ଜୀବନର ଇଏ ଗୋଟେ ନୂତନ ଇନିଂସ ସିଏ ଖେଳିବାକୁ ପ୍ରସ୍ତୁତ ହେଉଛନ୍ତି ଯେତେବେଳେ ତାଙ୍କ ସାଙ୍ଗରେ କେହି ନାହାଁନ୍ତି । ନର୍ମଦା ଥିବାବେଳେ ଘରଟା ଭରପୁର ଲାଗୁଥିଲା । ପ୍ରତ୍ୟୁଷରୁ ରାତ୍ରିର ବିଳମ୍ବିତ ପ୍ରହର ଯାଏ ସିଏ ବିଞ୍ଚୁଣୀ ପରି ଘରସାରା ଘିର୍‌ଘିର୍ ହୋଇ ଅବିଶ୍ରାନ୍ତ ଭାବେ ବୁଲୁଥିଲେ । ଶଯ୍ୟାତ୍ୟାଗ ପରେ ତଳେ ମୁଣ୍ଡ ଲଗାଇ ଠାକୁରଙ୍କୁ ପ୍ରଣାମ କରିବା, ଫୁଲଚାଙ୍ଗୁଡ଼ି ଧରି ବୁଲିବୁଲି ଟଗର,ମନ୍ଦାର, କରବିର, କନିଅର, ଅପରାଜିତା ଆଦି ବିଭିନ୍ନ ପ୍ରକାରର ଫୁଲ ତୋଳିବା, ଘର ଓଳାଇବା , ଘର ପୋଛିବା, ଠାକୁର ପୂଜା କରିବା, ରୋଷେଇ କରିବା, କଲିଙ୍ଗବେଲ୍ ଆଟେଣ୍ଡ କରିବା ଠାରୁ ଆରମ୍ଭ କରି ନୀଳାମ୍ବରଙ୍କ ସମସ୍ତ ଫରମାସି ପୂରଣ କରିବା ପର୍ଯ୍ୟନ୍ତ ଘରର ସବୁ କାମ ପରମ ଆଗ୍ରହରେ କରିଯାଉଥିଲେ ସିଏ । ଘରଟା ସାରା ଭରି ଯାଉଥିଲା ଯାହାର ଉପସ୍ଥିତି ସିଏ ଆଜି ସବୁଠି ସଂପୂର୍ଣ୍ଣ ଅନୁପସ୍ଥିତ । ଜଣେ ଲୋକର ଅନୁପସ୍ଥିତି ଯୋଗୁ ପୂରା ଘରଟା ଶୂନଶାନ ।

ନର୍ମଦା ତାଙ୍କ ଘରକୁ ଆସିବା ଦିନଠୁ ନୀଳାମ୍ବର ତାଙ୍କ ଉପରେ ସବୁ କାମ ପାଇଁ ସଂପୂର୍ଣ୍ଣ ନିର୍ଭର କରୁଥିଲେ । ନିଜର ପୋଷାକପତ୍ର ସଫାକରିବା, ଚା ଜଳଖିଆ ଦେବା, ଯୋତା,ଚପଲ୍ ସଜାଡ଼ି ରଖିବା ସବୁକାମ କରିଦେଉଥିଲେ ନର୍ମଦା । କିନ୍ତୁ ଆଜିଠୁ ତାଙ୍କୁ ସବୁକାମ ନିଜ ହାତରେ କରିବାକୁ ପଡ଼ିବ ।

ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

କିଛିଦିନ ସକାଳ ଦଶଟା ବେଳଯାଏ ବିଛଣାରେ ଶୋଇ ରହିଲେ ନୀଳାମ୍ବର କାରଣ ତାଙ୍କୁ ସକାଳ ଛଅଟାରେ ନିଦରୁ ଉଠାଇବା ଲୋକ ଏବେ ସ୍ୱର୍ଗରେ । ମୁହଁଧୋଇ ସାରି କାନ୍ଥ ଘଣ୍ଟାକୁ ଚାହିଁଲେ । ଦିନ ଦଶଟା ପନ୍ଦର । ଆସନ୍ତାକାଲିଠୁ ଏଭୁଲ କେମିତି ନହେବ ସେକଥା ସିଏ ଚିନ୍ତାକଲେ । ଏ କାମଟାତ ମୋବାଇଲଫୋନ୍ କରିଦେଇ ପାରିବ । ସେଥିରେ ସକାଳ ୬ଟାବେଳକୁ ଆଲାରାମ୍ ସେଟ୍ କରିଦେଲେ ସେ ବ୍ୟବସ୍ଥା ହୋଇ ଯିବ ।

ଘରଦ୍ୱାର ଓଳାଇବା ,ପୋଛିବା ଆଉ ବାସନ ମାଜିବା ପାଇଁ ଗୋଟେ କାମବାଲୀର ବ୍ୟବସ୍ଥା ହୋଇଗଲା । ରୋଷେଇଟା ସିଏ ନିଜେ କରିବା ପାଇଁ ସ୍ଥିରକଲେ । ଗୋଟେ କାମ କରିବା ପାଇଁ ସ୍ଥିର କରିବା ସହଜ ହୋଇପାରେ କିନ୍ତୁ ତାକୁ ସୁଚାରୁ ରୂପେ ସଂପାଦନ କରିବା ଅତ୍ୟନ୍ତ କଷ୍ଟକର କଥା । ଦୁଇ ତିନି ଦିନ ରୋଷେଇ କରିବା ଭିତରେ ସିଏ ନାକେଦମ ହୋଇଗଲେ । ପ୍ରଥମ କଥା ତାଙ୍କୁ ରୋଷେଇର 'ର' ଅକ୍ଷର ଜଣାନାହିଁ । ସବୁକାମ ନର୍ମଦା କରୁଥିଲେ । ନୀଳାମ୍ବର ନିଜେ କୌଣସି କାମ କରିବାର ସୁଯୋଗ ନଥିଲା । ତେଣୁ ଭାତ ଡାଲମା କରିବା ପରି ନିହାତି ମାମୁଲି ରୋଷେଇ ମଧ୍ୟ ସିଏ ଜାଣି ନଥିଲେ ।ଏଥର ତାଙ୍କ ଝିଅ ଅସୀମା ଲଣ୍ଡନ ଫେରିଯିବା ପୂର୍ବରୁ ତାଙ୍କୁ ସେତିକି ବତେଇ ଦେଇ ଯାଇଛି ।

ଦିନ ବାରଟା ବେଳେ କଲିଂବେଲ୍ ବାଜିଲା । ସେତେବେଳକୁ ନୀଳାମ୍ବର ଭାତ ଗାଳୁଥିଲେ । ଅଧାରେ ଭାତଗାଳିବା କାମ ଛାଡ଼ି ଗଲେ ଭାତ ପେଜଖିଆ ହୋଇଯିବ । ଆଉ ପଛରେ ଯେତେ ଚେଷ୍ଟାକଲେ ବି ପେଜ ବାହାରିବ ନାହିଁ । ବାରମ୍ବାର କଲିଂବେଲ୍ ବାଜିଲା । ତରବରରେ ଭାତଗାଳି ଗେଟ୍ ଖୋଲିଲେ ନୀଳାମ୍ବର ।

ପାଦଛୁଇଁ ନମସ୍କାର କଲା ସତେଇଶ ଅଠେଇଶ ବର୍ଷ ବୟସର ଜଣେ ମହିଳା । ତା ପଛରେ ତିନି ଚାରି ବର୍ଷର ପୁଅଟିଏ । ସିଏ ବି ମୁଣ୍ଡିଆ ମାରିଲା । ନୀଳାମ୍ବର ପଢ଼ିବା ଦୃଷ୍ଟିରେ ବାରମ୍ବାର ଚାହିଁଲେ ସେ ମାଆ ପୁଅକୁ । କିନ୍ତୁ ଚିହ୍ନି ପାରିଲେ ନାହିଁ । ମହିଳା ଜଣକ ହସି ହସି କହିଲା-ମାମୁ !ତୁମେ ମତେ ଚିହ୍ନି ପାରୁନା କି ? ହଁ, ତମେ ମତେ କେମିତି ବା ଚିହ୍ନିବ ? ତମେତ ସବୁବେଳେ ଭୁବନେଶ୍ୱରରେ ରହିଲ, ଗାଆଁକୁ ଗଲେସିନା ବନ୍ଧୁବାନ୍ଧବଙ୍କୁ ଚିହ୍ନିବ ? ମୁଁ ପରା ତୁମ ଦାଦାଝିଅ ଭଉଣୀ ମନୋରମାର ଝିଅ ସର । ମୋ ଶାଶୁଘର ଢ଼େଙ୍କାନାଳ ପାଖରେ ଥିବା ବାଉଁଶବାହାଳି ଗାଆଁରେ ।

ନୀଳାମ୍ବର ପୁଣିଥରେ ସର ମୁହଁକୁ ଚାହିଁ ମନେପକାଇବାକୁ ଚେଷ୍ଟାକଲେ ତାଙ୍କ



Digitized by srujanika@gmail.com

ଦାଦାଝିଅ ଭଉଣୀ ମନୋରମାର ମୁହଁକୁ । ମନୋରମା ମଲାଣି ଛଅବର୍ଷ ହେଲା । କିନ୍ତୁ ଏ ସରକୁ ତ ସିଏ କେବେ ଦେଖି ନାହାଁନ୍ତି ।

ସର ଏଥର କାନ୍ଦ କାନ୍ଦ ସ୍ୱରରେ କହିଲା-ମୋ ବିଭାଘରର ସାତବର୍ଷ ପରେ ମୋ ସ୍ୱାମୀ ଚାଲିଗଲେ । ଛାଡ଼ିଗଲେ ଏଇ ଛୋଟ ଛୁଆ ବକଟକ । ମୁଁ ଶୁଣିଲି ମାଇଁ ତୁମକୁ ଏକୁଟିଆ କରି ଚାଲିଯାଇଛନ୍ତି । ତମକୁ ଟିକେ ଦେଖିବାକୁ ଚାଲି ଆସିଲି । ତମ ଘର ଖୋଜି ଖୋଜି ନୟାନ୍ତ ହେଲିଣି ।

ଗେଟ୍ ପାଖରେ ଏତେ ସମୟ ଠିଆହୋଇଥିବା ଅଟୋବାଲା ଭଡ଼ା ମାଗିଲା । ନୀଳାମ୍ବର ଘରୁ ପଇସା ଆଣି ଅଟୋକୁ ବିଦାକଲେ । ସର ନିଜେ ଯାଇ ଗୋଟେ ବଖରା ଅଧିକାର କରିନେଲା । ତାର ଆଉ ତା ପୁଅର ଲୁଗାପଟା ଗୋଟେ କାନ୍ଥ ଆଲମାରିରେ ସଜାଡ଼ି ରଖିଲା । କବାଟ କୋଣରୁ ଝାଡୁ ନେଇଆସି ଘରଟା ଓଳାଇ ଆଣିଲା । ଫ୍ରିଜ ଖୋଲି ପରିବା କାଟି ରୋଷେଇ ଆରମ୍ଭ କଲା । ନୀଳାମ୍ବରଙ୍କୁ କହିଲା-ମାମୁ ତମେ ଏଥର ଘରେ ବସ, ଖବରକାଗଜ ପଢ଼, ଟିଭି ଦେଖ । ମୁଁ ସବୁକାମ କରିଦେବି ।

ନୀଳାମ୍ବର ଭାବିଲେ ତାଙ୍କ ସମସ୍ୟାର ସହଜ ସମାଧାନ ହୋଇଗଲା । ସର ଘରଝିଅ ପରି ଘରକାମ ସବୁ କରିନେବ । ତାଙ୍କୁ ଆଉ କିଛି କାମ କରିବାକୁ ପଡ଼ିବ ନାହିଁ । ମାତ୍ର ଆଠ ଦିନ ରହିବା ଭିତରେ ତାଙ୍କ ଘରର ସମସ୍ତ ଦାୟିତ୍ୱ ନିଜ ହାତକୁ ନେଇଗଲା ସର । ନର୍ମଦାଙ୍କ ଶାଢ଼ିଆଲମାରି ଖୋଲି ସେଥିରୁ କେତେଟା ଶାଢ଼ି ବାହାର କରି ପିନ୍ଧିବା ଆରମ୍ଭ କରିଦେଲା ।

ନର୍ମଦାଙ୍କ ଶାଢ଼ି ଅନ୍ୟଜଣେ ପିନ୍ଧିବାଟା ନୀଳାମ୍ବରଙ୍କୁ ଭଲ ଲାଗିଲା ନାହିଁ ।ସରର ଏକାମଟାକୁ ସିଏ ଆଦୌ ଗ୍ରହଣ କରି ପାରିଲେ ନାହିଁ । କିନ୍ତୁ ସିଏ ସରର ମୁହଁ ଉପରେ କିଛି କହି ପାରିଲେ ନାହିଁ । ଆଲମାରିରେ ଆଉ ଗୋଟେ ଅଲଗା ତାଲା ପକାଇ ନିଜ ପାଖରେ କାଠିଟା ରଖିଲେ ।

ବିଭିନ୍ନ ସମୟରେ ବିଭିନ୍ନ ପ୍ରଶ୍ନ ପଚାରିଲା ସର ।ଏଇ ଯେମିତି ମାଇଁଙ୍କ ଅଳଙ୍କାର ସବୁ କ'ଣ ହେଲା ? ତୁମ ବୋହୂ ନେଇ ଯାଇଛି ନା ଘରେ ଅଛି ? ଆଲମାରିରେ ଥିବା ଶାଢ଼ି ସବୁ କ'ଣ ତୁମ ଝିଅ ଆଉ ବୋହୂ ପିନ୍ଧିବେ ? ତମେ ମାସକୁ କେତେଟଙ୍କା ପେନସନ୍ ପାଉଛ ? ଘରଭଡ଼ା କେତେ ମିଳୁଛି ? କେତେ ଟଙ୍କା ବ୍ୟାଙ୍କରେ ରଖିଚ ? ଏ ଆଲମାରିରେ କ'ଣ ଅଛି ? ସେ ବ୍ରିଫ୍‌କେସ ଗୁଡ଼ାକ କାହାର ? ତୁମ ପୁଅବୋହୂ ଦିଇଣଯାକ ଚାକିରି କରିଛନ୍ତି । ସେମାନେ କେତେ ଟଙ୍କା ଦରମା ପାଉଛନ୍ତି ?

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଏସବୁ ନିହାତି ବ୍ୟକ୍ତିଗତ କଥାର କିଛିହେଲେ ଉତ୍ତର ନଦେଇ ନୀଳାମ୍ବର ନିରବ ରହିଲେ ।

ଦିନେ ମର୍ଣ୍ଣିଓ୍ୱାକରୁ ଫେରି ନୀଳାମ୍ବର ଦେଖିଲେ ଜଣେ ଯୁବକ ତାଙ୍କ ଡ୍ରଇଁରୁମ୍‌ରେ ବସି ଟିଭି ଦେଖୁଛି । ସରର ଇଙ୍ଗିତରେ ଯୁବକ ଜଣଙ୍କ ଉଠିଆସି ନୀଳାମ୍ବରଙ୍କ ପାଦଛୁଇଁ ପ୍ରଣାମ କଲା ।ସର ପରିଚୟ କରାଇଦେଲା ଇଏ ମୋର ଦୂର ସଂପର୍କୀୟ ଦିଅର । ଇଲେକ୍ଟ୍ରି କାମ ଶିଖିଛନ୍ତି । ଭାରି ଭଲ କାମ କରନ୍ତି । କଲିକତାରେ ରହିକାମ କରୁଥିଲେ । ସେଠି ତାଙ୍କ ଦିହ ଭଲ ରହିଲା ନାହିଁ ବୋଲି ପଳେଇ ଆସିଲେ । ଗାଆଁରେ ଆଦୌ କାମ ମିଳୁନାହିଁ । ଆସିଛନ୍ତି ଭୁବନେଶ୍ୱରରେ କାମ ଖୋଜିବାକୁ । ମୁଁ ତାଙ୍କୁ କହିଲି ମାମୁଙ୍କ ଘର ତ ଖାଲି ପଡ଼ିଛି , ଯେତେଦିନ ରହିବ ରୁହ । କାମ ମିଳିଲେ ଅନ୍ୟଠି ଘରଭଡ଼ା ନେଇ ରହିବ ।

ନୀଳାମ୍ବରଙ୍କ ମୁହଁ ଗମ୍ଭୀର ଦିଶିଲା । କିଛି ନକହି ଖବରକାଗଜ ପଢ଼ାରେ ମନଦେଲେ । କିନ୍ତୁ ଖବରକାଗଜ ପଢ଼ାରେ ମନ ପଶିଲା ନାହିଁ । ସର ଏଠି ଗୋଡ଼ ଲମ୍ବାଇ ବସିଲାଣି । ଏ ଟୋକାଟା ତା ସଂପର୍କୀୟ ଦିଅର କି ପ୍ରେମିକ କିଏ କହିବ ? କିଛି ବ୍ୟବସ୍ଥା ନକଲେ ସିଏ କେତେବେଳେ କ'ଣ କରି ବସିବ କିଏ ଜାଣେ ?ମନେ ମନେ ଦୃଢ଼ ନିଷ୍ପତ୍ତି ନେଲେ । ସରକୁ ଏଠୁ ଯଥାଶୀଘ୍ର ବିଦା କରିବାକୁ ହେବ ।

ତାପରଦିନ ସକାଳ ସାତଟା ବେଳେ ନୀଳାମ୍ବର ଡାକିଲେ ସରକୁ ଆଉ ଆଦେଶ ଦେବା କଣ୍ଠରେ କହିଲେ-ମୁଁ ଆଜି ତୀର୍ଥଦର୍ଶନରେ ହରିଦ୍ୱାର , ହୃଷୀକେଶ, ଦ୍ୱାରିକାନାଥ ଯିବି । ମାସକ ପରେ ଫେରିବି । ତୁ ତୋ ପୁଅ ଓ ଦିଅରକୁ ନେଇ ଆଜି ଆଠଟା ଭିତରେ ତୁମ ଗାଆଁକୁ ଫେରିଯା ।

ସର ଆପତ୍ତି କଲା-ତୁମେ ତୀର୍ଥ କରିବାକୁ ବାହାରିଚ, ଯାଅ । ତୁମେ ଫେରିବା ପର୍ଯ୍ୟନ୍ତ ଆମେ ତୁମଘର ଜଗିକି ଥିବୁ ।

ନୀଳାମ୍ବର ମନାକଲେ । ତାଙ୍କର ଗୋଟିଏ କଥା ସର ତା'ପୁଅ ଓ ଦିଅରକୁ ଧରି ଘରୁ ବାହାରି ଗଲେ ସିଏ ଘରେ ତାଲା ପକାଇ ତୀର୍ଥକରି ଯିବେ । ଗଙ୍ଗାରେ ସ୍ତ୍ରୀଙ୍କର ଅସ୍ଥି ବିଷର୍ଜନ କରି ଫେରିବେ । ସରର କୌଣସି ଆପତ୍ତି ନଶୁଣି ଅଟୋ ଡକାଇ ସେଥିରେ ତାର ପେଡ଼ିପୁଟୁଳି ଥୋଇ ଘରୁ ବିଦାକଲେ । ସିଏ ଯିବାବେଳେ ତା ହାତରେ ଦୁଇ ହଜାର ଟଙ୍କା ଦେଇ କହିଲେ –ଏଇ ଟଙ୍କାରେ ତୋର ଶାଢ଼ି ଆଉ ତୋ ପୁଅର ଡ୍ରେସ କିଣିନେବୁ ।

ସର ଆଖିରୁ ଲୁହପୋଛି କହିଲା- ମୁଁ ଏବେ ଯାଉଛି । ତୁମେ ତୀର୍ଥରୁ ଫେରିଲେ



Digitized by srujanika@gmail.com

ପୁଣି ଆସିବି ।

ନୀଳାମ୍ବର ଗମ୍ଭୀର ସ୍ୱରରେ ଉତ୍ତର ଦେଲେ-ନା, ତୁ ଆଉ ଏଠିକି ଆସିବା ଦରକାର ନାହିଁ । ମୁଁ ଏକା ଚଳିବାରେ କିଛି ଅସୁବିଧା ନାହିଁ । ତୁ ତୋ ଶାଶୁଘରେ ରହି ତୋ ଶାଶୁ ଶ୍ୱଶରଙ୍କର ସେବାକର । ସେମାନେ ସନ୍ତୁଷ୍ଟହେଲେ ତୋର ଆଉ ତୋ ପିଲାର ମଙ୍ଗଳ ହେବ ।

ସର ଆଉ କିଛି ନକହି ଚୁପ୍‌ଚାପ୍ ଅଟୋରେ ବସି ଗାଆଁକୁ ଫେରିଗଲା ।

ସେଇଦିନ ସଂଧ୍ୟାରେ କଲୋନୀର କିଛି ବନ୍ଧୁ ଆସି ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଥିଲେ ଇଂଜିନିୟର ସରୋଜ ଚୌଧୁରୀ, ପ୍ରଫେସର ଦୀନନାଥ ଆଉ ପ୍ରଶାସକ କମଳାକାନ୍ତ । ସମସ୍ତେ ଚାକିରିରୁ ଅବସର ନେଇଛନ୍ତି ଓ ସମସ୍ତେ ବିପତ୍ନୀକ । କିଏ ଛଅବର୍ଷ, କିଏ ଆଠ ବର୍ଷ ତ କିଏ ଦଶବର୍ଷ ହେଲା ଅବସର ନେଇଛନ୍ତି । ଏମାନେ ସମସ୍ତେ ଏକତ୍ର ଯାଆନ୍ତି ସକାଳ ଓ ସଂଧ୍ୟାବେଳର ୱାକ୍‌ରେ । ଗାଆଁରୁ କେହି ଜଣେ ବିଧବା ସ୍ତ୍ରୀଲୋକ ଆସି ରହିବା ଓ ଆଜି ସକାଳୁ ତାକୁ ନୀଳାମ୍ବର ବିଦାକରିଥିବା ଖବର ସେମାନଙ୍କ କାନରେ ପଡ଼ିଛି । କଥାଟା କ'ଣ ବୁଝିବା ପାଇଁ ସେମାନେ ଆସି ପହଞ୍ଚିଲେ ।

ବନ୍ଧୁମାନଙ୍କ ପାଇଁ ଚା' କରିବା ନିମନ୍ତେ ରୋଷେଇଘରକୁ ଯିବାବେଳେ ଏଇ ତିନି ବନ୍ଧୁ ବି ତାଙ୍କ ସହିତ ରୋଷେଇଘରେ ପଶିଲେ । ସମସ୍ତେ ମିଳିମିଶି ଚା' ତିଆରିକଲେ । ଗରମ ଗରମ ଚା'କପେ କପେ ଧରି ଡ୍ରଇଁଗ୍ରୁମ୍‌କୁ ଫେରି ଆସିଲେ ।ନୀଳାମ୍ବର ସର ଉପାଖ୍ୟାନଟା ସବିସ୍ତୃତ ବର୍ଣ୍ଣନା କଲେ ବନ୍ଧୁମାନଙ୍କ ଆଗରେ । ବ୍ୟାପାରଟାକୁ ଯାହା ଯେମିତି ସିଏ ହ୍ୟାଣ୍ଡେଲ୍ କରିଛନ୍ତି ସମସ୍ତେ ସେଥିରେ ସନ୍ତୋଷ ପ୍ରକାଶ କଲେ ।

ନୀଳାମ୍ବରଙ୍କ ଏ ତିନି ବନ୍ଧୁଙ୍କ ଭିତରୁ ସରୋଜ ତାଙ୍କ ସ୍ତ୍ରୀ ବିୟୋଗ ପରେ ପୁଅବୋହୂଙ୍କ ସହିତ ଯାଇଥିଲେ ଦିଲ୍ଲୀ । ସେଠି ରହିଥିଲେ ଚାରି ମାସ । ଅଣନିଃଶ୍ୱାସୀ ଲାଗିଲା ତାଙ୍କୁ । ଛାଟିପିଟି ହୋଇ ଭୁବନେଶ୍ୱର ଫେରି ଆସିଲେ ।

ଦୀନନାଥଙ୍କର ପୁଅ ନାହିଁ । ନିଃସଙ୍ଗ ଜୀବନରୁ ମୁକ୍ତି ପାଇଁ ସିଏ ଯାଇଥିଲେ ଝିଅ ଜ୍ୱାଇଁଙ୍କ ପାଖକୁ ସିଙ୍ଗାପୁର । ସେଠି ସିଏ ଅତି କଷ୍ଟରେ କଟାଇଲେ ଛଅମାସ । ଆଉ ଅଧିକ ଦିନ ରହିବା ତାଙ୍କ ପକ୍ଷେ ଅସହ୍ୟ ହେଲା ।ସେମାନଙ୍କ ଜୀବନ ଶୈଳୀ ଓ ପରିବେଶ ସହିତ ଇଏ ଖାପ ଖୁଆଇ ନପାରି ଫେରି ଆସିଲେ ।

କମଳାକାନ୍ତ ଗାଆଁକୁ ଯାଇଥିଲେ ସାନଭାଇର ପରିବାର ଗହଳି ଭିତରେ ରହି ନିଜର ନିଃସଙ୍ଗତାକୁ ଭୁଲିବା ପାଇଁ । ତାଙ୍କର ଆଉ ଗୋଟେ ଆଶା ଥିଲା ନିଜ ଗାଆଁଲୋକଙ୍କ



Digitized by srujanika@gmail.com

ସହିତ ଗପସପ କରି କିଛି ସମୟ ଭଲରେ କଟାଇବା । କିନ୍ତୁ ସେସବୁ କିଛି ସଫଳ କି ସମ୍ଭବ ହେଲା ନାହିଁ । ତାଙ୍କ ସାନଭାଇ ଦେବକାନ୍ତ ଭାବିଥିଲା ତାଙ୍କ ପେନସନ ଟଙ୍କାକୁ ହାତ କରିବା ପାଇଁ । ମାସେ ଦୁଇ ମାସ ରହଣୀ ଭିତରେ ଦେବକାନ୍ତଙ୍କ ମତଲବ ଧରା ପଡ଼ିଗଲା । ଗାଆଁଲୋକମାନେ ବି କମଳାକାନ୍ତଙ୍କ ହାକିମ ସ୍ୱରୂପ ଆଗରୁ ଦେଖି ଥିବାରୁ ଏବେ ସିଏ ଯେତେ ମିଳାମିଶା କରିବାକୁ ଚାହିଁଲେ ବି ସେମାନେ ତାଙ୍କ ପାଖ ମାଡ଼ିଲେ ନାହିଁ, ଆଡ଼ଆଡ଼ ହୋଇ ରହିଲେ । ମାସ ଦୁଇଟାରେ କମଳାକାନ୍ତଙ୍କର ଗାଆଁ ମୋହ ଭଙ୍ଗହେଲା । ସେ ପୁଣି ଭୁବନେଶ୍ୱର ଲେଉଟି ଆସିଲେ ।

ନୀଳାମ୍ବରଙ୍କ ଡ୍ରଇଁରୁମ୍‌ରେ ଏକତ୍ର ହୋଇଥିବା ଆଜି ଚାରି ବନ୍ଧୁଙ୍କର ବିଚାର ବିମର୍ଶ ଚାଲିଛି । ସ୍ତ୍ରୀ ଚାଲିଯିବା ପରେ ଏତେ ବଡ଼ ଘରଟାରେ ଏକୁଟିଆ ଘର ଜଗୁଆଳୀ ଭାବେ ଅଧିକ ଦିନ ରହିବା ଅତ୍ୟନ୍ତ କଷ୍ଟକର । ଦୀନନାଥ ମାହୋଲଟାକୁ ଟିକେ ହାଲୁକା କରିବା ପାଇଁ କହିଲେ-ଆମେ ଜାଣିଛେ ଆମେ ଚାରିଜଣଯାକ ନିଜ ନିଜର ପତ୍ନୀ ହରାଇ ଏବେ ନିଃସଙ୍ଗ । ଆଜି ଆମ ପାଖରେ ବିରାଟ ବରାଟ ବିଲ୍ଡିଙ୍ଗ,ମୋଟା ଅଙ୍କର ପେନସନ,ଲକ୍ଷ ଲକ୍ଷ ଟଙ୍କାର ବ୍ୟାଙ୍କ ବାଲାନ୍ସ ଥାଇ ବି ଆମର କିଛି ନଥିବା ପରି ଆମେ ନିଃସଙ୍ଗ ଆଉ ଅସହାୟ ଅନୁଭବ କରୁଛେ । ଗୋଟେ ଏକାନ୍ତ ବ୍ୟକ୍ତିଗତ କଥା ପଚାରିବି ଆଶାକରେ ସମସ୍ତେ ସତ କହିବେ ।

ସମସ୍ତେ ଉତ୍କଣ୍ଠାର ସହିତ ଦୀନନାଥଙ୍କ ମୁହଁକୁ ଚାହିଁଲେ । ଏଥର ଟିକେ ମୁରୁକି ହସି ଦୀନନାଥ ପ୍ରଶ୍ନକଲେ-ଆମ ଚାରିଜଣଙ୍କର ପତ୍ନୀ ବିୟୋଗ ଘଟିଛି । କିନ୍ତୁ ପ୍ରେମିକା ବିୟୋଗ ଘଟିଛି କି ନାହିଁ ମୁଁ ଜାଣି ନାହିଁ । ଯାହାର ପ୍ରେମିକା ଜୀବିତ ଥିବେ ସିଏ ତାଙ୍କ ସହିତ ଫୋନ୍‌ରେ ଗପସପ୍ କରି ଜୀବନକୁ ରୋମାଣ୍ଟିକ କରି ପାରିବେ । ଏ ନିଃସଙ୍ଗ ଜୀବନରେ କିଛିଟା ରଙ୍ଗ ବୋଳିହେବ ।

ସରୋଜ ତାର ପ୍ରତ୍ୟୁତ୍ତର ଦେବାକୁ ଯାଇ କହିଲେ-ଏ ବୟସରେ ଆଉ ପ୍ରେମିକା ସହିତ ଫୋନ୍‌ରେ ପ୍ରେମାଳାପ କରି ପ୍ରେମିକାର ସଂସାରରେ ନିଆଁ ଲଗାଇବା କେତେଦୂର ସମୀଚିନ ହେବ ସେକଥା ଭାବିବାକୁ ପଡ଼ିବ ।

କମଳାକାନ୍ତ କହିଲେ-ଖୋତରା କାଠରେ ଯେତେ ନିଆଁ ଗେଞ୍ଜିଲେ ବି ଆଉ ଜଳିବ ନାହିଁ । କେବଳ ଧୂଆଁ ବାହାରିବ ଧୂଆଁ , ଯେଉଁଥିରେ ଆଖି,କାନ, ନାକ ପୋଡ଼ିବ ।

ସମସ୍ତେ ହୋ ହୋ ହୋଇ ବଡ଼ ପାଟିରେ ହସି ଉଠିଲେ ।

କିଛି ସମୟ ପରେ ଆଲୋଚନା ଭିତରକୁ ଜରାନିବାସ ପ୍ରସଙ୍ଗ ପଶି ଆସିଲା ।

ଆନନ୍ଦ ଚନ୍ଦ୍ର ପତି

Digitized by srujanika@gmail.com

ନିଜଘରେ ଏମିତି ଏକୁଟିଆ ରହିବା ଅପେକ୍ଷା ଜରାନିବାସରେ ରହିବା ଭଲ । ଭୁବନେଶ୍ୱରଠୁ ୧୦ କିଲୋମିଟର ଦୂରରେ ଗୋଟିଏ ଜରାନିବାସ ଖୋଲିଛି । ଆଶ୍ରମ ପରି ଶାନ୍ତ, କାନ୍ତ, ପବିତ୍ର ପରିବେଶ । ନିୟମିତ ବ୍ୟାୟାମ, ପ୍ରାଣାୟାମ,ଖେଳ,ଖବରକାଗଜ ପଢ଼ା, ଲାଇବ୍ରେରୀ ବହିପଢ଼ା ସହିତ ମନୋରଂଜନ ଆଉ ସୁଷମ ଖାଦ୍ୟ , ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା ଓ ଚିକିତ୍ସାର ସୁବ୍ୟବସ୍ଥା ରହିଛି । ସବୁଠୁ ବଡ଼କଥା ସେଠି ଆମ ବୟସର ଅନେକ ବୃଦ୍ଧବୃଦ୍ଧା ଅଛନ୍ତି । ସେମାନଙ୍କ ସହିତ ଭାବ ବିନିମୟ କରିହେବ, ଦୁଃଖ, ସୁଖ ବାଣ୍ଟିହେବ । ଜରାନିବାସ ରହଣୀ ପାଇଁ ଅବଶ୍ୟ କିଛି ମାସିକ ଦେୟ ଦେବାକୁ ହେବ । ସେଥି ପାଇଁ ଆମର କିଛି ଅସୁବିଧା ନାହିଁ । ଆମେ ସମସ୍ତେ ମାସିକ ପେନସନ ପାଉଛେ ।

ଦୀନନାଥ କହିଲେ-କଲେଜ ପଢ଼ାବେଳର ହଷ୍ଟେଲ ଜୀବନ ପୁଣି ମନେ ପଡ଼ିବ । ଆମେ ଚାରିଜଣ ଏକାଠି ରହିଲେ ପୁଣି ମଜା ମସ୍ତି କରିବାକୁ ସୁଯୋଗ ମିଳିବ । ଏ ନିଃସଙ୍ଗତାରୁ ସଂପୂର୍ଣ୍ଣ ମୁକ୍ତି ମିଳିବ ।

ଜରାନିବାସ ପ୍ରସ୍ତାବଟା ସମସ୍ତଙ୍କ ମନକୁ ପାଇଲା । ଚାରିବନ୍ଧୁ ମିଶି ପାଖାପାଖି ଦୁଇଟି ରୁମ୍ ନେଇଗଲେ ଗପସପ, ଥଟାମଜା,ଖେଳ ଭିତରେ ସମୟ କଟିଯିବ ।ବରିଷ୍ଠ ନାଗରିକମାନଙ୍କ ଉପରେ ଆଜିକାଲି ଯେଉଁ ଆକ୍ରମଣ ଓ ଲୁଟପାଟ ହେଉଛି ସେ ଆଶଙ୍କା ରହିବ ନାହିଁ । ସେଠି କଡ଼ା ସୁରକ୍ଷା ବ୍ୟବସ୍ଥା ଅଛି ।

ନୀଳାମ୍ବର ମୁହଁ ଖୋଲିଲେ-ଜରାନିବାସ ବ୍ୟବସ୍ଥାଟା ଉପରକୁ ସୁନ୍ଦର ଦିଶୁଥିଲେ ବି ଆମ ପୁଅବୋହୂ ଓ ଝିଅଜ୍ୱାଇଁଙ୍କ କଥା ଆମକୁ ଟିକେ ଭାବିବାକୁ ପଡ଼ିବ । ତାଙ୍କର ସେଣ୍ଟିମେଣ୍ଟକୁ ଆଘାତ ଦେବାପରି କିଛି କାମ ଆମେ କରିବା ଉଚିତ ନୁହଁ । ପିଲାମାନେ ଆମକୁ ତାଙ୍କ ପାଖରେ ନେଇ ରଖିବା ପାଇଁ ଚାହୁଁଥିଲେ ।କିନ୍ତୁ ଆମେ ତାଙ୍କ ସାଙ୍ଗରେ ଯାଇ ତାଙ୍କ ପାଖରେ ରହିବାକୁ ପ୍ରସ୍ତୁତ ନୁହଁ । ଆମେ ପିଲାମାନଙ୍କ ପାଖରେ ନରହି ଜରାନିବାସରେ ରହିଲେ ସେମାନେ ସାମାଜିକ ଉପହାସର ସରବ୍ୟ ହେବେ । ଲୋକମାନେ କହିବେ ପୁଅବୋହୂ କି ଝିଅଜ୍ୱାଇଁ ଥାଉଁ ଥାଉଁ ବାପାମାନେ ଜରାନିବାସରେ ଆଶ୍ରୟ ନେଲେ । ଆମେମାନେ ଯେ ସ୍ୱଇଛାରେ ଜରାନିବାସ ରହଣିକୁ ପସନ୍ଦ କରିଛୁ ସେକଥା କେହି ବୁଝିବେ ନାହିଁ । ଅଯଥାରେ ଆମ ପିଲାମାନେ ନିନ୍ଦିତ ହେବେ, ଲଜ୍ଜିତ ହେବେ ।

ସମସ୍ତେ ନୀଳାମ୍ବରଙ୍କ କଥାରେ ଏକମତ ହେଲେ । ନିଜ ସୁଖ ସୁବିଧା ପାଇଁ ଆମେ ଆମ ପିଲାଙ୍କୁ ଅପନିନ୍ଦା ଦେଇ ପାରିବା ନାହିଁ । ଯେଉଁ ବରିଷ୍ଠ ନାଗରିକମାନଙ୍କର କେହି ନିଜର ସଂପର୍କୀୟ ନାହାଁନ୍ତି ସେମାନଙ୍କ ପାଇଁ ଜରାନିବାସ ବ୍ୟବସ୍ଥା ଭଲ, ଆମ



Digitized by srujanika@gmail.com

ପାଇଁ ନୁହଁ ।

ଦୀନନାଥ କହିଲେ-ଆମେ ଆଉଟିକେ କିଛି ଚିନ୍ତାକଲେ ହୁଏତ ଆମ ପାଇଁ ଭଲ ବାଟଟିଏ ବାହାରି ପାରନ୍ତା । ମୁଁ ଭାବୁଛି ଜରାନିବାସ ନହେଲେ ବି ସେଇ ପାଖାପାଖି କ'ଣ ଗୋଟେ ବ୍ୟବସ୍ଥା ଆମମାନଙ୍କ ପାଇଁ ଠିକ୍‌ହେବ ।ପନ୍ଦର ମିନିଟ ସମସ୍ତେ ନିରବରେ ବସି ଚିନ୍ତା କରନ୍ତୁ । ଆମେ ଏମିତି କିଛି ଗୋଟେ ବ୍ୟବସ୍ଥା କଥା ଚିନ୍ତା କରିବା ଯେଉଁଟା ଆମ ପିଲାମାନଙ୍କ ପାଇଁ ଅପମାନଜନକ ନହୋଇ ସମ୍ମାନଜନକ ଓ ସ୍ୱାଗତଯୋଗ୍ୟ ହେବ ।

କମଳାକାନ୍ତଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା । ସିଏ କହିଲେ-ଆପଣ ଠିକ୍ କହିଛନ୍ତି । ଆମେ ଆମ ସମସ୍ୟା ସମାଧାନର ପାଖାପାଖି ପହଞ୍ଚି ଗଲେଣି । ଆଉ ଟିକେ ଚିନ୍ତାକଲେ ଆମେ ସେ ବାଟଟା ହୁଏତ ପାଇଯିବା । ମୁଁ ଭାବୁଛି ଆମେ ଜରାନିବାସକୁ ନଯାଇ ଆମ ଏଇ କଲୋନୀରେ ଗୋଟେ ଘର ଭଡ଼ାନେଇ ଚାରିଜଣଯାକ ଏକାଠି ରହିବା, ଗୋଟିଏ ରୋଷେଇରେ ଖାଇବା,ଏକାଠି ବସି ଟିଭି ଦେଖିବା , ଖବରକାଗଜ ପଢ଼ିବା,ତାସ ଖେଳିବା, ମଜା, ମଉଜ,ମସ୍ତି କରିବା ।

ସମସ୍ତଙ୍କ ମନକୁ ଏଇ ପ୍ରସ୍ତାବଟା ପାଇଲା । ତେବେ ସରୋଜ ଏଥିରେ ଆଉ କିଛି ଯୋଗକଲେ । ସିଏ କହିଲେ-ଆମେ ଅନ୍ୟ କାହାର ଘର ଭଡ଼ାରେ ନେବା କ'ଣ ଆବଶ୍ୟକ ?ଆମ ଚାରିଜଣଙ୍କର ତ ଚାରିଟା ଘର ଅଛି । ସେଥିରୁ ଗୋଟେ ଦି'ମହଲା ଘର ନେଇଯିବା । ତଳ ମହଲାରେ ଆମେ ଚାରିଜଣ ରହିବା, ଉପର ମହଲାଟା ଗେଷ୍ଟରୁମ୍ କରିବା । ଆମ ବନ୍ଧୁ, ବାନ୍ଧବ ଆଉ ଆମ ପୁଅବୋହୂ କି ଝିଅଜ୍ୱାଇଁ ଆସିଲେ ରହିବେ । ଘର ଓଳା, ଘର ପୋଛା ଆଉ ବାସନ ମଜା ପାଇଁ ଜଣେ କାମବାଲୀ ଆଉ ରୋଷେଇ କରିବା ପାଇଁ ଆଉ ଜଣେ କାମବାଲୀ ରଖିଦେବା । ସବୁକାମ ସୁରୁଖୁରୁରେ ଚାଲିବ ।

ଦୀନନାଥ ଆପତ୍ତି ଉଠାଇଲେ-ରୋଷେଇ କରିବା ପାଇଁ ଲୋକ ରଖିବା କ'ଣ ଦରକାର, ଆମେ ମିଳିମିଶି ରୋଷେଇ କରିବା । ପ୍ରତିଦିନ ଭୋଜିକଲା ପରି ମଜା ଲାଗିବ । ଟାଇମ ପାସ୍ ବି ହେବ ।

ନୀଳାମ୍ବର କହିଲେ-ମୁଁ ଏପ୍ରସ୍ତାବକୁ ପୂର୍ଣ୍ଣପ୍ରାଣରେ ସମର୍ଥନ ଜଣାଉଛି । ଆଉ ରହିଲା ଆମର ସ୍ୱାସ୍ଥ୍ୟର ଯତ୍ନପାଇଁ ଜଣେ ଡାକ୍ତର ବ୍ୟବସ୍ଥା କରିବା କଥା । ଆମ କଲୋନୀରେ ଅନେକ ଡାକ୍ତର ଘରକରି ରହୁଛନ୍ତି । ତାଙ୍କ ଭିତରୁ କୌଣସି ଜଣଙ୍କ ସହିତ ଆମେ ଯୋଗାଯୋଗ କଲେ ସେ ସମସ୍ୟାର ସମାଧାନ ହୋଇଯିବ ।

ଏ ପ୍ରସ୍ତାବକୁ ସମସ୍ତେ କରତାଳି ଦେଇ ସମର୍ଥନ ଜଣାଇଲେ । କିନ୍ତୁ ନିଳାମ୍ବର



Digitized by srujanika@gmail.com

କହିଲେ-ଆମେ ସମସ୍ତେ ଏ ପ୍ରସ୍ତାବକୁ ସମର୍ଥନ କଲେ କ'ଣ ହେବ ଆମ ପିଲାମାନଙ୍କ ଦ୍ୱାରା ଏହା ଗ୍ରହଣୀୟ ହେବା ଦରକାର । ମୁଁ ଆଶା କରୁଛି ଆମ ପିଲାମାନେ ଅତି ଆଗ୍ରହରେ ଏପ୍ରସ୍ତାବକୁ ଗ୍ରହଣ କରିବେ । କାରଣ ଆମେ ଅନ୍ୟ କେଉଁଠିକି ନଯାଇ ଆମ ନିଜଘରେ ରହିବା । ଆଜି ରାତିରେ ଆମେ ଆମ ପିଲାମାନଙ୍କ ଆଗରେ ଏ ପ୍ରସ୍ତାବ ଥୋଇ ତାଙ୍କର ମତାମତ ନେବା ।

ତାପର ଦିନ ସକାଳେ ଚାରି ବନ୍ଧୁ ପୁଣି ନୀଳାମ୍ବରଙ୍କ ଡ୍ରଇଁରୁମ୍‌ରେ ଏକାଠି ହେଲେ । ସମସ୍ତଙ୍କ ମୁହଁ ହସହସ ଦିଶୁଥିଲା । ପିଲାମାନେ ଖୁବ୍ ଆଗ୍ରହର ସହିତ ଏ ପ୍ରସ୍ତାବକୁ ଗ୍ରହଣ କରିଛନ୍ତି । ସେମାନଙ୍କ ଭାଷାରେ ତାଙ୍କ ବାପାମାନେ ସମସ୍ତଙ୍କ ପାଇଁ ଗୋଟେ ସୁନ୍ଦର ଓ ସୁସ୍ଥ ଉଦାହରଣ ସୃଷ୍ଟିକରିବାକୁ ଯାଉଛନ୍ତି । ତେବେ ସେମାନେ ଇଚ୍ଛା ପ୍ରକାଶ କରିଛନ୍ତି ବାପାମାନଙ୍କର ଏଇ 'ବନ୍ଧୁବାସ'ଶୀଘ୍ର ତିଆରି ହେଉ ଆଉ ତାଙ୍କ ବାପାମାନେ ସେଠାରେ ଖୁସିରେ ରୁହନ୍ତୁ । ବନ୍ଧୁବାସ ଚାଲୁ ହେବାର ସମ୍ବାଦ ସେମାନେ ପାଇଲେ ସେମାନଙ୍କ ଖୁସିର ଠିକଣା ରହିବ ନାହିଁ ।

ଚାରି ବନ୍ଧୁଙ୍କ ମଧ୍ୟରୁ କାହା ଘରଟା ନେଇ ବନ୍ଧୁବାସ କରିବେ ସିଏ ଗୋଟେ ସମସ୍ୟା ହୋଇ ଠିଆହେଲେ। । ପ୍ରତ୍ୟେକ ଚାହିଲେ ତାଙ୍କ ଘରଟା ହିଁ ବନ୍ଧୁବାସ ହେଉ । ଏ ସମସ୍ୟାର ସମାଧାନ ପାଇଁ ପ୍ରଥମ ପ୍ରସ୍ତାବ ଆସିଲା ଧର୍ମଗୁଳା ପକାଇ ଦିଆ ଯାଉ । ଯେଉଁ ଘରଟି ପାଇଁ ଧର୍ମଗୁଳା ଉଠିବ ସେଇ ଘରଟି ବନ୍ଧୁବାସ କରାଯିବ । ଅବଶିଷ୍ଟ ତିନିଟାଯାକ ଘର ଭଡ଼ା ଦିଆଯିବ । ସେଇ ଭଡ଼ାଟଙ୍କା ପ୍ରତି ମାସରେ ଗୋଟେ ବ୍ୟାଙ୍କରେ ଚାରି ଜଣଙ୍କ ନାମରେ ଗୋଟିଏ ଜଏଣ୍ଟ ଏକାଉଣ୍ଟ ଖୋଲି ଗଚ୍ଛିତ ରଖାଯିବ । ସେ ଟଙ୍କା ବନ୍ଧୁବାସର ଅନ୍ତେବାସିମାନଙ୍କ ଚିକିତ୍ସା ପାଇଁ ଖର୍ଚ୍ଚହେବ ।

ଏ ପ୍ରସ୍ତାବରେ ସାମାନ୍ୟ ପରିବର୍ତ୍ତନ ଆଣିଲେ ନୀଳାମ୍ବର । ସେ କହିଲେ- ଏମିତି ଧର୍ମଗୁଳା ପକାଇବାଟା ଠିକ୍‌ହେବ ନାହିଁ । ଆମ ଏଇ ଚାରିଟା ଘର ଭିତରୁ ଯେଉଁ ଘରଟା ବନ୍ଧୁବାସ ପାଇଁ ସବୁ ଦିଗରୁ ଠିକ୍ ହେବ ସେଇ ଘରଟାକୁ ନେବାଟା ଉଚିତ ହେବ । ମୁଁ ଭାବୁଛି ଯେଉଁ ଘର ଆଗରେ ଫୁଲ ବଗିଚା ପାଇଁ କିଛି ଜାଗା ଥିବ ଆଉ ପଛରେ କିଚିନ୍ ଗାର୍ଡ଼େନ ପାଇଁ ସୁବିଧା ଥିବ ସେଇ ଘରଟା ନେବା ଭଲହେବ । ଘର ଭିତରକୁ ପର୍ଯ୍ୟାପ୍ତ ଆଲୁଅ ଓ ପବନ ଚଳାଚଳ କରୁଥିବା ଦରକାର ।

ସେଇଆ ହେଲା । ଏସବୁ ଦୃଷ୍ଟିରୁ କମଳାକାନ୍ତଙ୍କ ଘରଟା ଉପଯୁକ୍ତ ବିବେଚିତ ହେଲା । ତାଙ୍କ ଘର ଆଗରେ ପନ୍ଦର ଫୁଟରେ ଚାଳିଶ ଫୁଟ ଓ ପଛରେ ଦଶ ଫୁଟରେ ଚାଳିଶ ଫୁଟ ଜାଗା ରହିଛି । ସର୍ବସମ୍ମତିକ୍ରମେ ସ୍ଥିର ହେଲା ଆସନ୍ତା ମାସ ପନ୍ଦର ତାରିଖ



Digitized by srujanika@gmail.com

ଦିନ ବନ୍ଧୁବାସ ଉଦ୍‌ଘାଟନ କରାଯିବ। ଚାରି ବନ୍ଧୁ ତାଙ୍କ ପିଲାମାନଙ୍କୁ ଏକଥା ଜଣାଇ ଦେଲେ। କିନ୍ତୁ ଉଦ୍‌ଘାଟନ କିଏ କରିବ ତାହା ସ୍ଥିର ହୋଇ ପାରିଲା ନାହିଁ। କୌଣସି ମନ୍ତ୍ରୀଙ୍କୁ ଏକାମ ପାଇଁ ଡାକିଲେ ସିଏ ଅଯଥାଟାରେ ତାକୁ ରାଜନୈତିକ ରୂପଦେବେ। ଏ କଲୋନୀର ସବୁଠୁ ଜଣେ ବୟସ୍କ ଲୋକ ହାତରେ ଉଦ୍‌ଘାଟନ କରିବା ପାଇଁ ପ୍ରସ୍ତାବ ଆସିଲା।

ଶେଷରେ ସ୍ଥିର ହେଲା ଏସବୁ କିଛି ନକରି ସେମାନେ ଚାରି ଜଣଯାକ ମିଶି ବନ୍ଧୁବାସକୁ ଏକ ନୂଆ ଢ଼ଙ୍ଗରେ ଉଦ୍‌ଘାଟନ କରିବେ। ସେ ନୂଆଢ଼ଙ୍ଗଟା କ'ଣ ହେବ ସେ କଥା ପ୍ରତ୍ୟେକେ ଭାବିବେ। ଏତେ ଦରବର ହେବା ଦରକାର ନାହିଁ,ହାତରେ ଆହୁରି କୋଡ଼ିଏ ଦିନ ସମୟ ଅଛି।

ତେବେ ଆପାତତ୍ ସ୍ଥିରହେଲା ଯେ କଲୋନୀର ସବୁଠୁ ବୟୋଜ୍ୟେଷ୍ଠ ଅବସରପ୍ରାପ୍ତ ବିଚାରପତି ରଜନୀକାନ୍ତ ବାବୁ ଫିତାକାଟି ବନ୍ଧୁବାସର ଶୁଭ ଉଦ୍‌ଘାଟନ କରିବେ।

ନିର୍ଦ୍ଦିଷ୍ଟ ଦିନ ଆସିଲା। ଚାରିବନ୍ଧୁ ହସହସ ମନରେ ବନ୍ଧୁବାସ ଆଗରେ ଠିଆହୋଇଛନ୍ତି ଉଦ୍‌ଘାଟକ ରଜନୀକାନ୍ତଙ୍କୁ ଅପେକ୍ଷାକରି। ବନ୍ଧୁବାସ କଥା ସାରା କଲୋନୀରେ ପ୍ରଚାରିତ ହୋଇ ଯାଇଛି। କଲୋନୀ ସାରା ଲୋକ ବନ୍ଧୁବାସ ପରି ଏକ ଅତ୍ୟନ୍ତ ନୂଆ ବ୍ୟବସ୍ଥାର ଉଦ୍‌ଘାଟନ ଦେଖିବାକୁ ରୁଣ୍ଡ ହୋଇଛନ୍ତି। ଏତିକିବେଳେ ଆଗ ପଛ ହୋଇ ଦୁଇଟି କାର୍ ଆସି ବନ୍ଧୁବାସ ଆଗରେ ଅଟକିଲା। ସମସ୍ତଙ୍କୁ ବିସ୍ମିତ କରି ସେ କାର୍‌ରୁ ଓହ୍ଲାଇଲେ ସେଇ ଚାରି ବନ୍ଧୁଙ୍କର ପୁଅ ଓ ଝିଅମାନେ। ସେମାନେ ଆସିବା କଥା କାହାକୁ ନଜଣାଇଁ ସର୍ପରାଇଜ ଦେବାକୁ ହଠାତ୍ ଆସି ପହଞ୍ଚିଛନ୍ତି। ସେମାନେ ତାଙ୍କ ସହିତ ବନ୍ଧୁବାସ ନିମନ୍ତେ କିଛି ଉପକରଣ କିଣି ଆଣିଥିଲେ। ସେ ଉପକରଣ ଭିତରେ ଥିଲା ଗୋଟିଏ ବଡ଼ ଏଲ.ଇ.ଡ଼ି ଟିଭି, ଗୋଟିଏ ୱାସିଙ୍ଗ ମେସିନ୍, ଗୋଟିଏ କ୍ୟାରମବୋର୍ଡ଼, କେତେ ମୁଠା ତଥାସ, କିଛି ଭଲ ବହି, ଓ ଗୋଟିଏ ମିଉଜିକ ସେଟ।

ଚାରି ବନ୍ଧୁ ପିଲାମାନଙ୍କ ସହଯୋଗ ଦେଖି ଖୁସିରେ ବିଭୋର ହୋଇଗଲେ। କିଛି ସମୟ ଭିତରେ ରଜନୀକାନ୍ତ ଆସି ପହଞ୍ଚି ଫିତାକାଟି ବନ୍ଧୁବାସକୁ ଉଦ୍‌ଘାଟନ କଲେ। ସେ ତାଙ୍କର ଉଦ୍‌ଘାଟନି ଭାଷଣରେ କହିଲେ-ଏ ଚାରି ବନ୍ଧୁ ଆଜି ଗୋଟେ ଅତ୍ୟନ୍ତ ଅଭିନବ ବ୍ୟବସ୍ଥା ଓ ଅତି ଆବଶ୍ୟକ ପରଂପରା ତିଆରି କଲେ। ବନ୍ଧୁବାସ ଏ ନିଃସଙ୍ଗ ବୃଦ୍ଧମାନଙ୍କ ଜୀବନକୁ ସରସ ସୁନ୍ଦର ଆଉ ପ୍ରାଣ ପ୍ରାଚୁର୍ଯ୍ୟରେ ଭରିଦେବ। ସେମାନଙ୍କ ଜୀବନ ହସଖୁସି, ମଉଜ,ମଜଲିସରେ ଭରିଯିବ। ନିଃସଙ୍ଗତା ଯୋଗୁ ଯେଉଁ ସମୟ ତାଙ୍କ



Digitized by srujanika@gmail.com

ଉପରେ ବୋଝପରି ଭାରି ଲାଗୁଥିଲା ସେ ସମୟ ସାଙ୍ଗମେଳରେ କୁଆଡ଼େ କଟିଯିବ ଜଣା ପଡ଼ିବ ନାହିଁ। ସେମାନଙ୍କ ଜୀବନର ଆଜିଠୁ ଏକ ନୂଆ ଅଧ୍ୟାୟ ଆରମ୍ଭହେଲା। କେବଳ ଚାରିଟା ମଣିଷ ଯେ ଯୋଡ଼ି ହୋଇଗଲେ ସେତିକି ନୁହଁ ଚାରିଟା ପରିବାର ଯୋଡ଼ି ହୋଇଗଲା।

ଏମିତି ଗୋଟେ ବନ୍ଧୁବାସ ଯେ କେବଳ ସହରରେ ହୋଇ ପାରିଲା ତାହା ନୁହଁ ପ୍ରତି ଗାଆଁରେ ବି ଏମିତିଆ ବନ୍ଧୁବାସ ତିଆରି କରାଯାଇ ପାରିବ। ଗାଆଁରେ ଯେଉଁ ବୃଦ୍ଧ ବା ବୃଦ୍ଧା ଅତିକଷ୍ଟରେ ଏକୁଟିଆ ଜୀବନ କାଟୁଛନ୍ତି ସେମାନେ ଅଲଗା ଅଲଗା ଘରେ ନରହି ତିନି, ଚାରି ଜଣ ବୃଦ୍ଧ କି ତିନି ଚାରି ଜଣ ବୃଦ୍ଧା ଗୋଟିଏ ଘରେ ଏକତ୍ର ରହି ତାକୁ ବନ୍ଧୁବାସ ଭାବେ ବ୍ୟବହାର କରି ପାରିବେ। ଦୂର ବିଦେଶରେ ଚାକିରି କରୁଥିବା ତାଙ୍କ ପିଲାମାନେ ତାଙ୍କୁ ଆର୍ଥିକ ସହାୟତା ଯୋଗାଇବେ।

ମୁଁ ଏଇ ବନ୍ଧୁବାସ ବ୍ୟବସ୍ଥାକୁ ଆନ୍ତରିକ ସ୍ୱାଗତ ଜଣାଉଛି।ଇଏ ଗୋଟେ ନୂଆ ବ୍ୟବସ୍ଥା କେବଳ ନୁହଁ, ନୂଆ ପରଂପରା ଆଜିଠୁ ଆରମ୍ଭ ହେବାକୁ ଯାଉଛି। ମୁଁ ଆଶା କରୁଛି ଏହା ସଫଳ ହେବ ଏବଂ ଏଥିରେ ଅନେକ ଲୋକ ଅନୁପ୍ରାଣିତ ହେବେ। ଆହୁରି ଅନେକ ବନ୍ଧୁବାସ ତିଆରି ହେବ।

ରୁଣ୍ଡ ହୋଥିବା ଲୋକମାନେ ଆନନ୍ଦରେ କରତାଳି ଦେଲେ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଅନୁତ୍ତରିତ

ମୋବାଇଲ ଫୋନ୍ ରିଙ୍ଗ ଶୁଣି ଅରିନ୍ଦମଙ୍କ ନିଦ ଭାଙ୍ଗିଗଲା । ସମୟ ଅପରାହ୍ନ ଚାରିଟା । ଉଠିବାକୁ ଇଚ୍ଛା ନଥିଲା କାରଣ ଖାଇ ସାରି ଏଇ ଅଧ ଘଣ୍ଟାଏ ହେଲା ସିଏ ବିଶ୍ରାମ ନେଇଥିଲେ । କିଏ ଫୋନ୍ କରିଛି ଜାଣିବା ପାଇଁ ଫୋନ୍‌ର ସ୍କ୍ରିନକୁ ଚାହିଁଲେ । ଅଜଣା ନମ୍ବର । ଅନିଚ୍ଛା ସତ୍ତ୍ୱେ ଫୋନ୍ ଉଠାଇଲେ ।

ସେପଟରୁ ଶୁଭିଲା ଗୋଟେ ଅଚିହ୍ନା ନାରୀ କଣ୍ଠ । ସିଏ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲେ-କାହାକୁ ଖୋଜୁଛନ୍ତି ମ୍ୟାଡ଼ମ୍ ?

-ଅରିନ୍ଦମଙ୍କୁ ଖୋଜୁଛି,ମାନେ ଅରିନ୍ଦମ ନାୟକଙ୍କୁ ।

ତଥାପି ସେ ନାରୀକଣ୍ଠକୁ ଚିହ୍ନି ପାରିଲେ ନାହିଁ ଅରିନ୍ଦମ । ଟିକେ ରହିଯାଇ ଉତ୍ତର ଦେଲେ –ମୁଁ ଅରିନ୍ଦମ କହୁଛି । କିନ୍ତୁ ଆପଣ କିଏ କହୁଛନ୍ତି ?

-ତୁମେ କ'ଣ ମୋତେ ସଂପୂର୍ଣ୍ଣ ଭୁଲି ଗଲଣି ଅରି ? ମୁଁ ସୀମା କହୁଛି ।

-ସୀମା ! କୋଉ ସୀମା ?

-ଯେଉଁ ସୀମା ତୁମ ସହିତ ଢ଼େରବର୍ଷ ତଳେ ଗାଆଁ ସ୍କୁଲଠୁ ଆରମ୍ଭ କରି କଲେଜ ପର୍ଯ୍ୟନ୍ତ ଏକାଠି ପଢ଼ିଥିଲା ।

-ଆରେ ସୀମା ! ତମେ ? ଏତେ ବର୍ଷ ପରେ ତୁମର ମୋ କଥା କେମିତି ମନେପଡ଼ିଲା ? ମୋ ଫୋନ୍ ନମ୍ବର କେମିତି , କାହାଠୁ ପାଇଲ ?

ସୀମା ଏଥର ଅତ୍ୟନ୍ତ ଇମୋସନାଲ୍ ହୋଇ ଜଡ଼ିତ କଣ୍ଠରେ ଉତ୍ତର ଦେଲେ-ସିଏ ଅନେକ କଥା ଅରି ! ତୁମେ ଆସିଲେ ସବୁକଥା କହିବି ।

-ତୁମେ ଏବେ କେଉଁଠି ସୀମା ? ମୋ ପାଖରେ ଯାହା ଖବର ଅଛି ତୁମେ ସପରିବାର ଅଷ୍ଟ୍ରେଲିଆରେ ଥିଲ । ଏବେ କ'ଣ ଇଣ୍ଡିଆକୁ ଫେରିଲଣି ?

ସୀମା ରୁଦ୍ଧକଣ୍ଠରେ ଉତ୍ତର ଦେଲେ-ନା, ମୋ ପରିବାର ଏବେ ବି ଅଷ୍ଟ୍ରେଲିଆରେ । କିନ୍ତୁ ନିହାତି ଗୋଟେ ଜରୁରୀ କାମ ପାଇଁ ମୁଁ ଏକା ଆସିଛି ଗାଆଁକୁ । ତୁମେ ଗାଆଁକୁ ଆସିବନା ?

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଅରିନ୍ଦମଙ୍କ ଦେହ ଓ ମନରେ ଗୋଟେ ଶିହରଣ ଖେଳିଗଲା । ସିଏ ଆଗ୍ରହର ସହିତ କହିଲେ-ନିଶ୍ଚୟ । ତୁମେ ଡାକିବ ଆଉ ମୁଁ ଯିବି ନାହିଁ ?ଏକଥା ତୁମେ କେମିତି ଭାବି ପାରିଲ ସୀମା ?

-ଏଇ କେତେ ବର୍ଷ ଭିତରେ ଆମ ଜୀବନରେ ଅନେକ କିଛି ପରିବର୍ତ୍ତନ ଘଟିଲାଣି ଅରି ! ଏତେ ଦିନର ବ୍ୟବଧାନ ପରେ ଦେଖାହେଲେ ତୁମେ ମୋତେ କି ମୁଁ ତୁମକୁ ଚିହ୍ନିବା ହୁଏତ ସହଜ ହେବ ନାହିଁ । ସେ କଥା ଛାଡ଼, କେତେବେଳେ ଆସୁଚ ?

ଅରିନ୍ଦମ କହିଲେ-ଏବେ ତ ଦିନ ଚାରିଟା ବାଜିଲାଣି । ଭୁବନେଶ୍ୱରଠୁ ଆମ ଗାଆଁ ଦେଢ଼ଶହ କିଲୋମିଟର ରାସ୍ତା । ଏବେ ବାହାରିଲେ ସଂଧ୍ୟା ସାତଟା, ଆଠଟା ଭିତରେ ହୁଏତ ପହଞ୍ଚିଯିବି । କିନ୍ତୁ..

-କିନ୍ତୁ ପୁଣି କ'ଣ ଅରି ! ତୁମ ଧର୍ମପତ୍ନୀଙ୍କ ଅନୁମତି ମିଳିବ ନାହିଁ ?

- ନା,ସେକଥା ନୁହଁ । ତୁମେ ଶୁଣି ବିସ୍ମିତ ହେବ ଯେ ମୋର ଗାଆଁ ଅଛି ଅଥଚ ଗାଆଁରେ ନିଜ ଘର ନାହିଁ ।

-ଇଏ କେମିତି କଥା ?

-ସିଏ ଅନେକ କଥା ସୀମା ! ଦେଖା ହେଲେ ସବୁ କହିବି । ଠିକ୍ ଅଛି, ମୁଁ କାଲି ସକାଳ ଦଶଟା ଭିତରେ ଗାଆଁରେ ପହଞ୍ଚି ଯିବି । ତୁମେ କାଲି ପର୍ଯ୍ୟନ୍ତ ଗାଆଁରେ ଅଛତ ?

-ମୁଁ ତୁମକୁ ଦେଖା ନକଲା ପର୍ଯ୍ୟନ୍ତ ଗାଆଁରେ ଅପେକ୍ଷା କରିବି । କାଲି ତୁମେ ନିଶ୍ଚୟ ଆସିବ ।ଏବେ ଫୋନ୍ ରଖୁଛି ।

ସେପଟେ ଫୋନ୍ ରଖିଲେ ସୀମା, ଏପଟେ ଅରିନ୍ଦମ । ଫୋନ୍ କଥାବାର୍ତ୍ତାର ଶେଷ ଭାଗଟା ଅରିନ୍ଦମଙ୍କ ସ୍ତ୍ରୀ ଅନୁପମାଙ୍କ କାନରେ ପଡ଼ିଗଲା । ସିଏ ବିଭିନ୍ନ ପ୍ରଶ୍ନ କଲେ- କାହା ସହିତ କଥା ହେଉଥିଲ ? ଗାଆଁକୁ କାହିଁକି ଯିବ ? ସେଠି ତୁମର କି'କାମ ? ଗାଆଁରେ ରହିବ କେଉଁଠି ?

ଅନୁପମାଙ୍କ ଏତେ ସବୁ ପ୍ରଶ୍ନର କିଛି ଉତ୍ତର ନଦେଇ ଅରିନ୍ଦମ ଶୋଇବାର ଅଭିନୟ କଲେ । ବିଛଣାରେ ଆଖିବୁଜି ପଡ଼ିରହି ଅତୀତର ସ୍ମୃତି ରୋମନ୍ଥନରେ ଲାଗିଗଲେ ।

ସୀମା ଥିଲେ ଅତ୍ୟନ୍ତ ସୁନ୍ଦରୀ । ଭଲ ପାଠ ପଢୁଥିଲେ ଆଉ ଭଲ ଗୀତ ବି ଗାଉଥିଲେ । କଲେଜରେ ଆଉ ଅନେକ ଝିଅ ପଢୁଥିଲେ ବି ସୀମା ଥିଲେ ଅନନ୍ୟା । ତାଙ୍କ ସହିତ ପଦେ କଥାହେବା ପାଇଁ କଲେଜର ସବୁ ପୁଅପିଲା ନିଜ ନିଜ ଭିତରେ



Digitized by srujanika@gmail.com

ପ୍ରତିଯୋଗିତା କରୁଥିଲେ ।

କିନ୍ତୁ ଅରିନ୍ଦମ ଥିଲେ ସବୁଠୁ ନିଆରା । ପାଞ୍ଚ ଫୁଟ ଦଶ ଇଞ୍ଚ ଉଚ୍ଚତା, ପତଳା ଶରୀର, ରଙ୍ଗ ଗୋରା । କଥା, ଚାଲି, ପୋଷାକ ସବୁଥିରେ ଷ୍ଟାଇଲ୍‌ର ଛାପ । ସିଏ ଗଳ୍ପ ଲେଖୁଥିଲେ ଓ ସେସବୁ ରାଜ୍ୟ ସ୍ତରୀୟ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହେଉଥିଲା । କଲେଜ ୟୁନିଅନ୍‌ର ସଂପାଦକ ନିର୍ବାଚିତ ହେବା ପରେ ଅରିନ୍ଦମଙ୍କୁ କଲେଜର ସବୁ ପିଲା ଓ ସବୁ ଅଧ୍ୟାପକ ଚିହ୍ନି ଯାଇଥିଲେ ।

ତଥାପି ସୀମାଙ୍କ ସହିତ ଅରିନ୍ଦମଙ୍କର କିଛି ବି ଅନ୍ତରଙ୍ଗତା ନଥିଲା । ଗାଆଁ ଝିଅ ହେଲେ ବି ସୀମାଙ୍କ ପରିବାରର ଷ୍ଟାଟସ୍ ବହୁତ ଉପରେ ଥିଲା । ଅରିନ୍ଦମ ଥିଲେ ଅତି ଗରିବ ଘରର ପିଲା । ଘରଡ଼ିହକୁ ଛାଡ଼ିଦେଲେ ଆଉ କିଛି ନଥିଲା ତାଙ୍କର । ସୀମା ବାପାଙ୍କ ଜମିକୁ ଭାଗଚାଷ କରି ଚଳୁଥିଲା ତାଙ୍କ ପରିବାର । ତେଣୁ ସୀମାଙ୍କ ଷ୍ଟାଟସ୍‌କୁ ଅରିନ୍ଦମଙ୍କ ଆଖି ପାଏନା । ସିଏ ବି ସେଆଡ଼କୁ କେବେ ଆଖି ବଢ଼ାଇ ନାହାଁନ୍ତି । ସିଏ ସୀମାଙ୍କ ସହିତ କଥାହେବା ପାଇଁ କି କିଛି ସଂପର୍କ ରଖିବା ପାଇଁ କେବେ ମନରେ ଚିନ୍ତା ମଧ୍ୟ କରି ନଥିଲେ ।

କିନ୍ତୁ ଗୋଟେ ଦିନ ଅଚାନକ ଗୋଟେ ପରିସ୍ଥିତିରେ ସୀମାଙ୍କ ସହିତ ଦେଖା ହୋଇଗଲା ଅରିନ୍ଦମଙ୍କର । ଗାଆଁଠୁ କଲେଜଟା ଗୋଟେ କିଲୋମିଟର ଦୂର । କଲେଜ ଯିବା ବାଟରେ ହଠାତ୍ ବିଜୁଳି, ଘଡ଼ଘଡ଼ି ସହିତ ବର୍ଷା ମାଡ଼ିଆସିଲା । ବର୍ଷାରୁ ରକ୍ଷା ପାଇବା ପାଇଁ ରାସ୍ତା କଡ଼ର ଗୋଟେ ବଡ଼ ବରଗଛ ତଳକୁ ଚାଲି ଆସିଲେ ଅରିନ୍ଦମ । ତାଙ୍କ ପଛେ ପଛେ ସୀମା ମଧ୍ୟ ଯାଇ ସେଇଗଛ ତଳେ ଆଶ୍ରୟ ନେଇଥିଲେ । କିନ୍ତୁ ସେ ଗଛ ସେ ଦୁହିଁଙ୍କୁ ବର୍ଷାରୁ ରକ୍ଷାକରି ପାରିନଥିଲା । ଦୁହେଁ ଗଛରୁ ପଡୁଥିବା ପାଣିରେ ସଂପୂର୍ଣ୍ଣ ଭିଜି ଯାଇଥିଲେ । ତଥାପି ସେଦୁହେଁ ସେଇ ଗଛମୂଳେ ଠିଆହୋଇ ତିନ୍ତିଥିଲେ, କାରଣ ବାହାରେ ବର୍ଷାର ପ୍ରକୋପ ବଢ଼ି ଚାଲିଥିଲା । କେହି କାହାକୁ କିଛି ନକହି ଚୁପ୍‌ଚାପ୍ ତିନ୍ତି ଚାଲିଥିଲେ । ସୀମାଙ୍କ ଶାଢ଼ି,ଶାୟା,ବ୍ଲାଉଜ ବର୍ଷା ପାଣିରେ ଭିଜି ଦେହରେ ଜଡ଼ି ଯାଇଥିଲା । ଲାଜରେ ସୀମାଙ୍କ ମୁହଁ ପାଟଳ ଦିଶୁଥିଲା । ସିଏ ମୁହଁ ତଳକୁ ପୋତି ଦୁଇ ହାତକୁ ଛାତିରେ ଛନ୍ଦି ଠିଆହୋଇ ରହିଥିଲେ ବର୍ଷା ଛାଡ଼ିବାକୁ ଅପେକ୍ଷା କରି । ସୀମାଙ୍କୁ ଏତେ ନିକଟରେ ପାଇ ମଧ୍ୟ ମୁହଁ ଖୋଲି ନଥିଲେ କି ଆଖି ଉଠାଇ ତାଙ୍କୁ ଚାହିଁ ନଥିଲେ ଅରିନ୍ଦମ ।

ବର୍ଷା ଛାଡ଼ିଲା ପ୍ରାୟ ଘଣ୍ଟାକ ପରେ । ଦୁହେଁ ସେଦିନ ଆଉ କଲେଜ ନଯାଇ



Digitized by srujanika@gmail.com

ଫେରି ଯାଉଥିଲେ ଘରକୁ । କିନ୍ତୁ ସେଇ ଦିନଠୁ ସୀମାଙ୍କ ବ୍ୟବହାରରେ କିଛିଟା ପରିବର୍ତ୍ତନ ଲକ୍ଷ୍ୟ କରିଥିଲେ ଅରିନ୍ଦମ । କଲେଜରେ ଦେଖାହେଲେ ହସି ଦିଅନ୍ତି ସୀମା । ସେଦିନର ବର୍ଷାଭିଜା ମୁହୂର୍ତ୍ତଟା ନାଚିଯାଏ ଅରିନ୍ଦମଙ୍କ ଆଖିରେ । ବାଟଭାଙ୍ଗି ଚାଲି ଯାଆନ୍ତି ସିଏ ।

ଅରିନ୍ଦମ ଅନେକ ଥର ଚିନ୍ତା କରିଛନ୍ତି ସୀମା ତାଙ୍କୁ ଦେଖି ଏମିତି ମୁରୁକି ହସିବାର ଅର୍ଥ କ'ଣ ହୋଇପାରେ ? ସୀମା କ'ଣ ତାଙ୍କୁ ଭଲପାଇ ବସିଛନ୍ତି ? ଜଣେ ଯୁବକକୁ ଦେଖି ଜଣେ ଯୁବତୀ ଏମିତି ହସିବାର ଆଉ କିଛି କାରଣ ଥାଇ ନପାରେ ।

ତା'ପରେ ଆସିଲା ଫାଇନାଲ ବି.ଏ ପରୀକ୍ଷା । ପରୀକ୍ଷା ପରେ ପରେ ଛୁଟି । କଲେଜ ବନ୍ଦ ହୋଇଗଲା । ସୀମାଙ୍କ ସହିତ ଆଉ ଦେଖା ହେଲାନାହିଁ । କିନ୍ତୁ ସୀମାଙ୍କ ହସଟା ଅରିନ୍ଦମଙ୍କ ପାଇଁ ମିଷ୍ଟି ହୋଇ ରହିଗଲା ।

ଅରିନ୍ଦମଙ୍କୁ ବିସ୍ମିତ କରି ତାଙ୍କ ପାଖକୁ ଡାକରେ ଗୋଟିଏ ଚିଠି ଆସି ପହଞ୍ଚିଲା । ଲଫାପା ଖୋଲି ଦେଖିଲେ ଚିଠିଟି ଆସିଥିଲା ସୀମାଙ୍କ ପାଖରୁ । ଦୁଇ ଧାଡ଼ିର ସଂକ୍ଷିପ୍ତ ଚିଠି । ମୁଁ ତୁମକୁ ଭଲପାଏ ଅରିନ୍ଦମ ।

ଏ ଚିଠିଟି ପାଇବା ପରେ ଅରିନ୍ଦମ ଖୁସିରେ ନାଚି ଉଠିଥିଲେ । ସଙ୍ଗେ ସଙ୍ଗେ ସୀମାଙ୍କ ଚିଠିର ପ୍ରତ୍ୟୁତ୍ତରରେ ଲେଖିଥିଲେ-'ମୁଁ ତୁମକୁ ବହୁତ ବହୁତ ବହୁତ ଭଲପାଏ ସୀମା !'

ସେଇ ଦିନହିଁ ଚିଠିଟି ଡାକବାକ୍ସରେ ପକାଇ ଦେଇଥିଲେ ସିଏ । କିନ୍ତୁ ଆଠ ଦିନ ଅପେକ୍ଷା କରିବା ପରେ ମଧ୍ୟ ସୀମାଙ୍କଠୁ କିଛି ବି ଉତ୍ତର ଆସି ନଥିଲା । ପ୍ରତିଦିନ ଡାକକୁ ଅପେକ୍ଷା କରନ୍ତି, ଡାକବାଲାକୁ ପଚାରନ୍ତି । କିନ୍ତୁ ସୀମାଙ୍କ ଚିଠି ଆଉ ଆସେ ନାହିଁ । ଗୋଟିଏ ଗାଆଁରେ ଦୁଇଜଣଙ୍କ ଘର ତଥାପି ଚିଠି ଆସିବାରେ ଏତେ ବିଳମ୍ବ ?

ଅରିନ୍ଦମ ଚେଷ୍ଟାକଲେ ସୀମାଙ୍କୁ ଭେଟିବାକୁ । ତାଙ୍କ ଘର ଚାରିପାଖରେ ଚକର କାଟିଲେ । କିନ୍ତୁ ସୀମାଙ୍କ ସାକ୍ଷାତ ପାଇଲେ ନାହିଁ । ଖୋଜଖବର ନେବା ପରେ ସିଏ ଜାଣିବାକୁ ପାଇଲେ ଯେ ସୀମା ତାଙ୍କ ମାମୁଙ୍କ ପାଖକୁ ଦିଲ୍ଲୀ ଚାଲିଯାଇଛନ୍ତି । ସେଠି ସିଏ ଜେ.ଏନ.ୟୁ. ରେ ପି.ଚ୍ଚି କରିବେ । ଆଉ ଗାଆଁକୁ ଫେରିବେ ନାହିଁ ।

ପୁଣି କିଛି ବର୍ଷପରେ ସିଏ ଶୁଣିବାକୁ ପାଇଲେ ସୀମା ଦିଲ୍ଲୀର ଜଣେ ଓଡ଼ିଆ ଇଂଜିନିୟରଙ୍କୁ ବିବାହ କରି ଅଷ୍ଟ୍ରେଲିଆ ଚାଲିଯାଇଛନ୍ତି । ଅରିନ୍ଦମଙ୍କ ପାଇଁ ଏଇଠି ସୀମାଙ୍କ ଚ୍ୟାପ୍ଟର ଶେଷ ହୋଇ ଯାଇଥିଲା । କିନ୍ତୁ ଏତେ ବର୍ଷପରେ ସୀମା ପୁଣିଥରେ ଗାଆଁକୁ ଫେରି ତାଙ୍କୁ ଗାଆଁକୁ ଡକାଇବାର ଉଦ୍ଦେଶ୍ୟ କ'ଣ ହୋଇପାରେ ? ଯେତେ ଅଙ୍କ କଷିଲେ



Digitized by srujanika@gmail.com

ବି ସିଏ ଠିକ୍ ଉତ୍ତରଟା ପାଇ ପାରିଲେ ନାହିଁ । ତାପର ଦିନ ସକାଳ ଛଅଟାରେ ଘରୁ ବାହାରି ଗାଆଁରେ ସକାଳ ଦଶଟା ପନ୍ଦରରେ ପହଞ୍ଚିଗଲେ । ଅରିନ୍ଦମଙ୍କ ବାପା ମାଆଙ୍କ ଦେହାନ୍ତ ପରେ ଗାଆଁର ଘରବାରି ବିକ୍ରିକରି ସିଏ ଭୁବନେଶ୍ୱରରେ ଘର ତିଆରି କରିବା ଅନେକ ଦିନ ହେଲାଣି । ତାପରଠୁ ସିଏ ଆଉ ଥରଟେ ସୁଦ୍ଧା ଗାଆଁ ମାଟି ମାଡ଼ି ନାହାଁନ୍ତି ।

ଏତେ ବର୍ଷପରେ ଆଜି ସିଏ ଗାଆଁକୁ ଆସି ଦ୍ୱନ୍ଦ୍ୱରେ ପଡ଼ିଛନ୍ତି । କାରଣ ଗାଆଁର ଚିତ୍ର ପୂରାପୂରି ବଦଳି ଯାଇଛି । ଏଇଟା କ'ଣ ତାଙ୍କ ନିଜ ଗାଆଁ ଯେଉଁଠି ସିଏ ପିଲାଠୁ ବଡ଼ହେବାଯାଏ ବଢ଼ିଥିଲେ, ପଢ଼ିଥିଲେ ଆଉ ଖେଳିଥିଲେ ? ଗାଆଁର ଦେହ,ମୁହଁ ଆଉ ଆତ୍ମାରେ ଅନେକ ପରିବର୍ତ୍ତନ । ଆଜି ନିଜ ଗାଆଁକୁ ନିଜେ ଚିହ୍ନି ପାରୁ ନାହାଁନ୍ତି ଅରିନ୍ଦମ ।

ଗାଆଁର ଧୂଳିଦାଣ୍ଡ ଆଜି ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନାରେ କଂକ୍ରିଟ କଳେବର । ଗାଆଁରେ ଏବେ ଗୋଟିଏ ବି ଚାଳଘର ନାହିଁ କି ତା ମଥାନରେ ଜହ୍ନି, ବୋଇତି କଖାରୁ କି କାକୁଡ଼ି ଡଙ୍କ ମାଡ଼ିନାହିଁ । ସବୁଘର ଏବେ ପକ୍କାଘର । କୌଣସି ଘରୁ ଆଉ କାଠ ରୋଷେଇର ଧୂଆଁ ଉଠୁ ନାହିଁ । ପ୍ରତିଘରେ ନିର୍ଧୂମ ଗ୍ୟାସ୍‌ଚୁଲା । କୌଣସି ଘରେ ଆଉ କିରୋସିନ ଡିବି କି ଲଣ୍ଠନ ନାହିଁ, ପ୍ରତିଘରକୁ ଲମ୍ବିଛି ବିଜୁଳି ତାର । କୂଅରୁ ଆଉ କୌଣସି ଲଳନା ପାଣି କାଢୁ ନାହାଁନ୍ତି । କୂଅରେ ମୋଟର ଲାଗିଛି, ଘରକୁ ପାଣି ପାଇପ୍ ଯାଇଛି । ଗାଆଁରେ ଦୁଇ ତିନିଟା ମୋବାଇଲ ଟାୱାର , ପ୍ରତ୍ୟେକଙ୍କ ହାତରେ ମୋବାଇଲ ଫୋନ୍ । ଘରେ ଘରେ ରଙ୍ଗୀନ ଟିଭି । ହଳ ଲଙ୍ଗଳରେ କାହାରି ବିଲ ଚାଷ ହେଉନାହିଁ । କଳ ଲଙ୍ଗଳରେ ଚାଷ, ଧାନ କାଟିବା ପାଇଁ ଯନ୍ତ୍ର, ଧାନ ଅମଳ କରିବା ପାଇଁ ଯନ୍ତ୍ର,ଧାନ ଉଡ଼ାଇବା ପାଇଁ ଯନ୍ତ୍ର । ଗାଆଁରୁ ଧାନକୁଟା ଢ଼ିଙ୍କି ଉଭେଇ ଯାଇଛି, କଳରେ ଧାନ ପେଶାଯାଇ ଚାଉଳ ବାହାରୁଛି । ଗାଆଁରେ କୌଣସି ଲୋକ ଆଜି ଉପାସ ରହୁନାହିଁ । ଟଙ୍କାକିଆ ଚାଉଳର ସୁଅ ଛୁଟିଛି ଗାଆଁ ଦାଣ୍ଡରେ । ଗାଆଁରେ ଟ୍ରକ୍,ବସ୍,କାର୍,ମୋଟର ସାଇକେଲ୍,ସ୍କୁଟି ବହୁଳ ଭାବେ ଆତଯାତ କରୁଚି । ଗାଆଁ ମୁଣ୍ଡରେ ଦୋକାନ ବଜାର ବସିଛି । ସହରର ଅନେକ ସୁବିଧା ଆଜି ଗାଆଁରେ ଉପଲବ୍ଧ ।

ଅରନ୍ଦମ ବିସ୍ମିତ ହେଲେ ଯେତିକି ଖୁସିହେଲେ ତାଠୁ ବେଶି । ଗାଆଁର ଅବସ୍ଥା ଏବେ ବଦଳି ବଦଳି ଚାଲିଛି । ଦିନ ଆସିବ ସବୁ ଗାଆଁ ସହର ହେବ । ଖୁସି ମିଶା ହସ ହାବୁକାଏ ତାଙ୍କ ପେଟ ଭିତରୁ ଉଠି ମୁହଁବାଟେ ପଦାକୁ ବାହାରି ଆସିଲା ।

ଆଉ ବିଳମ୍ବ ନକରି ଅରିନ୍ଦମ ଆଗେଇଲେ ଆଗକୁ । ପହଞ୍ଚିଲେ ସୀମାଙ୍କ ଘର ସାମନାରେ । ତାଙ୍କ ଛାତିରେ ସିଏ ମୃଦୁ କଂପନ ଅନୁଭବ କଲେ । ଦାଣ୍ଡ ଦୁଆର ନକ୍



Digitized by srujanika@gmail.com

କରିବାର କିଛି ସମୟ ପରେ କବାଟ ଖୋଲିଲେ ସୀମା । ଏତେ ବର୍ଷ ପରେବି ସୀମାଙ୍କ ଚେହେରାରେ ସେମିତି କିଛି ପରିବର୍ତ୍ତନ ହୋଇନି । ଦେହର ରଙ୍ଗ ଆଗପରି ଚକ୍‌ମକ୍ । କେବଳ ଯାହା ଅଳ୍ପ କିଛି ମାଂସ ଲାଗି ଯାଇଛି ତାଙ୍କ ଦେହର ବିଶେଷ ସ୍ଥାନମାନଙ୍କରେ ଯାହାକି ତାଙ୍କ ସୌନ୍ଦର୍ଯ୍ୟରେ କିଛି ବି ଆଞ୍ଚ ଆଣି ପାରିନାହିଁ ବରଂ ତାଙ୍କ ବ୍ୟକ୍ତିତ୍ୱକୁ ବଢ଼ାଇ ଦେଇଛି ଅନେକ ।

କିଛି ସମୟ ଦୁହେଁ ଦୁହିଁଙ୍କୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ । ସେଇ ବର୍ଷାଭିଜା ଦିନଟି ଦୁହିଁଙ୍କ ସ୍ମୃତିରେ ତାଜା ହୋଇ ଉଠିଲା । ଭିତରେ ଭିତରେ ଦୁହେଁ ରୋମାଞ୍ଚିତ ହେଲେ ।

ପ୍ରଥମେ ଅରିନ୍ଦମ ମୁହଁ ଖୋଲିଲେ-କୁହ ସୀମା ! ଏତେଦିନ ପରେ ମୁଁ କେମିତି ତୁମର ମନେ ପଡ଼ିଲି ? କ'ଣ ପାଇଁ ତୁମେ ମୋତେ ଗାଆଁକୁ ଆସିବାକୁ କହିଲ ?

ସୀମା ଜଡ଼ିତ କଣ୍ଠରେ ପ୍ରଶ୍ନକଲେ-ତୁମେ କିଛି ଗେସ୍ କରି ପାରୁନା ଅରିନ୍ଦମ ?

କିଛି ସମୟର ମୁଗ୍ଧ ନିରବତା ପରେ ତାଙ୍କର ଉତ୍ତର ରଖିଲେ ଅରିନ୍ଦମ- ନା, କାଲି ତୁମର ଫୋନ୍ ପାଇବା ପରଠୁ ମୁଁ ଅନେକ ସମୟ ଧରି ଭାବିଛି, କିନ୍ତୁ କିଛି ଗେସ୍ କରି ପାରିନାହିଁ । କାହାର ମନ କଥା ପଢ଼ିବା ବିଦ୍ୟା ମୋତେ ଜଣା ନାହିଁ । ତୁମେ କୁହ କାହିଁକି ଡ଼ାକିଛ ?

-ଏଇଠି ଏମିତି ଠିଆ ଠିଆ ଦୁଆର ମୁହଁଟାରେ କଥାହେବା ଠିକ୍ ନୁହଁ । ଘର ଭିତରକୁ ଆସ ଅରି !

- ତୁମ ଘରେ ଆଉ କିଏ ସବୁ ଅଛନ୍ତି ?

ଦୁଷ୍ଟ ହସ ହସି କହିଲେ ସୀମା -ନା, କେହି ନାହାଁନ୍ତି । ତୁମେ ନିର୍ଭୟରେ ଆସ ।

ଦୁହେଁ ଯାଇ ଘରର ସୋଫା ଉପରେ ବସିଲେ । ଅରିନ୍ଦମଙ୍କ ବାରଣ ନମାନି ସୀମା ନିଜେ ଯାଇ ଦୁଇ କପ୍ କଫି ନେଇ ଆସିଲେ । ଦୁହେଁ କଫି ପିଇବା ଭିତରେ ତାଙ୍କ କଥା ଆରମ୍ଭ କଲେ ସୀମା-ତୁମେ ତ ଜାଣ ଅରି ! ମୁଁ ମୋ ବାପା ମାଆଙ୍କର ଏକମାତ୍ର ସନ୍ତାନ । ଆଜିକୁ ପାଞ୍ଚ ବର୍ଷ ତଳେ ମୋ ମାଆଙ୍କର ଦେହାନ୍ତ ହୋଇଗଲା । ତାର ଦୁଇ ବର୍ଷ ପରେ ବାପା ଚାଲିଗଲେ । ଘରଟା ଦୀର୍ଘଦିନ ଧରି ତାଲାପଡ଼ି ବନ୍ଦ୍ ରହିଥିଲା । ଗାଆଁର ସରପଞ୍ଚଙ୍କ ପାଖରେ ଘରର ଚାବି ଆମେ ରଖି ଯାଇଥିଲୁ । କିଛି ଦିନ ତଳେ ଘରର ଅବସ୍ଥା ବୁଝିବାକୁ ମୁଁ ଫୋନ୍ କରିଥିଲି । ସିଏ ମୋତେ କହିଲେ ଘରଟା ବ୍ୟବହାର ନକଲେ କିମ୍ବା ରକ୍ଷଣାବେକ୍ଷଣ ନକଲେ ଖରାପ ହୋଇ ଯାଉଛି । କବାଟ ଝରକାରେ ଉଈ ଲାଗିଲେଣି,



Digitized by srujanika@gmail.com

ଛାତରୁ ପାଣି ଗଳିଲାଣି । ବେଶିଦିନ ଏମିତି ଅବସ୍ଥାରେ ରହିଲେ ଘରଟା ଭାଙ୍ଗି ପଡ଼ିବ ।

ଏସବୁ କାମ କରିବା ପାଇଁ ମୋ ସ୍ୱାମୀଙ୍କ ପାଖରେ ସମୟ ନାହିଁ କି ଆଗ୍ରହ ନାହିଁ । ତାଙ୍କର ଦିଲ୍ଲୀରେ ଘର ଅଛି । ଶେଷ ଜୀବନରେ ସେଇଠି ରହିବାକୁ ତାଙ୍କର ଇଚ୍ଛା । କିନ୍ତୁ ମୋର ଇଚ୍ଛା ଗାଆଁରେ ରହିବା ପାଇଁ । ଗାଆଁରେ ତ ଏବେ ସହରର ସବୁ ସୁବିଧା ମିଳିଲାଣି । ଏଠି ଗହଳ ଚହଳ ଆଉ ପ୍ରଦୂଷଣ ଅନେକଟା କମ୍ । ତେବେ ଈଶ୍ୱରଙ୍କ ଇଚ୍ଛା କ'ଣ ଅଛି କିଏ କହିବ ?

ମୁଁ ଗୋଟେ ମାସ ପାଇଁ ଗାଆଁକୁ ଆସିଥିଲି । ଘର ମରାମତି କାମ ପ୍ରାୟ ଶେଷ ହୋଇ ଗଲାଣି । କାହାକୁ ଏଘରଟା ଭଡ଼ା ଦିଆଯିବ ତାହାବି ସ୍ଥିର ହୋଇ ଗଲାଣି ।ମୁଁ କାଲି ଅଷ୍ଟ୍ରେଲିୟା ଫେରିଯିବି ।

ଅରିନ୍ଦମ ଏଥର ପୁରୁଣା ପ୍ରଶ୍ନକୁ ଦୋହରାଇଲେ-ତେବେ ମୋତେ କାହିଁକି ଡକାଇଛ ? କ'ଣ କହିବ ବୋଲି କହୁଥିଲ କୁହ ।

ସୀମା ନିଜ ଭିତରେ ନିଜକୁ ପ୍ରସ୍ତୁତ କରିନେଇ କହିଲେ-ମୁଁ ଆମର ଏଘର ଭଡ଼ାଦେବା ପୂର୍ବରୁ ମୋ ବାପା ବୋଉଙ୍କର କିଛି ବ୍ୟକ୍ତିଗତ ଜିନିଷ , ମୋ ପଢ଼ାବେଳର କିଛି ବହିପତ୍ର, କିଛି ଡ୍ରେସ ଯେଉଁଥିରେ ମୋର ଅନେକ ସ୍ମୃତି ଯୋଡ଼ିହୋଇ ରହିଛି ସେସବୁକୁ ଭଲ ଭାବେ ଝଡ଼ାଝଡ଼ି କରି ଗୋଟେ ବଡ଼ ବାକ୍ସରେ ସାଇତି ରଖିଲି ଓ କିଛି ଅଦରକାରୀ ଜିନିଷ ବାହାର କରି ଫିଙ୍ଗିଦେଲି । ଏସବୁ କରିବା ଭିତରେ ମୋ ବାପାଙ୍କ ବାକ୍ସରୁ ମିଳିଲା ଗୋଟେ ଅମୂଲ୍ୟ ପଦାର୍ଥ । ମୋ ଆଖି ଉଜ୍ଜ୍ୱଳି ଉଠିଲା ।

ଅରିନ୍ଦମଙ୍କ ଆଖି ବଡ଼ ବଡ଼ ହୋଇ ଗଲା । ସିଏ ପ୍ରଶ୍ନକଲେ –କ'ଣ ସେ ଅମୂଲ୍ୟ ପଦାର୍ଥ ?

-ତାହା ଏମିତି ଗୋଟେ ପଦାର୍ଥ ଯାହା ମୋ ଜୀବନର ଗତିପଥକୁ ବଦଳାଇ ଦେଲା । ଏଇ ପଦାର୍ଥଟି ମୁଁ ଯଥା ସମୟରେ ପାଇଥିଲେ ମୋ ଜୀବନ ଆଜି ଏମିତି ନହୋଇ ଆଉ କିଛି ହୋଇଥାନ୍ତା ।

-କୁହନା ସେ ପଦାର୍ଥଟା କ'ଣ ? ଆଉ ଉତ୍କଣ୍ଠା ବଢ଼ାଅନା ।

-ଖଣ୍ଡେ ଛୋଟ କାଗଜ ।

-ସାମାନ୍ୟ ଖଣ୍ଡେ କାଗଜ ? କୌଣସି ଦଲିଲ, ଦସ୍ତାବିଜ କି ଉଇଲ୍ ନୁହଁ ?

-ନା ଅରି ! ତାହା ଥିଲା ମାତ୍ର ଗୋଟିଏ ଧାଡ଼ିର ଅତିକ୍ଷୁଦ୍ର ଚିଠିଟିଏ ।

ଆନନ୍ଦ ଚନ୍ଦ୍ର ପଣ୍ଡି

Digitized by srujanika@gmail.com

-କ'ଣ କହିଲ ସୀମା ! ଗୋଟିଏ ଧାଡ଼ିର ଗୋଟେ ଚିଠି ?

-ହଁ,ତୁମର ମନେଥିବ ଅରି ! ମୁଁ ତୁମକୁ ଆମ କଲେଜର ଶେଷ ବର୍ଷ ପରୀକ୍ଷା ସରିବା ପରେ ଗୋଟେ ଅତିକ୍ଷୁଦ୍ର ଚିଠି ଦେଇଥିଲି ?

-ଏତେ ବର୍ଷପରେ ଆଉ କାହିଁକି ସେକଥା ଉଠାଉଛ ସୀମା ! ସେ ଚିଠି ପାଇବା ପରେ ମୁଁ ଭୋକ ଶୋଷ ଭୁଲି ଯାଇଥିଲି । ତୁମକୁ ପାଇବା ଆଶରେ ମୁଁ ଆତ୍ମହରା ହୋଇ ଯାଇଥିଲି । କିନ୍ତୁ ପର ମୁହୂର୍ତ୍ତରେ ସେ ଖୁସି ମା ହାତକୁ ଆସିବା ଆଗରୁ ହାତରୁ ପଡ଼ି କାଚପରି ଭାଙ୍ଗି ଚୂନଚୂନା ହୋଇଗଲା । ସେ ଭଙ୍ଗା କାଚର ତୀକ୍ଷ୍ଣ ଟୁକୁଡ଼ା ସବୁ ମୋ ହୃଦୟକୁ କ୍ଷତାକ୍ତ କଲା । ଛାତିକୁ ପଥର କରି ମୁଁ ସେକଥାକୁ ମୋ ଛାତି ଭିତରେ ଏକ ଗହୀରିଆ ଗାତ ଖୋଳି ପୋତି ପକାଇଛି । ଏତେ ଗହୀରରେ ଥାଇ ବି ତାହା ମୋତେ ବେଳେ ବେଳେ ଅସହ୍ୟ ଯନ୍ତ୍ରଣା ଦେଉଛି ।

-କିନ୍ତୁ ତୁମେ ମୋର ସେ ଚିଠିର ଉତ୍ତର ଦେଇନି । ମୁଁ ତୁମଠୁ ସେ ଚିଠିର ଉତ୍ତର ନପାଇ ମୋର ଅବସ୍ଥା କ'ଣ ହୋଇଥିବ ତୁମେ କେବେ ଭାବିଛ ଅରି ?

-କ'ଣ କହିଲ,ତୁମ ଚିଠିର ଉତ୍ତର ମୁଁ ଦେଇନି ? ତୁମେ ବିଶ୍ୱାସ କର ସୀମା ! ତୁମ ଚିଠି ପାଇବା ଦିନ ହିଁ ମୁଁ ତୁମକୁ ତାର ଉତ୍ତର ପଠାଇ ଥିଲି । ମୋ ଉତ୍ତର ଥିଲା ମାତ୍ର ଗୋଟିଏ ଧାଡ଼ିର । ମୁଁ ସେଥିରେ ମୋର ସମସ୍ତ ଭଲପାଇବାକୁ ଢ଼ାଳି ଲେଖିଥିଲି-'ମୁଁ ତୁମକୁ ବହୁତ ବହୁତ ବହୁତ ଭଲପାଏ ସୀମା !' ମୁଁ କିନ୍ତୁ ମୋର ସେ ଚିଠିର ଉତ୍ତର ଆଜିଯାଏ ପାଇଲି ନାହିଁ । ମୁଁ ତୁମକୁ ଚିଠି ଦେବାର ପନ୍ଦର ଦିନ ଭିତରେ ତୁମେ ଗାଆଁ ଛାଡ଼ି ଦିଲ୍ଲୀ ଚାଲିଗଲ ।

-ମୁଁ ଯେଉଁ ଅମୂଲ୍ୟ ପଦାର୍ଥଟି ପାଇଛି ତାହା ଆଉ କିଛି ନୁହେଁ ଅରି ! ତାହା ତୁମର ସେଇ ଧାଡ଼ିକିଆ ଚିଠି ଯାହା ମୋ ହାତରେ ପହଞ୍ଚିବା ପୂର୍ବରୁ ମୋ ବାପାଙ୍କ ହାତରେ ହୁଏତ ପଡ଼ିଯାଇଥିଲା । ସିଏ ହୁଏତ ଚାହୁ ନଥିଲେ ଆମେ ଦୁହେଁ ପରସ୍ପରକୁ ଭଲପାଉ ଆଉ ବିବାହ କରୁ । ସିଏ ମୋତେ ତୁମଠୁ ଅଲଗା କରିବା ପାଇଁ ମାମୁଙ୍କ ପାଖକୁ ଦିଲ୍ଲୀ ପଠାଇ ଦେଇଥିଲେ ।

ସେଇ ଚିଠିଟିକୁ ଲୁହ ଡବ୍‌ଡବ୍ ଆଖିରେ କିଛି ସମୟ ଚାହି ରହିବା ପରେ ଖୁବ୍ ଇମୋସନାଲ ହୋଇ ଅରିନ୍ଦମ ପ୍ରଶ୍ନ କଲେ- କିନ୍ତୁ ଏମିତି କାହିଁକି ହେଲା ସୀମା ? ତୁମେ ମୋ ଚିଠିକୁ ଓ ମୁଁ ତୁମ ଚିଠିକୁ ଅପେକ୍ଷା କରି ଆମ ଦୁହିଁଙ୍କ ଜୀବନର ଗତିପଥ କାହିଁକି ବଦଳି ଗଲା ? ଆମେ କେହି କିଛି କରି ପାରିଲେ ନାହିଁ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

-ମୁଁ କିନ୍ତୁ ଗୋଟେ କଥା ବୁଝିପାରୁ ନାହିଁ ଅରି ! ମୋ ଉତ୍ତରକୁ ତୁମେ କାହିଁକି ଅପେକ୍ଷା କରିଥିଲ ? ମୁଁ ମୋ ଭଲ ପାଇବା ଜଣାଇ ପ୍ରଥମେ ତୁମକୁ ଚିଠି ଦେଇଥିଲି ଯାହା ତୁମେ ପାଇଛ ବୋଲି କହୁଛ । ମୋ ଭଲ ପାଇବା ବିଷୟରେ ତୁମର ଆଉ ସନ୍ଦେହ ରହିଲା କାହିଁକି ?

-କିଛି ଦିନ ପର୍ଯ୍ୟନ୍ତ ତୁମଠୁ କିଛି ଉତ୍ତର ନପାଇବା ଆଉ ତୁମେ ଗାଆଁ ଛାଡ଼ି ଦିଲ୍ଲୀ ଚାଲିଯାଇ ଆଉ ଗାଆଁକୁ ନଫେରିବା ମୋ ମନ ଭିତରେ ଏକ ବିରାଟ ସନ୍ଦେହ ସୃଷ୍ଟିକଲା ସୀମା !

-କି ସନ୍ଦେହ ?

- ତୁମଠୁ କିଛି ଉତ୍ତର ନପାଇବାରୁ ମୁଁ ଭାବିଲି ହୁଏତ ମୁଁ ଯେଉଁ ଚିଠିଟି ପାଇଛି ତାହା ତୁମେ ଲେଖି ନଥିଲ । ହୁଏତ ସେଇଟା ଗୋଟେ ମିଛଚିଠି ଥିଲା । ସେ ଚିଠି ଅନ୍ୟ କେହି ଲେଖି ଦେଇଥିଲା ମଜାକରିବାକୁ ଅଥବା ମୋତେ ଅପଦସ୍ତ କରିବାକୁ । ତୁମଠୁ କିଛି ଉତ୍ତର ନଆସିବା ଆଉ ଗାଆଁଛାଡ଼ି ତୁମେ ଦିଲ୍ଲୀ ଚାଲିଯିବା ମୋର ଏ ସନ୍ଦେହକୁ ଅଧିକରୁ ଅଧିକ ଦୃଢ଼ିଭୂତ କଲା । ମୁଁ ଯେତେବେଳେ ଗାଆଁକୁ ଆସେ ତୁମ ସ୍ମୃତି ମୋତେ ବହୁତ କଷ୍ଟଦିଏ । ତେଣୁ ଗାଆଁରେ ଥିବା ଆମର ଏକମାତ୍ର ସଂପତ୍ତି ଘର ଆଉ ବାରି ମୁଁ ବିକ୍ରି କରିଦେଇଛି । ସେଇଥି ପାଇଁ ମୁଁ ତୁମକୁ କହିଥିଲି ମୋର ଗାଆଁ ଅଛି,କିନ୍ତୁ ଘର ନାହିଁ ।

ସୀମା ଦୁଇ ହାତରେ ଅରିନ୍ଦମଙ୍କ ଦୁଇ ହାତକୁ ଜାବୁଡ଼ି ଧରି କାନ୍ଦ କାନ୍ଦ କଣ୍ଠରେ କହିଲେ-ମୁଁ ତୁମକୁ ଭଲପାଏ ଅରି !ମୋ ମନ ଭିତରେ ତୁମେ ହିଁ ଆସନ ପାରି ବସିଛ । ତୁମ ପ୍ରତି ମୋ ଭଲ ପାଇବା ଭରପୂର ହୋଇ ରହିଛି । ଜଣେ ନାରୀର ମନ ଚକଡ଼ାଏ ଓଦାମାଟି ପରି ସେଥିରେ ଯାହାର ପ୍ରଥମ ପାଦଚିହ୍ନ ପଡ଼େ ତାହା ସାରା ଜୀବନ ପାଇଁ ତୈଳଚିତ୍ରଟିଏ ପରି ଆଙ୍କି ହୋଇଯାଏ ଯାହା କଦାପି ମଳିନ ପଡ଼େନା କି ଲିଭି ଯାଏନା । ତୁମେ ବିଶ୍ୱାସ କର ଅରି ! ମୁଁ ମୋ ସ୍ୱାମୀଙ୍କୁ ଦେହ ଦେଇଛି ସତ କିନ୍ତୁ ମୋ ମନଟା ତୁମ ପାଖରେ ଏବେ ବି ବନ୍ଧା ପଡ଼ିଛି । ସେଇଥି ପାଇଁ କି କ'ଣ ମୁଁ ଆଜି ପର୍ଯ୍ୟନ୍ତ ମାଆ ହୋଇ ପାରିନି ।

ଅରିନ୍ଦମ ଅବାକ୍ ହୋଇ ଅନେକ ସମୟ ପର୍ଯ୍ୟନ୍ତ ସୀମାଙ୍କୁ ଅନାଇ ରହିଥିଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ପ୍ରାଚୁର୍ଯ୍ୟର ପଟୁଆର

ସଦାନନ୍ଦଙ୍କ ଦେହାନ୍ତ ହେବାପରେ ସୁମତୀ କିଛିଦିନ ହେଲା ଆସି କଟକରେ ମଝିଆଁ ପୁଅ ପରେଶର ଘରେ ରହୁଛନ୍ତି । ସୁମତୀଙ୍କ ବୟସ ପଚସ୍ତରି ଡ଼େଇଁଲାଣି । ତାଙ୍କର ନିର୍ଦ୍ଦିଷ୍ଟ କିଛି ରୋଗ ନଥିଲେ ବି ସେ ଖୁବ୍ ଦୁର୍ବଳ ହୋଇଯାଇଛନ୍ତି । ସ୍ୱାମୀ ଚାଲିଗଲା ପରେ ସେ ତାଙ୍କୁ ଝୁରି ଝୁରି ନିଜ ଦେହକୁ ବିଗାଡ଼ି ସାରିଲେଣି ।

ତାଙ୍କର ସେବା କରିବାକୁ ମଝିଆବୋହୂ ସୁଜାତାଙ୍କର ଢ଼େର ଅନିଚ୍ଛା । ଗୁହ,ମୂତ ଲୁଗା ଧୋଇବାପାଇଁ କେହିଲୋକ ମିଳୁ ନାହାଁନ୍ତି । ମଝିଆଁ ପୁଅ ପରେଶ ନିଜେ ଜଣେ ଡାକ୍ତର । କିନ୍ତୁ ସିଏ ମାଆଙ୍କର କିଛି ଚିକିତ୍ସା କରି ପାରୁ ନାହାଁନ୍ତି , କାରଣ ତାଙ୍କର ନିର୍ଦ୍ଦିଷ୍ଟ କିଛି ରୋଗ ନାହିଁ । ତେଣୁ ସିଏ ବାଧ୍ୟହୋଇ ତାଙ୍କର ସବୁ ଭାଇ, ଭଉଣୀମାନଙ୍କୁ ଖବର ଦେଇଥିଲେ । ସେମାନେ ସମସ୍ତେ ଆଜି ଆସି ପହଞ୍ଚିଛନ୍ତି । ସମସ୍ତେ ଆଲୋଚନା କରିବା ପରେ ମାଆଙ୍କ ସେବା,ଯତ୍ନ ସଂପର୍କରେ ଯାହା ସ୍ଥିର କରିବେ ତାହାହିଁ କରାଯିବ ।

ପ୍ରଥମ ପ୍ରସ୍ତାବ ରଖିଲା ସାନ ଝିଅ ତନିମା-ମାଆ କିଛି ଦିନ ହେଲା ମଝିଆଁ ଭାଇଙ୍କ ପାଖରେ ରହିଲାଣି । ମଝିଆ ଭାଇ ଆଉ ଭାଉଜ ତାଙ୍କର ଢ଼େର ସେବା କଲେଣି । ଆମେ ତାଙ୍କର ପୁଅ,ଝିଅ ମିଶି ସାତଜଣ । ପ୍ରତ୍ୟେକେ ମାଆକୁ ନେଇ ପାଖରେ ରଖି ଦୁଇମାସ ଲେଖାଁ ତାର ସେବାକଲେ ଭଲ ହୁଅନ୍ତା । ମାଆର ବି ମନ ପରିବର୍ତ୍ତନ ହୁଅନ୍ତା ।

କିଛି ସମୟ ପର୍ଯ୍ୟନ୍ତ ସମସ୍ତେ ନିରବ ହୋଇ ବସି ରହିଲେ । ସମସ୍ତେ ଚାହିଁଲେ ବଡ଼ଭାଇଙ୍କ ମୁହଁକୁ । ସିଏ ଖୁବ୍ ଗମ୍ଭୀର କଣ୍ଠରେ କହିଲେ-ତିନିମା ଯାହା କହିଲା ଅବଶ୍ୟ ସେଟା ଖୁବ୍ ଭଲ ପ୍ରସ୍ତାବ । ସମସ୍ତେ ମାଆର ସେବା କରିବାର ସୁଯୋଗ ପାଇବେ । କିନ୍ତୁ ଏମିତି ପାଳିକରି ମାଆର ସେବା କରିବା କଥାଟା ମତେ କେମିତି ଅଡୁଆ ଆଉ ଅଶାଳୀନ ଲାଗୁଛି । ମାଆଙ୍କ ସ୍ୱାସ୍ଥ୍ୟର ଅବସ୍ଥା ଯାହା ତାଙ୍କୁ ଆମେ ଯଦି ନିଜ ନିଜର କର୍ମକ୍ଷେତ୍ରକୁ ନେବା ଅର୍ଥାତ କଟକରୁ ମୁଁ ନେବି ବାଲେଶ୍ୱର, ସୁରେଶ ନେବ ଜଗତସିଂହପୁର, ଦୀନେଶ ନେବ ବ୍ରହ୍ମପୁର, ଗିରୀଶ ନେବ ରାଉରକେଲା ,ଆଉ ତନିମା ନେବ ଝାରସୁଗୁଡ଼ା ।

ମାଆକୁ ଏମିତି ଉଠାପକା କଲେ ତା'ଦେହ ଭଲହେବା ପରିବର୍ତ୍ତେ ଅଧିକ ଖରାପ ହେବ ।ତାଛଡ଼ା ଏମିତି ପାଳିକରି ମାଆର ସେବାକଲେ ଆମ ସାମାଜିକ ପ୍ରତିଷ୍ଠା ଉପରେ ଆଞ୍ଚ ଆସିବ । ଆମ ଗାଆଁରେ ଆମ ବାପାଙ୍କର ପ୍ରତିଷ୍ଠା ଓ ପ୍ରତିପତ୍ତି ଉଭୟ ଥିଲା । ପାଖଆଖ ପଚାଶ ଖଣ୍ଡ ଗାଆଁର ଲୋକ ତାଙ୍କୁ ମାନୁଥିଲେ । ମୋର ମନେଅଛି



Digitized by srujanika@gmail.com

ମୋ ପଢ଼ିବାବେଳେ  ଆମଘରେ ଚାକର ,ଚାକରାଣୀ ଆଉ ହଳିଆ ମୂଲିଆ ମିଶି ଦଶ ଜଣ କାମ କରୁଥିଲେ । ବାପାଙ୍କୁ ସମସ୍ତେ ଖାତିର କରୁଥିଲେ । ନ୍ୟାୟ ନିଶାପ ବେଳେ ବାପାଙ୍କ କଥା ବେଦର ଗାର ଥିଲା । ଆମେ ଯଦି ଏମିତି ପାଳିକରି ମାଆଙ୍କୁ ନିଜ ପାଖକୁ ନେଇ ସେବା କରିବା ତାହେଲେ କଥାଟା ନିହାତି ଅସୁନ୍ଦର ହେବ । ତେଣୁ ମୁଁ କହୁଚି ମାଆ ଏଇଠି କଟକରେ ରହିବା ସବୁଠୁ ଭଲ । ଏଠି ଆମ ରାଜ୍ୟର ସବୁଠୁ ବଡ଼ ଡାକ୍ତଖାନା ଅଛି । ପରେଶ ଜଣେ ଡାକ୍ତର । ସିଏ ପୁଣି କଟକ ବଡ଼ ଡାକ୍ତରଖାନାରେ ଚାକିରି କରୁଚି । ପରେଶର ଯଦି କିଛି ଆପତ୍ତି ନଥାଏ ତାହେଲେ ମାଆ ଏଇଠି ରହିଲେ ସବୁଠୁ ଭଲହେବ ।

ସମସ୍ତଙ୍କ ଦୃଷ୍ଟି ଏଥର କେନ୍ଦ୍ରୀଭୁତ ହେଲା ପରେଶଙ୍କ ଉପରେ । ପରେଶ କିଛି ସମୟ ନିରବ ରହିବା ପରେ ଆରମ୍ଭ କଲେ-ମୋର ବୃତ୍ତି ଯାହା ମୁଁ ଘରେ କେତେବେଳେ ରହିପାରିବି ନାହିଁ । ମାଆର ସେମିତି କିଛି ରୋଗ ବି ନାହିଁ । ବାର୍ଦ୍ଧକ୍ୟ ହେଉଛି ତାର ରୋଗ ।ତାର କିଛି ମନେ ରହୁନାହିଁ । କେତେବେଳେ ବିଛଣାରେ ଝାଡ଼ା, ପରିଶ୍ରା ହୋଇ ଯାଉଛି ସିଏ ଜାଣି ପାରୁନାହିଁ । ଏଟା ଗାଆଁ ନୁହେଁ । ଏଠି ଏମିତି ଗୁହ,ମୂତ କାଢ଼ିବା ପାଇଁ ଚାକର କି ଚାକରାଣୀ ମିଳୁ ନାହାଁନ୍ତି । ଏଇଟା ହେଉଛି ଏବେ ସବୁଠୁ ବଡ଼ ସମସ୍ୟା । ଚିକିତ୍ସା ଅପେକ୍ଷା ତାର ସେବା ବେଶି ଆବଶ୍ୟକ । ମୁଁ ଅନେକ ସମୟରେ ଘରେ  ଅନୁପସ୍ଥିତ ରହୁଥିବାରୁ ମାଆର ସମସ୍ତ ଦାୟିତ୍ୱ ମୋ ସ୍ତ୍ରୀ ସୁଜାତା ଉପରେ ପଡୁଛି । ସିଏ  ଆଉ ଅଧିକ ଦିନ ଏସବୁ କାମ କରିବାକୁ ସମର୍ଥ ନୁହଁ । ସେଥି ପାଇଁ ମୁଁ ଆଜି ସମସ୍ତଙ୍କୁ ଡାକିଛି ତାର କିଛି ବ୍ୟବସ୍ଥା କରିବା ପାଇଁ ।

ଏକଥା ଶୁଣି ସମସ୍ତେ କିଛି ସମୟ ପାଇଁ ନିରବ ରହିଲେ । ନିରବତା ପରିବେଶକୁ ଗମ୍ଭୀର କରିଦେଲା । ନିଛକ ସତ କଥାଟା ସମସ୍ତଙ୍କୁ ଅନ୍ତୁଆରେ ପକାଇ ଦେଲା । କେମିତି ହେବ ଯାର ସମାଧାନ ? ମାଆ ନିଜ କାମ ନିଜେ କରି ପାରୁ ନାହାଁନ୍ତି ।ତାଙ୍କ କାମ କହିଲେ, ତାଙ୍କୁ ପ୍ରତିଦିନ ଗାଧୋଇ ଦେବା, ତାଙ୍କ ମଇଳା ଲୁଗା ଧୋଇବା, ସଫାଲୁଗା ପିନ୍ଧାଇ ଦେବା, ଖୁଆଇ ଦେବା,ମୁହଁ ଧୋଇଦେବା,ଝାଡ଼ା, ପରିଶ୍ରା ଲୁଗା ଧୋଇବା, ନିୟମିତ ଔଷଧ ଖୁଆଇ ଦେବା  ଆଉ ସବୁଠୁ ବଡ଼ କଥା ହେଲା ତାଙ୍କୁ ସବୁବେଳେ ଜଗିକି ବସିବା । କଟକ ପରି ସ୍ଥାନରେ ଏମିତି ଜଣେ ଲୋକକୁ ଘରେ ରଖି ତା'ର ସେବା କରିବା ପ୍ରକୃତରେ କଷ୍ଟକର କଥା ।

କୌଣସି ପୁଅବୋହୂ କି ଝିଅଜ୍ୱାଇଁ ମାଆକୁ ପାଖରେ ରଖି ଶେଷ ପର୍ଯ୍ୟନ୍ତ ଏଦାୟିତ୍ୱ ତୁଲାଇବା ପାଇଁ ସାହସ କରି ପାରିଲେ ନାହିଁ । ଏଥି ପାଇଁ ଯେତେ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ ତାହା କରିବାକୁ ସମସ୍ତେ ପ୍ରସ୍ତୁତ । କିନ୍ତୁ ନିଜ ଚାକିରି ସ୍ଥଳକୁ ନେଇ ମାଆକୁ ସବୁଦିନ ପାଖରେ ରଖି ତାର ସେବା କରିବା ସମ୍ଭବ ନୁହଁ ।

ଆନଂଦ ଚଂନ୍ଦ୍ର ପହି

Digitized by srujanika@gmail.com

ଯୋଉ ମାଆ ତାଙ୍କର ସାତଟି ପିଲାଙ୍କୁ ଜନ୍ମ ଦେଇ ସେମାନଙ୍କର ଗୁହ,ମୂତ ପୋଛି , ଦେହ ପାଆରେ ସେବାକରି ଏଡ଼େବଡ଼ କରିଥିଲେ ସେଇ ମାଆର ସାତ ସାତଟି ସମର୍ଥ ସନ୍ତାନ ଏବେ ତାର ବାର୍ଦ୍ଧକ୍ୟରେ ତା'ର ସେବା କରିବାକୁ କୁଣ୍ଠିତ ।

ବଡ଼ ମଝିଆ ପୁଅ ସୁରେଶ ଯାହାର କର୍ମକ୍ଷେତ୍ର ଜଗତସିଂହପୁର ସିଏ କହିଲା- ଏସବୁ କାମ ପାଇଁ ଗାଆଁ ହେଉଛି ସବୁଠୁ ସୁବିଧା ଜନକ ସ୍ଥାନ । ଗାଆଁରେ ଆମର ଷୋହଳ ବଖରା ବିଶିଷ୍ଟ ବିରାଟ କୋଠାଘର ପଡ଼ିଛି, ଗୋଟେ ଏକରର ବାରି ଅଛି । ଆମ ବାରିରେ କୂଅ ଆଉ ଗଡ଼ିଆ ଅଛି । ସେଠି ଗୂହ,ମୂତ ଲୁଗା ଧୋଇବା ପାଇଁ ଓ ଶୁଖାଇବା ପାଇଁ କିଛି ଅସୁବିଧା ନାହିଁ ।ସବୁକାମ କରିବାକୁ ଗାଆଁରେ ଲୋକର ଅଭାବ ନାହିଁ । ସାଇ ପଡ଼ିଶାର ଲୋକମାନେ ମାଆଙ୍କ ପାଖରେ ବସି ତାଙ୍କ ସହିତ କଥାବାର୍ତ୍ତା କରି ତାଙ୍କ ମନ ପରିବର୍ତ୍ତନ କରିବାକୁ ଆଗେଇ ଆସିବେ । କିନ୍ତୁ ଆମେ ଯେଉଁସବୁ ଜାଗାରେ ଚାକିରି କରୁଛେ ସେଠି ସେ ସୁବିଧା ଆଦୌ ନାହିଁ ।

ପରେଶର ସ୍ତ୍ରୀ ସୁଜାତା ସିଧା ଶୁଣାଇ ଦେଲେ-ଏ ସହର ବଜାର ଜାଗାରେ ମୁଁ ଆଉ ବେଶି ଦିନ ମାଆଙ୍କ ଦାୟିତ୍ୱ ତୁଲାଇ ପାରିବି ନାହିଁ । ସବୁ ଦିଗରୁ ବିଚାର କରି ଆଜି ଗୋଟେ ନିଷ୍ପତ୍ତି ନିଅନ୍ତୁ ।

ବହୁତ ଆଲୋଚନା ଓ କଥା କଟାକଟି ପରେ ସ୍ଥିରହେଲା-ଆମ ଭିତରୁ କେହି ଜଣେ ଏକୁଟିଆ ମାଆକୁ ପାଖରେ ରଖି ସେବା କରିବା ସମ୍ଭବ ନୁହେଁ । ତାଛଡ଼ା ଆମେ ମାଆର ସାତ ସାତଟା ପୁଅ,ଝିଅ ଥାଉଁ ଥାଉଁ ଜଣେ କାହିଁକି ମାଆର ଦାୟିତ୍ୱ ନେବ? ଗାଆଁରେ ଆମେ କେହି ରହୁ ନଥିବା କାରଣରୁ ମାଆକୁ ଗାଆଁରେ ରଖି ତା ସେବା କି ଚିକିତ୍ସା କରିବା ଆମ ପକ୍ଷେ ଆଉ ସମ୍ଭବ ନୁହଁ । କଟକରେ ଚିକିତ୍ସାର ସବୁଠୁ ଭଲ ସୁବିଧା, ସୁଯୋଗ ଥିବାରୁ ମାଆଙ୍କୁ କଟକରୁ ଅନ୍ୟତ୍ର ନେବା ଉଚିତ ହେବ ନାହିଁ। ମାଆଙ୍କୁ କଟକର ଗୋଟିଏ ଭଲ କ୍ଲିନିକରେ ଆଡ଼ମିସନ୍ କରାଇ ଦେବା । ମାଆ ସଂପୂର୍ଣ୍ଣ ଆରୋଗ୍ୟ ହେବା ପର୍ଯ୍ୟନ୍ତ ସେଇ କ୍ଲିନିକରେ ରହିବ । ମାଆ ଡାକ୍ତର ଓ ନର୍ସଙ୍କ ସେବା ଯତ୍ନରେ ରହିବ । ଯାହା ପଇସା ଖର୍ଚ୍ଚହେବ ସେସବୁ ଆମେ ଭାଗକରି ପେମେଣ୍ଟ କରିବା ।

ସାନପୁଅ ଦୀନେଶ ପ୍ରଶ୍ନକଲା-ମାଆର ବୟସ ଯାହା ହେଲାଣି ଆଉ ତା ସ୍ୱାସ୍ଥ୍ୟର ଅବସ୍ଥା ଯାହା ସିଏ ଭଲହେବା ଆଶା ମୋତେ ଦେଖାଯାଉ ନାହିଁ । ତାହେଲେ ସିଏ କ'ଣ ଶେଷ ନିଃଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ ଏଇ କ୍ଲିନିକରେ ରହିବ?

ଜଣେ କିଏ ଉତ୍ତର ଦେଲା-ସେଥିରେ ଅସୁବିଧା କ'ଣ? ରୋଗୀର ଶେଷ ଅବସ୍ଥାରେ ତାକୁ ଡାକ୍ତରଖାନା ନିଆଯାଏ । ମାଆ ଯଦି ଭଲ ନହେଲା ତେବେ ଶେଷ ପର୍ଯ୍ୟନ୍ତ କ୍ଲିନିକ୍‌ରେ ରହି ଚିକିତ୍ସିତ ହେବ । ଯାଠୁ ଆଉ ଭଲ ବ୍ୟବସ୍ଥା କ'ଣ ଥାଇପାରେ?

ଆନଂଦ ଚଂଦ୍ର ପତି

Digitized by srujanika@gmail.com

ଏ ପ୍ରସ୍ତାବ ସର୍ବ ସମ୍ମତିକ୍ରମେ ଗୃହିତ ହେଲା । କଟକର ସବୁଠୁ ସମ୍ଭ୍ରାନ୍ତ କ୍ଲିନିକ ଦି କେୟାରକୁ ସେଇଦିନ ସିଫ୍ଟ କରାଗଲା ମାଆଙ୍କୁ । ତାଙ୍କୁ କ୍ଲିନିକକୁ ଆଣିବା ବାଟରେ ସିଏ ତାଙ୍କ ମଝିଆଁ ପୁଅ ପରେଶକୁ ପଚାରିଲେ-ମତେ କୁଆଡ଼େ ନେଉଛ ? ମତେ ଏ ସହର ବଜାର ଜମାରୁ ଭଲ ଲାଗୁନାହିଁ । ମୋର ଏଠି କେହି ଚିହ୍ନାଜଣା ଲୋକ ନାହାଁନ୍ତି । ମୋତେ ଗାଆଁକୁ ନେଇଚାଲ । ମୋ ଗାଁ ଭୂଇଁରେ ଗାଆଁଲୋକ, ବନ୍ଧୁ,ବାନ୍ଧବ, ସାଇପଡ଼ିଶା ମେଳରେ କିଛି ଦିନ ରହିବାକୁ ମୋ ମନ ଡାକୁଚି ।

ପରେଶ କିଛି ଉତ୍ତର ନଦେଇ ଚୁପ୍ ରହିଲା । ବଡ଼ପୁଅ ନରେଶ କହିଲା-ନାଇଁ ବୋଉ !ଏବେ ଆମେ ତତେ କଟକର ସବୁଠୁ ବଡ଼ ଆଉ ଭଲ କ୍ଲିନିକକୁ ନେଉଛୁ । ସେଠି ଡାକ୍ତର ଆଉ ନର୍ସ ରାତି ଦିନ ଚବିଶଘଣ୍ଟା ତୋର ଚିକିତ୍ସା ଓ ସେବା କରିବେ । ଆମେ ପ୍ରତିଦିନ ତତେ ଦେଖା କରିବୁ । ତୋ ପାଖରେ ରହିବୁ , ତୋ କଥା ବୁଝିବୁ । ତୁ ସଂପୂର୍ଣ୍ଣ ଭଲ ହୋଇଗଲେ ଗାଆଁକୁ ଯିବୁ ।

ସୁମତି ଖୁବ୍ କ୍ଷୀଣ କଣ୍ଠରେ ପ୍ରତିବାଦ କଲେ-ମୋର ତ କିଛି ରୋଗ ନାହିଁ ବୋଲି ପରେଶ କହୁଛି । ମତେ ଢ଼େର ବୟସ ହେଲାଣି, ମୁଁ ବୁଢ଼ୀ ହେଲିଣି । ଦେହ,ହାତ, ଗୋଡ଼, ଅଣ୍ଟା ସବୁ ଦୁର୍ବଳ ହେଲାଣି ।ମୋର କିଛି କଥା ମନେ ରହୁନାହିଁ କି ମୁଁ କିଛି କଥା ଜାଣି ପାରୁ ନାହିଁ । ମୁଁ କ'ଣ ଆଉ ଭଲହେବି ? ମିଛଟାରେ କାହିଁକି ମତେ ଡାକ୍ତରଖାନା ନଉଚ ? ଗାଆଁକୁ ନିଅ । ଯେତେଦିନ ବଞ୍ଚିବି, ନିଜ ଗାଆଁ ଭୂଇଁରେ ନିଜ ଲୋକମାନଙ୍କ ମେଳରେ ରହିବି । ମରିଗଲେ ଗାଆଁ ମଶାଣୀରେ ମୋତେ ପୋଡ଼ିଦେବ ।

ଏଥର ଚୁପ୍ ରହିଲେ ନରେଶ । ସୁମତିଙ୍କୁ ତାଙ୍କ ଅନିଚ୍ଛା ସତ୍ତ୍ୱେ କ୍ଲିନିକକୁ ନିଆଗଲା । କ୍ଲିନିକରେ ଦୁଇଟି ରୁମ୍ ଭଡ଼ା ନିଆଗଲା । ଗୋଟିକରେ ସୁମତି ରହିବେ ଆଉ ଅନ୍ୟଟିରେ ତାଙ୍କୁ ଆଟେଣ୍ଡ କରିବା ଲୋକ । ଦୁଇଟିଯାକ ରୁମ୍‌ରେ ଆଟାଚ ଟଏଲେଟ୍ ଅଛି । ପ୍ରତ୍ୟେକ ରୁମ୍‌ରେ ଗୋଟିଏ ଖଟ, ଦୁଇଟି ଚେୟାର ଗୋଟିଏ ଷ୍ଟୁଲ୍ ସହିତ ଅନ୍ୟାନ୍ୟ ଆବଶ୍ୟକ ଜିନିଷ ରଖାଗଲା । କ୍ଲିନିକ୍ ସହିତ କଥା ଛିଡ଼ିଛି ମାଆର ସେବା ଓ ଚିକିତ୍ସା ପାଇଁ ସିଫ୍ଟ ଅନୁସାରେ ଦୁଇ ଜଣ ନର୍ସ ରହିବେ ।ସେ ଦୁହେଁ କେବଳ ମାଆଙ୍କ ସେବା ହିଁ କରିବେ । ସେମାନେ କ୍ଲିନିକ୍‌ରେ ଅନ୍ୟକିଛି କାମ କରିବେ ନାହିଁ । ତାଙ୍କୁ ଖୁଆଇଦେବା,ଗାଧୋଇ ଦେବା, ଝାଡ଼ା, ପରିଶ୍ରା କରାଇବା, ଔଷଧ ଦେବା ଆଦି ଯାବତୀୟ କାମ ସେଇ ନର୍ସ ଦୁଇଜଣ କରିବେ । ମାଆର ମଇଳା ଲୁଗା ଧୋଇବ ଜଣେ ମେହେନ୍ତର । ପ୍ରତ୍ୟେକ ନର୍ସ ଦରମା ବାବଦକୁ ନେବେ ଦଶ ହଜାର ଟଙ୍କା । ମେହେନ୍ତର ନେବ ମାସକୁ ପାଞ୍ଚ ହଜାର ।ଏସବୁ କାମ ପାଇଁ ଯେତେଟଙ୍କା ଖର୍ଚ୍ଚହେବ ଭାଇ ,ଭଉଣୀ ସମସ୍ତେ ସମାନ ଭାବରେ ବହନ କରିବେ । ସର୍ତ୍ତ ରହିଲା ମାଆଙ୍କ ଚିକିତ୍ସା ଓ ସେବାରେ ଯେମିତି



Digitized by srujanika@gmail.com

କିଛି ଅବହେଳା ନହୁଏ । ଜଣେ ଡାକ୍ତର ମଧ୍ୟ ମାଆଙ୍କ ଚିକିତ୍ସା ଦାୟିତ୍ୱରେ ରହିବେ । ସେ ବାବଦରେ ଯାହା ପାଉଣା ଦେବାକୁ ହେବ ତାହା ପ୍ରତି ମାସରେ କ୍ଲିନିକ୍‌ରେ ପଇଠ କରାଯିବ । ଏସବୁ ବାଦ ଦୁଇଟା ରୁମ୍ ଭଡ଼ା ମାସିକ କୋଡ଼ିଏ ହଜାର ଟଙ୍କା ।

ଏସବୁ ସତ୍ତ୍ୱେ ସବୁ ଭାଇ ଓ ତାଙ୍କ ସ୍ତ୍ରୀମାନେ ଆଉ ଝିଅ ଜ୍ୱାଇଁମାନେ ପାଳିକରି ପନ୍ଦର ଦିନ ଲେଖା କ୍ଲିନିକ୍‌ରେ ଥିବା ଅନ୍ୟ ରୁମ୍‌ରେ ରହି ମାଆଙ୍କ ଚିକିତ୍ସା ଓ ସେବା ଠିକ୍ ଭାବେ ହେଉଛି କି ନାହିଁ ତଦାରଖ କରିବେ । ଭଲ ଭଲ ଖାଦ୍ୟ ଆଣି ମାଆକୁ ଖୁଆଇବେ, ତା ପାଖରେ ବସି ତା ସହିତ ଗପସପ କରି ତା ମନୋବଳ ବଢ଼ାଇବେ । ଏ ପାଳି ବଡ଼ ଠାରୁ ସାନକ୍ରମରେ କାର୍ଯ୍ୟକାରୀ ହେବ । ପ୍ରଥମେ ବଡ଼ପୁଅ ନରେଶ ଓ ତା ସ୍ତ୍ରୀ , ତାପରେ ସୁରେଶ ଓ ତା'ସ୍ତ୍ରୀ, ଏମିତି ବଡ଼ରୁ ସାନ ତାପରକୁ ତାପର ପନ୍ଦର ଦିନ ଲେଖାଏ ମାଆର ଦାୟିତ୍ୱ ନେବେ ।

ଏ ବ୍ୟବସ୍ଥା ଦୁଇମାସ ଚାଲିବା ପରେ ସୁମତୀଙ୍କ ପୁଅବୋହୂ ଓ ଝିଅ, ଜ୍ୱାଇଁମାନେ ବାହାରକୁ ଦେଖାଇ ଦେଇ ପାରିଲେ ଯେ ସେମାନେ ମାଆଙ୍କର ଚିକିତ୍ସା ଓ ସେବା ଯତ୍ନର ସୁବ୍ୟବସ୍ଥା କରାଇ ପାରିଛନ୍ତି । ମାଆଙ୍କ ଚିକିତ୍ସା ଓ ସେବା ପାଇଁ ସେମାନେ ଅପର୍ଯ୍ୟାପ୍ତ ଟଙ୍କା ଖର୍ଚ୍ଚ କରୁଛନ୍ତି ।

କିନ୍ତୁ ତାଙ୍କ ମାଆ ସୁମତି ଏଥିରେ ଆଦୌ ସନ୍ତୁଷ୍ଟ ହେଲେ ନାହିଁ । ତାଙ୍କ ଦେହ ଓ ମନର ସ୍ୱାସ୍ଥ୍ୟର ଅବସ୍ଥା ଦିନକୁ ଦିନ ଅଧିକରୁ ଅଧିକ ଖରାପ ହେଲା । ନର୍ସମାନଙ୍କ ସେବାରେ ଆନ୍ତରିକତା ନାହିଁ କି ନିଷ୍ଠା ନାହିଁ । ପୁଅ ବୋହୂ ସେମାନଙ୍କ ପାଳି ଅନୁସାରେ ଆସି କ୍ଲିନିକ୍‌ରେ ଥିବା ଘରେ ରହୁଚନ୍ତି । ଝିଅ,ଜ୍ୱାଇଁ ମଧ୍ୟ ତାଙ୍କ ପାଳିରେ ଆସି ରହୁଛନ୍ତି । ମାଆଙ୍କୁ ସେବା କରିବା କେବଳ ନାଆଁ ।ସେବା କରିବା କି ତାଙ୍କ ସହିତ ଗପ କରିବା, କିମ୍ୱା ତାଙ୍କ ସହିତ ସମୟ କଟାଇବା ପାଇଁ କାହାର ଆଗ୍ରହ ନାହିଁ । ସେମାନେ ଆସି ତାଙ୍କ ବେଡ଼ିଙ୍ଗ ପତ୍ର ବିଛାଇ କ୍ଲିନିକରେ ଡ଼େରା ପକାଉଛନ୍ତି, କଟକର ଭଲ ଭଲ ହୋଟେଲରେ ଲଞ୍ଚ , ଡିନର ଖାଉଛନ୍ତି । କଟକରେ ଥିବା ତାଙ୍କର ସାଙ୍ଗ ସାଥୀଘର ବୁଲୁଛନ୍ତି, ସିନେମାହଲ୍‌ରେ ସିନେମା ଦେଖୁଚନ୍ତି, କଟକରେ ଯେତେଯାହା ବାକିଥା କାମ ଅଛି ସବୁ କରୁଛନ୍ତି । କେବଳ ଦିନରେ ଥରେ ଆଉ ରାତିରେ ଥରେ ମାଆଙ୍କ ରୁମ୍‌ରେ ପଡ଼ିଥିବା ଚେୟାରରେ ପାଞ୍ଚ ମିନିଟ ବସି ନର୍ସଙ୍କ ସହିତ କିଛି କଥାବାର୍ତ୍ତା ହେଉଛନ୍ତି ଆଉ ମାଆକୁ ପଚାରୁଚନ୍ତି -ମାଆ !ଆଜି ଦେହ କେମିତି ଲାଗୁଚି ? କ'ଣ ଖାଇବାକୁ ଇଚ୍ଛା ହେଉଛି କହ, ଆମେ କିଣିଆଣି ଦେବୁ । ଠିକ୍ ଠାକ୍ ଖିଆପିଆ କରୁଚୁ ନା ? ରାତିରେ ନିଦ ଠିକ୍ ହେଉଛି ତ ?

ଆଉ କେବେ କେମିତି ହୋଟେଲରୁ ମାଛ , ମାଂସ କି ଚିକେନ୍ ତରକାରୀ



Digitized by srujanika@gmail.com

କିଣିଆଣି ନର୍ସକୁ ଦିଅନ୍ତି ଓ କୁହନ୍ତି ମାଆକୁ ଖୁଆଇ ଦେବ । ପୁଅ ବୋହୂ ବା ଝିଅ ଜ୍ୱାଇଁ ଯିଏ ଏସବୁ ଆଣି ନର୍ସକୁ ଦିଅନ୍ତି । ସେମାନେ ତାଙ୍କ ରୁମ୍‌କୁ ଚାଲିଗଲା ପରେ ସୁମତି ନର୍ସକୁ କୁହନ୍ତି-ତମେ ନିଅ ଏ ତରକାରୀ ଖାଇଦିଅ ।ଏସବୁ ହୋଟେଲ୍ ତରକାରୀ, ଏଥିରେ ବହୁତ ତେଲ,ମସଲା ପଡ଼ିଥିବ । ମୁଁ ଏସବୁ ଖାଇ ପାରିବି ନାହିଁ । ମୁଁ ବୁଢ଼ୀଲୋକ, ଏସବୁ ହଜମ କରି ପାରିବି ନାହିଁ ।

କ୍ଲିନିକ୍‌ରେ ସୁମତି ରହିବାର ଦୁଇମାସ ପରେ ଦିନେ ବାରଟା ବେଳେ ନର୍ସ ଆସି ଖବର ଦେଲା-ଆପଣଙ୍କ ଗାଆଁରୁ କିଏ ଜଣେଲୋକ ଆପଣଙ୍କୁ ଦେଖା କରିବାକୁ ଆସିଛନ୍ତି । ମୁଁ ତାଙ୍କୁ ମନାକଲି ଦେଖା କରିହେବ ନାହିଁ । ସିଏ ଜମା ଶୁଣୁ ନାହାଁନ୍ତି । ସିଏ କହୁଛନ୍ତି-ତୁମେ ମାଆଙ୍କୁ କୁହ ତାଙ୍କ ଗାଆଁ ନିଧିଆ ଆସିଚି ।

ସୁମତିଙ୍କ ମୁହଁରେ ହସ ଉକୁଟି ଆସିଲା । ସିଏ ହସ ହସ ମୁହଁରେ କହିଲେ - ଝିଅ ! ନିଧିଆ ଆମର ନିହାତି ନିଜର ଲୋକ । ତା'ବାପା ଆମର ସୂର୍ଯ୍ୟବନ୍ଧୁ । ହିସାବରେ ସିଏ ମୋର ପୁତୁରା ହେବ ।ତାକୁ ଭିତରକୁ ଡାକ । ସିଏ ଆସୁ ।

ନର୍ସ ଏଥର ବାହାରକୁ ଚାଲିଗଲା । ଖୁବ୍ ଅଳ୍ପ ସମୟ ଭିତରେ ନିଧିଆକୁ ସାଙ୍ଗରେ ଧରି ଫେରିଲା । ନିଧିଆ ସିଧା ଆସି ହାତଯୋଡ଼ି କହିଲା-ଖୁଡ଼ି ! ଦଣ୍ଡବତ । ତମେ କଟକରେ ପରେଶ ଭାଇଙ୍କ ଘରେ ଥିଲ । ଆମେ ହପ୍ତାକୁ ହପ୍ତା ଭଗିଆଠୁ ତମ ଦିହ,ପା'ଖବର ପାଉଥିଲୁ । ଏଇ ଦିଇମାସ ହେଲା ଆଉ ତମେ ପରେଶଭାଇଙ୍କ ଘରେ ରହୁନା । ଆମେ ଆଉ ତମ ଖବର ପାଇ ପାରିଲୁ ନାହିଁ । ମନଟା ଭାରି ଗୋଳେଇ ଘାଣ୍ଟି ହେଲା । ତମେ କୋଉଠି ରହିଲ ଆମେ ଆଉ ଜାଣି ପାରିଲୁ ନାହିଁ । ଶେଷରେ ଭଗିଆ ମତେ ଖବର ଦେଲା ତମେ ଏଇ କ୍ଲିନିକରେ ରହୁଚ ବୋଲି । ମୋ ବାପା କହିଲେ- ମନଟା ଭଲ ଲାଗୁନାହିଁ । ତୁ କଟକ ଯାଇ ଭାଉଜଙ୍କୁ ଦେଖା କରିକି ଆ । ମୁଁ ଆଜି ସକାଳୁ ସକାଳୁ ବସରେ ଚାଲି ଆସିଲି ।

ସୁମତିଙ୍କ ଆଖିରୁ ଦୁଇଧାର ଲୁହ ତାଙ୍କ ଗାଲ ଉପର ଦେଇ ତାଙ୍କ ବିଛଣାରେ ପଡ଼ିଲା ।ସିଏ ଆଖିରୁ ଲୁହ ପୋଛି କହିଲେ-ତୁ ଆସିଲୁ ଭଲକଲୁ । ଗାଆଁ, ଗାଆଁଲୋକ, ସାଇ ପଡ଼ିଶା, ବନ୍ଧୁ ବାନ୍ଧବ ସମସ୍ତଙ୍କୁ ଛାଡ଼ି ମୁଁ କଟକ ଆସିଲିଣି ଆଜିକି ଚାରି ମାସହେଲା । ଏଠି ମତେ କିଛି ଭଲ ଲାଗୁନାହିଁ । ଗାଆଁରେ ଥିଲି ଗାଆଁଲୋକମାନଙ୍କ ସହିତ ଦେଖା ହେଉଥିଲା, ସେମାନଙ୍କ ସହିତ ଭଲ,ମନ୍ଦ କଥା ହୋଇ ପାରୁଥିଲି । ସେମାନଙ୍କ ସହିତ ଦୁଃଖ ସୁଖ ବାଣ୍ଟି ପାରୁଥିଲି । ଏଠି ଗୋଟିଏ ବଖରାରେ ବନ୍ଦୀ ହୋଇ ପଡ଼ିଚି । ଦେହ ଭଲ ରହୁନାହିଁ କି ମନ ଭଲ ରହୁନାହିଁ ।

ନିଧିଆ ପଚାରିଲା-ତମେ କ'ଣ କିଛି ଖାଇନା ଖୁଡ଼ି ? ତମ ଦେହ,ହାତ,ମୁହଁ



Digitized by srujanika@gmail.com

ସବୁ ଏମିତି ଶୁଖିଲା ଦିଶୁଚି କାଇଁକି ? ଆଖି ଭିତରକୁ ପଶି ଗଲାଣି । ତମ ଦିହ,ହାତ କିଏ ଘଷି,ଆଉଁଶି ଦଉଚି ନା ନାହିଁ ? ତମେ ଗୋଡ଼ ଲମ୍ବାଅ, ମୁଁ ଟିକେ ଆଉଁଶି ଦିଏ, ଭଲ ଲାଗିବ ।

ସୁମତି ଦୃଢ଼ ପ୍ରତିବାଦ କଲେ-ନାଇଁରେ ପୁଅ, ଥାଉ । ତୁ କେତେବେଳୁ ଗାଆଁରୁ ଆସିଲୁଣ୍ଣି, ତୁ କିଛି ଖାଇ ନଥିବୁ । ତୁ ଟିକେ ବସ । ମୁଁ ତୋ ପାଇଁ ଜଳଖିଆ ମଗେଇ ଦଉଚି ।

-ନାଇଁ ଖୁଡ଼ୀ ! ମୁଁ ଘରୁ ପେଟେ ପଖାଳ ଖାଇଦେଇ ଆଇଚି । ମତେ ଏଇନେ ମୋଟେ ଭୋକ ନାହିଁ ।

ନିଧିଆ ସୁମତିଙ୍କ ପ୍ରତିବାଦକୁ ନମାନି ତାଙ୍କ ଗୋଡ଼,ହାତ ଘଷି,ଆଉଁଶି ଦେଲା । ଏଇ ଘଷା,ଆଉଁଶା ଭିତରେ ସୁମତି ଗାଆଁ କଥା, ଗାଆଁ ଯାନି,ଯାତରା କଥା ଆଉ ଗାଆଁର ବିଭିନ୍ନ ଲୋକଙ୍କ କଥା ପଚାରି ବୁଝିଲେ । ତାଙ୍କ ଆଖି ଆଗରେ ଗାଆଁର ଚିତ୍ର ଦିଶିଗଲା । ସିଏ ତାଙ୍କ ଦେହର ରୋଗ କଥା ଭୁଲିଯାଇ ଗାଆଁର ସ୍ମୃତିରେ ହଜିଗଲେ । ନିଧିଆର ଘଷା,ଆଉଁଶା ଖାଉଥିବା ବେଳେ କହିଲେ-ଜାଣିଲୁ ନିଧିଆ !ମତେ ଏଠି ଜମାରୁ ଭଲ ଲାଗୁନେଇଁ । ମୁଁ ଏଠି କାହାକୁ ଚିହ୍ନିନାହିଁ କି ଜାଣି ନାହିଁ । ମୋ ପୁଅବୋହୂ ଯିଏ ମୋର ସେବା କରିବାକୁ ଆସୁଛନ୍ତି ସେମାନଙ୍କ ମନରେ ଟିକେହେଲେ ଆଗ୍ରହ ନାହିଁ କି ଇଛା ନାହିଁ ମୋ ସେବା କରିବାକୁ କି ମୋ ସହିତ ଗପସପ କରିବାକୁ ।ସେମାନେ ଏଠିକି ଆସୁଚନ୍ତି ତାଙ୍କ ପାଳିରେ ବାଧ୍ୟ ବାଧକତାରେ । ମୋ ସହିତ ପଦେ କଥାବାର୍ତ୍ତା କରୁ ନାହାଁନ୍ତି । କେବେ କେମିତି ଏଇ ବଖରାର କବାଟ ପାଖରେ ଠିଆହୋଇ ନର୍ସକୁ କ'ଣ ପଦେ ଦିପଦ କହି ଚାଲି ଯାଉଛନ୍ତି । ମୋର କ'ଣ ଇଛା ହେଉଚି ଜାଣିଚୁ ନିଧିଆ ?

-କ'ଣ ଇଛା ହେଉଚି ମତେ କୁହ ଖୁଡ଼ୀ !ମାଛ,ମାଉଁସ,କି ପିଠା,ମିଠା ଯାହା ଖାଇବାକୁ ଇଛା ହେଉଛି କୁହ । ମୁଁ ଏଇ ସାଙ୍ଗେ ସାଙ୍ଗେ ଆଣିକି ଦେବି ।

ସୁମତି ଆପତ୍ତି କଲେ-ନାଇଁ ନିଧିଆ ! ସେ ସବୁ କିଛି ଖାଇବାକୁ ମୋର ଟିକେହେଲେ ଇଛା ନାହିଁ । ମୋର ଇଛାହେଉଛି ମୁଁ ଆମ ଗାଆଁକୁ ଯାଆନ୍ତି । ସେଇଠି ମୁଁ ମୋର ଶେଷ ଜୀବନ କାଟନ୍ତି । ମୋର ଗାଆଁରେ କେତେବଡ଼ କୋଠାଘର ଅଛି । ଗାଆଁରେ ମୋର ପୁଅ,ବୋହୂ ,ନାତି,ନାତୁଣୀ ନଥିଲେ କ'ଣ ହେଲା, ଗାଆଁ,ସାଇର ଲୋକ ଅଛନ୍ତି, ସୂର୍ଯ୍ୟ ମଇତ୍ର ଅଛନ୍ତି । ତମ ସମସ୍ତଙ୍କୁ ନେଇ ମୁଁ ଖୁସିରେ ଗାଆଁରେ ରହି ପାରନ୍ତି । ଆଉ ଗୋଟେ କଥା ତୁ ଜାଣିଚୁ ନିଧିଆ ?

ନିଧିଆ ସୁମତିଙ୍କ ଆଡ଼କୁ ମୁହଁ ଉଠାଇ ଚାହିଁଲା ।

ସୁମତି କହିଲେ-ମୁଁ ଦେଖିଚି ଗାଆଁରେ ବୁଢ଼ୀମାନେ ଶେଷ ସମୟରେ ତାଙ୍କ



Digitized by srujanika@gmail.com

ପରିବାର ଲୋକମାନଙ୍କ ମେଳରେ ରହିବାକୁ ପସନ୍ଦ କରନ୍ତି । ତାଙ୍କୁ ଘେରି ରହିଥାନ୍ତି ଝିଅ,ବୋହୂ,ନାତି,ନାତୁଣୀ । ସେମାନେ ବୁଢ଼ୀର ମନନେଇ ସେବା କରନ୍ତି ।ସେମାନଙ୍କର ଆଶାଥାଏ ବୁଢ଼ୀ ମଲାପରେ ସିଏ ନାଇଥିବା ସୁନା ଗହଣା ନେବେ । କିନ୍ତୁ ମୋ ଝିଅ ଆଉ ବୋହୂଙ୍କର ସେ ଲାଳସା ନାହିଁ; କାହିଁକି ନା ସେମାନଙ୍କର ଅଭାବ ନାହିଁ । ତାଙ୍କ ସ୍ୱାମୀମାନେ ବଡ଼ ଚାକରି କରିଛନ୍ତି । ମାସକୁ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରୁଚନ୍ତି । ତୁ ଦେଖୁନଉଁ, ମୋ ବେକରେ ସୁନାହାର,କାନରେ ସୁନା ଫୁଲ ,ହାତରେ ସୁନାଚୁଡ଼ି,ବାଲା, ମୁଦି ସବୁ ଅଛି । ତାଙ୍କର ଏସବୁ ପାଇଁ ଲାଳସା ନାହିଁ କି ମୋ ସେବା କରିବାକୁ ଆଗ୍ରହ ନାହିଁ । କେବଳ ଲୋକଲଜ୍ଜାରୁ ରକ୍ଷା ପାଇବା ପାଇଁ ସେମାନେ ମୋତେ ଆଣି ଏଠି ରଖି ଡାକ୍ତର,ନର୍ସ ଆଉ ବେହେରାଙ୍କ ହେପାଜତରେ ପକେଇଛନ୍ତି । ତତେ ଗୋଟେ କଥା କହିବି ରଖିବୁ ?

ନିଧିଆ କହିଲା-ଗୋଟେ କ'ଣ ଯେତେଟା କଥା କହିବ ସବୁ ରଖିବି । ତମେ ମୋର ମାଆ ସମାନ । ମୋ ବାପା ଯେତେବେଳେ ବାଧକରେ ପଡ଼ିଥିଲେ ତମେ ଟଙ୍କା ଖର୍ଚ୍ଚକରି ତାଙ୍କୁ କଟକ ପଠେଇ ଭଲ କରିଥିଲ । ବାପା ମତେ ଏଠିକି ପଠେଇଛନ୍ତି ଯେତେଦିନ ଦରକାର ହେବ ମୁଁ ତମ ପାଖରେ ଏଇଠି ରହି ସେବା କରିବି ।

ସୁମତି ହସି ହସି କହିଲେ-ନାଇଁ, ତୁ ଏଠି ରହିକି ମୋର ସେବା କରିବା କିଛି ଦରକାର ନାହିଁ । ଏ ଡାକ୍ତର, ନର୍ସ,ବେହେରା ଆଉ କ୍ଲିନିକ୍ ମତେ କିଛି ଭଲ ଲାଗୁନାହିଁ । ମୁଁ ଚାହୁଁଚି ଗାଆଁକୁ ଯିବି । ସେଠିକି ଗଲେ ମୋ ଦେହ ଅଧା ଭଲହୋଇଯିବ । ମୋ ଦେହ ତ କିଛି ହେଇନି ଆଉ ଭଲ ହେଇଯିବ କ'ଣ ? ଖାଲି ମୋର ଯାହା କିଛି ମନେରହୁନାହିଁ । କେତେବେଳେ କ'ଣ କରୁଛି ଜାଣି ପାରୁନାହିଁ । ଗାଆଁକୁ ଗଲେ ସବୁ ଠିକ୍ ହୋଇଯିବ । ତୁ ଯାଆ, ଏଇ ଆଗ ଛକରୁ ଗୋଟେ ଅଟୋ ଡାକିଆଣ । ଏଇଠି ମୋ ତକିଆ ତଳେ ବିଡ଼ାଏ ନୋଟ ଅଛି । ନେ, ତୁ ଏତକ ଧର ।

ନିଧିଆ କିଛି ନକହିପାରି ଥର ଥର ହୋଇ ଥରିବାକୁ ଲାଗିଲା ।ସୁମତି ତାକୁ ସାହସ ଦେଲେ-ନା, ଭୟ କରନା । ଏବେ ଏଠି କେହି ନାହାଁନ୍ତି । ନର୍ସ ଆଉ ଡାକ୍ତର ଖାଇବାକୁ ଯାଇଛନ୍ତି । ସେମାନେ ଫେରିବେ ଆଉ ଘଣ୍ଟାକ ପରେ । ଏ ପନ୍ଦର ଦିନର ପାଳି ମୋ ସାନଝିଅ ତନିମାର । ସିଏ ଆଉ ତା'ସ୍ୱାମୀ ସିନେମା ଯାଇଛନ୍ତି । ସେମାନେ ଫେରୁ ଫେରୁ ଆହୁରି ଦୁଇ ଘଣ୍ଟା । ତୁ ଆଉ ଡେରି ନକରି ଶୀଘ୍ର ଯା । ଏଇ ଛକରେ ଅଟୋ ମିଳିବ । ଗୋଟେ ଅଟୋ ଡାକିଆଣ । ଆମେ ଗାଆଁକୁ ପଳେଇବା । କେହି ଜାଣି ପାରିବେ ନାହିଁ କି କେହି ଅଟକାଇ ପାରିବେ ନାହିଁ ।

ନିଧିଆର ସାହସ ହେଲାନାହିଁ ।ସିଏ ଆଗପଛ ଭାବିଲା ।ତାଙ୍କ ପୁଅ ବୋହୂ



Digitized by srujanika@gmail.com

ଆଉ ଝିଅ ଜ୍ୱାଇଁ ଜାଣିଲେ କଥାଟା ଭାରି ଖରାପ ହେବ । ସିଏ ମୁହଁଖୋଲି ଆପତ୍ତି କଲା-ନାଇଁ ଖୁଡ଼ୀ ! ତୁମ ପିଲାମାନେ ଆସନ୍ତୁ ।ତାଙ୍କୁ କହିକି ଆମେ ଗାଆଁକୁ ଯିବା । ଏଠି ତୁମ ଚିକିତ୍ସା କରିବା ପାଇଁ ଘରଭଡ଼ା ନେଇଛନ୍ତି । ଲୋକ ରଖିଛନ୍ତି ତୁମର ସେବା କରିବାକୁ । ହେଲେ ଗାଆଁରେ ତୁମର ଘର ଅଛି ।ମୁଁ ଆଉ ମୋ ସ୍ତ୍ରୀ ଅଛୁ ତୁମର ସେବା କରିବୁ, ଔଷଧ ଖୁଆଇଦେବୁ, ଗୋଡ଼ ହାତ ଘଷି ଆଉଁଶି ଦେବୁ । ମୁଁ ଭାବୁଚି ତୁମ ଗାଆଁକୁ ଯିବା କଥାରେ ସେମାନେ ଅରାଜି ହେବେ ନାହିଁ ।

-ନାଇଁ,ନାଇଁ ନିଧିଆ ! ତୁ କିଛି ଜାଣିନାହୁଁ । ସେମାନଙ୍କ ମୁଣ୍ଡକୁ ବଡ଼ଲୋକି ନିଶା ଘାରିଛି । ସେମାନେ ମତେ ଏଠି ରଖି ଧନଗର୍ବ ଦେଖାଇ ହେଉଛନ୍ତି ଯେ ମାଆ ପାଇଁ ଏତେ ଟଙ୍କା ଖର୍ଚ୍ଚ କରୁଛୁ, ଡାକ୍ତର,ନର୍ସ ,ବେହେରା ଖଞ୍ଜେଇ ଦେଇଛୁ, ଦାମିକା କ୍ଲିନିକ୍‌ରେ ରଖିଛୁ । ମତେ ଗାଆଁକୁ ପଠେଇ ଦେଲେ ତାଙ୍କ ବଡ଼ଲୋକି ରହିବ ନାହିଁ । ସେମାନେ ଗାଆଁକୁ ଜମା ଯିବେ ନାହିଁ କି ମୋତେ ଗାଆଁକୁ ଛାଡ଼ିବେ ନାହିଁ । ତୁ ଶୀଘ୍ର ଯା, ଅଟୋ ଡାକ । ଆମେ ଗାଆଁକୁ ପଳେଇବା ।

ନିଧିଆ ଆଉ କିଛି ପ୍ରତିବାଦ ନକରି ପାରି ଛକକୁ ଯାଇ ଅଟୋଟେ ଡାକିକି ନେଇ ଆସିଲା । ସୁମତିଙ୍କୁ ଧରା ଧରି କରି ଅଟୋରେ ବସାଇଲା ଓ ତାଙ୍କ ଔଷଧପତ୍ର, ଲୁଗାପଟା ଲଦିଲା । ନିଧିଆ ତରବର ହୋଇ ଅଟୋରେ ସୁମତିଙ୍କୁ ଧରି ଗାଆଁକୁ ଚାଲିଲା ।

କଟକରୁ ତାଙ୍କ ଗାଆଁର ଦୂରତା ପ୍ରାୟ ଶହେ କିଲୋମିଟର । ଗାଆଁ ରାସ୍ତା ସେତେ ଭଲ ନୁହଁ । କଟକରୁ ପ୍ରାୟ ଷାଠିଏ କିଲୋମିଟର ପିଚୁରାସ୍ତା । କିନ୍ତୁ ତାପରେ ପଡ଼ିବ କଚାରାସ୍ତା । ରାସ୍ତାସାରା କାଦୁଅ,ପାଣି ଆଉ ଖାଲ,ଢ଼ିପ ।ଅଟୋବାଲା ବାଟଯାକ ଆପତ୍ତି କରିଚାଲିଥାଏ ଯେ ଏମିତି ଖରାପ ରାସ୍ତାରେ ଅଧିକ ବାଟଗଲେ ତା'ଗାଡ଼ି ଖରାପ ହୋଇଯିବ ।ସୁମତି ତାକୁ ଆଶ୍ୱାସନା ଦେଲେ-ତୁ ଆମକୁ ଗାଆଁରେ ଛାଡ଼ିଦେ, ଯେତେଟଙ୍କା କହିବୁ ସେତେଟଙ୍କା ଦେବି । ତୋ ଗାଡ଼ି ଖରାପ ହେଲେ ସଜାଡ଼ି ଦେବୁ ।

ବହୁକଷ୍ଟରେ ସୁମତି ଓ ନିଧିଆକୁ ଧରି ଅଟୋ ପହଞ୍ଚିଲା ତାଙ୍କ ଗାଆଁରେ ସଂଧ୍ୟା ପାଞ୍ଚଟାରେ । ସୁମତିଙ୍କୁ ଧରାଧରିକରି ନିଧିଆ ଅଟୋରୁ ଓହ୍ଲେଇବାକୁ ଯାଉଛି ଗୋଟେ ପୋଲିସ୍ ଭ୍ୟାନ୍‌ରେ ଜଣେ ସବ୍ ଇନ୍‌ସପେକ୍ଟର ଆସି ତାକୁ ଅଟକାଇଲେ ।ନିଧିଆ ହାତରେ ହ୍ୟାଣ୍ଡକପ୍ ପକାଇ କହିଲେ-ୟୁ ଆର ଅଣ୍ଡର ଆରେଷ୍ଟ ।

ନିଧିଆ କାନ୍ଦ କାନ୍ଦ ହୋଇ କହିଲା-ସାର୍ ! ମୋର ଦୋଷ କ'ଣ ? ମୋତେ କାହିଁକି ଆରେଷ୍ଟ କରୁଛନ୍ତି ? ମୁଁ ନିହାତି ଗରିବ ଆଉ ନିରୀହ ଲୋକ ।

ସୁମତି ପୋଲିସ ସବଇନ୍ସପେକ୍ଟରଙ୍କୁ କହିଲେ-ଦେଖନ୍ତୁ ବାବୁ !ନିଧିଆକୁ ମୁଁ ବହୁତ ଦିନରୁ ଜାଣେ । ସିଏ ନିହାତି,ସାଧୁ, ସରଳ ଓ ସଚ୍ଚୋଟ ଲୋକ । ତାର କ'ଣ



Digitized by srujanika@gmail.com

ଦୋଷ ? ତାକୁ କାହିଁକି ଆରେଷ୍ଟ କରୁଛନ୍ତି ? ଛାଡ଼ି ଦିଅନ୍ତୁ ।

ସବଇନ୍ସପେକ୍ଟର କହିଲେ-ଆପଣଙ୍କ ପୁଅ ଡାକ୍ତର ପରେଶ ସାମନ୍ତ ନିଜେ ଥାନାରେ ଏତେଲା ଦେଇଛନ୍ତି ଯେ ତାଙ୍କ ମାଆଙ୍କୁ କଟକର ଦି କେୟାର କ୍ଲିନିକରୁ କେହି ଜଣେ ଅପହରଣ କରିନେଇଛି । ତାଙ୍କ ମାଆଙ୍କ ପାଖରେ ଦଶ ହଜାର ଟଙ୍କା ଓ ଦଶ ଭରି ସୁନା ଗହଣା ଥିଲା ।

ସୁମତି ଦୃଢ଼ କଣ୍ଠରେ ଆପତ୍ତି କଲେ-ନାଇଁ ବାବୁ! ପ୍ରକୃତ କଥା ହେଉଛି ଏଇ ନିଧିଆ ଆମର ସୂର୍ଯ୍ୟ ବନ୍ଧୁ । ସେ ମୋତେ ଦେଖିବା ପାଇଁ କଟକ କ୍ଲିନିକକୁ ଆସିଥିଲା । ମୁଁ ତାକୁ କହିଲି ଯେ ମତେ ଏଠି ଜମା ଭଲ ଲାଗୁନାହିଁ । ମତେ ଗାଆଁକୁ ନେଇଚାଲ । ମୋ ନିଜ ଇଚ୍ଛାରେ ମୁଁ ଅଟୋକରି ଗାଆଁକୁ ଯାଉଛି । ମୋତେ କେହି କୁଆଡ଼େ କିଡ଼ନାପ୍ କରି ନେଉନାହିଁ । ମୋ ସୁନା ଗହଣା ହେଇ ଦେଖନ୍ତୁ ମୋ ଦେହରେ ଅଛି । ମୋଟଙ୍କା ବି ମୋ ପାଖରେ ଅଛି । ମୋଠୁ କିଛି କେହି ନେଇନାହିଁ । ନିଧିଆ ନିର୍ଦ୍ଦୋଷ । ମୁଁ ମୋ ପିଲାଙ୍କୁ ନଜଣାଇଁ ଗାଆଁକୁ ଚାଲି ଆସିଛି । ଯଦି ଆରେଷ୍ଟ କରିବ ମତେ ଆରେଷ୍ଟ କର ।

ପୋଲିସ୍ ସୁମତିଙ୍କ କଥା ନଶୁଣି ନିଧିଆକୁ ଆରେଷ୍ଟ କରି ଭ୍ୟାନ୍‌ରେ ବସାଇ ମଙ୍ଗଳାବାଗ ପୋଲିସ ଷ୍ଟେସନ୍ ନେଇଗଲେ ଏବଂ ସୁମତିଙ୍କୁ ସେଇ ଅଟୋରେ ବସାଇ କଟକର ଦି କେୟାର କ୍ଲିନିକ୍‌ରେ ପହଞ୍ଚାଇ ଦେଲେ । ସେଠାରେ ଅପେକ୍ଷା କରିଥିଲେ ତାଙ୍କ ମଝିଆ ପୁଅ ଡକ୍ଟର ପରେଶ, ତାଙ୍କ ସ୍ତ୍ରୀ ସୁଜାତା,ଝିଅ ତନିମା ଓ ତା ସ୍ୱାମୀ ଶୁଭେନ୍ଦୁ ।ସେମାନେ ମାଆଙ୍କ ଉପରେ ବିରକ୍ତ ହେଲେ- ଗାଆଁକୁ ନେବାର କଥା ହୋଇଥିଲେ ଆମେ ତୁମକୁ ଗାଆଁକୁ ନେଇଥାନ୍ତୁ । ଗାଆଁରେ କିଛି ସୁବିଧା ନାହିଁବୋଲି ଆମେ ତୁମକୁ ଏଇଠି ରଖିବାକୁ ନିଷ୍ପତ୍ତି ନେଇଛୁ । ତୁମେ ଭଲହେଲା ପର୍ଯ୍ୟନ୍ତ ଏଇ କ୍ଲିନିକ୍‌ରେ ରହିବ । ଆମକୁ କାହାକୁ କିଛି ନକହି ଲୁଚିକି ଗାଆଁକୁ ଚାଲି ଯିବାଟା କ'ଣ ଠିକ୍ ହେଇଚି ? ତମେ କ'ଣ ଚାହୁଁଚ ତୁମକୁ ଦିନରାତି ଜଗିବା ପାଇଁ ସିକ୍ୟୁରିଟି ଗାର୍ଡ଼ ରଖିବୁ ?

ସୁମତି କିଛି ନକହି ଖୁବ୍ ଜୋରରେ କାନ୍ଦି ଉଠିଲେ । ନର୍ସ ତାଙ୍କ ହାତଧରି ଟାଣିନେଇ କ୍ଲିନିକ୍‌ରେ ଥିବା ତାଙ୍କ ବେଡ଼ରେ ବସାଇ ସେ ବଖରାର କବାଟ ବନ୍ଦ୍ କରିଦେଲା ।



ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

# ଅମିତ

ଝିଅ ଜ୍ୱାଇଁଙ୍କ ପାଖରେ ଗୋଟିଏ ସପ୍ତାହ କଟାଇବା ନିମନ୍ତେ ମୁଁ ଆଉ ମୋ ସ୍ତ୍ରୀ ଦୁହେଁ ଯାଇଥିଲୁ ରୁର୍କୀ । ଜ୍ୱାଇଁ ଦେଶରକ୍ଷା ବିଭାଗର ଜଣେ ପଦସ୍ଥ ଅଫିସର୍ । ରୁର୍କୀର ଜଳବାୟୁ ଖୁବ୍ ପ୍ରୀତିପ୍ରଦ । ଅପ୍ରେଲ୍‌ର ପ୍ରଥମ ସପ୍ତାହ ହୋଇଥିଲେ ବି ମୁଲାୟମ ଶୀତ ଦେହ ଓ ମନକୁ ଆନନ୍ଦ ଦେଉଥିଲା ।

ମଧ୍ୟାହ୍ନ ଭୋଜନ ପରେ ମୁଁ ଟିଭିରୁ ସମ୍ବାଦ ଦେଖୁଥିଲି । ହଠାତ୍ ଇଲେକ୍ଟ୍ରି ଲାଇନ୍ କଟିଗଲା । ତୁରନ୍ତ କ୍ୟାଣ୍ଟନ୍‌ମେଣ୍ଟ୍‌ର ଇଲେକ୍ଟ୍ରିସିଆନ୍‌କୁ ଖବର ଦିଆଗଲା । ସିଏ ସଙ୍ଗେ ସଙ୍ଗେ ଆସି ପହଞ୍ଚିଗଲେ । ମୋ ଝିଅ ଅସୀମା ତାଙ୍କୁ କହିଲା-ଇଲେକ୍ଟ୍ରି କନେକସନ୍‌ରେ କେଉଁଠି କିଛି ସମସ୍ୟା ଅଛି । ଆପଣ ଠିକ୍ କରିଦେଇ ପାରିବେ ?

ଇଲେକ୍ଟ୍ରିସିଆନ୍ ଜଣକ ଅଳ୍ପ ବୟସର ଜଣେ ଯୁବକ । ଚେହେରାରୁ ମନେହେଲା ତାଙ୍କ ବୟସ ୨୫ ଏପଟେ । ସିଏ ହସି ହସି ଉତ୍ତର ଦେଲେ-ମ୍ୟାଡ଼ମ୍ ! ଅସଜଡ଼ା ଇଲେକ୍ଟ୍ରି ଲାଇନ୍‌କୁ ସଜାଡ଼ିବା ତ ଆମ କାମ । ପାରିବି ନାହିଁ କାହିଁକି ? ନିଶ୍ଚୟ ପାରିବି ।

ସତକୁ ସତ ଦଶ ମିନିଟ୍ ମଧ୍ୟରେ ସିଏ ଲାଇନ୍‌ଟିକୁ ଠିକ୍ କରିଦେଲେ । କାମ ସରିବା ବେଳକୁ ଗୋଟେ ପ୍ଲେଟ୍‌ରେ ଦୁଇଟି ମିଠା ଓ ଗୋଟିଏ ପାଣି ଗ୍ଲାସ ଆଣି ଷ୍ଟୁଲ୍ ଉପରେ ଥୋଇଲା ଅସୀମା । ଏସବୁ ଦେଖି ଇଲେକ୍ଟ୍ରିସିଆନ୍ ହସ ହସ ମୁହଁରେ ପ୍ରଶ୍ନକଲେ-ଏସବୁ କ'ଣ ମ୍ୟାଡ଼ମ ?

ଅସୀମା ହସି ହସି ଉତ୍ତର ଦେଲା-କାଲି ମୋ ପୁଅର ଜନ୍ମଦିନ ଥିଲା । ଟିକେ ମୁହଁମିଠା କର ଅମିତ !

ଅମିତ ଖୁବ୍ ଖୁସିରେ ମିଠା ଖାଇ ପାଣି ପିଇ ଅସୀମାକୁ ନମସ୍କାର କରି ଚାଲିଗଲା । ଯିବା ପୂର୍ବରୁ କହିଲା-ମୁଁ ଆସୁଛି ମ୍ୟାଡ଼ମ୍ ! କିଛି ଦରକାର ହେଲେ ମୋତେ ଜଣାଇବେ ।

ଅମିତ ଚାଲିଗଲା ପରେ ଅସୀମା ମୋତେ କହିଲା-ଏପିଲାଟା ଭାରି ଭଲ । ମୋତେ ତା' କାମ ଆଉ ବ୍ୟବହାର ସବୁ ଭଲଲାଗେ । ତା' ପଛରେ ଗୋଟେ ଇଣ୍ଟରେଷ୍ଟିଙ୍ଗ୍ କାହାଣୀ ଅଛି । ଏବେ ମୁଁ ବ୍ୟସ୍ତ ଅଛି । ସୁବିଧା ଦେଖି କେତେବେଳେ ତା' କାହାଣୀ ତୁମକୁ କହିବି ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ଅସୀମା ତା'କାମ କରିବାକୁ ଚାଲିଗଲା । କିନ୍ତୁ ମୋ ମନ ଆଉ ଟିଭିଦେଖାରେ ଲାଗିଲା ନାହିଁ ।ସଂଧ୍ୟାବେଳେ ମୁଁ ଗାର୍ଡେନ୍‌ରେ ବସିଥିଲି । ଦୁଇ କପ୍ ଚା'ଆଣି ମୋ ପାଖ ଚେୟାରରେ ବସିଲା ଅସୀମା । ମୁଁ ଦୁଇ ତିନି ଢୋକ ଚା'ପିଇବା ପରେ ଅସୀମାକୁ ଅନୁରୋଧ କଲି ଅମିତର କାହାଣୀଟି କହିବା ପାଇଁ ।

ଅସୀମା ଖୁବ୍ ଆଗ୍ରହର ସହିତ ଆରମ୍ଭ କଲା-ଅମିତ ଆମଘରକୁ ଆଗରୁ ଦୁଇ ତିନି ଥର ଆସିଥିଲା । ତା' କାମ ଆଉ ବ୍ୟବହାରର ନିଆରାପଣ ମୋତେ ଆକର୍ଷିତ କଲା । ଯେକୌଣସି ଜଟିଳ କାମକୁ ମଧ୍ୟ ହସି ହସି ଅତି ସହଜରେ ଓ ଅଳ୍ପ ସମୟରେ କରିଦିଏ । ଆସିବା ବେଳଠୁ କାମ ସାରି ଯିବା ପର୍ଯ୍ୟନ୍ତ ତା' ମୁହଁରେ ହସ ଧାରେ ଲାଗି ରହିଥାଏ । ତା' ବିଷୟରେ ଆଉ ତା' ପରିବାର ବିଷୟରେ ଅଧିକ କିଛି ଜାଣିବା ପାଇଁ ମୋର ଆଗ୍ରହ ବଢ଼ିଲା । ମୁଁ ତାକୁ ତା'ପରିବାର ବିଷୟରେ ଥରେ ପଚାରି ଥିଲି । ସିଏ କହିଲା ତାଙ୍କ ପରିବାର କହିଲେ ସିଏ , ତାର ବଡ଼ ଭାଇ ସଂବିତ ଆଉ ମାଆ । ସିଏ ଆଉ ତା' ଭାଇ ଖୁବ୍ ସାନ ଥିବାବେଳେ ତା' ବାପା ଚାଲିଗଲେ ।

ମୁଁ ପଚାରିଲି-ବାପାଙ୍କୁ କିରୋଗ ହୋଇଥିଲା ? ସେମିତି କିଛି ଦୁଃସାଧ୍ୟ ରୋଗ ?

ସିଏ ମନାକଲା । କହିଲା- ନାଇଁ ମ୍ୟାଡ଼ମ ! ମୋ ବାପାଙ୍କର ସେମିତି କିଛି ରୋଗ ନଥିଲା । ତାଙ୍କୁ ସେମିତି ବେଶି କିଛି ବୟସ ବି ହୋଇ ନଥିଲା । ମାତ୍ର ୩୫ବର୍ଷରେ ବସ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହେଲା ।

ମୁଁ କହିଲି - ତେବେ ତୁମେ ସବୁ ଚଳିଲ କେମିତି ?

ଅମିତ ଉତ୍ତର ଦେଲା- ବାପା ମରିଯିବା ବେଳକୁ ମୋ ବଡ଼ଭାଇ ଓ ମୁଁ ଖୁବ୍ ସାନ ସାନ ହୋଇଥିଲୁ । ମୋ ମାଆ ଅନ୍ୟମାନଙ୍କ ଘରେ କାମ କରି ଯାହା କିଛି ରୋଜଗାର କଲା ସେଇଥିରେ ଆମକୁ ପାଳିଲା, ପୋଷିଲା ଆଉ ପାଠ ପଢ଼ାଇଲା ।

-ଆଚ୍ଛା, ତୁମର ସଂପର୍କୀୟମାନେ କେହି ସାହାଯ୍ୟ କଲେନାହିଁ ? ମୁଁ ଜାଣେ ସଂପର୍କୀୟମାନେ ଭଲବେଳେ ଆସନ୍ତି କିନ୍ତୁ ଅସୁବିଧାବେଳେ ଯଥା ସମ୍ଭବ ଦୂରେଇ ଯାଆନ୍ତି ।

ଅମିତ କହିଲା- ଏକଥାଟା ପୂରା ସତ ନୁହଁ ମ୍ୟାଡ଼ମ !ମୋର ଚାରିଟା ମାମୁ । ସେମାନଙ୍କ ମଧ୍ୟରୁ ତିନି ଜଣ ଖୁବ୍ ଖରାପ । ସେମାନେ ଆମକୁ କେବେ କିଛି ସାହାଯ୍ୟ କରି ନାହାଁନ୍ତି କି ସହାନଭୁତି ଦେଖାଇ ନାହାଁନ୍ତି । କିନ୍ତୁ ମୋ ସବାସାନ ମାମୁ ମୋ ବଡ଼ ଭାଇଠୁ ମୋଟେ ଆଠ ବର୍ଷ ବଡ଼ । ସିଏ ଅଳ୍ପ କିଛି ପାଠ ପଢ଼ିଥିଲେ ଆଉ ଇଲେକ୍ଟ୍ରି କାମ



Digitized by srujanika@gmail.com

ଶିଖିଥିଲେ । ମୋ ବାପା ମରିଯିବା ପରେ ସିଏ ଆସି ଆମଘରେ ରହି ଆମକୁ ଇଲେକ୍ଟ୍ରି କାମ ଶିଖାଇଲେ । ଇଲେକ୍ଟ୍ରିସିଆନ୍ ଟ୍ରେନିଙ୍ଗ ନେବା ପାଇଁ ଉତ୍ସାହିତ କଲେ । ଆମେ ଦୁଇ ଭାଇ ଇଲେକ୍ଟ୍ରିସିଆନ୍ ଟ୍ରେନିଙ୍ଗ ନେଲୁ । ମୋ ବଡ଼ ଭାଇ ଏବେ ଗୋଟେ ବଡ଼ କଂପାନୀରେ ଚାକିରି କରିଛି । ସିଏ ମୋଠୁ ବେଶି ଦରମା ପାଉଛି ।

ମୁଁ ତାକୁ ପଚାରିଲି-ତୁମେ ତୁମ ବଡ଼ଭାଇ ପରି କୌଣସି କଂପାନୀରେ ଚାକିରି କଲନି ? ତାହେଲେ ତୁମେ ବି ତାଙ୍କ ପରି ବେଶି ଦରମା ପାଉଥାନ୍ତ ?

ଅମିତ ହସି ହସି କହିଲା- ନାଇଁ ମ୍ୟାଡ଼ମ ! ମୁଁ ମୋ ବଡ଼ ଭାଇ ପରି ବେଶି ଦରମା ନପାଉଛି ବୋଲି ମୋ ମନ ଟିକେ ହେଲେ ଦୁଃଖ ନାହିଁ । ଯେତିକି ଦରମା ପାଉଛି ସେତିକିରେ ମୁଁ ଖୁସିରେ ଅଛି । ମୁଁ ମୋ ମାଆକୁ ଭାରି ଭଲପାଏ । ସିଏ ମୋ ପାଖରେ ମୋତେ ମିଳିଥିବା ଆମ କ୍ୟାଣ୍ଟନ୍‌ମେଣ୍ଟ କ୍ୱାର୍ଟର୍ସ୍‌ରେ ରହୁଛି ।

ଏବର୍ଷ ବର୍ଷାଦିନେ ମୋ ମାଆ ଗାଧୁଆଘରେ ପଡ଼ିଗଲା । ତା' ଡାହାଣ ଗୋଡ଼ଟା ଆଣ୍ଠୁ ପାଖରୁ ଭାଙ୍ଗିଗଲା । ଆମ ଆର୍ମି ହସ୍‌ପିଟାଲ୍‌ରେ ତାର ଅପରେସନ୍ ହେଲା । ତା' ଗୋଡ଼ରେ ଗୋଟେ ଲୁହାରଡ଼ ପଶା ଯାଇଛି । ସିଏ ମାସେକାଳ ଡାକ୍ତରଖାନାରେ ରହିଲା । ସବୁ ଖର୍ଚ୍ଚ ସରକାର ବହନ କଲେ । ମୁଁ ଯଦି ଆର୍ମିରେ ଚାକିରି ନକରି କୌଣସି ଘରୋଇ କଂପାନୀରେ ଚାକିରି କରି ଥାଆନ୍ତି ତାହେଲେ ମାଆଙ୍କ ଅପରେରେସନ୍ ପାଇଁ ଦେଢ଼ ଦୁଇ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥାନ୍ତା ? ଏତେ ଟଙ୍କା ମୁଁ କୋଉଠୁ ଆଣି ଥାଆନ୍ତି ?

ମୋ ମାଆ ବୁଢ଼ୀ ହେଇଗଲାଣି । ତା'ଦେହ ଆଗକୁ କେତେବେଳେ କ'ଣ ଖରାପ ହେବ । ମୁଁ ଏସରକାରୀ ଚାକିରି କରିଥିବାରୁ ମୋର ଭରସା ଅଛି ମାଆ ରୋଗରେ ପଡ଼ିଲେ ମୁଁ ତାର ଚିକିତ୍ସା କରାଇ ପାରିବି । ମୋ ପାଇଁ ଟଙ୍କା ପଇସାଠୁ ମୋ ମାଆ ବଡ଼ ।

ମୁଁ ଅସୀମାକୁ କହିଲି- ରିଏଲି ଭାରି ଇଂଟରେଷ୍ଟିଙ୍ଗ । ତାପରେ କ'ଣ ହେଲା ? ଅଟକି ଗଲୁ କାହିଁକି ?

ଅସୀମା କହିଲା-ତା'କଥା ଅବଶ୍ୟ ବର୍ତ୍ତମାନ ପାଇଁ ଏଇଠି ସରିଲା । କିନ୍ତୁ ତାର ଗୋଟେ ଭଲ ଗୁଣ ଯାହା ମୋତେ ଆକର୍ଷିତ କରେ ସେଇଟା ହେଲା ସବୁ କଥାକୁ ସିଏ ସକାରାତ୍ମକ ଭାବେ ନିଏ । କିଛି ଜଟିଳ ସମସ୍ୟା କି ଅସୁବିଧା ପରିସ୍ଥିତିର ସମ୍ମୁଖୀନ ହେବାବେଳେ ସିଏ ଅନ୍ୟମାନଙ୍କ ପରି ହଡ଼ବଡ଼େଇ ନଯାଇ ହସି ହସି ତାର ସହଜ ସମାଧାନର ବାଟ ବାହାର କରେ ।

ସେଦିନ ଅମିତ ଉପାଖ୍ୟାନ ସେଇଠି ଶେଷହେଲା । ଆମେ ରୁର୍‌କୀରେ ଆଉ



Digitized by srujanika@gmail.com

ଦୁଇ ଦିନ ରହି ଭୁବନେଶ୍ୱର ଫେରି ଆସିଲୁ । ଏଠିକା ଜୀବନ ସହିତ ନିଜକୁ ସାମିଲ କରିନେଲୁ । ଆଗ ପରି ସକାଳ ଛଅଟାରେ ମର୍ଣ୍ଣିଙ୍ଗ୍‌ୱାକ କରିବା,ଫୁଲଗଛରେ ପାଣିଦେବା, ଚା'ଜଳଖିଆ ଖାଇବା ଆଉ ଖବରକାଗଜ ପଢ଼ିବା ଚାଲିଲା । ଜୀବନ ପୁଣି ସୁରୁଖୁରୁରେ ପୁରୁଣା ଗୁଳାରେ ଗଡ଼ିଲ ।

କିଛିଦିନ ପରେ ରୁର୍‌କୀରୁ ଅସୀମାର ଫୋନ୍ ଆସିଲା । ଅସୀମା କଣ୍ଠରେ ଥିଲା ଉଲ୍ଲାସ-ଡ଼ାଡ଼ି ! ଅମିତ ଯା ଭିତରେ ଆଉ ଗୋଟେ କାମ କରିଛି ଯାହା ଶୁଣିଲେ ତମେ ଆଶ୍ଚର୍ଯ୍ୟ ହେବ ।

କଥାଟା ଶୁଣିବାକୁ ମୁଁ ବ୍ୟଗ୍ରହୋଇ ପ୍ରଶ୍ନକଲି-କୋଉ ଅମିତ ? ତମ କ୍ୟାଣ୍ଟନ୍‌ମେଣ୍ଟ୍‌ର ସେଇ ଇଲେକ୍ଟ୍ରିସିଆନ ତ ? ସିଏ କ'ଣ କରିଛି ? ସିଏ କ'ଣ କିଛି ଖରାପ କାମ କରିଛି ? ମୋର ଯାହା ମନେଅଛି ତୁତ କହୁଥିଲୁ ସିଏ ସେମିତିଆ ପିଲାନୁହଁ, ଭାରି ଭଲପିଲା ।

ଅସୀମା ହସି ହସି ଉତ୍ତର ଦେଲା-ନାଇଁ,ନାଇଁ । ସେମିତି କିଛି ନୁହଁ । ତେବେ ସିଏ ଯାହା କରିଚି ଅନେକ ଲୋକ ତାକୁ ଗ୍ରହଣ କରି ପାରୁ ନାହାଁନ୍ତି ।

ମୁଁ ଆଉ ଉତ୍କଣ୍ଠା ରୋକି ପାରିଲି ନାହିଁ । ଅସଲ କଥାଟା ଖୋଲି କହିବାକୁ ତାକୁ ଅନୁରୋଧ କଲି ।

ଅସୀମା କହିଲା-ରୁର୍କୀରେ ଆମ ଘରେ ଯେଉଁ ସ୍ତ୍ରୀଲୋକଟି ରୋଷେଇ କରେ ତାକୁ ତ ତୁମେ ଦେଖିଚ । ସିଏ ଅନେକ ଦିନରୁ ବିଧବା । ସିଏ ତା' ଝିଅ ସାବିତ୍ରୀ ସହିତ ଆମ ବଙ୍ଗଳା କ୍ୟାମ୍ପସରେ ରହେ । ସାବିତ୍ରୀ ମ୍ୟାଟ୍ରିକ ପର୍ଯ୍ୟନ୍ତ ପଢ଼ିଛି । ସିଏ ଅନେକ ଦିନରୁ ପାଠ ଛାଡ଼ିଥିଲା । କଲେଜରେ ପଢ଼ାଇବାକୁ ତା' ମାଆର ସାମର୍ଥ୍ୟ ନାହିଁ । ସିଏ ଗୋଟିଏ ସିଲେଇ ମେସିନ୍ ରଖି ଶାୟା, ବ୍ଲାଉଜ, ଓ ଝିଅଙ୍କ ଡ୍ରେସ ସିଲେଇ କରି କିଛି ରୋଜଗାର କରେ । ତା'ମାଆ ସାବିତ୍ରୀର ରୋଜଗାର ପଇସାକୁ ସାଇତି ରଖେ ଝିଅ ବାହାଘର ପାଇଁ ।

ମୁଁ ପ୍ରଶ୍ନକଲି-ଆଚ୍ଛା ଅସୀମା ! ତୁ ପରା କହୁଥିଲୁ ଅମିତ କ'ଣ କରିଛି । ସେ କଥା ନକହି ଏ ସାବିତ୍ରୀ କଥା କ'ଣ ମୋତେ ଶୁଣାଉଛୁ ?

ଅସୀମା କହିଲା-ତୁମେ ବ୍ୟସ୍ତ ହୁଅନା ମୁଁ ସେଇ ଅମିତ କଥା ହିଁ କହୁଛି । ତୁମେ ଥୟ ଧରି ମୋ କଥା ଶୁଣ । ସାବିତ୍ରୀ ଗତ ଶୁକ୍ରବାର ଦିନ ପାଖ ବଜାରକୁ ଯାଇଥିଲା କିଛି କପଡ଼ା, ସୂତା ଆଉ ବଟନ୍ ଆଣିବା ପାଇଁ । ଫେରୁ ଫେରୁ ସଂଧ୍ୟା ହୋଇଗଲା । ହଠାତ୍



Digitized by srujanika@gmail.com

କଳାହାଣ୍ଡିଆ ମେଘ କୁଆଡ଼େ ଥିଲା ମାଡ଼ି ଆସିଲା ଆଉ ଖୁବ୍ ଜୋରରେ ବର୍ଷିଗଲା। ରାସ୍ତାର ଆଲୁଅ ଲିଭିଗଲା। ବର୍ଷାରୁ ରକ୍ଷା ପାଇବା ପାଇଁ ସାବିତ୍ରୀ ଗୋଟେ ପରିତ୍ୟକ୍ତ ଘରର ବାରଣ୍ଡାକୁ ଉଠିଗଲା। ସେଇ ପରିତ୍ୟକ୍ତ ଘର ଭିତରୁ ଚାରିଟା ମଦ୍ୟପ ଯୁବକ ବାହାରି ତାକୁ ଟାଣିନେଇ ଅନ୍ଧାର ଭିତରେ ବଳାତ୍କାର କଲେ। ସାବିତ୍ରୀର ବିକଳ ଚିତ୍କାର କେହି ଶୁଣିଲେ ନାହିଁ। ପ୍ରାୟ ଅଧଘଣ୍ଟାଏ କାଳ ସାବିତ୍ରୀର ଦେହକୁ ନେଇ ସେମାନେ ଖେଳିଲେ। ଆଲୁଅ ଆସିବା ପରେ ସେମାନେ ଫୁଟା ପେଣ୍ଡୁଟାଏ ପରି ସାବିତ୍ରୀକୁ ସେଇ ଘରେ ଫିଙ୍ଗିଦେଇ ଚାଲିଗଲେ।

କିଛି ସମୟ ପରେ ସାବିତ୍ରୀ କଷ୍ଟେମଷ୍ଟେ ଉଠି ବସିଲା। ତା'ଦେହ ଓ ମୁହଁ ନିଆଁ ଲାଗିବା ପରି ଜଳୁଥିଲା। ଏଠି ସେଠି ପଡ଼ିଥିବା ଚିରା ଶାଢ଼ି, ଶାୟା, ବ୍ଲାଉଜକୁ କୌଣସି ମତେ ଗୋଟାଇ ଆଣି ପିନ୍ଧିଲା। କିନ୍ତୁ ସିଏ ଏମିତି ଅବସ୍ଥାରେ ଯିବ କୁଆଡ଼େ? ତା'ମାଆ ତାକୁ ଏଅବସ୍ଥାରେ ଦେଖିଲେ ମୁଣ୍ଡପିଟି ଦେବ। ସମାଜ ତାକୁ ଆଉ ଗ୍ରହଣ କରିବ ନାହିଁ। ବାର ନିନ୍ଦା,ଅପବାଦ ଦେବ।

ସିଏ ସ୍ଥିରକଲା ସବୁଠୁ ଭଲହେବ ଆତ୍ମହତ୍ୟା। ରାସ୍ତା କଡ଼ରେ ଗୋଟେ ବଡ଼ ପୋଖରୀ ଥିଲା। ଆଗପଛ କିଛି ବିଚାର ନକରି ସମସ୍ତ ଶକ୍ତି ସଂଗ୍ରହ କରି ସାବିତ୍ରୀ ଡେଇଁପଡ଼ିଲା ସେଇ ପୋଖରୀ ମଝିକୁ।

କିନ୍ତୁ ସାବିତ୍ରୀ ମରି ପାରିଲା ନାହିଁ। ଅମିତ ସେଇ ସମୟରେ ତା'ଡିଉଟି ସାରି ଘରକୁ ଫେରୁଥିଲା। କେହି ଜଣେ ପୋଖରୀକୁ ଡେଇଁ ଆତ୍ମହତ୍ୟା କରୁଥିବାର ଜାଣିପାରି ସିଏ ପୋଖରୀ ଭିତରକୁ ଡେଇଁ ସାବତ୍ରୀକୁ ଉଦ୍ଧାର କଲା।

ସାବତ୍ରୀ ମରି ନପାରିବାରୁ ବହୁତ କାନ୍ଦିଲା। ରାସ୍ତାରେ ଯାଉଥିବା ଲୋକମାନେ ତା'ଚାରିପାଖରେ ରୁଣ୍ଡ ହୋଇଗଲେ। ତା'ଭିତରେ ସାବିତ୍ରୀର ଚିହ୍ନାଜଣା ଲୋକ ବି ଥିଲେ। ସେମାନେ ପଚାରିଲେ-ଘଟଣା କ'ଣ ? ତୋର ଏପରି ଅବସ୍ଥା କିଏ କରିଚି ?'

କିନ୍ତୁ ସିଏ କିଛି ନକହି କେବଳ କାନ୍ଦିବାକୁ ଲାଗିଲା। ପାଖରେ ଅମିତକୁ ଦେଖି ଲୋକମାନଙ୍କର ଧାରଣା ସୃଷ୍ଟିହେଲାଯେ ସିଏ ହିଁ ଝିଅଟିର ଏମିତି ଅବସ୍ଥା କରିଛି। ତେଣୁ ଅମିତକୁ କିଛି ଲୋକ ମାରଧର କରିବା ଆରମ୍ଭ କରିଦେଲେ।

ଅମିତକୁ ନମାରିବା ପାଇଁ ସାବିତ୍ରୀ ସେମାନଙ୍କୁ ଅନୁରୋଧ କଲା ଆଉ କାନ୍ଦି କାନ୍ଦି କହିଲା - ତାଙ୍କର କିଛି ଦୋଷ ନାହିଁ। ଚାରିଟା ମଦୁଆ ତାକୁ ବଳାତ୍କାର କରି ତାର ଏପରି ଅବସ୍ଥା କରି ଥିବାରୁ ସିଏ ପାଣିରେ ବୁଡ଼ି ଆତ୍ମହତ୍ୟା କରିବାକୁ ଯାଉଥିଲା। ତାକୁ



Digitized by srujanika@gmail.com

ପାଣିରୁ ଉଦ୍ଧାର କରିଛନ୍ତି ଏଇ ଯୁବକ।ଏମିତି କଳଙ୍କିତ ମୁହଁ ଓ କଳୁଷିତ ଦେହ ନେଇ ବଞ୍ଚିବା ଅପେକ୍ଷା ମରିବା ଭଲ।

ସାବିତ୍ରୀର ମାଆ କାହାଠୁ ଖବର ପାଇ ସେଠି ଆସି ପହଞ୍ଚି ସାବିତ୍ରୀକୁ ଧିକ୍କାର କଲା-ଏମିତିଆ କଳଙ୍କ ଦେହରେ ବୋଲିହୋଇ ବଞ୍ଚିବା ଅପେକ୍ଷା ମରିବା ଶହେ ଗୁଣେ ଭଲ। ତତେ ମୁଁ ଏବେ ଘରକୁ ନେଲେ ତୁ ଭଲରେ ବଞ୍ଚିବୁ ନାହିଁ କି ମୁଁ ଶାନ୍ତିରେ ବଞ୍ଚିବି ନାହିଁ। ବରଂ ଭଲହେବ ତୁ ଆଉଥରେ  ସେଇ ପୋଖରୀକୁ ଡ଼େଇଁ ଆତ୍ମହତ୍ୟା କର। ସବୁଦିନ ପାଇଁ ମୋ କୁଳର କଳଙ୍କ ଧୋଇ ହୋଇଯିବ।

ସାବିତ୍ରୀ ନିଜକୁ ପୁଣି ଥରେ ପ୍ରସ୍ତୁତ କଲା ପୋଖରୀକୁ ଡ଼େଇଁ ଆତ୍ମହତ୍ୟା କରିବାକୁ। ଅବଶ ଦେହକୁ କୌଣସି ମତେ ଉଠାଇ ପୋଖରୀ ଆଡ଼କୁ ଆଗେଇଲା। ସମସ୍ତେ ନିରବ ହୋଇ ଏ କରୁଣ ଦୃଶ୍ୟକୁ ଉପଭୋଗ କରୁଥିଲେ। କେହି ଜଣେ ହେଲେ କିଛି କହୁ ନଥିଲେ। ସମସ୍ତେ ଥିଲେ ନିରବ ଦର୍ଶକ।

ହଠାତ୍ ଅମିତ ସାବିତ୍ରୀର ବାଟ ଓଗାଳି ଠିଆହୋଇ ଚିତ୍କାର କଲା-ତୁମେ ଏ କ'ଣ କରୁଛ? ଆତ୍ମହତ୍ୟା ମହାପାପ। ମଣିଷ ଜୀବନ ବହୁମୂଲ୍ୟବାନ। ଯେଉଁମାନେ ତୁମର ଏଦଶା କରିଛନ୍ତି ସେମାନେ ଆମ ସମାଜର କଳଙ୍କ। ସେମାନେ ଆତ୍ମହତ୍ୟା କରିବା କଥା। ସେମାନେ ଦଣ୍ଡ ପାଇବା କଥା। ତୁମେ  କାହିଁକି ଆତ୍ମହତ୍ୟା କରିବ? ତୁମର ଅପରାଧ କ'ଣ?

ସାବିତ୍ରୀ କାନ୍ଦି କାନ୍ଦି ନିବେଦନ କଲା-ମୋତେ ମରିବାକୁ ଦିଅନ୍ତୁ। ଯେଉଁମାନେ ମୋର ଆଜି ଏଅବସ୍ଥା କରିଛନ୍ତି ତାଙ୍କୁ କିଏ ଦଣ୍ଡ ଦେବ?ସେମାନେ ଶକ୍ତିଶାଳୀ ପୁରୁଷ। ମୋର ଶକ୍ତି କାହିଁ ନା ଲୋକବଳ କାହିଁଯେ ମୁଁ ତାଙ୍କୁ ଶାସ୍ତି ଦେବି?ମୁଁ ବଞ୍ଚି ରହିଲେ ସେମାନେ ବାରମ୍ବାର ମୋ ଉପରେ ଅତ୍ୟାଚାର କରିବେ। ଏ ମଣିଷ ସମାଜ ସେମାନଙ୍କୁ କିଛି ନକହି ମୋତେ ନିନ୍ଦା,ଅପମାନ ଦେବ। ପ୍ରତିଦିନ ନିନ୍ଦା, ଅପମାନ ଖାଇ ଖାଇ ମରିବା ଅପେକ୍ଷା ଆତ୍ମହତ୍ୟା କରିଦେବା ଭଲ।

ସାବିତ୍ରୀର ମାଆ କହିଲା-ତୁମେ ତାକୁ ଅଟକାଅନା ପୁଅ। ମୁଁ ବୁଢ଼ୀ ହେଲିଣି । ଆଜି ଅଛି କାଲି ମରିବି। ମୁଁ ମଲେ ସିଏ କାହା ପାଖରେ ରହିବ? ତାକୁ ମରିବାକୁ ଦିଅ। ସିଏ ମରିଗଲେ ତରିଯିବ। ସିଏ ବଞ୍ଚି ରହିଲେ ତାର କ'ଣ ହେବ? ତାକୁ କିଏ ବାହାହେବ?

ସମସ୍ତଙ୍କୁ ବିସ୍ମିତ କରି ଅମିତ ଉତ୍ତର ଦେଲା-ସାବିତ୍ରୀଙ୍କର କି  ଆପଣଙ୍କର ଯଦି କିଛି ଆପତ୍ତି ନଥାଏ ତାହେଲେ ମୁଁ ତାଙ୍କୁ ବିବାହ କରି ମୋ ପତ୍ନୀର ଆସନ ଦେବାକୁ ପ୍ରସ୍ତୁତ ଅଛି।

ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

ସାବିତ୍ରୀ ଓ ତା' ମାଆ ଅବାକ୍ ହୋଇ ଅମିତର ମୁହଁକୁ ଅନାଇ ରହିଲେ ।

ଧୀରେ ଧୀରେ ଗହଳି ଭାଙ୍ଗିଗଲା । ସେଇ ରାସ୍ତାରୁ ଅମିତ ସାବିତ୍ରୀର ହାତ ଧରି ତା ଘରକୁ ନେଇଗଲା ।ତାପର ଦିନ ବୈଦିକ ରୀତିରେ ଅମିତ ସହିତ ସାବିତ୍ରୀର ବିଭାଘର ସଂପନ୍ନହେଲା । ସାବିତ୍ରୀ ବିଭାଘରର ସମସ୍ତ ଖର୍ଚ୍ଚ ଆମ କ୍ୟାଣ୍ଟନ୍‌ମେଣ୍ଟ୍‌ର ଲୋକମାନେ ବହନ କଲେ । ସେ ବିଭାଘରରେ ଅମିତର ମାଆ ଆଉ ସାବିତ୍ରୀର ମାଆ କର୍ତ୍ତା ହୋଇ ବେଦୀରେ ବସିଲେ ।

ଏତେ ସମୟ ମୁଁ ଚୁପ୍‌ହୋଇ ମୋ ଝିଅ ଅସୀମାର କଥା ଶୁଣୁଥିଲି । ମୁଁ ନିଜକୁ ଆଉ ଆୟତରେ ରଖି ନପାରି କହିଲି-ଖୁବ୍ ଚମତ୍କାର କାହାଣୀଟିଏ ତୁ ଆଜି ଶୁଣାଇଲୁ ଅସୀମା ।

ସିଏ ପ୍ରତିବାଦ କଲା-ନା,ନା, ଡାଡ଼ି ! ଏଟା ଆଦୌ ମନଗଢ଼ା କାହାଣୀ ନୁହେଁ । ନିଛକ ସତ ଘଟଣା । ଏଥିରେ ଥିବା ସବୁ ଚରିତ୍ର ମୋର ଚିହ୍ନାଜଣା । ଅମିତକୁ ତୁମେ ଏଠି ଦେଖିକି ଯାଇଛ । ଆମ କ୍ୟାମ୍ପସ୍‌ରେ ରହୁଥିବା ସାବିତ୍ରୀ ଆଉ ତା'ମାଆକୁ ବି ତୁମେ ନିଜ ଆଖିରେ ଦେଖିଚ । ଅମିତ ଓ ସାବିତ୍ରୀଙ୍କ ବାହାଘର ଆମ ଏଇ କ୍ୟାଣ୍ଟନମେଣ୍ଟ୍‌ର ପରିସରରେ ହେଲା ଆମ ସମସ୍ତଙ୍କ ଆଖି ସାମନାରେ । ଯାକୁ ତୁମେ କାହାଣୀ ବୋଲି କେମିତି କହି ପାରୁଛ ?

ମୁଁ ଗମ୍ଭୀର କଣ୍ଠରେ ଉତ୍ତର ଦେଲି-କାହାଣୀ ବୋଲି କହୁଛି କାହିଁକିନା, ଅମିତ ପରି ସତ ଚରିତ୍ର ଆମ ଚାରିପାଖରେ ଆଉ ଦେଖିବାକୁ ମିଳୁ ନାହାଁନ୍ତି । ଏମିତିଆ ଆଦର୍ଶ ଚରିତ୍ରମାନଙ୍କୁ ଆମେ ଦେଖିବାକୁ ପାଉଛୁ କେବଳ ଗଳ୍ପ, ଉପନ୍ୟାସ, ସିନେମା କି ସିରିୟାଲମାନଙ୍କରେ ।

ଅସୀମା ଯୁକ୍ତି ବାଢ଼ିଲା-ଅମିତ ପରି କିଛି ଚରିତ୍ର ଏବେ ବି ଆମ ଚାରିପାଖରେ ଅଛନ୍ତି । କିନ୍ତୁ ଅନ୍ୟମାନଙ୍କ ପରି ସେମାନେ ନିଜକୁ ବିଜ୍ଞାପିତ କରନ୍ତି ନାହିଁ ।

ମୁଁ ଚୁପ୍ ରହିଲି । ମୋର ମୌନତାକୁ ସମ୍ମତିର ଲକ୍ଷଣ ବୋଲି ଧରିନେଇ ଅସୀମା ଫୋନ୍ କାଟିଦେଲା ।

କିଛି ଦିନ ପର୍ଯ୍ୟନ୍ତ ଅମିତର ହସହସ ମୁହଁ, ଖୁସି ଖୁସି ଭାବ ସଂବଳିତ ଚରିତ୍ର ମୋ ଚିନ୍ତା ଓ ଚେତନାକୁ ଆଚ୍ଛାଦିତ କରି ରଖିଲା । କିନ୍ତୁ ବାର୍ଦ୍ଧକ୍ୟ ଜନିତ ବିଭିନ୍ନ ସ୍ୱାସ୍ଥ୍ୟଗତ ସମସ୍ୟା ଭିତରେ ମୁଁ ଘାଣ୍ଟି ଚକଟି ହୋଇ ଅମିତର ଚରିତ୍ରକୁ ଭୁଲିବାକୁ ବସିଥିବା ବେଳେ ପ୍ରାୟ ପାଞ୍ଚ ବର୍ଷ ହଠାତ୍ ପୁଣି ଦିନେ ଅସୀମା ଫୋନ୍‌କରି ମୋତେ ଜଣାଇଲା ଯେ ସିଏ ଅମିତକୁ ଭେଟିଥିଲା କାଶ୍ମୀରର ଗୋଟେ ସାମରିକ ହସପିଟାଲ୍‌ରେ । ଆତଙ୍କବାଦୀମାନଙ୍କୁ ମୁକାବିଲା କରିବା ପାଇଁ ଗୋଟେ ସାମରିକ ଦଳ ସହିତ ଅମିତ କାଶ୍ମୀରର ଗୋଟେ



Digitized by srujanika@gmail.com

କ୍ୟାମ୍ପରେ ଥିବାବେଳେ ଆତଙ୍କବାଦୀମାନେ କ୍ୟାମ୍ପ ଉପରେ ଆକ୍ରମଣ କଲେ । ସମସ୍ତ ଆତଙ୍କବାଦୀଙ୍କୁ ନିପାତ କରିବାକୁ ସେମାନେ ସଫଳ ହୋଇଥିଲେ ମଧ୍ୟ ତାଙ୍କ କ୍ୟାମ୍ପର ଦୁଇଜଣ ସିପାହୀ ସହିଦ ହେଲେ, ଜଣେ କ୍ୟାପଟେନ୍ ତାଙ୍କ ହାତ ହରାଇଲେ ଆଉ ଅମିତକୁ ଗୋଟେ ଗୋଡ଼ ହାଇବାକୁ ପଡ଼ିଲା ।

ମୋ ଆଖିରୁ ଦୁଇ ଧାର ଲୁହ ଖସି ମୋ ଛାତି ତିନ୍ତାଇ ଦେଲା । ମୁଁ ଉଲ୍କଣ୍ଠିତ ହୋଇ ପଚାରିଲି –ତୁ ଅମିତ ସହିତ ନିଜେ କଥା ହୋଇଛୁ ? ସିଏ କେମିତି ଅଛି ?

ବାକ୍‌ରୁଦ୍ଧ କଣ୍ଠରେ ଅସୀମା ଉତ୍ତର ଦେଲା-ହଁ, ମୁଁ ଅମିତକୁ ହସପିଟାଲରେ ଦେଖା କରିଛି । ତା'ବାମ ଗୋଡ଼ଟା ଆଣ୍ଠୁ ତଳକୁ କଟା ଯାଇ ସେ ସ୍ଥାନରେ ଗୋଟେ କୃତ୍ରିମ ଗୋଡ଼ ଲଗା ଯାଇଛି । ସେଇଥିରେ ସିଏ ଚାଲିବା ଅଭ୍ୟାସ କରୁଚି । ଆଗ ପରି ହସ ହସ ମୁହଁ, ଖୁସି ଖୁସି ଭାବ । ସିଏ ମତେ କ'ଣ କହିଲା ଜାଣନ୍ତି ଡ଼ାଡ଼ି ? ସିଏ ହସି ହସି କହିଲା-ଏବେ ମୁଁ ଚାଲିବା ଅଭ୍ୟାସ କରୁଛି, ଆଉ କିଛିଦିନ ପରେ ଦଉଡ଼ିବା ଅଭ୍ୟାସ କରିବି ।

ମୁଁ ଆଶ୍ଚର୍ଯ୍ୟ ହୋଇ ତାକୁ ପଚାରିଲି-ତୁମେ ଗୋଟେ ଗୋଡ଼ ହରାଇବି ଏତେ ଖୁସି କେମିତି ଅଛ ? ତୁମ ମନ ଦୁଃଖ ହୁଏନା ?

ସିଏ କ'ଣ ଉତ୍ତର ଦେଲା ଶୁଣିବ ଡାଡି ! ସିଏ ହସି ହସି କହିଲା-ମୁଁ ଭାଗ୍ୟବାନ ଯେ ଆମ ସାଙ୍ଗରୁ ଦୁଇ ଜଣଙ୍କୁ ଜୀବନ ଦେବାକୁ ପଡ଼ିଲା ବେଳେ ମୋର କେବଳ ଗୋଟେ ଗୋଡ଼ ଯାଇଛି,ତାହା ପୁଣି ଆଣ୍ଠୁଠୁ ତଳକୁ । ମୁଁ ଏବେ ଚାଲିଲିଣି । କିଛି ଦିନ ପରେ ହୁଏତ ଦଉଡ଼ିବି ।

ମୁଁ କହିଲି- କି ଉପାଦାନରେ ଗଢ଼ା ଏଯୁବକର ମନ ଆଉ ହୃଦୟ ? ହସି ହସି ସବୁ ପରିସ୍ଥିତିର ସାମନା କରୁଛି । କୌଣସି କଥା ପାଇଁ ଦୁଃଖ ନାହିଁ କି ଅନୁଶୋଚନା ନାହିଁ । ଏମିତି ଲୋକ ଆଗରେ ଦୁଃଖ ଆଉ ଦୁର୍ଦ୍ଦଶା ମୁଣ୍ଡ ନୁଆଁଇବାକୁ ବାଧ୍ୟ ।

ମୁଁ ସେଇ ଦିନଠୁ ନିଜ ମନକୁ ଶକ୍ତକଲି ମୋର ବାର୍ଦ୍ଧକ୍ୟ ଜନିତ ବ୍ୟଥା ବେଦନା, ଶାରୀରିକ ଅସୁସ୍ଥତା ଆଉ ଦୁର୍ବଳତା ବିରୁଦ୍ଧରେ ଲଢ଼ିବା ପାଇଁ । ମୁଁ ଯେତେବେଳେ ଟିକେ ଦୁର୍ବଳ ହୋଇ ପଡୁଥିଲି ସେତେବେଳେ ଅମିତ କଥା ସ୍ମରଣ କରି ଶକ୍ତି ସଂଚୟ କରୁଥିଲି ।

କିଛି ବର୍ଷ ପରେ ହଠାତ୍ ଦିନେ ଖବରକାଗଜ ପୃଷ୍ଠାରେ ଅମିତର ଫଟୋ ବାହାରିଥିବାର ଦେଖି ଚମକି ପଡ଼ିଲି । ଖୁବ୍ ଖୁସିରେ ଫାଟିପଡ଼ି ଅସୀମାକୁ ଫୋନ୍ ଲଗାଇ କହିଲି-ଆରେ ମାଆ ଅସୀମା ! ଅମିତର କରାମତି କଥା ତୁ ଜାଣିଲୁଣି ନା ନାହିଁ ?

ଅସୀମା ଉତ୍ତର ଦେଲା-ନାଇଁ ଡାଡ଼ି ! ଆମର ରୁର୍‌କୀରୁ ପଞ୍ଜାବକୁ ଟ୍ରାନ୍ସଫର ହେବା ଦିନଠୁ ମୁଁ ଆଉ ତାର କିଛି ଖବର ରଖିନାହିଁ । ସିଏ ପୁଣି କ'ଣ କରିଚି ?

ଆନଂଦ ଚଂଦ୍ର ପଣ୍ଡି

Digitized by srujanika@gmail.com

ମୁଁ ହସି ହସି କହିଲି-ଆଜିର ଟାଇମସ୍ ଅଫ୍ ଇଣ୍ଡିଆ ଦେଖ୍ , ସବୁ ଜାଣି ପାରିବୁ । ତାର ଗୋଟେ ଗୋଡ଼ କଟାଯିବା ପରେ ମଧ୍ୟ ସିଏ ପରାଜୟ ସ୍ୱୀକାର କରିନାହିଁ । କ୍ରିକେଟ ଖେଳୁଛି ।ଏମିତି ସେମିତି ଖେଳୁନାହିଁ, ସିଏ ଏବର୍ଷ ବିଶ୍ୱର ସବୁଠୁ ଶ୍ରେଷ୍ଠ ଭିନ୍ନକ୍ଷମ କ୍ରିକେଟିୟର ଭାବେ ଇଂଲଣ୍ଡରୁ ଟ୍ରଫି ଗ୍ରହଣ କରୁଥିବାର ଫଟୋ ବାହାରିଛି । ଇଏ କ'ଣ କମ୍ ବଡ଼ ଗୌରବର କଥା ?

ଅସୀମା ତାପରେ ଅତି ଖୁସିରେ ଆତ୍ମହରା ହୋଇ କହିଲା-ଏବେ ମୁଁ ଫୋନ୍ ରଖୁଛି ଡାଡି ! ମୋ ପାଖରେ ଅମିତର ମୋବାଇଲ ଫୋନ୍ ନମ୍ବରଟା ଥିଲା । ତାକୁ ଆଗ କଂଗ୍ରାଚୁଲେସନ୍ ଜଣାଏଁ ତାପରେ ତୁମ ସାଙ୍ଗରେ କଥାହେବି ।

ଅସୀମା ଫୋନ୍ ରଖିବା ପୂର୍ବରୁ ମୁଁ ତାକୁ କହିଲି –ଠିକ୍ ଅଛି ମାଆ ! ମୋ ତରଫରୁ ମଧ୍ୟ ଅମିତକୁ କଂଗ୍ରାଚୁଲେସନ୍ ଜଣାଇ ଦେବୁ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଫୋନ୍ ଏନ୍‌ଗେଜ୍‌ଡ଼

ପ୍ରାତଃଭ୍ରମଣ ବେଳେ ବନ୍ଧୁ ସତ୍ୟବାବୁଙ୍କ ଆଗରେ କଥାଟା ପକାଇଲେ ମନୁବାବୁ । ସତ୍ୟବାବୁ ପରାମର୍ଶ ଦେଲେ ମଧ୍ୟସ୍ଥି ଜରିଆରେ ବିବାହ ପ୍ରସ୍ତାବ ଖୋଜିବା ଏକମାତ୍ର ବାଟ ନୁହଁ । ଏଥିପାଇଁ ଆହୁରି ଅନେକ ବାଟ ଏବେ ଖୋଲିଲାଣି । ଏଇ ଯେମିତି ମ୍ୟାରେଜବ୍ୟୁରୋ,ଦୈନିକ ଖବରକାଗଜର ବିଜ୍ଞାପନ ଆଉ ଇଣ୍ଟରନେଟ୍‌ର ବିଜ୍ଞାପନ ଦ୍ୱାରା ଏ ସବୁକାମ ଏବେ ଅଳ୍ପ ସମୟ ମଧ୍ୟରେ ସହଜରେ  ହୋଇ ପାରୁଛି ।

କଥାଟା ଯଦିଓ ମନୁବାବୁ ପୂର୍ବରୁ ଜାଣିଥିଲେ ତଥାପି ତାଙ୍କ ଇଞ୍ଜିନିୟର ପୁଅର ବିଭାଘର ପ୍ରସ୍ତାବ ଆପେ ଆପେ ତାଙ୍କ ପାଖକୁ ବହୁ ସଂଖ୍ୟାରେ ଆସିବ ବୋଲି ସିଏ ମନେ ମନେ ଭାବି ନେଇଥିଲେ । କିନ୍ତୁ ଏଟା ଗାଆଁ ନୁହଁ , ଭୁବନେଶ୍ୱର ସହର । ଏଠି କେହି କାହା ବିଷୟରେ କିଛି ଖବର ରଖନ୍ତି ନାହିଁ । ମନୁବାବୁ ମଧ୍ୟ ତାଙ୍କ ପଡ଼ୋଶୀମାନଙ୍କ ବିଷୟରେ କିଛି ତଥ୍ୟ ରଖି ନାହାଁନ୍ତି । ଗାଆଁ କଥା ନିଆରା । ଗାଆଁର ଗୋଟିଏ ପିଲା ଇଞ୍ଜିନିୟରିଙ୍ଗ୍ ପାଠ ପଢ଼ି ସହରରେ ଚାକିରି କଲେ, ଆଖପାଖ ଦଶ ଖଣ୍ଡ ଗାଆଁର ଲୋକ ଜାଣନ୍ତି । ଇଞ୍ଜିନିୟର ପୁଅର ବାପା ପାଖରେ ସ୍ୱତଃ ବହୁ ସଂଖ୍ୟାରେ ବିବାହ ପ୍ରସ୍ତାବ ପହଞ୍ଚେ । ଏବେ ଭୁବନେଶ୍ୱରରେ ପ୍ରତିଘରେ ଗୋଟେ, ଦୁଇଟା ଇଞ୍ଜିନିୟର । କାହା ଖବର କିଏ କାହିଁକି ରଖିବ ?

ସତ୍ୟବାବୁଙ୍କୁ ସାଙ୍ଗରେ ଧରି ମନୁବାବୁ ଦୁଇଟା ମ୍ୟାରେଜବ୍ୟୁରୋ,ଗୋଟିଏ ଦୈନିକ ଖବରକାଗଜ ଓ ଇଣ୍ଟରନେଟ୍ ସହିତ ସଂପର୍କ କଲେ । ଆଠ ଦିନ ଭିତରେ ପନ୍ଦରଟି ବିବାହ ପ୍ରସ୍ତାବ ଆସିଲା । ବିଜ୍ଞାପନରେ ଇଞ୍ଜିନିୟରିଙ୍ଗ୍ ପଢୁଥିବା ଝିଅ ଆବଶ୍ୟକ ବୋଲି  ସୂଚନା ଦିଆ ଯାଇଥିଲେ ମଧ୍ୟ ସେଥିରେ ମାତ୍ର ଗୋଟିଏ ପ୍ରସ୍ତାବଥିଲା ଇଞ୍ଜିନିୟରିଙ୍ଗ ପଢୁଥିବା ଝିଅର । ଅବଶିଷ୍ଟ ପ୍ରସ୍ତାବ ମଧ୍ୟରୁ ପାଞ୍ଚଟି ଝିଅ ଇଞ୍ଜିନିୟରିଙ୍ଗ୍ ପଢ଼ିସାରି ଚାକିରି କରୁଛନ୍ତି । ଦୁଇଟି ଝିଅ ଇଂରାଜୀରେ ପି.ଜି. କରିଛନ୍ତି, ଏମ.ବି.ଏ. ପଢ଼ି ଚାକିରି କରିଥିବା ଝିଅ ହେଲେ ଚାରି ଜଣ ଓ ଏମ.ସି.ଏ କରିଥିବା ଝିଅ ଥିଲେ ତିନୋଟି ।

ଏସବୁ ପ୍ରସ୍ତାବକୁ ମନୁବାବୁ ଓ ତାଙ୍କ ସ୍ତ୍ରୀ ମିନତୀଦେବୀ ତନ୍ନ, ତନ୍ନ କରି ଦେଖିବା ପରେ କାଟ୍ ଖାଇଗଲା ଅନେକ ପ୍ରସ୍ତାବ । ବାକି ଚାରୋଟି ପ୍ରସ୍ତାବ ସେମାନଙ୍କ ମନ ପସନ୍ଦ ହେଲା । ସେମାନଙ୍କ ଫଟୋ ଓ ବାୟୋଡ଼ାଟା କୋରିଅର ଯୋଗେ ସନ୍ଦୀପ ପାଖକୁ ସୁନାବେଡ଼ା ପଠାଇ ଦେଲେ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସନ୍ଦୀପ ଫଟୋ ଓ ବାୟୋଡ଼ାଟା ପାଇବା ପରେ ବାପାଙ୍କୁ ଫୋନ୍ କରି କହିଲା-ଫଟୋରୁ ଝିଅ ବାଛିବା ଠିକ୍ ନୁହଁ । ଆଜିକାଲି ଫଟୋ ଷ୍ଟୁଡ଼ିଓ ଓ ବିୟୁଟି ପାରଲର୍ ମିଶି ଝିଅମାନଙ୍କ ଫଟୋକୁ ସୁନ୍ଦର କରି ଆମ ଆଗରେ ପେସ୍ କରୁଛନ୍ତି । ତେଣୁ ଝିଅଙ୍କ ଫଟୋରୁ ସୁନ୍ଦର ,ଅସୁନ୍ଦର ଜାଣିବା ସହଜ କି ସମ୍ଭବ ନୁହଁ । ତୁମେ ଆଉ ବୋଉ ଦୁଇ ଜଣଯାକ ଯାଇ ଝିଅ ଦେଖିଆସ । ତୁମେ ଯେଉଁ ସବୁ ଝିଅକୁ ପସନ୍ଦ କରିବ , ମୁଁ ଯାଇ ସେମାନଙ୍କୁ ଦେଖିବି ।

ମନୁବାବୁ ମନା କଲେ-ନା,ନା । ବିୟୁଟି ପାରଲରରୁ ଝିଅମାନେ ମେକ୍ ଅପ୍ ହୋଇ ଏମିତି ରଙ୍ଗ ବଦଳାଇ ଆସୁଚନ୍ତି , ସେମାନେ କଳା ନା ଗୋରା, ସୁନ୍ଦର କି ଅସୁନ୍ଦର ତାହା ଆମେ ଜାଣି ପାରିବୁ ନାହିଁ । ଆମର ଦୃଷ୍ଟି ଶକ୍ତି କିଛିଟା ଦୁର୍ବଳ ହେଲାଣି । ତାଛଡ଼ା ଗୋଟେ ଝିଅକୁ ଆମେ ଦେଖିବୁ ପୁଣି ତୁ ଦେଖିବୁ, ଏଇଟା ଭଲ ହେବନାହିଁ । ଏବକା ଶିକ୍ଷିତ ଝିଅମାନେ ଏଇ ଦେଖାଦେଖି ପର୍ବକୁ ପସନ୍ଦ କରୁ ନାହାଁନ୍ତି । କେବଳ ତାଙ୍କ ବାପା,ମାଆଙ୍କ ବାଧ୍ୟ ବାଧକତା ଯୋଗୁ ଆସି ବସୁଛନ୍ତି । ତେଣୁ ତୁ ଗୋଟେ କାମ କର । ସପ୍ତାହଟେ ଛୁଟି ନେଇକି ଆସ । ସବୁ ଝିଅଙ୍କୁ ଆମେ ସାଙ୍ଗହୋଇ ଦେଖିବା ଆଉ ଫାଇନାଲ୍ କରିଦେବା ।

ସଂବିତ ଟିକେ ଥତ୍‌ମତ୍ ହୋଇ କହିଲା-ଏଇଟା ମାର୍ଚ୍ଚମାସ, ଫାଇନାନସିଆଲ ଇୟର କ୍ଲୋଜିଙ୍ଗ ସମୟ । ମତେ ଏବେ ଛୁଟି ମିଳିବ ନାହିଁ । ଆଉ ମାସକ ପରେ ମୁଁ ଛୁଟିନେଇ ଭୁବନେଶ୍ୱର ଯିବି । ସେଇ ସମୟରେ ସବୁ ପ୍ରସ୍ତାବ ଫାଇନାଲ୍ କରିଦେବା ।

ମିନତୀଦେବୀ କହିଲେ-ଯାଉ ମାସଟେ କିଛି ଅସୁବିଧା ନାହିଁ । ଅପ୍ରେଲ ମାସରେ ଝିଅଦେଖା କାମ ସରିଲେ, ଜୁନ ମାସରେ ବାହାଘର ହେବ ।

ମନୁବାବୁ ମଧ୍ୟ ସେଥିରେ ସମ୍ମତ ହେଲେ ।

ଅପ୍ରେଲ ମାସ ଦ୍ୱିତୀୟ ସପ୍ତାହରେ ସନ୍ଦୀପ ସୁନାବେଡ଼ାରୁ ଆସି ଭୁବନେଶ୍ୱରରେ ପହଞ୍ଚିଲା । ମନୁବାବୁ କନ୍ୟା ପିତାମାନଙ୍କ ସହିତ ଫୋନ୍‌ରେ କଥାବାର୍ତ୍ତା କରି ଝିଅଦେଖା ପାଇଁ ନିର୍ଦ୍ଦିଷ୍ଟ ଦିନ ଓ ସମୟ ଧାର୍ଯ୍ୟ କଲେ ।

ଅପ୍ରେଲ ଦ୍ୱିତୀୟ ସପ୍ତାହରେ ମଧ୍ୟ ଖରା ଟାଣ । ଏୟାର କଣ୍ଡିସନ୍ ବ୍ୟବସ୍ଥା ଥିବା କାର୍‌ଟିଏ ଟ୍ରାଭେଲ୍ସରୁ ବୁକ୍ କରାଗଲା ।ଚାରୋଟି ପ୍ରସ୍ତାବ ମଧ୍ୟରୁ ଦୁଇଟି ଭୁବନେଶ୍ୱରରେ ଓ ଦୁଇଟି କଟକରେ ।

କାର୍‌ଟି ଠିକ୍ ସମୟରେ ଆସି ପହଞ୍ଚିଲା । ପ୍ରଥମ ପ୍ରସ୍ତାବ ଦେଖିବାକୁ ମନୁବାବୁ, ମିନତୀ ଦେବୀ ଓ ସନ୍ଦୀପ ସକାଳ ଆଠଟା ତିରିଶ ମିନିଟ୍‌ରେ ବାହାରିଲେ । ଝିଅଘରଟି ଭୁବନେଶ୍ୱରର ଟଙ୍କପାଣି ରୋଡ଼ର ରତ୍ନାକରବାଗରେ । ଘର ଖୋଜିବାକୁ ଦଶ ମିନିଟ୍



Digitized by srujanika@gmail.com

ଲାଗିଲା । ତେବେ ସେତେ ବେଶି ଅସୁବିଧା ହେଲାନାହିଁ ।

ଝିଅର ବାପା ବିରଞ୍ଚିବାବୁ ହସି ହସି ସେମାନଙ୍କୁ ଡ୍ରଇଁଗ୍ରୁମ୍‌କୁ ପାଛୋଟି ନେଲେ । ପ୍ରଥମେ ଥଣ୍ଡା ପାନୀୟର ବ୍ୟବସ୍ଥା କରାଗଲା । କିଛି ସମୟ ଏଣୁତେଣୁ ଆଳାପ ଆଲୋଚନା ହେଲା । ଝିଅଟି ଇଞ୍ଜିନିୟରିଙ୍ଗ୍ ପରେ ବାଙ୍ଗାଲୋରରେ ଚାକିରି କରୁଛି । ଏଇଟା ତା' ଚାକିରିର ପ୍ରଥମ ବର୍ଷ । ସନ୍ଦୀପ ପାଞ୍ଚ ବର୍ଷହେଲା କେନ୍ଦ୍ର ସରକାରଙ୍କ କର୍ତ୍ତୃତ୍ୱାଧୀନ ଏକ କମ୍ପାନୀରେ ଚାକିରି କରୁଛି । ଏବେ ତାର ପରବର୍ତ୍ତୀ ପଦକୁ ପ୍ରମୋସନ ହେବ । ତାଙ୍କ କମ୍ପାନୀ ଏବେ ନବରତ୍ନ ଅନ୍ତର୍ଭୁକ୍ତ ହୋଇଛି । ସୁନାବେଡ଼ାର ଜଳବାୟୁ ଭଲ । କେହି କେହି ସୁନାବେଡ଼ାକୁ ଓଡ଼ିଶାର କାଶ୍ମୀର ବୋଲି କୁହନ୍ତି ।

କଥାବାର୍ତ୍ତା ଭିତରେ ମନୁବାବୁ ଘଣ୍ଟାକୁ ଚାହିଁଲେ । ଝିଅ ଆସିବାରେ ବିଳମ୍ବ ହେଉଛି । ଝିଅକୁ ଡାକିବାକୁ ବିରଞ୍ଚିବାବୁ ଘର ଭିତରକୁ ଗଲେ । ଦଶ ମିନିଟ୍ ସମୟ ଅତିବାହିତ ହେଲା,ତଥାପି ଝିଅ ଆସିଲା ନାହିଁ ।

ମନୁବାବୁ ବିରକ୍ତି ପ୍ରକାଶ କଲେ-କେତେ ସମୟ ଆଉ ଅପେକ୍ଷା କରିବା ?ତାଙ୍କ ଝିଅ ଘରେ ଅଛି ନା ବିୟୁଟି ପାରଲର୍ ଯାଇଛି ?

ମିନତୀଦେବୀ ସ୍ୱାମୀଙ୍କ କଥା କାଟି କହିଲେ-ତୁମେ ସେମିତି କାହିଁକି ଭାବୁଚ ? ଝିଅ ଯେତେ ଶିକ୍ଷିତା ହେଲେ ମଧ୍ୟ ସିଏ ଲଜ୍ଜାଶୀଳା । ତା'ଛଡ଼ା ଆଜିକାଲିକା ଉଚ୍ଚ ଶିକ୍ଷିତା ଝିଅମାନେ ଜିନ୍ ପ୍ୟାଣ୍ଟ ପିନ୍ଧୁଛନ୍ତି । ଶାଢ଼ି ପିନ୍ଧିବାକୁ ସେମାନଙ୍କୁ ସମୟ ଲାଗିବ ।

ଆଉ ଦଶ ମିନିଟ୍ ଅପେକ୍ଷା କରିବା ପରେ ଜିନ୍ ପ୍ୟାଣ୍ଟ୍ ସହିତ ସ୍ଲିଭଲେସ୍ ଟପ୍ ପରିହିତା ଝିଅଟିଏ ଠିଆ ଠିଆ ନମସ୍କାର କରି ସୋଫା ଚେୟାରରେ ବସିଲା ।

ଝିଅଟିର ଦେହର ରଙ୍ଗ , ମୁହଁର ଗଢ଼ଣ ଓ ଉଚ୍ଚତା ଖୁବ୍ ଭଲ । ମୋଟା ନୁହଁକି ପତଳା ନୁହଁ । ସୁନ୍ଦର ଚେହେରାର ଝିଅଟିଏ । ବୟସ ଛବିଶ କି ସତେଇଶ ହେବ ।

ସନ୍ଦୀପ ପଢ଼ିବା ଦୃଷ୍ଟିରେ ଝିଅଟିକୁ ଚାହିଁଲା । ମନୁବାବୁ ଓ ମିନତୀଦେବୀ ଝିଅର ଢ଼ଙ୍ଗଢ଼ାଙ୍ଗ ଦେଖି ତାଜୁବ ହେଲେ । ଝିଅଟି ଶାଢ଼ି ପରିବର୍ତ୍ତେ ଜିନ ପ୍ୟାଣ୍ଟ ପିନ୍ଧିଛି । ଭାବି ଶାଶୁ,ଶ୍ୱଶୁରଙ୍କ ପାଦଛୁଇଁ ପ୍ରଣାମ କରିବା ବଦଳରେ ମଥା ଉଠାଇ ହାତଯୋଡ଼ି ନମସ୍କାର କରୁଛି । ଝିଅଟା ଖୁବ୍ ଆଡ଼ାମେଣ୍ଟ ଅଛି ।

ବିରଞ୍ଚିବାବୁ ଅନୁରୋଧ କଲେ-ଝିଅକୁ କ'ଣ ପଚାରିବାର ଅଛି ପଚାରନ୍ତୁ ମନେନ୍ଦ୍ରବାବୁ !

ଅନିଚ୍ଛା ସତ୍ତ୍ୱେ ମନୁବାବୁ ସାଧାରଣ କେଇଟା ପ୍ରଶ୍ନ ପଚାରିଲେ -ବିଭାଘର ପରେ ବାଙ୍ଗାଲୋର ଚାକିରି କରିବ ନା ଚାକିରି ଛାଡ଼ିବ ? ରୋଷେଇବାସ କିଛି ଜାଣିଛ କି ? ତୁମର ହବି କ'ଣ ? ଆବଶ୍ୟକ ହେଲେ କିଛିଦିନ ଗାଆଁରେ ଚଳି ପାରିବ କି ?



Digitized by srujanika@gmail.com

ଝିଅଟି ଏସବୁ ପ୍ରଶ୍ନର ଠୋକ୍ ଠୋକ୍ ଉତ୍ତର ଦେଲା- ମୋ ବାପା ବହୁତ ଟଙ୍କା ଖର୍ଚ୍ଚକରି ମୋତେ ଇଞ୍ଜିନିୟରିଙ୍ଗ ପାଠ ପଢ଼ାଇ ଛନ୍ତି । ମୁଁ ବିବାହ ପରେ ମଧ୍ୟ ଚାକିରି କରିବି । ରୋଷେଇ କରିବା ମୁଁ ଏପର୍ଯ୍ୟନ୍ତ ଶିଖିନାହିଁ । ମୋର ହବି ହିନ୍ଦୀ ସିନେମା ଦେଖିବା । ମୁଁ ପିଲା ଦିନୁ ସହରରେ ବଢ଼ିଛି । ଗାଆଁ ଚଳଣି ମୋର ଅଭ୍ୟାସ ନାହିଁ କି ସେଥି ପ୍ରତି ମୋର ଆଗ୍ରହ ନାହିଁ ।

ଝିଅର ଏପରି ଉତ୍ତର ପରେ ସନ୍ଦୀପ କିଛି ପଚାରିବାକୁ ଉଚିତ ମନେକଲା ନାହିଁ । ଝିଅଟିକୁ ଆଉ କେହି କିଛି ନ ପଚାରିବାରୁ ମନୁବାବୁ କହିଲେ-ଠିକ୍ ଅଛି ତୁମେ ଏଥର ଆସିପାର ।

କାର୍‌ରେ ଘରକୁ ଫେରିବା ବେଳେ ମନୁବାବୁ କହିଲେ-ଏ ଝିଅଟିକୁ ପାଠ ପଢ଼ାଇ ତା'ବାପା ଶିକ୍ଷିତା କରିଛନ୍ତି ସତ , କିନ୍ତୁ ସଂସ୍କାର ଦେଇ ନାହାଁନ୍ତି । ଗୁରୁଜନମାନଙ୍କ ସହିତ କିପରି ବ୍ୟବହାର କରିବାକୁ ହୁଏ ସେ ତାହା ଜାଣି ନାହିଁ ।

ମିନତୀ ଦେବୀ କହିଲେ-ମତେ ଲାଗିଲା ଝିଅଟି ଉଗ୍ର ଆଧୁନିକା ଓ ଅହଙ୍କାରୀ ।

ସନ୍ଦୀପ ମତଦେଲା-ମୋତେ ଲାଗିଲା ଝିଅଟି ଆମ ପ୍ରସ୍ତାବ ସହିତ ସମ୍ମତ ନୁହଁ । କେବଳ ବାପା ମାଆଙ୍କ ବାଧ୍ୟ ବାଧକତାରେ ଆମ ଆଗକୁ ଆସିଥିଲା ।

ସେ ଦିନ ଦ୍ୱିତୀୟ ଝିଅଟିକୁ ଦେଖିବାକୁ ସେମାନେ ଅପରାହ୍ନରେ ପହଞ୍ଚିଲେ । ଖୁବ୍ ଭଲ ଆତିଥ୍ୟ ମିଳିଲା, କିନ୍ତୁ ସେମାନେ ଦେଖିବାକୁ ଯାଇଥିବା ଝିଅଟିର ଦେଖା ମିଳିଲା ନାହିଁ । ଝିଅର ବାପା ତା' ସାଙ୍ଗ ସାଥୀମାନଙ୍କ ଘରକୁ ଓ ତାଙ୍କର ସମସ୍ତ ସଂପର୍କିୟଙ୍କ ଘରକୁ ଫୋନ୍ କରି ଫେଲ୍ ମାରିଲେ । ଦୀର୍ଘ ଦେଢ଼ ଘଣ୍ଟାର ପ୍ରତୀକ୍ଷା ପରେ ମଧ୍ୟ ଝିଅଟି ଘରକୁ ଫେରିଲା ନାହିଁ । ମନୁବାବୁ ଓ ତାଙ୍କ ପରିବାର ସେଠାରୁ ଫେରିବାକୁ ବାଧ୍ୟ ହେଲେ । ଅବଶିଷ୍ଟ ଦୁଇଟି ଝିଅଙ୍କୁ ଦେଖିଯିବାକୁ ସନ୍ଦୀପ ଆଉ ରାଜି ହେଲାନାହିଁ । ସନ୍ଦୀପ ବିରକ୍ତ ହୋଇ ସୁନାବେଡ଼ା ଫେରିଯିବା ବେଳେ ତା'ମାଆଙ୍କୁ କହିଲା-ଏମିତି ଆଜେବାଜେ ପ୍ରସ୍ତାବ ପାଇଁ ମୋତେ ଆଉ କେବେ ଡକାଇବୁ ନାହିଁ । ବହୁକଷ୍ଟରେ ଛୁଟି ମିଳିଥିଲା, ଆଉ ଛୁଟି ମିଳିବ କି ନାହିଁ ସନ୍ଦେହ ।

ପରଦିନ ପ୍ରାତଃଭ୍ରମଣ ବେଳେ ମନୁବାବୁ ତାଙ୍କ ବନ୍ଧୁ ସତ୍ୟବାବୁଙ୍କୁ ଝିଅଦେଖା ବେଳର ସମସ୍ତ ବିବରଣୀ ଦେଇ ସାରି କହିଲେ-ମୁଁ ଆଶ୍ଚର୍ଯ୍ୟ ହେଉଛି ଏତେ ସୁନ୍ଦର ସୁନ୍ଦର ପ୍ରସ୍ତାବ ଏମିତି ଭାଙ୍ଗିଗଲା କାହିଁକି ?ମୋ ପୁଅ ସୁନ୍ଦର,ଶିକ୍ଷିତ,ଭଲ ଚାକିରି କରୁଚି, ଭଲ ଦରମା ବି ପାଉଚି । ତା'ସତ୍ତ୍ୱେ ଏ ଝିଅମାନେ ଏମିତି ବ୍ୟବହାର କାହିଁକି ଦେଖାଇଲେ ?ଆମର କ'ଣ କିଏ ଶତ୍ରୁ ଅଛି ଯିଏ ଆମ ବିରୁଦ୍ଧରେ ସେ ଝିଅମାନଙ୍କ ଘରେ କିଛି କହିଛି ?

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ସତ୍ୟବାବୁ ସବୁ ଶୁଣି ମୁରୁକି ମୁରୁକି ହସିଲେ ।କିଛି କହିଲେ ନାହିଁ ।ମନୁବାବୁ ତାଙ୍କୁ ପଚାରିଲେ-ସତ୍ୟ ! ତୁମେ ଏମିତି ହସୁଚ କାହିଁକି ? ଏଥିରେ ହସିବାର କ'ଣ ଅଛି ?

ସତ୍ୟବାବୁ ଯଥା ସମ୍ଭବ ହସ ଚାପି କହିଲେ-ଏଥିରେ ହସିବାର ଅନେକ କଥା ଅଛି । ମୁଁ କଥାଟା ସିଧା କହିଲେ ତୁମେ ହୁଏତ ବୁଝି ପାରିବ ନାହିଁ । ମୁଁ ଗୋଟେ ଘଟଣା କହୁଛି ଆଗ ଶୁଣ ।ମୋର ଆଉ ଜଣେ ବନ୍ଧୁ ଅଛନ୍ତି । ତାଙ୍କୁ ତୁମେ ଚିହ୍ନିନା । ତାଙ୍କ ନାଆଁ ପ୍ରକାଶ ଚୌଧୁରି ।ତାଙ୍କ ପୁଅ ଅଂଶୁମାନ ଜଣେ ଇଞ୍ଜିନିୟର । ସିଏ ଦିଲ୍ଲୀରେ ଗୋଟେ ମଲ୍ଟି ନେସନାଲ କମ୍ପାନୀରେ ଚାକିରି କରେ । ତା' ବିଭାଘର ପାଇଁ ବିଭିନ୍ନ ସ୍ଥାନରୁ ପ୍ରସ୍ତାବ ଆସିଲା । ସେଥିମଧ୍ୟରୁ ଗୋଟିଏ ଝିଅର ଜାତକ ଅଂଶୁମାନର ଜାତକ ସହିତ ଖୁବ୍ ସୁନ୍ଦର ଭାବେ ମ୍ୟାଚକଲା । ଏକା ରାଶି ,ଭିନ୍ନ ନକ୍ଷତ୍ର । ରାଜଯୋଟକ । ଅଂଶୁମାନ ଦିଲ୍ଲୀରୁ ଆସି ଝିଅ ଦେଖିଲା । ଝିଅଟି ଦେଖିବାକୁ ସୁନ୍ଦର, ଅର୍ଥନୀତିରେ ପି.ଜି. କରିଛି । କଥାବାର୍ତ୍ତା ଓ ବ୍ୟବହାର ଚମତ୍କାର । ଝିଅର ବାପା ଜଣେ ଅବସର ପ୍ରାପ୍ତ ପ୍ରଫେସର । ସମସ୍ତଙ୍କ ମନ ପସନ୍ଦ ହେଲା ଝିଅଟି ।

ସେଇଠି ବିବାହ କରିବାର ଏକ ପ୍ରକାର ସ୍ଥିରହେଲା ।କେବଳ ନିର୍ବନ୍ଧ ଓ ବିବାହ ଦିନ ପାଞ୍ଜିଦେଖି ନିର୍ଣ୍ଣୟ କରାଯିବ । ଅଂଶୁମାନ ଦିଲ୍ଲୀ ଫେରିଯିବା ଦିନ ବାପାଙ୍କଠୁ ସେ ଝିଅର ରାଶି ନକ୍ଷତ୍ର ଓ ଗ୍ରହମାନଙ୍କ ଅବସ୍ଥିତି ଚିହ୍ନିତ ଟିପଣାଟା ମାଗିନେଲା ।ଦିଲ୍ଲୀରେ ଜଣେ ବିଖ୍ୟାତ ଜ୍ୟୋତିଷଙ୍କ ସହିତ ତାର ଜଣାଶୁଣା ଅଛି । ତାଙ୍କର ଗଣନା ଅଭ୍ରାନ୍ତ । ସିଏ ତାଙ୍କୁ ଝିଅର ଗ୍ରହ ଓ ରାଶିଚକ୍ର ଦେଖାଇବ ।

ଦିଲ୍ଲୀରେ ପହଞ୍ଚିବାର ଦୁଇଦିନ ପରେ ଅଂଶୁମାନ ଫୋନ୍ କରି ବାପାଙ୍କୁ ଜଣାଇଲା- ଦିଲ୍ଲୀର ଜ୍ୟୋତିଷ ବିଶାରଦ ଗଣନା କରି କହିଲେ, ଏ ଝିଅ ସହିତ ବିବାହ ସଂପୂର୍ଣ୍ଣ ଅଶୁଭ । ଏ ଝିଅ ସହିତ ବିଭାଘର ହେଲେ ବିଭାଘରର ଏକ ବର୍ଷ ମଧ୍ୟରେ ତା' ସ୍ୱାମୀର ଦୁର୍ଘଟଣାରେ ମୃତ୍ୟୁହେବ ।

ମନୁବାବୁ ପ୍ରଶ୍ନ କଲେ-ତାହେଲେ ତ ସେ ବିବାହ ପ୍ରସ୍ତାବ ନିଶ୍ଚୟ ଭାଙ୍ଗି ଯାଇଥିବ । ଯେଉଁ ଝିଅକୁ ବିବାହକଲେ ପୁଅର ମୃତ୍ୟୁହେବ ସେପରି ପ୍ରସ୍ତାବରେ ପୁଅର ବାପା କି ମାଆ କେହି ରାଜି ହୋଇ ନଥିବେ ?

ଆପଣଙ୍କ ଅନୁମାନ ଠିକ୍ ମନୁବାବୁ। ଅଂଶୁମାନ ପ୍ରକାଶବାବୁଙ୍କର ଏକମାତ୍ର ପୁତ୍ର । ତେଣୁ ପ୍ରକାଶବାବୁ ସେ ପ୍ରସ୍ତାବ ଭାଙ୍ଗିଦେଇ ଅନ୍ୟ ପ୍ରସ୍ତାବ ଦେଖିଲେ । ଛ'ମାସ ପରେ ଆଉ ଗୋଟିଏ ସୁନ୍ଦର ଝିଅର ପ୍ରସ୍ତାବ ଆସିଲା ।

ଝିଅଟି ଶିକ୍ଷିତା ଓ ଗୁଣବତୀ । ପୁଅ ସହିତ ଜାତକ ରାଜଯୋଟକ ପଡ଼ିଲା ।



Digitized by srujanika@gmail.com

ଜ୍ୟୋତିଷଙ୍କୁ ଜାତକ ଦୁଇଟିକୁ ବିଭିନ୍ନ ଦିଗରୁ ବିଶ୍ଳେଷଣ କରି ଜାଣିଲେ ଝିଅ ପୁଅଙ୍କର ଦଶ ମେଳକ ଠିକ୍ ଅଛି । ଅଂଶୁମାନ ପୁର୍ବଥର ପରି ଏଥର ଦିଲ୍ଲୀରୁ ଆସି ଝିଅ ଦେଖିଲା । ଝିଅଟି ଅଂଶୁମାନର ପସନ୍ଦ ମଧ୍ୟ ହେଲା । କିନ୍ତୁ ଅଂଶୁମାନ ତାର ଶେଷ ନିଷ୍ପତ୍ତି ଜଣାଇବା ପୁର୍ବରୁ ଏଥର ମଧ୍ୟ ସେ ଝିଅଟିର ଜାତକର ଟିପଣା ସାଙ୍ଗରେ ଦିଲ୍ଲୀ ନେଇଗଲା ଓ ଦିଲ୍ଲୀର ସେଇ ବିଖ୍ୟାତ ଜ୍ୟୋତିଷଙ୍କୁ ଜାତକ ଦେଖାଇ ସାରିବା ପରେ ତା'ର ମତାମତ ଦେବବୋଲି କହିଗଲା ।

ଅଂଶୁମାନର ବାପା,ମାଆ ଅପେକ୍ଷା କଲେ । ଚାରି ଦିନପରେ ଅଂଶୁମାନ ଫୋନ୍ କରି ଜଣାଇଲା-ଜ୍ୟୋତିଷ ଝିଅର ଗ୍ରହ ଓ କ୍ଷତ୍ରଙ୍କ ଅବସ୍ଥିତିକୁ ଗଣନା କରି କହିଲେ, ଏ ଝିଅ ଚରିତ୍ରହୀନା ।

ଏଥର ମନୁବାବୁ ପ୍ରଶ୍ନକଲେ-ଆଚ୍ଛା, ସତ୍ୟବାବୁ! ଜ୍ୟୋତିଷ ପାଠ କ'ଣ ଭିନ୍ନ ଭିନ୍ନ ? ଭୁବନେଶ୍ୱର ଜ୍ୟୋତିଷ ଗଣନା କରି ଯେଉଁ ଝିଅକୁ ଭଲବୋଲି କହୁଚନ୍ତି , ଦିଲ୍ଲୀ ଜ୍ୟୋତିଷ ସେଇ ଝିଅକୁ କେମିତି ଖରାପ ବୋଲି କହୁଛନ୍ତି ? ତାଛଡ଼ା ଜାତକରୁ କେମିତି ଜଣା ପଡ଼ିବ କେଉଁ ଝିଅର ଚରିତ୍ର ଭଲ ଆଉ କେଉଁ ଝିଅର ଚରିତ୍ର ଖରାପ ?

ସତ୍ୟବାବୁ ଏଥର ଠୋ ଠୋ ହୋଇ ହସି ଉଠିଲେ । ହସୁ ହସୁ କହିଲେ-ଜ୍ୟୋତିଷ ପାଠ ସବୁଠି ସମାନ । କିନ୍ତୁ ଇଏ ହେଉଛି ଭଲ ପାଇବାର କମାଲ । ଆଜିକାଲିର ସମୟ ହେଉଛି - 'ଆଇ ଲଭ୍ ଇୟୁ'ର ସମୟ । ଅଂଶୁମାନ ନିଶ୍ଚୟ ଦିଲ୍ଲୀର କୌଣସି ଝିଅକୁ ଭଲ ପାଉଛି । ସେ ଝିଅଟି ହୁଏତ ତାଙ୍କ ଜାତିର କି ଧର୍ମର ଝିଅ ନୁହଁ କିମ୍ବା ଅନ୍ୟ କିଛି କାରଣ ବି ଥାଇପାରେ । ଏଇ ଯେମିତି ସେ ଝିଅର ବଡ଼ ଭଉଣୀ ଏପର୍ଯ୍ୟନ୍ତ ବିବାହ କରି ପାରି ନଥିବ କିମ୍ବା ଝିଅଟିର ପାଠ ପଢ଼ା ଏପର୍ଯ୍ୟନ୍ତ ସରି ନଥିବ ନତୁବା ଝିଅଟି ତା' ବାପା ମାଆଙ୍କ ଆଗରେ ମୁହଁ ଖୋଲି ଏ ପ୍ରସ୍ତାବ ଦେଇ ପାରୁ ନଥିବ ।

ମନୁବାବୁଙ୍କ ମନକୁ କଥାଟା ପାଇଲା । ସିଏ କହିଲେ -ହଁ,ହଁ । ସେମିତି ବି ହୋଇପାରେ । ସେ ଝିଅଟିକୁ ଭଲ ପାଉଥିବା କଥା ଅଂଶୁମାନ ତା'ବାପା ମାଆଙ୍କୁ କହି ନପାରି ଏମିତି ନାଟକ କରୁଥାଇ ପାରେ । କିନ୍ତୁ ଆପଣ ମୋତେ ଏ ଅଂଶୁମାନ କଥା କାହିଁକି କହିଲେ ? ମୋ ପୁଅ ସନ୍ଦୀପର ବିବାହ ସହିତ ଏକଥାର କି ସଂପର୍କ ରହିଛି ?

-ଅଛି ମନୁବାବୁ! ଅଛି । ସନ୍ଦୀପକୁ ସାଙ୍ଗରେ ନେଇ ଆପଣ ଯେଉଁ ଦୁଇଟି ଝିଅ ଦେଖିବାକୁ ଗଲେ, ମୋର ମନେହୁଏ ସେମାନେ ପ୍ରତ୍ୟେକ ସେଇ ଭଲ ପାଇବାର ଥୋପ ଗିଳିଛନ୍ତି । 'ଆଇ ଲଭ୍ ଇୟୁ'ର ବନ୍‌ସି କଣ୍ଟା ତାଙ୍କ ତଣ୍ଟିରେ ଅଟକିଛି । ସେମାନେ ପାଠ ପଢ଼ିବା ବେଳେ ହେଉ କି ଚାକିରି କରିବା ବେଳେ ହେଉ, ତାଙ୍କ ଜୀବନ ସାଥୀ ବାଛି ସାରିଛନ୍ତି । ଆଜିକାଲିର ପ୍ରତ୍ୟେକ ପୁଅ ଓ ଝିଅଙ୍କ ହାତରେ ମୋବାଇଲ୍ ଫୋନ୍ ।



Digitized by srujanika@gmail.com

ମନଖୋଲା କଥାବାର୍ତ୍ତା କରିବାରେ କି କାହା ସହିତ ସଂପର୍କ ରଖିବାରେ ଆଉ କିଛି ବାଧା ବନ୍ଧନ ନାହିଁ । ଅଧିକାଂଶ ସୁନ୍ଦରୀ ଓ ଶିକ୍ଷିତ ଝିଅ ତାଙ୍କ ପାଠ ପଢ଼ା ଜୀବନରେ ନଚେତ ଚାକିରି ଜୀବନରେ ଦେଖା ସାକ୍ଷାତ ଓ ଆଳାପ ଆଲୋଚନା ମାଧ୍ୟମରେ ନିଜର ବୟଫ୍ରେଣ୍ଡ ବାଛି ନେଉଛନ୍ତି । ସେଇ ବୟଫ୍ରେଣ୍ଡ ସମୟକ୍ରମେ ଜୀବନ ସାଥୀରେ ପରିଣତ ହେଉଛି ।

ପାଠପଢ଼ା ଶେଷରେ ଯେଉଁ ଝିଅକୁ କୌଣସି ବୟଫ୍ରେଣ୍ଡ ମିଳୁ ନାହିଁ , ସିଏ ନିଜକୁ ରିଜେକ୍ଟେଡ୍ ବୋଲି ମନେକରୁଛି । ଯେଉଁ ଝିଅମାନଙ୍କୁ ବୟଫ୍ରେଣ୍ଡ ମିଳୁଛି ସେମାନେ ନିଜକୁ ଗର୍ବିତ ଓ ଗୌରବାନ୍ୱିତ ମନେ କରୁଛନ୍ତି । ଝିଅମାନଙ୍କ ଭଲ ପାଇବା ଯେତେ ନିବିଡ଼ ହୁଏ ତାଙ୍କ ସଂପର୍କ ସେତେ ଗାଢ଼ ଓ ଦୃଢ଼ ହୁଏ ।

ପୁଅମାନଙ୍କ କଥା ବି ଠିକ୍ ସେମିତି । ମେଧାବୀ ,ସୁନ୍ଦର ଓ ସ୍ମାର୍ଟ ପୁଅମାନଙ୍କୁ ସହଜରେ ଗାର୍ଲଫ୍ରେଣ୍ଡ ମିଳିଯାଏ । ଯେଉଁ ଅବିବାହିତ ପୁଅର ଆଜିକାଲି ଗାର୍ଲଫ୍ରେଣ୍ଡ ନାହିଁ ସେ ପୁଅ ନିଜକୁ ନ୍ୟୁନ ମନେକରୁଛି ।

ଏଣିକି ଆଉ ଆରେଞ୍ଜଡ୍ ମ୍ୟାରେଜ ନହୋଇ ଲଭ ମ୍ୟାରେଜ ବା ଲଭ୍ କମ୍ ଆରେଞ୍ଜଡ୍ ମ୍ୟାରେଜ ହେବ । ସହରରେ କ'ଣ ନା ଗାଆଁରେ କ'ଣ ? ଏବେ ସବୁଠି ଏଇ ଲଭ୍ ମ୍ୟାରେଜର ସଂଖ୍ୟା ବେଶି । ପୁଅ,ଝିଅ ପରସ୍ପର ସହିତ ସାକ୍ଷାତ,ଆଳାପ କରି ନିଜ ନିଜର ପସନ୍ଦ ଅପସନ୍ଦ ଜାଣି, ପରସ୍ପର ସହିତ ମିଶି ନିଜେ ନିଜର ଜୀବନ ସାଥୀ ବାଛିବେ । ଏମିତି ଏକ ବ୍ୟବସ୍ଥାର ମୂଳଦୁଆ ଆମ ସମାଜରେ ପଡ଼ି ସାରିଲାଣି ।

ମନୁବାବୁ ସବୁ ଶୁଣି ସାରିବା ପରେ ଚିନ୍ତିତ ଦିଶିଲେ । ତାଙ୍କ ପୁଅ ସନ୍ଦୀପର ବୟସ ଏବେ ତିରିଶ ହେଲାଣି । ପାଠପଢ଼ା ସମୟ ଅତିକ୍ରମ କରିସାରି ସିଏ ପାଞ୍ଚବର୍ଷ ଚାକିରି କରି ସାରିଲାଣି । ଆଜିଯାଏ ଯଦି ତା'ର କୌଣସି ଗାର୍ଲଫ୍ରେଣ୍ଡ ନାହିଁ, ଏବେ ଆଉ କ'ଣ ସେସବୁ ସମ୍ଭବ ? ସନ୍ଦୀପ କଲେଜରେ ପଢ଼ିବା ବେଳେ କୌଣସି ଝିଅପିଲାଙ୍କ ସହିତ ମିଳାମିଶା ନକରିବାକୁ ମନୁବାବୁ ଓ ମିନତୀଦେବୀ ସିଧା ସଳଖ କିଛି ନକହିଥିଲେ ବି ସେମାନେ ବୁଲେଇ ବଙ୍କେଇ ଅନେକ ଉପଦେଶ ଦେଇଛନ୍ତି । ସନ୍ଦୀପ ଶତକଡ଼ା ଶହେ ଜଣେ ଶୃଙ୍ଖଳିତ ଓ ମେଧାବୀ ଛାତ୍ରଥିଲା । ଗାର୍ଲଫେଣ୍ଡ ତ ଦୂରର କଥା ତା'ର କେହି ସେତେ ଅନ୍ତରଙ୍ଗ ବୟଫ୍ରେଣ୍ଡ ବି ନଥିଲେ ।

ତାପର ଦିନ ସଂଧ୍ୟାରେ ସନ୍ଦୀପଠୁ ଫୋନ୍ ଆସିଲା । ସିଏ କହିଲା , ସିଏ ଭଲରେ ଭଲରେ ସୁନାବେଡ଼ାରେ ପହଞ୍ଚି ଯାଇଛି; କିନ୍ତୁ ଟ୍ରେନ୍‌ରେ ସିଏ ତା'ର ମୋବାଇଲ୍ ଫୋନ୍‌ଟା ହଜାଇ ଦେଇଛି ।

ମନୁବାବୁ ଓ ମିନତୀଦେବୀ ଖୁବ୍ ମନ ଦୁଃଖ କଲେ । ତିରିଶ ହଜାର ଟଙ୍କାର ମୋବାଇଲ୍ ଫୋନ୍ । ସେଥିରେ ଡ଼ିଜିଟାଲ୍ କ୍ୟାମେରାଠୁ ଆରମ୍ଭ କରି ଆହୁରି ଅନେକ



Digitized by srujanika@gmail.com

କ'ଣ ସବୁ ବ୍ୟବସ୍ଥା ଥିଲା । ତାକୁ ଯିଏ ପାଇଥିବ ସିଏ କ'ଣ ଆଉ ଫେରାଇବ ?

ସନ୍ଦୀପ ତା'ର ସେଇ ମୋବାଇଲ ଫୋନ୍‌କୁ ତା' ଲ୍ୟାଣ୍ଡଫୋନ୍‌ରୁ ବାରମ୍ବାର ଫୋନ୍ କରି ବିଫଳହେଲା । ଫୋନ୍‌ର ସୁଇଚ ଅଫ୍ ଅଛି । ପାଇଥିବା ଲୋକ ନିଶ୍ଚୟ ମୋବାଇଲ୍ ଫୋନ୍‌ଟା ଖୋଲି ସିମ୍‌କାର୍ଡ଼ଟାକୁ ବାହାର କରି ଦେଇଛି । ତେବେ ସନ୍ଦୀପ ଆଶା ଛାଡ଼ି ନଥିଲା । ପ୍ରତି ଦୁଇ ତିନି ଘଣ୍ଟା ଅନ୍ତରରେ ଥରେ ଫୋନ୍ କରିବା ଜାରି ରଖିଥିଲା । ଫୋନ୍‌ରେ ଦେଢ଼ ହଜାର ଟଙ୍କାର ଟକ୍ ଟାଇମ୍ ଅବଶିଷ୍ଟ ଥିଲା । କାଳେ ଫୋନ୍ ପାଇଥିବା ଲୋକ ସେଇ ଟକ୍ ଟାଇମ୍‌କୁ ବ୍ୟବହାର କରିବା ପାଇଁ ସିମ୍‌କାର୍ଡ଼ କାଢ଼ି ଫିଙ୍ଗି ନଦେଇ କେବଳ ସ୍ୱିଚ ଅଫ୍ କରି ରଖିଥିବ ।

ରାତି ଦୁଇଟା ବେଳେ ସନ୍ଦୀପର ନିଦ ଭାଙ୍ଗିଗଲା । ଇଲେକ୍ଟ୍ରି ଲାଇନ୍ କଟି ଯାଇଚି । ଖୁବ୍ ଗରମ ଲାଗୁଚି । ବିଛଣାରେ ପଡ଼ି ପଡ଼ି ଛଟପଟ ହେଲା ସନ୍ଦୀପ ।ଲ୍ୟାଣ୍ଡଲାଇନ୍ ଡାଏଲ କରି ହଜିଯାଇଥିବା ଫୋନ୍‌କୁ ରିଙ୍ଗ କଲା ।ସେପଟେ ମୋବାଇଲ୍ ରିଙ୍ଗହେବାର ଶବ୍ଦ ଶୁଭିଲା । ସାତ ଆଠ ଥର ରିଙ୍ଗ୍ ହେବାପରେ କେହି ଜଣେ ଫୋନ୍ ଉଠାଇଲେ । ସୁଲଳିତ ନାରୀ କଣ୍ଠରୁ ଶୁଭିଲା-ହ୍ୟାଲୋ ! ଏତେ ରାତିରେ କିଏ ?

-ମୁଁ ସନ୍ଦୀପ ମିଶ୍ର କହୁଚି ସୁନାବେଡ଼ାରୁ । ଯେଉଁ ମୋବାଇଲ ଫୋନ୍ ସାହାଯ୍ୟରେ ଆପଣ ଏବେ ମୋ ସହିତ କଥା ହେଉଛନ୍ତି ସେଇଟା ମୋର । କାଲି ବିଜୟ ନଗରମ୍ ରେଳଷ୍ଟେସନ୍‌ରେ ଫାଲକନାମା ଏକ୍ସପ୍ରେସର ଏ.ସି. କୋଚ ଏ-ଟୁରେ ମୋ ମୋବାଇଲ୍ ଫୋନ୍‌ଟି ଭୁଲରେ ଛାଡ଼ିଦେଇ ଆସିଥିଲି । ଆପଣ ଯଦି ମୋ ଫୋନ୍‌ଟି ପାଇଛନ୍ତି ତାହେଲେ ଦୟାକରି ଆପଣଙ୍କର ପରିଚୟ ଦିଅନ୍ତୁ । ଆପଣ କେଉଁ ସ୍ଥାନରେ ରହୁଛନ୍ତି ଜଣାନ୍ତୁ । ମୁଁ ଯାଇ ମୋ ଫୋନ୍‌ଟି ନେଇ ଆସିବି ।

ନାରୀ ଜଣକ ସେପାଖରେ ଖିଲି ଖିଲି ହୋଇ ହସି ଉଠିଲେ ଓ କହିଲେ-ମୁଁ ମଧ୍ୟ ସେଇ ଟ୍ରେନ୍‌ରେ ସେଇ କୋଚରେ ବିଶାଖାପାଟଣା ଆସୁଥିଲି । ଆପଣଙ୍କ ସହିତ ମୋର ପରିଚୟ ହୋଇ ନଥିଲେ ମଧ୍ୟ ଆମେ ଦୁହେଁ ପରସ୍ପରଙ୍କୁ ଦେଖିଛେ । ଆପଣଙ୍କ ବର୍ଥ ନମ୍ବର ଥିଲା ଦଶ ଓ ମୋର ବାର ।

ସନ୍ଦୀପ ଏଥର ଖୁବ୍ ଖୁସି ହୋଇଯାଇ କହିଲା-ହଁ,ହଁ । ମୋର ଏବେ ମନେ ପଡ଼ିଲା । ଆପଣ ବ୍ଲୁ କଲରର ଚୁଡ଼ିଦାର ଓ ପାଇଜାମା ପିନ୍ଧିଥିଲେ । ଟ୍ରେନରେ ଖୁବ୍ ଚୁପ୍ ଚାପ୍ ବସିଥିଲେ । କିନ୍ତୁ ମୋତେ ଆଶ୍ଚର୍ଯ୍ୟ ଲାଗୁଚି ଏତେ ଚୁପ୍ ଚାପ୍ ବସିଥିବା ଝିଅ ମୋ ବିଷୟରେ ଏତେ ଖବର ରଖି ପାରିଲେ କେମିତି ?

ସେପଟରୁ ଝିଅଟି ହସି ହସି ଉତ୍ତର ଦେଲା-ଆପଣତ ବି ଟ୍ରେନ୍‌ରେ ଚୁପ୍ ଚାପ୍ ବସିଥିଲେ, ମୋ ଡ୍ରେସ ପୋଷାକର ହିସାବ ରଖିଲେ କେମିତି ? ହଉ ଆପଣ ମୋତେ



Digitized by srujanika@gmail.com

ପଚାରିଥିବା ପ୍ରଶ୍ନର ଉତ୍ତର ଲେଖନ୍ତୁ । ମୋ ନାଆଁ ନେହା ଷଡ଼ଙ୍ଗି । ମୋର ଅବଶିଷ୍ଟ ପରିଚୟ ଆପଣଙ୍କ ସହିତ ସାକ୍ଷାତରେ ପାଇବେ । ଆସନ୍ତା ରବିବାର ଦିନ ଠିକ୍ ଦିନ ତିନିଟା ପାଞ୍ଚ ମିନିଟ୍ ବେଳେ ବିଶାଖାପାଟଣା ରେଲୱେ ଷ୍ଟେସନ ପାଖ ରୟାଲ୍ ରେଷ୍ଟୁରାଣ୍ଟରେ ମୁଁ ଅପେକ୍ଷା କରିଥିବି । ସେଇଠି ମୁଁ ଆପଣଙ୍କ ହାତରେ ଆପଣଙ୍କ ଫୋନ୍‌ଟି ଦେଇ ଦାୟିତ୍ୱ ମୁକ୍ତ ହେବି । ଖବରଦାର୍ ପୋଲିସକୁ ଡ଼ାକି ମୋତେ ଯେପରି ଚୋରି କେଶ୍‌ରେ ବୁକ୍ ନକରନ୍ତି ।

ସନ୍ଦୀପ ଓ ନେହା ଦୁହେଁ ଦୁଇ ପଟରେ ହସି ଉଠିଲେ । ରାତି ଅନେକ ହୋଇଥିବା କଥା ଦୁହେଁ ସଚେତନ ଥିବାରୁ ସେତିକିରେ କଥାବାର୍ତ୍ତା ସାରି ଶୋଇବାକୁ ଗଲେ । ନେହା ଶୋଇବାକୁ ଯିବା ପୂର୍ବରୁ ଆଉ ଥରେ ଫୋନ୍ କରି କହିଲା- କେବେ ବି ଦିନବେଳେ ଫୋନ୍ କରିବେ ନାହିଁ । ମୁଁ ଏ ଫୋନ୍‌ଟିକୁ ସକାଳୁ ରାତି ବାରଟା ପର୍ଯ୍ୟନ୍ତ ସୁଇଚ ଅଫ୍ କରି ରଖୁଚି ।

ରବିବାର ଦିନ ଠିକ୍ ଦିନ ତିନିଟା ବେଳେ ସନ୍ଦୀପ ବିଶାଖା ପାଟଣା ରେଲ ଷ୍ଟେସନ ପାଖ ରୟାଲ ରେଷ୍ଟୁରାଣ୍ଟରେ ପହଞ୍ଚି ଆଖି ବୁଲାଇ ନେଲା । ସେଇ ନୀଳ ରଙ୍ଗର ଚୁଡ଼ିଦାର ପାଇଜାମା ସହିତ ନୀଳ ଆପ୍ରନ ପକାଇ ଗୋଟିଏ ଚେୟାରରେ ବସି ଅପେକ୍ଷା କରିଛି ନେହା । ସନ୍ଦୀପ ଚୁପ୍ ଚାପ୍ ଯାଇ ନେହାର ସାମନା ଚେୟାରରେ ବସିଗଲା ।ସନ୍ଦୀପ ମଧ୍ୟ ସେଦିନ ଟ୍ରେନରେ ପିନ୍ଧିଥିବା ଜିନ୍ ପ୍ୟାଣ୍ଟ ଓ ହ୍ୱାଇଟ୍ ସାର୍ଟ ପିନ୍ଧିଥିଲା । ନେହା ତାକୁ ଚିହ୍ନିବାରେ କିଛି ଅସୁବିଧା ହେଲା ନାହିଁ ।

ନେହା ତା' ଭ୍ୟାନିଟ୍‌ବ୍ୟାଗ ଖୋଲି ସନ୍ଦୀପର ହାତକୁ ତା' ମୋବାଇଲ ଫୋନ୍‌ଟା ବଢ଼ାଇ ଦେଲା । ସନ୍ଦୀପ ଫୋନ୍‌ଟି ପାଇ ନେହାକୁ ଧନ୍ୟବାଦ ଜଣାଇଲା ।

ଦୁହେଁ ପରସ୍ପର ସହିତ ପରିଚିତ ହେଲେ । ନେହାର ବାପା ଜଣେ ଇଣ୍ଡଷ୍ଟ୍ରିଆଲିଷ୍ଟ । ତାଙ୍କର ପ୍ରକୃତ ଘର କଟକ ସହର । କିନ୍ତୁ ସେ କୋଡ଼ିଏ ବର୍ଷହେଲା ବିଶାଖାପାଟଣାରେ ଇଣ୍ଡଷ୍ଟ୍ରି କରିଛନ୍ତି । ନେହାର ଦୁଇ ଭାଇ । ନେହା ସୋସିଓଲୋଜିରେ ପି.ଜି. କରିଛି ।

ସନ୍ଦୀପ ମଧ୍ୟ ନିଜର ପରିଚୟଦେଲା ।

ବିଶାଖାପାଟଣା ରେଲଷ୍ଟେସନ ପର୍ଯ୍ୟନ୍ତ ନେହା ସନ୍ଦୀପକୁ ଛାଡ଼ିବାକୁ ଆସିଥିଲା । ଟ୍ରେନ୍ ଛାଡ଼ିବା ପର୍ଯ୍ୟନ୍ତ ନେହା ଠିଆହୋଇ ଟାଆ,ଟାଆ କରିବା ମୁଦ୍ରାରେ ହାତ ହଲାଇ ସନ୍ଦୀପକୁ ବିଦାୟ ଦେଲା ।

ଫୋନ୍‌ଟା ମିଳିଯିବା କଥାଟା ସନ୍ଦୀପ ବାପାଙ୍କୁ ଜଣାଇ ଦେଲା । କିନ୍ତୁ ବିଶାଖା ପାଟଣାର ଝିଅ ନେହାଠୁ ମିଳିବା କଥା ଗୋପନ ରଖିଲା ।

ଏଣିକି ପ୍ରତିଦିନ ନେହା ଓ ସନ୍ଦୀପ ଫୋନ୍‌ରେ ଗପସପ ହୁଅନ୍ତି । ଏଇ ଫୋନ୍‌ର



Digitized by srujanika@gmail.com

ଗପସପରୁ ଦୁଇଜଣଙ୍କ ମଧ୍ୟରେ ବନ୍ଧୁତା ସୃଷ୍ଟିହେଲା । ସେ ଦୁହେଁ ପରସ୍ପରଙ୍କୁ ପ୍ରପୋଜ କଲେ ।

ମନୁବାବୁ ଦିନେ ପୁଅ ପାଖକୁ ଫୋନ୍ କଲେ; କିନ୍ତୁ ଫୋନ୍ ଏନ୍‌ଗେଜ ରହିଲା । ପନ୍ଦର ମିନିଟ ଛାଡ଼ି ପୁଣିଥରେ ଫୋନ୍ ଲଗାଇଲେ । ତଥାପି ସନ୍ଦୀପର ଫୋନ୍ ଏନ୍‌ଗେଜଡ଼୍ ଅଛି । ସନ୍ଦୀପ କାହା ସହିତ ଫୋନ୍‌ରେ ଏତେ ସମୟ ଗପୁଛି ? ଅଧ ଘଣ୍ଟାଏ ପରେ ଫୋନ୍ କଲେ, ତଥାପି ସନ୍ଦୀପର ଫୋନ୍ ଏନ୍‌ଗେଜ ରହିଲା । ଘଣ୍ଟାଏ ପରେ ଫୋନ୍ କଲେ ମନୁବାବୁ । ଏଥର ସନ୍ଦୀପ ଫୋନ୍ ଉଠାଇଲା । ମନୁବାବୁ ଅତ୍ୟନ୍ତ ବିରକ୍ତ ହୋଇ ପ୍ରଶ୍ନକଲେ-କାହା ସହିତ ଏତେ ସମୟ ଧରି ଫୋନ୍‌ରେ ଗପୁଥିଲୁ ?

ସନ୍ଦୀପ ହଡ଼ବଡ଼େଇ ଯାଇ ଉତ୍ତରଦେଲା-ନାଇଁ ମୁଁ କାହା ସହିତ ଗପୁ ନଥିଲି । ମୋବାଇଲ ଫୋନ୍ ବେଳେ ବେଳେ ସେମିତି ମିଛରେ ଏନ୍‌ଗେଜଡ଼ ଦେଖାଏ । ଏଇଟା ଫୋନ୍ ଲାଇନର ପ୍ରୋବ୍ଲେମ୍ ।

ତା'ପରଦିନ ଠିକ୍ ସେଇ ସମୟରେ ମନୁବାବୁ ତାଙ୍କ ପୁଅ ସନ୍ଦୀପ ପାଖକୁ ଫୋନ୍‌କରି ଜାଣି ପାରିଲେ ତା'ଫୋନ୍ ଅନେକ ସମୟରେ ଏନ୍‌ଗେଜ ରହୁଛି ।

ସତ୍ୟବାବୁ ମନୁବାବୁଙ୍କଠୁ ସନ୍ଦୀପର ଫୋନ୍ ଅନେକ ସମୟରେ ଏନ୍‌ଗେଜ ରହିବା କଥା ଜାଣି କହିଲେ-ମନୁବାବୁ ! ଆପଣଙ୍କ ପୁଅକୁ ତା'ର ଗାର୍ଲଫ୍ରେଣ୍ଡ ମିଳିଗଲାଣି । ଏଥର ତା'ର ବାହାଘର ହୋଇଯିବ ।

ମନୁବାବୁ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲେ- ଆପଣ କେମିତି ଜାଣିଲେ ?

-ସନ୍ଦୀପର ଫୋନ୍ ଦୀର୍ଘ ସମୟ ଧରି ଏନ୍‌ଗେଜଡ଼ ରହିବା ତା'ର ସୂଚନା ଦେଉଛି । ଆପଣ ଏଥର ସିଧାସଳଖ ତା' ଗାର୍ଲଫ୍ରେଣ୍ଡର ନାଆଁ ଆଉ ଠିକଣା ପଚାରି ଝିଅର ବାପା ପାଖରେ ସନ୍ଦୀପର ବିବାହ ପ୍ରସ୍ତାବ ଥୁଅନ୍ତୁ ।ମୋର ଆଶା ଓ ବିଶ୍ୱାସ ଏଥର ସନ୍ଦୀପର ବିଭାଘର ହୋଇଯିବ ।

ମନୁବାବୁ ପକେଟରୁ ମୋବାଇଲ ଫୋନ୍ ବାହାର କରି ସନ୍ଦୀପ ପାଖକୁ ଫୋନ୍ ଲଗାଇଲେ । କିନ୍ତୁ ଫୋନ୍ ଏନ୍‌ଗେଜଡ଼ । ପୁଣି ପନ୍ଦର ମିନିଟ ପରେ ଆଉ ଥରେ ଫୋନ୍ ଲଗାଇଲେ । ତଥାପି ଫୋନ୍ ଏନ୍‌ଗେଜଡ଼ ରହିଲା ।

ସତ୍ୟବାବୁ ହସି ହସି କହିଲେ-ଫୋନ୍ ଏନଗେଜଡ଼ ରହୁଛିତ ? କଥାଟା ଏବେ ପକ୍କା ହୋଇଗଲା । ଆପଣ ଆଉ ବିଳମ୍ବ ନକରି ମିଠା ଦିଅନ୍ତୁ ।

ଦୁହେଁ ଏକ ସମୟରେ ହସି ଉଠିଲେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

# ଶେଷ ଚିଠି

ମୁଁ ଡ୍ରଇଂରୁମ୍‌ରେ ବସି ସେ ଦିନର ଖବରକାଗଜ ପଢୁଥିଲି । କଲିଙ୍ଗ୍‌ବେଲ୍ ଶବ୍ଦ ଶୁଣି ଗେଟ୍ ପାଖକୁ ଯାଇ ଦେଖିଲି ହାତରେ ଚିଠିଟିଏ ଧରି ପୋଷ୍ଟମ୍ୟାନ୍ ଠିଆ ହୋଇଛି । ଏ ମୋବାଇଲ ଫୋନ୍ ଯୁଗରେ  କିଏ କାହାକୁ ଚିଠି ଲେଖିଲା ? ପୁଅ ଅମିତ କିମ୍ୱା ଝିଅ ଅଙ୍କିତା କାହା ପାଖରୁ କେବେ ଚିଠି ଆସିବାର ସମ୍ଭାବନା କ୍ଷୀଣ । ସେମାନେ ସବୁ ମୋବାଇଲ୍ ଓ ଇଣ୍ଟରନେଟ୍ ଜମାନାର ପିଲା । ତାଙ୍କୁ ଯିଏ ଯାହା ଜଣାଇବ ମୋବାଇଲରେ ନଚେତ୍ ଇ-ମେଲ୍ ଯୋଗେ ହିଁ ଜଣାଇବ । ମୋ ସ୍ତ୍ରୀ ଅନୁରାଧାଙ୍କର ଚିଠି ଦେବା ପରି ଅନ୍ୟ କେହି ନାହାଁନ୍ତି । ତାଙ୍କ ବାପା ମାଆଙ୍କର ଅନେକ ଦିନ ହେଲା ଦେହାନ୍ତ ହେଲାଣି । ତାଙ୍କ ଏକମାତ୍ର ଭାଇ ଧରଣୀ ପ୍ରତି ସପ୍ତାହରେ ଭଉଣୀକୁ ଭେଟୁଛି । ସିଏ ଚିଠି ଦେବାର ଆଦୌ ସମ୍ଭାବନା ନାହିଁ । ତେବେ କ'ଣ ମୋ ପାଖକୁ ଏ ଚିଠି ଆସିଛି ? ମୋତେ କିଏ ଚିଠି ଲେଖିପାରେ ?

ପୋଷ୍ଟମ୍ୟାନ୍ ମୋ ହାତକୁ ଲଫାପାଟିଏ ବଢ଼ାଇଦେଲା । ଲଫାପା ଉପରେ ଗୋଲ୍ ଗୋଲ୍  ସୁନ୍ଦର ଓଡ଼ିଆ ଅକ୍ଷରରେ ମୋ ନାଆଁ ଓ ଠିକଣା ଲେଖା ଯାଇଥିଲା । ଓଲଟାଇ ଦେଖିଲି ପ୍ରେରକର ଠିକଣା କେଉଁଠି ହେଲେ ଲେଖା ନାହିଁ । ଅକ୍ଷର ଗୁଡ଼ିକ ମୋତେ ଚିହ୍ନା ଚିହ୍ନା ଲାଗିଲା; କିନ୍ତୁ ଯେତେ ଚେଷ୍ଟା କଲେବି ମନେ ପକାଇ ପାରିଲି ନାହିଁ ଇଏ କାହା ଅକ୍ଷର । ଆଉ ଉତ୍କଣ୍ଠା ଅଟକାଇ ପାରିଲି ନାହିଁ, ଲଫାପାଟି ଚିରି ଚିଠିଟିକୁ ବାହାର କଲି ।  ଚିଠିର ସବା ତଳ ଧାଡ଼ିକୁ ଚାହିଁଲି ଲେଖା ଥିଲା – ତୁମର ସୀମା ।

ସୀମାର ନାମ ଉଚ୍ଚାରଣ କରିବା ମାତ୍ରେ ମୋ ସର୍ବାଙ୍ଗରେ ଶିହରଣ ସଞ୍ଚରି ଗଲା । ମୁଁ ମୋ ଚାରି କଡ଼କୁ ଦୃଷ୍ଟି ପକାଇଲି । ନା, କେହି କୁଆଡ଼େ ନାହାଁନ୍ତି କିମ୍ୱା ମୋର ଏ ଚିଠିକୁ କେହି ଦେଖି ନାହାଁନ୍ତି । ଚିଠିଟିକୁ ପୁନଶ୍ଚ ଲଫାପାରେ ପୂରାଇ ସାର୍ଟ ପକେଟ୍‌ରେ ରଖିଲି । ଏକମୁହାଁ ହୋଇ ମୋ ବେଡ଼ରୁମ୍‌ରେ ପଶିଯାଇ ଭିତରୁ କବାଟ ବନ୍ଦ କରିଦେଲି । ଆଗରୁ ସେ ରୁମ୍‌ରେ ପଶି ଷ୍ଟିଲ୍ ଆଲମାରିରେ ତାଙ୍କ ଶାଢ଼ି ସଜାଇ ରଖୁଥିବା ଅନୁରାଧା ପାଟିକଲେ-ଦିନଟାରେ ଭିତରୁ ଡ଼ୋର୍ କାହିଁକି ବନ୍ଦ୍ କରୁଛ ? କିଏ ଦେଖିଲେ କ'ଣ ଭାବିବ ?

ଆନନ୍ଦ ଚନ୍ଦ୍ର ପହି

Digitized by srujanika@gmail.com

ମୁଁ ଅନୁରାଧାଙ୍କ ପାଟିଶୁଣି ହଡ଼ବଡ଼େଇ ଗଲି । ଥତମତ୍ ହୋଇ କହିଲି-ନାଇଁ ଏଇ.. କଥା କ'ଣ କି ? ତମେ ଏ ଘରେ ଅଛ ବୋଲି ମୁଁ ଜାଣି ନଥିଲି ।

ଅନୁରାଧା ଓଲଟା ପ୍ରଶ୍ନ ପଚାରିଲେ- ମୁଁ ଥାଏ ନଥାଏ, ତମେ ସକାଳ ଦଶଟାରେ କାହିଁକି ଗୁମ୍‌ଟା ଭିତରପଟୁ ବନ୍ଦ୍ କରିବ ଶୁଣେ ? ରାତିସାରା ଶୋଇ ଶୋଇ ସକାଳ ସାତଟାରେ ଉଠିଚ । ପୁଣି ଶୋଇବ ନା କ'ଣ ? ଚାକିରିରୁ ରିଟାୟାର୍ଡ କଲ ବୋଲି ତମର ଆଉ କ'ଣ କିଛି କାମ ନାହିଁ ?

ମୁଁ ତାଙ୍କୁ ଆଉ କିଛି ନ କହି ଚାଲିଗଲି ଛାତ ଉପରକୁ । ସେଠି ଗୋଟେ ନିକାଞ୍ଚନ ସ୍ଥାନ ଖୋଜିଲି । ମୋ ଛାତିର ସ୍ପନ୍ଦନ ବଢ଼ିଯାଇଥିଲା । ଜଣେ ଯୁବକ ତା' ପ୍ରେମିକାର ପ୍ରଥମ ପ୍ରେମଚିଠି ପାଇଥିବା ପରି ମୋ ଅବସ୍ଥା ।

ଶିଢ଼ି ଓ ଛାତ ଉଭୟର ମଝିରେ ଥିବା କବାଟକୁ ମୁଁ ଛାତପଟୁ କିଳିଣି ଦେଇଦେଲି ଯେମିତି ଶିଢ଼ିବାଟ ଦେଇ ଅନ୍ୟ କେହି ଛାତକୁ ଆସି ପାରିବେ ନାହିଁ । ଚିଠିଟି ଧରି ଛାତ ଉପରେ ବସିଗଲି । ଛାତର ଚାରି ପଟକୁ ଚାହିଁଲି, ଚାରିପଟେ ଅଢ଼େଇ ଫୁଟ ଉଚ୍ଚର ପାରାପେଟ୍ ବା ବେଢ଼ା ବୁଲିଛି । ଛାତ ଉପରେ ବସିଗଲେ ବାହାର ଲୋକ କେହି ମୋତେ ଆଦୌ ଦେଖି ପାରିବ ନାହିଁ । ତଥାପି କନ୍‌କନ୍ ହୋଇ ଚାରି ଆଡ଼କୁ ଆଉଥରେ ଦୃଷ୍ଟି ପକାଇ ପକେଟ୍‌ରୁ ଲଫାପାଟି ବାହାର କଲି । ସୀମାର ଚିଠି । ଏଇ ସୀମା ଥିଲା ମୋ ମାମୁଘର ଗାଆଁ ଝିଅ । ମୁଁ ପ୍ଲସଥ୍ରି ଦ୍ୱିତୀୟ ବର୍ଷ ପରୀକ୍ଷା ଦେଇ ସାରି ରଜ ଛୁଟିରେ ମାମୁଘରକୁ ଯାଇଥାଏ । ମାମୁଘରେ ଅଚାନକ ଦେଖାହେଲା ଏଇ ସୀମାଙ୍କ ସହିତ ।

ସୀମାଙ୍କର ଦେହ ରଙ୍ଗ କଞ୍ଚା ହଳଦୀ ପରି ଗୋରା,ଆଖି ଆକର୍ଷଣୀୟ,ନାକ ଖଣ୍ଡା ପରି ଧାର । ଅଳ୍ପ ବୟସୀ, ପତଳୀ, ଡ଼େଙ୍ଗୀ ଓ ଖୁବ୍ ସୁନ୍ଦରୀ । ବୟସ ସତର କି ଅଠର । ସିଏ ହଷ୍ଟେଲ୍‌ରେ ରହି କଟକର ଶୈଳବାଳା କଲେଜରେ ପ୍ଲସଟୁ ପଢୁଥାନ୍ତି । ଦେଖିବା ଲୋକ ସହଜରେ ତାଙ୍କଠୁ ଆଖି ଫେରାଇ ନେଇ ପାରିବ ନାହିଁ । ମୋ ଅବସ୍ଥା ପ୍ରଥମ ଦେଖାରେ ସେଇଆ ହେଲା । ମାମୁଘର ପିଜୁଳି ଗଛରେ ଚଢ଼ି ମୁଁ ପିଜୁଳି ଖାଉଚି ସୀମା ତାଙ୍କ ସାଙ୍ଗରେ ତାଙ୍କର ଚାରି ବର୍ଷର ଟିକି ଭଉଣୀକୁ ଧରି ମୋ ମାମୁଘରକୁ ଆସିଲେ । ତାଙ୍କ ଉପରେ ମୋ ନଜର ପଡ଼ିଗଲା ପରେ ମୁଁ ସଂପୂର୍ଣ୍ଣ ସମ୍ମୋହିତ ହୋଇଗଲି । ମୁଁ ଚଢ଼ିଥିବା ପିଜୁଳିଗଛ ତଳ ଦେଇ ସିଏ ମୋ ମାମୁଘରକୁ ଗଲାବେଳେ ମୋ ହାତରୁ ଗୋଟେ ପିଜୁଳି ଖସିଯାଇ ତାଙ୍କ ମୁଣ୍ଡରେ ପଡ଼ିଲା । ସିଏ ମାଲୋ ମରିଗଲି ବୋଲି ଚିତ୍କାର କରି ମୁଣ୍ଡକୁ ଧରି ସେଇ ଗଛମୂଳେ ବସି ପଡ଼ିଲେ । ମୁଁ ତରବର ହୋଇ ଗଛରୁ



Digitized by srujanika@gmail.com

ଓହ୍ଲାଇ ଆସି ତାଙ୍କ ପାଖରେ ଅପରାଧୀ ପରି ଠିଆହେଲି । ସୀମା ବସିବା ସ୍ଥାନରୁ ଉଠିପଡ଼ି ମୋତେ କିଛି ନକହି ମୁଣ୍ଡକୁ ଆଉଁଶି, ଆଉଁଶି ଚାଲିଯିବାକୁ ବାହାରିଲେ । ମୁଁ କହିଲି- ସରି,ମୋ ଅସାବଧାନତା ଯୋଗୁ ତୁମ ମୁଣ୍ଡରେ ଆଘାତ ଲାଗିଲା । ମୁଣ୍ଡରୁ ରକ୍ତ ବାହାରି ନାହିଁତ ? ରୁହ, ମାମୁଘରେ କିଛି ଔଷଧ ଥିବ ଲଗାଇ ଦେବା ।

ସୀମା ଲାଜ ଲାଜ କଣ୍ଠରେ କହିଲେ-ନା,ସେମିତି ବଡ଼ ଧରଣର ଆଘାତ ଲାଗିନାହିଁ । ଆପଣ ଅଯଥାରେ କାହିଁକି ନିଜକୁ ଦୋଷୀ ଭାବୁଛନ୍ତି ? ମୁଁ କିଛି ନ ଦେଖି ଗଛତଳ ଦେଇ ଚାଲିଯିବାରୁ ପିଜୁଳିଟା ମୋ ମୁଣ୍ଡରେ ପଡ଼ିଲା । ତାଛଡ଼ା ମୋ ମୁଣ୍ଡରେ ସାମାନ୍ୟ ପିଜୁଳିଟେ ପଡ଼ିଚି, ନଡ଼ିଆଟେ କିମ୍ବା କଖାରୁଟେ ପଡ଼ିନାହିଁ ।

ସୀମାଙ୍କ କଥାରେ ମୁଁ ଓ ସୀମା ଦୁହେଁ ବଡ଼ ପାଟିରେ ହସି ଉଠିଲୁ । ମୁଁ ସୀମାଙ୍କୁ ବାରମ୍ବାର ଚାହିଁଲି । ଲାଜରେ ତାଙ୍କ ଗୋରା ମୁହଁ ଲାଲ ପଡ଼ିଗଲା । ସିଏ ଅସ୍ତବ୍ୟସ୍ତ ହୋଇ ପଳାଇ ଗଲେ । ମୁଁ ତାଙ୍କ ଟିକି ଭଉଣୀର ଗୋଟେ ହାତକୁ ଧରିନେଇ  ତାକୁ ଅଟକାଇ ଦେଲି । ତାକୁ ପଚାରିଲି –ତମେ ପିଜୁଳି ଖାଇବ ?

ସିଏ ଖୁବ୍ ଖୁସି ହୋଇ ମୋ କୋଳକୁ ଆଉଜି ଆସିଲା । ମୁଁ ତା'ହାତରେ ଗୋଟେ ପାଚିଲା ପିଜୁଳି ଧରାଇ ଦେଇ କହିଲି- ଖାଅ । ଇଏ ଭାରି ମିଠା ପିଜୁଳି,ଠିକ୍ କାଡ଼ବରି ଚକ୍‌ଲେଟ୍ ପରି । ସିଏ ଭାରି ଖୁସୀ ହୋଇ ପିଜୁଳି ଖାଇଲା । ମୁଁ ଭଲ ଭଲ ପାଚିଲା ଓ ମିଠା ପିଜୁଳି ସାତଟା ମୋ ରୁମାଲରେ ବାନ୍ଧି ସୀମାଙ୍କ ଟିକି ଭଉଣୀ ହାତରେ ଧରାଇ ଦେଲି । ଟିକି ଝିଅଟି ପିଜୁଳିତକ ଆଗ୍ରହରେ ଧରିଲା, ଟିକେ ହସି ଦେଇ ତା'ଅପାର ପଛେ ପଛେ ଚାଲିଗଲା ।

ସୀମା ସେ ଦିନ ଚାଲିଗଲା ପରେ ମୁଁ ତାଙ୍କୁ ମନେ, ମନେ ଅନେକ ଖୋଜିଲି । ମାଇଁଙ୍କୁ  ବୁଲେଇ ବଙ୍କେଇ ପଚାରିଲି-ତୁମ ଘର ପାଖରେ ନୂଆ, ନୂଆ କଲେଜ ପଢୁଥିବା ଗୋରୀ, ଡ଼େଙ୍ଗୀ ଆଉ ପତଳୀ ଝିଅଟିଏ କିଏ ଅଛି ? ତାର ତିନି ଚାରି ବର୍ଷର ଗୁଲୁଗୁଲିଆ ଟିକି  ଭଉଣୀଟିଏ ଅଛି ।

ମାଇଁ ହସିଦେଇ କହିଲେ-ପଡ଼ିଶା ଘର ଝିଅ ସୀମା କଥା କହୁଚକି ? ସିଏ ଏ ଗାଆଁର ସବୁଠୁ ଧନୀଘର ଝିଅ ।  ଏ ଗାଆଁରେ ସିଏ ତ ଏକା କଟକରେ ରହି କଲେଜରେ ପଢ଼ନ୍ତି । ଖରାଦିନ ଛୁଟିରେ ସିଏ ଗାଆଁକୁ ଆସିଚନ୍ତି । କ'ଣ ହେଲା ତାଙ୍କୁ କେମିତି ଜାଣିଲ ? ତମେ ତ ଭୁବନେଶ୍ୱରରେ ପଢୁଛ, ତାଙ୍କ ସାଙ୍ଗରେ ତମର କେମିତି ଜଣା ଶୁଣା ହେଲା ?

ମାଇଁଙ୍କ କଥାରୁ ମୁଁ ଜାଣିଗଲି ସେଇ ଝିଅ ହିଁ ସୀମା । କିଛି ନକହି ଚୁପ୍ ରହିଲି ।

ଆନନ୍ଦ ଚନ୍ଦ୍ର ପଣ୍ଡା

Digitized by srujanika@gmail.com

ସେଦିନ ସାରା ମୁଁ ଘର ବାହାର ହେଲି । ମନ ଚାହିଁଲା ସେ ଝିଅଟିକୁ ଆଉ ଥରେ ଦେଖିବା ପାଇଁ,ତା'ସହିତ ଦି'ପଦ କଥାହେବା ପାଇଁ, କିନ୍ତୁ ତାହା କେମିତି ସମ୍ଭବ ହେବ ?

ମାମୁଘର ଗାଆଁସାରା ଗୋଟେ ଘେରା ବୁଲି ଆସିଲି । ଖୋଜିଲା ଖୋଜିଲା ଆଖିରେ ଗାଆଁ ରାସ୍ତାର ଦୁଇପଟରେ ଥିବା ଘର ଭିତରକୁ ଆଖି ଗଳାଇ ଚାହିଁଲି । କିନ୍ତୁ ସୀମାଙ୍କୁ ପାଇଲି ନାହିଁ ।

ମାମୁଘର ନଈକୂଳିଆ ଗାଆଁ । ଖରାଦିନ । ସଂଧ୍ୟାବେଳକୁ ଗାଆଁର ପୁଅ,ଝିଅମାନେ ଦଳ ଦଳ ହୋଇ ନଈପଠାରେ ପବନ ଖାଇବାକୁ ବାହାରିଲେ । ମୁଁ ମଧ୍ୟ ବାହାରିଲି । କିନ୍ତୁ ଅନେଇଁ ଅନେଇଁ ରାତି ହେଲା,ସୀମାଙ୍କର ଦେଖା ଦର୍ଶନ ମିଳିଲା ନାହିଁ । କିନ୍ତୁ ମୁଁ ସୀମାଙ୍କୁ ଆଦୌ ଭୁଲି ପାରିଲି ନାହିଁ । ମାମୁଘରେ ଆଉ ଦୁଇ ଦିନ ରହି ଘରକୁ ଫେରି ଆସିଲି । ତେବେ ମୋର ମନ ଆଉ କେଉଁଥିରେ ଲାଗିଲା ନାହିଁ । ଖେଳ,ସାଙ୍ଗ,ସାଥୀ, ଟିଭି କି ପାଠ କେଉଁଥିରେ ମୋତେ ଖୁସୀ ମିଳିଲା ନାହିଁ ।

ମାମୁଘରୁ ଫେରିବାର ଆଠଦିନ ପରେ ମୋ ଏୟାର ବ୍ୟାଗଟାରେ ଥିବା ସମସ୍ତ ପ୍ୟାଣ୍ଟ, ସାର୍ଟ ବାହାର କଲି ସଫା କରିବା ପାଇଁ । ମାମୁଘରୁ ଫେରିବା ଦିନଠୁ ସେ ସବୁ ସେମିତି ବ୍ୟାଗରେ ପଶିକି ଥିଲା ।

ଆଶ୍ଚର୍ଯ୍ୟର କଥା, ମୋର ସେଇ ବ୍ୟାଗ ଭିତରୁ ନୀଳ ରଙ୍ଗର ଗୋଟିଏ ସୁନ୍ଦର ରୁମାଲ ବାହାରିଲା । ରୁମାଲରୁ ଥିବା ଗୋଟେ ମନମୁଗ୍ଧକର ଅତର ମହକ ମୋତେ ସମ୍ମୋହିତ କଲା । ରୁମାଲର ଭାଙ୍ଗ ଫିଟାଇବା ମାତ୍ରେ ଅତର ବାସ୍ନା ବହୁଗୁଣିତ ହୋଇ ମୋ କୋଠରି ସାରା ଖେଳିଗଲା । ସଂପୂର୍ଣ୍ଣ ରୁମାଲଟିକୁ ଖୋଲିବା ପରେ ତା'ଭିତରେ ମୁଁ ଯାହା ଦେଖିଲି ମୋର ଖୁସୀର ସୀମା ରହିଲା ନାହିଁ । ରୁମାଲର ଗୋଟିଏ କୋଣରେ ଏମ୍ବ୍ରେଡ଼ୋରୀ କରାଯାଇ ଇଂରାଜୀରେ ଲେଖାଥିଲା 'ସୀମା' ।

ମୁଁ ବିସ୍ମିତ ହେଲି । ଏ ରୁମାଲ ମୋ ବ୍ୟାଗକୁ ଆସିଲା କେମିତି ? ମାମୁଙ୍କର କୌଣସି ଝିଅ ନାହିଁ । ମାଈଁଙ୍କ ଗୋଚରରେ ମଧ୍ୟ ଏ କାମ କେବେ ହୋଇ ନଥିବ । ଏ ରହସ୍ୟର ଗୁମର ଖୋଲିବାକୁ ମୋର ଆଗ୍ରହ ବଢ଼ିଗଲା, କିନ୍ତୁ କେମିତି ଖୋଲିହେବ ? ସେତେବେଳେ ଆଜି ପରି ମୋବାଇଲ୍ ଫୋନ୍‌ର ପ୍ରଚଳନ ନଥିଲା, ଥିଲେ ହୁଏତ ମୁଁ ସଙ୍ଗେ ସଙ୍ଗେ ଫୋନ୍ କରି ମାଈଁଙ୍କୁ ଏକଥା ପଚାରି ଦେଇ ଥାଆନ୍ତି ।

ମୁଁ ସ୍ଥିରକଲି କଟକ ଯିବି । ମାଈଁ କହୁଥିଲେ ସୀମା କଟକରେ ପଢୁଛନ୍ତି । କଟକର ଶୈଳବାଳା ମହିଳା ମହାବିଦ୍ୟାଳୟରେ ନିଶ୍ଚୟ ସୀମା ପଢୁଥିବେ । ଗ୍ରୀଷ୍ମ ଛୁଟି



Digitized by srujanika@gmail.com

ଖୋଲି ଗଲାଣି,ସୀମା କଲେଜକୁ ଫେରି ଆସିଥିବେ ।

ଦିନେ ସକାଳ ଦଶଟା ବେଳକୁ ମୁଁ କଟକ ଯାଇ ଶୈଳବାଳା ମହିଳା ମହାବିଦ୍ୟାଳୟ ଆଗରେ ଠିଆହେଲି । ଅନେକ ଝିଅ କଲେଜ ଯାଉଥିଲେ । ସେମାନଙ୍କୁ ସୀମାଙ୍କ କଥା ପଚାରିଲି । ସେମାନେ ସମସ୍ତେ ହସିଦେଇ ମୋତେ ଓଲଟା ପ୍ରଶ୍ନ କଲେ –କଲେଜରେ ଅନେକ ସୀମା ପଢୁଚନ୍ତି, ଆପଣ କେଉଁ ସୀମା କଥା କହୁଚନ୍ତି ? ଆପଣ ତାଙ୍କର ଭାଇ ନା ବଏ ଫ୍ରେଣ୍ଡ୍ ?

ସେମାନଙ୍କ ପ୍ରଶ୍ନର କିଛି ସନ୍ତୋଷଜନକ ଉତ୍ତର ନଦେଇ ପାରି ମୁଁ ନିରାଶ ହୋଇ ଭୁବନେଶ୍ୱର ଫେରିଆସିଥିଲି । ମହିଳା ମହାବିଦ୍ୟାଳୟର କଡ଼ା ନିୟମ ଶୃଙ୍ଖଳା ଯୋଗୁ ସୀମାଙ୍କ ସହିତ ଯୋଗାଯୋଗ କରିବା ଆଉ ସମ୍ଭବ ହେଲାନାହିଁ । ଏକ୍ସମାସ ଛୁଟିରେ ସୀମା ନିଶ୍ଚୟ ଗାଆଁକୁ ଆସିଥିବେ ବୋଲି ଭାବି ମୁଁ ଛୁଟିରେ ଆମ ଗାଆଁକୁ ନଯାଇ ମାମୁଘର ଗାଆଁକୁ ଗଲି । ମୋର ଦୁର୍ଭାଗ୍ୟ ସୀମା ଛୁଟିରେ ଗାଆଁକୁ ନଯାଇ ଏନ.ସି.ସି କ୍ୟାମ୍ପରେ ଯୋଗଦେବା ପାଇଁ ଡେରାଡୁନ୍ ଯାଇଥିଲେ । ଛୁଟି ଭିତରେ ଗାଆଁକୁ ଫେରିବାର ଆଉ ସମ୍ଭାବନା ନଥିଲା । ମୁଁ ଫେରି ଆସିଲି ବିଫଳ ହୋଇ ।

ତାପରେ ଆସିଲା ପରୀକ୍ଷା ଋତୁ । ପାଠପଢ଼ାରେ ବ୍ୟସ୍ତ ରହିଲି । ସୀମାଙ୍କର ସେଇ ନୀଳ ରୁମାଲଟିକୁ ସବୁବେଳେ ପକେଟ୍‌ରେ ରଖିଥାଏ ଓ ବେଳେ ବେଳେ ତାକୁ ଦେଖି ଖୁସିହୁଏ । ପୁଣି ଲାଗିଯାଏ ପାଠ ପଢ଼ାରେ । ପରୀକ୍ଷା ସରିବା ପରେ ଗ୍ରୀଷ୍ମଛୁଟି ଆସିଲା । ଘରକୁ ଯାଇ ଛଅ ଦିନ ରହି ପହଞ୍ଚିଲି ମାମୁଘରେ । ମୋ ଭାଗ୍ୟର ବିଡ଼ମ୍ବନା । କଲିକତାରେ ଥିବା ତାଙ୍କ ମାଉସୀ ଘରକୁ ସୀମା ଚାଲି ଯାଇଥିଲେ ଛୁଟି କଟାଇବା ପାଇଁ ।

ଏମିତି ମୁଁ ଯେତେଥର ଚେଷ୍ଟା କରିଛି ସୀମାଙ୍କୁ ଦେଖା କରିବାକୁ କିଛି ନା କିଛି ପ୍ରତିବନ୍ଧକ ମୋ ବାଟରେ ଅଚାନକ ଆସି ଠିଆ ହୋଇଚି । ସୀମାଙ୍କୁ ସାକ୍ଷାତ କରିବା ଇଚ୍ଛା ମୋର ପୂରଣ ହୋଇ ପାରି ନାହିଁ ।

ସୀମାଙ୍କୁ ଭେଟିବା ଇଚ୍ଛାର ଚାରାଟି ମୋ ମନ ଭିତରେ ଖୁବ୍ ଦ୍ରୁତଗତିରେ ବଢ଼ିବାକୁ ଲାଗିଲା । ତାପର ବର୍ଷ ଗ୍ରୀଷ୍ମଛୁଟିରେ ପୁଣି ଗଲି ମାମୁଘର ଗାଆଁକୁ । ଏଥର ମନେ ମନେ ସଂକଳ୍ପ କଲି ସୀମାଙ୍କ ଭେଟ ନପାଇବା ପର୍ଯ୍ୟନ୍ତ ଫେରିବି ନାହିଁ । କିନ୍ତୁ ମୁଁ ମାମୁଘରେ ପହଞ୍ଚିବାର ଠିକ୍ ପୂର୍ବ ଦିନ ସୀମା ଚାଲି ଯାଇଥିଲେ ବମ୍ବେରେ ଥିବା ତାଙ୍କ ପିଉସୀଙ୍କ ଘରକୁ । ସେଠିକା ଫେସନ୍ ଡିଜାଇନ୍ ଇନଷ୍ଟିଚ୍ୟୁଟ୍‌ରେ ସୀମାଙ୍କର ଆଡମିସନ୍ ହୋଇଯାଇଥିଲା । ସେଠି ରହି ସେ ତିନି ବର୍ଷ ଫେସନ୍ ଡିଜାଇନ୍ କୋର୍ସ କମ୍ପ୍ଲିଟ୍ କରିବେ ।



Digitized by srujanika@gmail.com

ମୁଁ ବିଫଳ ହୋଇ ଗାଆଁକୁ ଫେରି ଆସିଲି । କିନ୍ତୁ ସୀମାଙ୍କୁ ଭୁଲି ପାରିଲି ନାହିଁ । ମୋ ମନରେ ସୀମାଙ୍କ ପ୍ରତି ଥିବା ଭଲ ପାଇବା ନ କମି ବଢ଼ି ବଢ଼ି ଚାଲିଲା । ମୁଁ ମୋର ସମସ୍ତ ଭଲ ପାଇବା ଢାଳି ସୀମାଙ୍କ ପାଖକୁ ଗୋଟିଏ ପ୍ରେମଚିଠି ଲେଖିଲି । କିନ୍ତୁ ଚିଠିଟି ସୀମାଙ୍କ ପାଖକୁ ପଠେଇବି କେମିତି ? ତାଙ୍କ ଠିକଣା ମୋ ପାଖରେ ନଥିଲା । ହୁଏତ ଚେଷ୍ଟା କରିଥିଲେ ଠିକଣା ମିଳିଯାଇ ପାରିଥାନ୍ତା । ମାତ୍ର ଚିଠିଟା ଯଦି ଆଉ କାହା ହାତରେ ପଡ଼ିଯିବ ତେବେ ସୀମା ଅଯଥାରେ ଅପମାନିତ ଓ ଅପଦସ୍ତ ହେବେ ।

ହଠାତ୍ ମୋ ମନକୁ ଗୋଟେ ଭଲ ଆଇଡ଼ିଆ ଜୁଟିଲା । ଚିଠିଟିକୁ ଗୋଟିଏ ମାସିକ ସାହିତ୍ୟ ପତ୍ରିକାକୁ ପଠେଇ ଦେଲି । ଗୋଟିଏ ଗପ ଭାବରେ ତାହା ପ୍ରକାଶ ପାଇଲା । ମୋତେ ଆଶ୍ଚର୍ଯ୍ୟ କରି ସେ ଗଳ୍ପ ଉପରେ ମୁଁ ପାଇଲି ଅନେକ ଚିଠି । ସୀମାଙ୍କ ପ୍ରେମ ମୋତେ ରାତାରାତି ଜଣେ ଗାଳ୍ପିକର ସୁଖ୍ୟାତି ଆଣି ଦେଲା । ବିଭିନ୍ନ ସାହିତ୍ୟ ପତ୍ରିକାର ସଂପାଦକଙ୍କ ଠାରୁ ମୁଁ ଚିଠି ପାଇଲି । ସେ ସବୁ ଚିଠିରେ ଅନୁରୋଧ କରା ଯାଇଥିଲା ଗଳ୍ପ ପାଇଁ ।

ମୁଁ ଗଳ୍ପ ଲେଖିବାକୁ ଉତ୍ସାହିତ ହେଲି । ସୀମାଙ୍କୁ କେନ୍ଦ୍ର କରି ଅନେକ ପ୍ରେମଗଳ୍ପ ଲେଖିଲି ଓ ମୋର ସମସ୍ତ ଗଳ୍ପ ପାଠକମାନଙ୍କ ଦ୍ୱାରା ଆଦୃତ ହେଲା । ପ୍ରଥମ ବର୍ଷ ପ୍ରାୟ ସମସ୍ତ ସଂଭ୍ରାନ୍ତ ଶାରଦୀୟ ପୂଜା ପତ୍ରିକାରେ ମୋ ଗଳ୍ପ ପ୍ରକାଶ ପାଇଲା । ଏ ସମସ୍ତ ଗଳ୍ପରେ ମୁଁ ନିଜ ନାଆଁ ନଦେଇ ଛଦ୍ମ ନାଆଁରେ ଲେଖିଥିଲି ।

ମୁଁ ଭାବିଲି ମୋ ଚିଠି ସୀମାଙ୍କ ହାତରେ ନପହଞ୍ଚି ପାରିଲେ ବି ମୋର କୌଣସି ନା କୌଣସି ଗଳ୍ପ ଦିନେ ନା ଦିନେ ତାଙ୍କ ଦୃଷ୍ଟିରେ ନିଶ୍ଚୟ ପଡ଼ିବ । ପୂଜା ବିଶେଷାଙ୍କରେ ପ୍ରକାଶିତ ହୋଇଥିବା ମୋ ଗଳ୍ପଗୁଡ଼ିକ ଉପରେ ମୁଁ ଅନେକ ପ୍ରଶଂସାମୂଳକ ଚିଠି ପାଇଲି । ଅଳ୍ପ ଦନି ମଧ୍ୟରେ ମୁଁ ଜଣେ ଗାଳ୍ପିକ ଭାବେ ସାରା ରାଜ୍ୟରେ ପରିଚିତ ହୋଇଗଲି । ଭୁବନେଶ୍ୱରରେ ଅନୁଷ୍ଠିତ ହେଉଥିବା ବିଭିନ୍ନ ସାହିତ୍ୟ ସଭାରେ ଯୋଗଦେବା ପାଇଁ ମୋ ପାଖକୁ ନିମନ୍ତ୍ରଣ ଆସିଲା ।ଗାଳ୍ପିକ ଭାବରେ ମୋର ଛଦ୍ମନାଆଁ ଥିଲା 'ଅନିକେତ' ।

ମୋ ପାଠ ପଢ଼ା ପରେ ମୁଁ ଜଣେ ଅଧ୍ୟାପକ ଭାବେ ବାଣୀବିହାରରେ ଯୋଗଦେଲି । ମୋର ବୃତ୍ତି ହେଲା ଅଧ୍ୟାପନା କିନ୍ତୁ ପ୍ରବୃତ୍ତି ହେଲା ସାହିତ୍ୟ ସାଧନା । ସୀମା, ଯାହାଙ୍କ ଯୋଗୁ ମୁଁ ଲେଖକ ହେଲି ତାଙ୍କ ବିଷୟରେ ମୁଁ କିଛି ହେଲେ ତଥ୍ୟ ସଂଗ୍ରହ କରି ପାରିଲି ନାହିଁ କି ତାଙ୍କୁ ଥରଟେ ହେଲେ ସାକ୍ଷାତ ବି କରି ପାରିଲି ନାହିଁ । ମୁଁ କେବଳ ଏତିକି ଖବର ମୋ ମାମୁଙ୍କ ଠାରୁ ପାଇଥିଲି ଯେ ସୀମା ଜଣେ ବୈଜ୍ଞାନିକଙ୍କୁ



Digitized by srujanika@gmail.com

ବିବାହ କରି ତାଙ୍କ ପରିବାର ସହିତ ବମ୍ବେରେ ରହୁଛନ୍ତି । ମୁଁ ଆଉ କେବେ ସୀମାଙ୍କୁ ଦେଖା କରିବାକୁ ଉଦ୍ୟମ କରି ନାହିଁ । କିନ୍ତୁ ତାଙ୍କୁ ନେଇ ମୁଁ ଗପ,ଉପନ୍ୟାସ ଲେଖି ଚାଲିଛି, ଆଉ କେବେ ପଛକୁ ଫେରି ଚାହିଁନାହିଁ । ମୋ ଜାଣିବାରେ ମୋର ସମସ୍ତ ସାହିତ୍ୟ ସମ୍ଭବ ଓ ସମୃଦ୍ଧ ହୋଇଛି କେବଳ ସୀମାଙ୍କ ଯୋଗୁ । ଆଜି ସାହିତ୍ୟରେ ଯାହା ଶ୍ରଦ୍ଧା,ସମ୍ମାନ, ସ୍ୱୀକୃତି ଓ ପୁରସ୍କାର ପାଇଛି ସେ ସବୁର ଶ୍ରେୟ ମୁଁ ଦେବି କେବଳ ସୀମାଙ୍କୁ । ମୋର ପନ୍ଦରଟି ଗଳ୍ପଗ୍ରନ୍ଥ, ଦଶଟି ଉପନ୍ୟାସ. ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ରାଜ୍ୟର ଅନେକ ସାରସ୍ୱତ ଅନୁଷ୍ଠାନରୁ ମିଳିଥିବା ସମ୍ମାନ ସବୁର ସୁରୁ ହୋଇଛି ସୀମାଙ୍କ ସହିତ ମୋର ସେଇ ପ୍ରଥମ ଦେଖାରୁ । ଯାହାଙ୍କ ପାଇଁ ଏତେ ସବୁ ସମ୍ଭବ ହୋଇଛି ସିଏ ଏ ବିଷୟରେ ଅଦ୍ୟାବଧି ସଂପୂର୍ଣ୍ଣ ଅଜ୍ଞ ।

ଏତେ ବର୍ଷ ପରେ ଆଜି ସେଇ ସୀମାଙ୍କଠୁ ଚିଠିଟିଏ ମିଳିଛି । ଚିଠିର ଛୁଆଁ ମୋ ଦେହ ଓ ମନର ପ୍ରତି କୋଣ ଅନୁକୋଣରେ ବିଜୁଳି ପରି ଚମକ ଦେଲା । ପଚିଶ ବର୍ଷର ଜଣେ ତରୁଣ ପରି ମୁଁ ରୋମାଞ୍ଚିତ ହେଲି ।

ସୀମାଙ୍କ ଚିଠିଟି ମୋ ହାତରେ ଅନେକ ବେଳୁ ମୁଁ ଧରିଛି; କିନ୍ତୁ ଗୋଟିଏ ହେଲେ ଅକ୍ଷର ସେଥିରୁ ଏପର୍ଯ୍ୟନ୍ତ ନ ପଢ଼ି, ପଢୁଥିଲି ମୋର ସେଇ ଅଭୁଲା ଅତୀତ ସ୍ମୃତିକୁ ଯାହା ମୋତେ ଆଜି କଥାକାର କରି ପାରିଛି । ହଠାତ୍ ଶିଢ଼ିଘର ଛାତରୁ ଦୁମ୍ କରି ତଳକୁ ଡେଇଁଲା ବଡ଼ ଭୁଆ ବିରାଡ଼ିଟାଏ । ମୁଁ ଚମକି ପଡ଼ିଲି । ସ୍ମୃତିର ଶାମୁକା ଭିତରୁ ମୁଁ ବାହାରି ଆସିଲି ।

ସୀମାଙ୍କ ଚିଠି ପଢ଼ିଲି । ସୀମାଙ୍କ ହସ୍ତାକ୍ଷର ମୁକ୍ତା ପରି ଅନିନ୍ଦ୍ୟ ସୁନ୍ଦର । ସୀମା ଲେଖିଥିଲେ, ମୁଁ ଆପଣଙ୍କ ଗଳ୍ପ ଓ ଉପନ୍ୟାସର ଜଣେ ମୁଗ୍ଧ ପାଠିକା । ମୁଁ ସୁଦୂର ବମ୍ବେ ସହରରେ ରହୁଥିଲେ ବି ମୋ ଗାଆଁର ନଈ, ଆମ୍ବତୋଟା, ବିଲ, ପଡ଼ିଆ, ସାଙ୍ଗ,ସାଥୀଙ୍କୁ କେବେ ଭୁଲି ପାରେନା । ସେମାନେ ମୋତେ ଆକର୍ଷିତ କରନ୍ତି ଓ ମୁଁ ପ୍ରତିବର୍ଷ ଥରଟିଏ ଗାଆଁକୁ ଆସେ । ଆମ ଓଡ଼ିଆ ଗଳ୍ପ,ଉପନ୍ୟାସ ପ୍ରତି ମୋର ଖୁବ୍ ଦୁର୍ବଳତା ଯୋଗୁ ମୁଁ ଭୁବନେଶ୍ୱରର ପୁସ୍ତକମେଳାକୁ ପ୍ରତି ବର୍ଷ ଆସେ । ବର୍ଷକ ପଢ଼ିବା ପାଇଁ ଭଲ ଭଲ ଗଳ୍ପ, ଉପନ୍ୟାସ ବହି ବାଛି ବାଛି କିଣେ ।

ଗୋଟେ ବର୍ଷ ମୁଁ ଗଳ୍ପ ବହିଟିଏ କିଣିଲି ଯାହା ମୋତେ ବିମୋହିତ କଲା । ସେ ବହିଟିର ନାଆଁଥିଲା 'ପ୍ରଥମ ଦେଖା' । ସେ ବହିଟି ପଢ଼ିବା ପରେ ମୋତେ ଲାଗିଲା ଯେମିତି ଏ ବହିର ପ୍ରତ୍ୟେକ ଗଳ୍ପରେ ମୁଁ ହିଁ ନାୟିକା । ତାପରେ ମୋ ମନରେ ଭାବାନ୍ତର



Digitized by srujanika@gmail.com

ସୃଷ୍ଟି ହେଲା, ମୋତେ ନେଇ କିଏ ଏ ଗଳ୍ପ ସବୁ ଲେଖୁଛନ୍ତି ?

ମୁଁ ପଢ଼ିଲି ସେ ଗାଳ୍ପିକଙ୍କର ନାଆଁ । ମୁଁ ଆଗରୁ ପଢ଼ି ନଥିବା କି ଜାଣି ନଥିବା ଅନାମଧେୟ ଗାଳ୍ପିକ । ନାଆଁ ତାଙ୍କର ଅନିକେତ । କିନ୍ତୁ କିଛି ଜାଣି ପାରିଲି ନାହିଁ । ତାପର ବର୍ଷ ପୁଣି ପୁସ୍ତକମେଳାକୁ ଆସି ଖୋଜିଲି ଅନିକେତଙ୍କ ନୂଆ ଗଳ୍ପ ବହି । ସେ ବର୍ଷ ଅନିକେତ ଲେଖୁଥିବା ଗଳ୍ପ ବହିର ନାଆଁଥିଲା 'ସ୍ମୃତି ଶାମୁକା' । ସେ ବହିର ପ୍ରତ୍ୟେକ ଗଳ୍ପରେ ମଧ୍ୟ ମୁଁ ମୋତେ ଖୋଜି ପାଇଲି । ମୁଁ ଆଶ୍ଚର୍ଯ୍ୟ ହେଲି । ମୋର କାହା ସହିତ କିଛି ହେଲେ ପ୍ରେମ ସଂପର୍କ ନାହିଁ, ଅଥଚ ମୋତେ ନେଇ କେହି ଜଣେ ଗଳ୍ପ ଲେଖୁ ଚାଲିଛି ।

ମୁଁ ମୋର ପଛଦିନମାନଙ୍କୁ ମନେ ପକାଇଲି । ମନେ ପଡ଼ିଲା, ମୁଁ ମୋର ଆଦ୍ୟ ଯୌବନରେ ପ୍ରଥମ ଦେଖାରେ ଜଣେ ସୌମ୍ୟଦର୍ଶନ ଯୁବକଙ୍କୁ ଭଲ ପାଇ ବସିଥିଲି । ତାଙ୍କ ମିଠା ପିଜୁଳି ବନ୍ଧା ରୁମାଲ ଉପହାର ସ୍ୱୀକାର କରି ମୁଁ ପ୍ରତି ଉପହାର ଦେଇଥିଲି ମୋ ନାମାଙ୍କିତ ରୁମାଲ ।

ବର୍ଷେ ଦୁଇ ବର୍ଷ ପର୍ଯ୍ୟନ୍ତ ମୁଁ ସେ ଯୁବକଙ୍କୁ ମନେ ମନେ ଖୋଜିଲି କିନ୍ତୁ ତାଙ୍କୁ ପାଇଲି ନାହିଁ । ସିଏ ଥିଲେ ଆମ ଗାଆଁ ଭଣଜା । ତାଙ୍କ ନାଆଁ ଥିଲା ଜୀବନ । ଗୋଟିଏ ଛୁଟିରେ ତାଙ୍କ ସହିତ ମୋର ପ୍ରଥମ ଦେଖା ହୋଇଥିଲା । ତା ପରଠୁ ମୁଁ ତାଙ୍କୁ ମନେ ମନେ ଖୋଜୁଥିଲେ ବି ଆଉ କେବେ ଦେଖା ହୋଇ ପାରିନାହିଁ । ଦୁଇ ତିନି ବର୍ଷ ପରେ ଶୁଣିଲି ଆମ ଗାଆଁର ସେ ଭଣଜା ତାଙ୍କ କଲେଜର କୌଣସି ଝିଅକୁ ବିବାହ କରି ଯାଇଛନ୍ତି । ତଥାପି ମୁଁ ତାଙ୍କୁ ମୋ ମନରୁ କାଢ଼ି ପଦାକୁ ଫିଙ୍ଗିଦେଇ ପାରିଲି ନାହିଁ । ସିଏ ମୋର ପ୍ରଥମ ପ୍ରେମ ଭାବରେ ମୋ ମନରେ ଆସ୍ଥାନ ଜମାଇଁ ସାରିଥିଲେ । ସିଏ ଯାହାର ସ୍ୱାମୀ ହୁଅନ୍ତୁ, କିନ୍ତୁ ସିଏ ମୋର ପ୍ରଥମ ପ୍ରେମ ହୋଇ ସାରା ଜୀବନ ରହିବେ ।

ମୋର ମନେହେଲା ଗାଳ୍ପିକ ଅନିକେତ ହୁଏତ ମୋ ସ୍ମୃତି-ଶାମୁକାରେ ସାଇତା ସେଇ ଯୁବକ । ମୁଁ ଆମ ଗାଆଁରେ ଥିବା ଆପଣଙ୍କ ମାମୁଘରେ ପଚାରି ବୁଝିଲି ମୋ ଅନୁମାନ ସତ୍ୟ । ସେଇ ଗଳ୍ପ ବହିର ଲେଖକ ଅନିକେତ ଓ ଆମ ଗାଆଁ ଭଣଜା ଆଉ ମୋ ଜୀବନର ପ୍ରଥମ ଯୁବକ ଏକ ଓ ଅଭିନ୍ନ । ତାଙ୍କର ପ୍ରକୃତ ନାଆଁ ଜୀବନ ସାମଲ ଥିଲେ ବି ତାଙ୍କର ପେନ୍‌ନେମ୍ ଥିଲା ଅନିକେତ ।

ସେତେବେଳକୁ ମୋ ଜୀବନ ବଳୟ ମଧ୍ୟରେ ଆବିର୍ଭାବ ଘଟିଥିଲା ଆଉ ଜଣେ ଯୁବକଙ୍କର । ସିଏ ଥିଲେ ବିଶିଷ୍ଟ ଯୁବ ବୈଜ୍ଞାନିକ ଉନ୍ମୁକ୍ତ ନାୟକ । ତାଙ୍କ ସହିତ



Digitized by srujanika@gmail.com

ମୋର ବିବାହ ହେଲା ବମ୍ବେରେ । ମୁଁ ବମ୍ବେର ଗୋଟେ କମ୍ପାନୀରେ ଫେସନ୍ ଡିଜାଇନର୍ ଭାବେ ଯୋଗଦେଲି । ଉନ୍ମୁକ୍ତ ତାଙ୍କ ଗବେଷଣାକୁ ନେଇ ଦିନରାତି ବ୍ୟସ୍ତ ରହନ୍ତି । ମୋତେ ଉନ୍ମୁକ୍ତ ଆଦୌ ସମୟ ଦେଇ ପାରନ୍ତି ନାହିଁ । କେବେ କେବେ ସିଏ ତାଙ୍କ ଗବେଷଣା କାମରେ ଆମେରିକା, ଇଂଲଣ୍ଡ ଆଉ ଜର୍ମାନୀ ପରି ବିଦେଶ ଜାଗାମାନଙ୍କୁ ଯାଇ ଏବାଦିକ୍ରମେ ତିନି ଚାରିମାସ କଟାନ୍ତି । ସେଠି ତାଙ୍କ କାମରେ ସିଏ ଏପରି ବ୍ୟସ୍ତ ରହନ୍ତି ଯେ ମୋ ସହିତ ଫୋନ୍‌ରେ କଥା ହେବାକୁ ମଧ୍ୟ ସମୟ ବାହାର କରି ପାରନ୍ତି ନାହିଁ । ତଥାପି ମୋର ଦୁଃଖ ନଥିଲା । ମୁଁ ଜାଣିଥିଲି ଯେ ମୁଁ ଜଣେ ବୈଜ୍ଞାନିକଙ୍କୁ ବିବାହ କରିଛି ଯାହାଙ୍କର ପ୍ରଥମ ପ୍ରାୟରିଟି ତାଙ୍କ ଗବେଷଣା । ସେ ଦେଶ,ଜାତି ତଥା ସମଗ୍ର ମାନବ ସମାଜ ପାଇଁ କାମ କରୁଛନ୍ତି । ତେଣୁ ମୁଁ ମୋର ବ୍ୟକ୍ତିଗତ ସ୍ୱାର୍ଥକୁ ଅଣଦେଖା କରି ତାଙ୍କ କାମରେ ସହଯୋଗ କରିବାକୁ ହେବ । ମୋଠୁ ତାଙ୍କର ଦୀର୍ଘ ଅନୁପସ୍ଥିତି ପାଇଁ ମୁଁ କେବେ ତାଙ୍କ ପାଖରେ ଅଭିମାନ କି ଅଭିଯୋଗ କରିନାହିଁ । ମୁଁ ମୋ ବଳକା ସମୟ କଟାଇବା ପାଇଁ ତୁମ ଗଳ୍ପ ଉପନ୍ୟାସ ପଢ଼େ, ତାଭିତରେ ନିଜକୁ ବୁଡ଼ାଇ ରଖେ । ଥରେ, ଦୁଇଥର କି ତିନିଥର ନୁହଁ, ମୁଁ ତୁମ ଗଳ୍ପ,ଉପନ୍ୟାସ ଗୁଡ଼ିକୁ ବାରମ୍ବାର ପଢ଼େ ।

ମୋ ଚିଠି ଦୀର୍ଘ ହୋଇ ଯାଉଛି । ତୁମ ଲେଖାଲେଖିର ସମୟ ଖର୍ଚ୍ଚକରି ମୋର ଏ ଚିଠି ପଢ଼ିବାରେ ହୁଏତ ତୁମର ଆଗ୍ରହ ନଥିବ । ମୁଁ ସେଥି ପାଇଁ ମୋ କଥାକୁ ସଂକ୍ଷିପ୍ତ କରି ଦେଉଛି । ମୋ ବିଭାଘରର କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ମୁଁ ନିଃସନ୍ତାନ ଥିଲି ଓ ଆମେ ସନ୍ତାନ ଆଶା ଛାଡ଼ି ଦେଇ ଥିଲୁ । ସେ ବିଷୟରେ ମୁଣ୍ଡ ଖେଳାଇବା ପାଇଁ ଉନ୍ମୁକ୍ତଙ୍କ ପାଖରେ ସମୟ ନଥିଲା । ଡାକ୍ତର ପରାମର୍ଶ କରି କିଛି ଚିକିତ୍ସା ବ୍ୟବସ୍ଥା କରିବା ସପକ୍ଷରେ ନଥିଲେ ଉନ୍ମୁକ୍ତ । ସିଏ କହୁଥିଲେ- ଯଦି ଚାହୁଁଛ ତେବେ ଅନାଥାଶ୍ରମ ଯାଅ । ସେଠୁ ଗୋଟିଏ ଶିଶୁ ଆଣି ଲାଳନ ପାଳନ କର । ସେଥିରେ ଆମ ଦେଶର କିଛି ସମସ୍ୟାର ସମାଧାନ ହେବ ଆଉ ତୁମ ସନ୍ତାନ ଅଭାବ ପୂରଣ ହେବ ।

ମୁଁ ତାଙ୍କ କଥାକୁ ସମ୍ମାନ ଦେଇ ଶିଶୁଟିଏ ଅନାଥାଶ୍ରମରୁ ଗ୍ରହଣ କଲି । ସିଏ ହଷ୍ଟେଲରେ ରହି ପାଠ ପଢ଼ିଲା ।

ତୁମେ ଭାବୁଥିବ ଇଏତ ଖୁବ୍ ସାଧାରଣ କଥା ଏସବୁ ଲେଖି ମୁଁ କାହିଁକି ତୁମର ମୂଲ୍ୟବାନ ସମୟ ନଷ୍ଟ କରୁଛି ? ନା ଅନିକେତ ! ମୋ ଜୀବନରେ ଏଇଠି ଗୋଟେ ଶକ୍ତ ମୋଡ଼ ଆସିଲା ଯାହା ତୁମ ଗଳ୍ପ ପାଇଁ ହୁଏତ ଖୋରାକ ଯୋଗାଇ ପାରେ । ମୋ ପୁଅକୁ



Digitized by srujanika@gmail.com

ଯେତେବେଳେ ମାତ୍ର ଛଅ ବର୍ଷ ହୋଇଥିଲା ଠିକ୍ ସେତିକିବେଳେ ଉନ୍ମୁକ୍ତ ବାହାରିଲେ ଆମେରିକା ତାଙ୍କ ରିସର୍ଚ୍ଚ କାମରେ । ସେଇଟା ଥିଲା ତାଙ୍କ ରିସର୍ଚ୍ଚର ଚୂଡ଼ାନ୍ତ ପର୍ଯ୍ୟାୟ । ସିଏ କହୁଥିଲେ ତାଙ୍କ ରିସର୍ଚ୍ଚ ଶେଷ ହେଲେ ଚିକିତ୍ସା ଜଗତ ପାଇଁ ଖୁବ୍ ବିରାଟ ସଫଳତା ମିଳିବ । କର୍କଟ ରୋଗକୁ ପୃଥିବୀରୁ ସମୂଳେ ଧ୍ୱଂସ କରିବାକୁ ମଣିଷ ସମର୍ଥ ହେବ । କିନ୍ତୁ ଉନ୍ମୁକ୍ତଙ୍କର ଯେ ସେଇଟା ଥିଲା ଅନ୍ତିମ ଯାତ୍ରା ସେକଥା ଆମେ କେହି ଜାଣି ପାରିଲୁ ନାହିଁ । ଅଧା ବାଟରେ ତାଙ୍କ ପ୍ଲେନ୍ ଦୁର୍ଘଟଣାଗ୍ରସ୍ତ ହେଲା ଓ ସେଥିରେ ଥିବା ସମସ୍ତ ଯାତ୍ରୀ ମୃତ୍ୟୁବରଣ କଲେ । ମୁଁ ଉନ୍ମୁକ୍ତଙ୍କୁ ସବୁ ଦିନ ପାଇଁ ହରାଇଲି ।

ମୋ ଦୁଃଖ ଏତିକିରେ ଶେଷ ହେଲା ନାହିଁ,ବରଂ କହିବାକୁ ଗଲେ ମୋ ଦୁଃଖ ଏଇଠୁ ଆରମ୍ଭ ହେଲା । ଉନ୍ମୁକ୍ତଙ୍କ ମୃତ୍ୟୁ ପରେ ମୋତେ ଚାରି ଆଡ଼ ଶୂନଶାନ୍ ଲାଗିଲା । ମୋ ଶାଶୁ, ଶ୍ୱଶୁର ଅନେକ ଦିନୁ ସଂସାର ଛାଡ଼ି ଚାଲି ଯାଇଥିଲେ ଓ ତାଙ୍କର ଆଉ କେହି ବଂଶଜ ନଥିଲେ । ଶାଶୁ,ଶ୍ୱଶୁରଙ୍କ ଦେହାନ୍ତ ପୂର୍ବରୁ ସେମାନେ ତାଙ୍କର ସମସ୍ତ ସ୍ଥାବର ଅସ୍ଥାବର ସଂପତି ବିକ୍ରିକରି ଦେଇ ସମସ୍ତ ଟଙ୍କା ଉନ୍ମୁକ୍ତ ଓ ମୋ ନାମରେ ଥିବା ଯଏଣ୍ଟ ଆକାଉଣ୍ଟରେ ଡିପୋଜିଟ କରିଦେଇଥିଲେ । ଆମ ଗାଆଁରେ ମଧ୍ୟ ମୋ ବାପା ମାଆଙ୍କର ଦେହାନ୍ତ ହୋଇଯାଇଥିଲା । ମୋତେ ଆଉ ଚାକିରି କରିବାକୁ ଭଲ ଲାଗିଲା ନାହିଁ ।

ମୋ ହାତରେ ପ୍ରଚୁର ଟଙ୍କା ପଇସା ଥିଲା । ଉନ୍ମୁକ୍ତଙ୍କ ମୃତ୍ୟୁ ବେଳକୁ ମିଳିଥିବା କ୍ଷତିପୂରଣ ଓ ଚାକିରି କ୍ଷେତ୍ରରୁ ମୋତେ ଅନେକ ଟଙ୍କା ମିଳିଲା । ମୋ ପୁଅ ଆଉ ତାର ପାଠପଢ଼ା ଓ ତାର ଭବିଷ୍ୟତକୁ ନେଇ ମୁଁ ଦିନ କାଟିବାକୁ ଚେଷ୍ଟା କଲି । କିନ୍ତୁ ସେତିକି ମଧ୍ୟ ଭଗବାନ ମୋତେ ମଞ୍ଜୁର କଲେ ନାହିଁ । ହଠାତ୍ ଦିନେ ତା ସ୍କୁଲରୁ ମୋ ପାଖକୁ ଟେଲିଫୋନ୍ ଆସିଲା ଯେ ମୋ ପୁଅ ସ୍କୁଲ ଛାତରୁ ପଡ଼ି ପ୍ରାଣ ହରାଇଛି । ମୋର ବଞ୍ଚିବାର ଶେଷ ରାହା ଚାଲିଗଲା । ମୋତେ ଚାରି ଦିଗ ଅନ୍ଧାର ଦିଶିଲା । ବମ୍ବେରେ ଆଉ ରହିବାର କିଛି ବି ଆଗ୍ରହ ମୋର ରହିଲା ନାହିଁ । ମୁଁ ବମ୍ବେ ଛାଡ଼ିବାକୁ ନିଷ୍ପତ୍ତି ନେଲି; କିନ୍ତୁ ଯିବି କେଉଁଠିକି ? ଉନ୍ମୁକ୍ତଙ୍କ ଗାଆଁରେ ତାଙ୍କର ରକ୍ତ ସଂପର୍କୀୟ ଆଉ କେହି ନଥିଲେ କି ସେଠି ତାଙ୍କର ଆଉ ଘରଦ୍ୱାର କିଛି ନଥିଲା । ଆମ ଗାଆଁକୁ ଦୃଷ୍ଟି ପକାଇଲି ସେଠି ଅଛନ୍ତି ମୋର ଭାଇ,ଭାଉଜ, ପୁତୁରା. ଝିଆରୀ ଆଉ ଚାକର, ଚାକରାଣୀ । ମୋ ଗାଆଁ ଲୋକ ମଧ୍ୟ ଅଛନ୍ତି ଓ ମୁଁ ସେମାନଙ୍କୁ ପ୍ରତ୍ୟେକଙ୍କୁ ଚିହ୍ନିଚି, କାରଣ ମୁଁ ପ୍ରତି ବର୍ଷ ଭୁବନେଶ୍ୱର ପୁସ୍ତକମେଳା ବେଳେ ଗାଆଁ ଯିବା ଅଭ୍ୟାସ ଶେଷ ପର୍ଯ୍ୟନ୍ତ ରଖିଥିଲି । ମୋ ମନରେ ମଧ୍ୟ ଆଉ ଗୋଟିଏ ସୁପ୍ତ ଇଚ୍ଛା ଥିଲା । ଯଦି କେବେ ସୁବିଧା ହୁଏ ତୁମକୁ ଦେଖା କରିବି, ତୁମ ସହିତ



Digitized by srujanika@gmail.com

କଥା ହେବି ।

ମୁଁ ଭାବିଥିଲି ଆମ ଗାଆଁକୁ ଆସିଲେ ମୋ ପରିବାର ଓ ଗାଆଁ ଲୋକଙ୍କ ସହିତ ମିଶିଲେ, ବସିଲେ, ହସିଲେ, ଗପିଲେ ମୋ ସମୟ ଖୁସିରେ କଟିଯିବ । କିନ୍ତୁ ସେମିତି କିଛି ହେଲା ନାହିଁ । ମୁଁ ମୋ ଅତୀତକୁ ଭୁଲିବାକୁ ଯେତେ ଚେଷ୍ଟା କଲି ମୋ ଗାଆଁ ଲୋକ,ମୋ ସଂପର୍କୀୟ,ବନ୍ଧୁ, ବାନ୍ଧବ ଓ ସାଇ ପଡ଼ୋଶୀ ସେତେ ଉଖାରି ଦେଲେ ମୋର ସେଇ କ୍ଷତାକ୍ତ ଅତୀତକୁ । ସେଥିରୁ ଅନବରତ ଝରିଲା ରକ୍ତ, ମୋତେ କନ୍ଦାଇଲା ଓ ବ୍ୟଥିତ କଲା । ମୋର ଅନିଛା ସତ୍ୱେ ମୋତେ ସେମାନଙ୍କ ଆଗରେ ବାରମ୍ବାର ଦୋହରାଇବାକୁ ହେଲା କେଉଁ ପରିସ୍ଥିତିରେ ଉନ୍ମୁକ୍ତ ମୋତେ ଛାଡ଼ି ଚାଲିଗଲେ, କେମିତି ତାଙ୍କର ପ୍ଲେନ୍ କ୍ରାସ ହେଲା ଓ କେମିତି ମୋର ଏକମାତ୍ର ପୁତ୍ରର ଶୋଚନୀୟ ମୃତ୍ୟୁ ହେଲା ? ଆଉ କେହି କେହି ଆଖି ପକାଇଲେ ମୋ ବ୍ୟାଙ୍କ ବାଲାନ୍ସ ଉପରେ । ମୋର ଅତି ନିଜର ଲୋକମାନେ ବିଭିନ୍ନ ଆଳରେ ମୋତେ ଧାର୍ ମାଗିଲେ ମୋଟା ଅଙ୍କର ଅର୍ଥ ।

ମୋତେ ଲାଗିଲା ମୁଁ ଗାଆଁକୁ ଆସି ମସ୍ତ ବଡ଼ ଭୁଲ୍ କରି ଦେଇଛି । ପୁଣି ଭାବିଲି ଆଉ ତେବେ ଯିବି କୋଉଠିକି ? କୋଉଠି ମୋତେ ଶାନ୍ତି ମିଳିବ ? ମୋତେ କେହି କେହି ପ୍ରସ୍ତାବ ଦେଲେ ବମ୍ବେ ଫେରିଯାଇ କୌଣସି କମ୍ପାନୀରେ ଜଏନ୍ କରିବା ପାଇଁ । କିନ୍ତୁ ମୁଁ ଯେଉଁଠି ସବୁ ହରାଇଥିଲି ସେଠିକି ପୁଣି ଯିବି କ'ଣ ପାଇଁ ? ମୋ ପୁତୁରା ଝିଆରୀ ପ୍ରସ୍ତାବ ଦେଲେ ତାଙ୍କର ଗୋଟେ ପୁଅକୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରି ତାର ଲାଳନ ପାଳନରେ ସମୟ କାଟିବାକୁ । କିନ୍ତୁ ମୋତେ ତାହା ଠିକ୍ ଲାଗିଲା ନାହିଁ, କାରଣ ମୋର ତିନିଟା ପୁତୁରା ଆଉ ଦୁଇଟା ଝିଆରୀ ଥିଲେ । ଜଣକର ପୁଅକୁ ପୋଷ୍ୟପୁତ୍ର ଭାବେ ଗ୍ରହଣକଲେ ଅନ୍ୟମାନେ ମନ ଦୁଃଖ କରିବେ, ଶତ୍ରୁ ହୋଇ ଠିଆହେବେ । ପୁଣି ଅନାଥାଶ୍ରମରୁ ଆଉ ଗୋଟିଏ ଶିଶୁ ଏମାନେ ଅଣାଇ ଦେବେ ନାହିଁ । ତାଛଡ଼ା ମୋର ଏ ଉତୀର୍ଣ୍ଣ ବୟସରେ ପିଲା ଗ୍ରହଣ କରିବା ମୋତେ ନିଶ୍ଚୟ ସମସ୍ୟାରେ ପକାଇବ । ତାକୁ ବଡ଼ କରି ସମାଜରେ ମଣିଷ କରି ଠିଆ କରିବା ପାଇଁ ମୋର ହୁଏତ ଆୟୁଷ ପାଇବ ନାହିଁ । ନୂଆ ଗଛଟିଏ ଲଗାଇ ତାର ଯତ୍ନ ନନେଇ ପାରିଲେ ଗଛଟି ଅସମୟରେ ଉଜୁଡ଼ି ଉପୁଡ଼ି ଯିବ । ମୋ ମୃତ୍ୟୁ ପରେ ତା'ପାଇଁ ମୋ ପ୍ରାଣ ଡହଳ ବିକଳ ଓ ଅଶାନ୍ତ ରହିବ । ଯାହାର ମୁଁ ସଂପୂର୍ଣ୍ଣ ଦାୟିତ୍ୱ ନେବାକୁ ସମର୍ଥ ହେବି ନାହିଁ ତାକୁ କେଉଁ ନ୍ୟାୟରେ ଅଧା ବାଟରେ ଅସହାୟ ଭାବେ ବସାଇ ଦେଇ ଯିବି ?

ଆନନ୍ଦ ଚନ୍ଦ୍ର ପତି

Digitized by srujanika@gmail.com

ଏମିତି ଗୋଟେ ଦୋଛକିରେ ଠିଆହୋଇ ମୁଁ କ'ଣ କରିବି ତାହା ସ୍ଥିର କରିପାରିଲି ନାହିଁ । ଅଥଚ ମୋ ପୁତୁରା ଝିଆରୀମାନେ ମୋତେ ଭୁଲ୍ ବୁଝିଲେ । ସେମାନେ ମୋତେ ନାନା ଇଙ୍ଗିତ ଓ ଆକ୍ଷେପ କଲେ । ତଥାପି ମୁଁ ସେ ସବୁ ଲାଂଛନା ସହି ଓ ଆଖିର ଲୁହକୁ ଲୁଚାଇ ଲୁଚାଇ ପଣତ କାନିରେ ପୋଛି ଦିନ କାଟି ଚାଲିଲି ।

ମୁଁ ଭାବିଲି ତୁମ ଗାଆଁ ଠିକଣା ପଚାରି ତୁମକୁ ଯାଇ ସାକ୍ଷାତ କରିବି । ମିଠା ପିଜୁଳି ବନ୍ଧା ତୁମର ସେ ରୁମାଲ ଯାହା ଆମ ପ୍ରଥମ ପ୍ରେମର ମୂକ ସାକ୍ଷୀ ଓ ଯାହାକୁ ମୁଁ ଅତି ଯତ୍ନରେ ଆଦ୍ୟ ଯୌବନରୁ ଆଜି ପର୍ଯ୍ୟନ୍ତ ସାଇତି ରଖିଛି ତାକୁ ତୁମକୁ ଫେରାଇବି । ତୁମ ସହିତ ଗପିବି, ତୁମ ଗଳ୍ପର ଚରିତ୍ରମାନଙ୍କ ବିଷୟରେ ତୁମ ସହିତ ଆଲୋଚନା କରିବି । ତୁମ ସ୍ତ୍ରୀ,ପିଲା ଓ ପରିବାର ସହିତ ଅନ୍ତରଙ୍ଗ ଆଳାପ, ଆଲୋଚନା କରିବି ।

କିନ୍ତୁ ପରକ୍ଷଣରେ ଭାବିଲି ନା, ତୁମର ସୁଖୀ ପରିବାରରେ ମୋ ଉପସ୍ଥିତି ଅକାଳ ଝଡ଼ ସୃଷ୍ଟି କରିବାର ଯଥେଷ୍ଟ ଆଶଙ୍କା ଅଛି । ତୁମ ସ୍ତ୍ରୀଙ୍କୁ ମୁଁ ମୋର କି ପରିଚୟ ଦେବି ? କହିପାରିବି କି ମୁଁ ଅନିକେତଙ୍କ ପ୍ରଥମ ପ୍ରେମ ବୋଲି ? ନା କହି ପାରିବି ମୁଁ ଅନିକେତଙ୍କ କଲେଜ ଜୀବନର ବାନ୍ଧବୀ ବୋଲି ? କହି ପାରିବି କି ମୁଁ ତାଙ୍କ ଗଳ୍ପ, ଉପନ୍ୟାସର ଜଣେ ମୁଗ୍ଧା ପାଠିକା ବୋଲି ? ନା କହି ପାରିବି ମୁଁ ତାଙ୍କ ପ୍ରତ୍ୟେକ ଗଳ୍ପ, ଉପନ୍ୟାସର ପ୍ରକୃତ ନାୟିକା ବୋଲି ? ମୁଁ ମୋର ଯାହା ପରିଚୟ ଦେଲେବି ତୁମ ସ୍ତ୍ରୀଙ୍କ ମନ-ଆକାଶ ସାରା ସନ୍ଦେହର ଧୂଆଁରେ ଭରିଯିବ ।ଏଯାବତ୍ ସୁଖରେ କଟି ଆସିଥିବା ତୁମର ସୁଖୀ ଦାମ୍ପତ୍ୟ ଜୀବନ ନିଶ୍ଚୟ ଇତସ୍ତତ ହୋଇଯିବ । ବାର୍ଦ୍ଧକ୍ୟରେ ମଧ୍ୟ କୌଣସି ସ୍ୱାମୀ ତା' ସ୍ତ୍ରୀ ଆଖିରେ ସନ୍ଦେହମୁକ୍ତ ନୁହଁ, କିମ୍ୱା କୌଣସି ସ୍ତ୍ରୀ ତା' ସ୍ୱାମୀ ଆଖିରେ ସନ୍ଦେହମୁକ୍ତ ନୁହଁ । ମୁଁ ତୁମ ଘରକୁ ଯାଇ ତୁମ ସୁଖ ସଂସାରରେ ନିଆଁ ଲଗାଇବାକୁ ଉଚିତ ମନେକଲି ନାହିଁ ।

ତାଛଡ଼ା ତୁମେ ଓ ମୁଁ ବୟସ ମାଡ଼ରେ ଆମ ସେତେବେଳର ଚେହେରା ହରାଇ ସାରିଛେ । ଆଜିକୁ ଚାଳିଶ ବର୍ଷ ତଳେ ତୁମେ ଯେଉଁ ସୀମାକୁ ଦେଖିଥିଲ ସେ ସୀମା ଆଜି ନାହିଁ । ମୁଁ ସେତେବେଳେ ଯେଉଁ ଜୀବନଙ୍କୁ ଦେଖିଥିଲି ସେ ଜୀବନଙ୍କୁ ଆଉ କଦାପି ପାଇବି ନାହିଁ । ଏବେ ଦେଖା ହେଲେ କେହି କାହାକୁ କଦାପି ଚିହ୍ନି ପାରିବା ନାହିଁ । ମୋ ମନରେ ଥିବା ତୁମର ସେ ସୌମ୍ୟ ରୂପ ଲିଭି ଯିବ । ତେଣୁ ମୁଁ ସ୍ଥିର କଲି ଯେ କେହି କାହାକୁ ଆଉ ନ ଦେଖିଲେ ଭଲ । ଆମେ ସେତେ ବେଳେ ଦେଖିଥିବା ଆମର ଛବି ସେମିତି ଅବିକୃତ ଥାଉ ।

ଆନଂଦ ଚଂଦ୍ର ପହି

Digitized by srujanika@gmail.com

ତୁମ ଗାଆଁକୁ ଯିବା ଓ ତୁମକୁ ଭେଟିବା କଥା ମନ ଭିତରେ ଚାପି ରଖିଲି । କିନ୍ତୁ ଧୀରେ ଧୀରେ ମୋ ଆଖିରୁ ନିଦ ହଜିଗଲା । ଯେତେ ଚେଷ୍ଟା କଲେବି ମୋତେ ରାତିରେ କି ଦିନରେ ଆଦୌ ନିଦ ହେଲା ନାହିଁ । ମୋ ସ୍ୱାସ୍ଥ୍ୟର ସମସ୍ତ ପ୍ରକାର ଡାକ୍ତରୀ ପରୀକ୍ଷା କରାଗଲା, କିନ୍ତୁ କୌଣସି ରୋଗର ସନ୍ଧାନ ମିଳିଲା ନାହିଁ । ନିଦ ନହେବାରୁ ଖାଦ୍ୟ ହଜମ ହେଲା ନାହିଁ ଓ ଦେହ ଦୁର୍ବଳ ଲାଗିଲା । ଯୋଗ, ପ୍ରାଣାୟାମ ଓ ବ୍ୟାୟାମ କଲି ।  କିଛି ସୁଫଳ ମିଳିଲା ନାହିଁ । ବଡ଼ ବଡ଼ ଡାକ୍ତରଙ୍କ ସହିତ ପରାମର୍ଶ କଲି । କୌଣସି ଔଷଧ କିଛି କାମ ଦେଲା ନାହିଁ । ଦିଲ୍ଲୀ, ବମ୍ବେ, ଭେଲୋର ଓ କଲିକତାର ସମସ୍ତ ବିଶିଷ୍ଟ ଡାକ୍ତରଙ୍କୁ ଭେଟିଲି । ମୁଁ ଡାକ୍ତରଙ୍କୁ ପଚାରିଲି- ଆମ ଦେଶରେ ଯଦି ଏ ରୋଗକୁ କେହି ଚିହ୍ନଟ କରି ନପାରୁଛନ୍ତି ତେବେ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ କିମ୍ବା ଜର୍ମାନୀ କେଉଁ ଦେଶରେ ମୋର ଏ ରୋଗର ଚିହ୍ନଟ ଓ ଚିକିତ୍ସା ହୋଇ ପାରିବ ମୋତେ କୁହନ୍ତୁ ମୁଁ ସେଠିକି ଯିବି । କେହି ମୋତେ କିଛି ପରାମର୍ଶ ଦେଇ ପାରିଲେ ନାହିଁ । ଦିନକୁ ଦିନ ମୋର ଦେହ ଦୁର୍ବଳ ହେବାକୁ ଲାଗିଲା ।

ରୋଗ ମୋତେ ଆଜିକୁ ଛଅ ବର୍ଷ ହେଲା ଯନ୍ତ୍ରଣା ଦେଇ ଚାଲିଛି । ଏମିତି ବିନା ନିଦ୍ରା, ବିନା ଆହାରରେ ଯନ୍ତ୍ରଣା ପାଇ ପାଇ ପ୍ରତିଦିନ ତିଳ ତିଳ ମରିବା ଅପେକ୍ଷା ସବୁଦିନ ପାଇଁ ମରିଯିବା ଶ୍ରେୟସ୍କର । ମୁଁ,ମୋର ଆତ୍ମୀୟ, ସ୍ୱଜନ, ପରିବାର ସମସ୍ତେ ଚାହାନ୍ତି ମୋ ଆଶୁ ମରଣ । କିନ୍ତୁ ମୃତ୍ୟୁ ମୋଠାରୁ ଦୂରକୁ ଦୂରକୁ ଅପସରି ଯାଉଛି । ମୁଁ ଅନେକ ଥର ଆତ୍ମହତ୍ୟା କରିବାକୁ ଉଦ୍ୟମ କରି ବିଫଳ ହୋଇଛି । ଥରେ ପଏଜନ ଖାଇଥିଲି, ଆଉଥରେ ମୁଠାଏ ନିଦ ଔଷଧ ଏକାଥରେ ଖାଇଥିଲି । କେବଳ ନିଦ ଆଉ ବାନ୍ତି ବ୍ୟତୀତ ଅନ୍ୟ କିଛି ପ୍ରତିକ୍ରିୟା ପ୍ରକାଶ ପାଇଲା ନାହିଁ ।

ମୋ ପାଖରେ ପ୍ରାୟ କୋଟିଏ ଟଙ୍କାର ବ୍ୟାଙ୍କ ବାଲାନ୍ସ, କିନ୍ତୁ ସେ ଟଙ୍କା ମୋର କିଛି କାମରେ ଲାଗୁ ନାହିଁ । କୋଟିଏ ଟଙ୍କା ଫିକ୍ସଡ଼ ଡିପୋଜିଟ୍ ଅଛି ମୋ ନାଆଁରେ ଓ ସେଥିରୁ ବର୍ଷକୁ ସୁଧ ମିଳୁଛି ହାରାହାରି ୧୦ଲକ୍ଷ ଟଙ୍କା । ଏତେ ଟଙ୍କା ମୋ ପାଖରେ ଥାଇବି ମୋତେ ନା ଦେଇ ପାରୁଛି ସୁଖ, ଶାନ୍ତି ନା ଜୀବନ, ନା ଦେଇ ପାରୁଛି ମରଣ ?

ଏଇ କିଛି ଦିନ ହେବ ଆଉ ଗୋଟିଏ କଥା ମୋତେ ମୋ ରୋଗଠୁ ଅଧିକ ଯନ୍ତ୍ରଣା, ଅଧିକ ଲାଞ୍ଛନା ଓ ଅଧିକ ଅପବାଦ ଦେଉଛି । ସେ କଥାଟା କ'ଣ ବୋଲି ତୁମେ ଅନୁମାନ ଲଗାଇ ପାରୁଛ ? ମୁଁ ଜୋର୍ ଦେଇ କହିବି ତୁମେ ସେମିତିଆ ଘୃଣ୍ୟ କଥା କେବେବି କଳ୍ପନା କରି ପାରିବ ନାହିଁ । କେବଳ ତୁମେ କାହିଁକି କେହିବି ସେକଥା



Digitized by srujanika@gmail.com

କଳ୍ପନା କରିବାକୁ ସମର୍ଥ ହେବେ ନାହିଁ । ଆଜିର ଗାଆଁ ଲୋକମାନଙ୍କ ମନ ଏତେ କୁଟୀଳ, କଳୁଷିତ ଓ ସ୍ୱାର୍ଥାନ୍ୱେସୀ ହେଲାଣି ଯେ ସେଇମାନେ ହିଁ କେବଳ ଏମିତିଆ ହୀନ କଥା କଳ୍ପନା କରି ପାରୁଛନ୍ତି । ମୋ ନିଜ ପୁତୁରା ଝିଆରୀମାନେ କଥାବାର୍ତ୍ତା ହେଉଥିବା ମୁଁ ପାଖ ଘରେ ଥାଇ ଶୁଣି ପାରିଲି । ସେମାନେ କହୁଥିଲେ-ସୀମା ଅପା ସହଜରେ ମରିବ ନାହିଁ । ଦେଖୁନ ସିଏ ଯା ଭିତରେ କେତେ ଥର ଆତ୍ମହତ୍ୟା କରିବାକୁ ଚେଷ୍ଟା କଲାଣି, କିନ୍ତୁ ସିଏ କ'ଣ ମରି ପାରିଲା ? ଆମ ଗାଆଁ ରେବତି ମାଆ କଥା ତୁମର ମନେ ଅଛି ? ସିଏ ଏମିତି କଦର୍ଯ୍ୟ ଯନ୍ତ୍ରଣା ପାଇଲା । ଯେତେ ବଇଦ , ଡାକ୍ତର ଦେଖାଇଲା କୋଉଥିରେ ତା' ରୋଗ ଉପଶମ ହେଲା ନାହିଁ । ରୋଗରେ ପଡ଼ି ଦିନରାତି ରଡ଼ି ଛାଡ଼ିଲା । ସମସ୍ତେ କହିଲେ ରେବତି ମାଆ ପାପ କରିଚି । ସିଏ ତା' ପାପ ସ୍ୱୀକାର ନକଲା ପର୍ଯ୍ୟନ୍ତ ତା' ପିଣ୍ଡରୁ ପ୍ରାଣ ଛାଡ଼ିବ ନାହିଁ । ସତକୁ ସତ ସେଇୟା ହେଲା । ରେବତି ମାଆ ସମସ୍ତଙ୍କ ଆଗରେ ତା' ପାପ ସ୍ୱୀକାର କଲା । ତା'ଗେରସ୍ତ କଲିକତାରେ କାମ କରେ , ଛ'ମାସରେ, ବର୍ଷକରେ ଥରେ ଘରକୁ ଆସେ । ରେବତି ମାଆ ଗାଆଁରେ ଥିବା ତା' ଦିଅର ସାଙ୍ଗରେ ପାପ ପ୍ରଣୟ କରିଥିଲା । ଯେମିତି ଏତକ କହି ଦେଇଚି ରେବତି ମାଆ ପିଣ୍ଡରୁ ପ୍ରାଣ ଛାଡ଼ିଗଲା । ସିଏ ସବୁଦିନ ପାଇଁ ମୁକ୍ତି ପାଇଗଲା । ଆମ ସୀମାଅପା ସେମିତି କିଛି ଗୋଟେ ଗୁପ୍ତ ମହାପାପ କରିଛି । ସେ କଥା ସିଏ ସର୍ବ ସମକ୍ଷରେ ପ୍ରକାଶ ନକଲା ପର୍ଯ୍ୟନ୍ତ ତାର ମୃତ୍ୟୁ ହେବ ନାହିଁ । ସିଏ ଏଠି ରୋଗରେ ଘାଣ୍ଟି ଚକଟି ହେବ, ତା ଦେହ ସାରା ପୋକ ସାଲୁବାଲୁ ହେବେ । ତଥାପି ତା'ପ୍ରାଣ ଛାଡ଼ିବ ନାହିଁ, ଖାଲି ତାକୁ ଦହଗଞ୍ଜ କରୁଥିବ । ଯୋଉ ଦିନ ସିଏ ତା' ପାପ ପ୍ରକାଶ କରିବ ଓ ବ୍ରାହ୍ମଣ ଡକାଇ ଦାନ ଦେବ ସେଦିନ ଠକ୍ କରି ତା' ପିଣ୍ଡରୁ ପ୍ରାଣ ଛାଡ଼ି ଚାଲିଯିବ ।

ତୁମ ଆଗରେ ମୁଁ ସତକଥା କହୁଛି । ଜୀବନରେ ମୁଁ କୌଣସି ପାପ କରିନାହିଁ । ପରକୀୟା ପ୍ରୀତି କି ପାପ ପ୍ରଣୟ ସେମତି କିଛି କରିବା ତ ଦୂରର କଥା, ସେ ସବୁକୁ ମୁଁ ମୋ ମନରେ କେବେ କଳ୍ପନା ବି କରିନାହିଁ । ମୋ ଛାତ୍ରୀ ଜୀବନରେ, ଚାକିରି ଜୀବନରେ, ବୈବାହିକ ଜୀବନରେ କି ମୋ ସ୍ୱାମୀଙ୍କ ବିୟୋଗ ପରେ କେବେ ଥରଟିଏ ହେଲେ ସେପରି ପାପ ଚିନ୍ତା ମୋ ମନକୁ ଆସି ନାହିଁ । ହଁ ମୋର ସ୍ୱୀକାର କରିବାରେ କୁଣ୍ଠା ନାହିଁ ଯେ ମୋ ମନରେ ତୁମ ପାଇଁ ଗୋଟେ ସ୍ୱତନ୍ତ ଆସନ ମୋ ଛାତ୍ରୀ ଜୀବନରୁ ଆଜି ପର୍ଯ୍ୟନ୍ତ ସଂରକ୍ଷିତ ଅଛି । ତୁମେ ମୋର ପ୍ରଥମ ପ୍ରେମ । ପ୍ରଥମ ଦେଖାରେ ତୁମ ପ୍ରତି ମୋର ଦୁର୍ବଳତା ସୃଷ୍ଟି ହୋଇଥିଲା । ସେଦିନରୁ ତାହା ସେମିତି ସେଇଠି ଅଛି । ସେଇ ଥରଟିଏ



Digitized by srujanika@gmail.com

ଯାହା ତୁମକୁ ଦେଖିଥିଲି,ଆଜିଯାକେ ଆଉ କେବେ ତୁମ ଛାଇ ମୋଠି ପଡ଼ିନାହିଁ କି ଛୁଆଁ ମୋ ଦେହରେ ବାଜିନାହିଁ । ଆମ ସଂପର୍କ କେବଳ ମନର, ଦେହର ନୁହଁ । ତୁମ ସ୍ମୃତି ସୁନ୍ଦର ତୈଳଚିତ୍ରଟିଏ ହୋଇ ମୋ ମନର ଡ୍ରଇଁରୁମ୍ କାନ୍ଥରେ ଝୁଲୁଛି । ସେ ଛବିରେ ଟିକେ ହେଲେ ଦାଗ ଲାଗିବାକୁ ମୁଁ ଦେଇ ନାହିଁ,ଦେବି ନାହିଁ ।

ଜଣେ କିଏ ମହାପୁରୁଷ କହିଥିଲେ,"ତୀର ଆଗକୁ ଅଗ୍ରସର ହୁଏ ତାକୁ ଯେତେବେଳେ ପଛକୁ ଟଣାଯାଏ, ଗୁଳି ଆଗକୁ କ୍ଷେପିଯାଏ ଯେତେବେଳେ ଟ୍ରିଗରକୁ ପଛକୁ ଟଣା ଯାଏ । ସେମିତି ମଣିଷକୁ ଯଦି କେହି ପଛକୁ ଟାଣେ ତେବେ ତା' ଭିତରେ ଅମାପ ଶକ୍ତି ସୃଷ୍ଟି ହୁଏ ଓ ସେ ସବୁ ବାଧା, ବନ୍ଧନ ଏବଂ ପ୍ରତିରୋଧକୁ ପ୍ରତିହତ କରି ସମୃଦ୍ଧିର ଶିଖର ସ୍ପର୍ଶକରେ ।" କିନ୍ତୁ ଏ ଉକ୍ତିର କିଛି ମାନେ ନାହିଁ ମୋ ପାଇଁ । ବଞ୍ଚିବାକୁ ଯାହାର ଇଚ୍ଛା ନାହିଁ ତାର ଆଉ ବା କି ସମୃଦ୍ଧି ଲୋଡ଼ା ? ମୁଁ ଚାହେଁନା ଆଗକୁ ଯିବାକୁ କି ପଛକୁ ଫେରିବାକୁ । ମୁଁ ଯେଉଁଠି ଅଛି ସେଇଠି ମାଟିରେ ମିଶି ଯିବାକୁ ମୋର ଏକାନ୍ତ ଇଚ୍ଛା ।

ଉଦୟ ଥିଲେ ଅସ୍ତ ଅଛି,ହୃଦୟ ଥିଲେ କଷ୍ଟ ଅଛି । ଆରମ୍ଭ ଥିଲେ ଶେଷ ଅଛି, ଜୀବନ ଥିଲେ ମୃତ୍ୟୁ ଅଛି । ଏମିତି ମଣିଷ କିଏ ଅଛି ଯାହାର ମୃତ୍ୟୁ ହୋଇ ନାହିଁ ? ଜନ୍ମ ଯେତିକି ସତ୍ୟ, ମୃତ୍ୟୁ ତାଠୁ ଅଧିକ ସତ୍ୟ । ମୋର ଜନ୍ମ ହୋଇଛି ଯେତେବେଳେ ମୋର ମୃତ୍ୟୁ ନିଶ୍ଚୟ ହେବ । କିନ୍ତୁ କେବେ ମୋର ସେ ବହୁ ଆକାଙ୍କ୍ଷିତ ମୃତ୍ୟୁ ଆସିବ ? ମୁଁ ଭାବିଥିଲି ଏ ପୃଥିବୀରେ ବଞ୍ଚିବା ବଡ଼ କଷ୍ଟ, ହେଲେ ମୁଁ ଆଜି ବୁଝୁଛି ବଞ୍ଚିବା ନୁହଁ, ମରିବା ତାଠୁ ହଜାର ଗୁଣ କଷ୍ଟ । ଜୀବନଟା ଗୋଟେ ସ୍ଲୋ ଡ୍ରାମା । ଏଠି କିଛି ଶୀଘ୍ର ଶୀଘ୍ର ଘଟେ ନାହିଁ ।

ମଣିଷ ଏମିତି ଏକା ହୋଇଯାଏ କାହିଁକି ? କ'ଣ ପୃଥିବୀକୁ ସିଏ ଏକା ଆସିଥିଲା ବୋଲି ? ମଣିଷକୁ ଦିନେ ଏମିତି ଏକା ଏକା ବଞ୍ଚିବାକୁ ହେବ ଏକଥା ତାକୁ କେବେ କେହି କହି ନଥାନ୍ତି । ମୋର ଏକାନ୍ତ ନିଜର ବାପା, ମାଆ,ସ୍ୱାମୀ ସମସ୍ତେ ମୋତେ ଏଠି ଏକା ଛାଡ଼ି ଚାଲିଯିବେ ଏକଥା ମୁଁ କେବେ କଳ୍ପନା କରି ନଥିଲି । ମୋ ଭିତରେ କୋଉଠି ଗୋଟେ ଏକା ପଣ ରହି ରହି କେଏଁ କେଏଁ କେନ୍ଦରା ବଜାଉଛି ।

ଏ ଜନ୍ମରେ ତ ମୁଁ କିଛି ହେଲେ ପାପ କରି ନାହିଁ, ଆଉ ତେବେ କ'ଣ ମୁଁ ଅତୀତର ଅନ୍ୟ କୌଣସି ଜନ୍ମରେ କିଛି ପାପ କରିଥିଲି ? ଅତୀତ ଜନ୍ମ ଥିବା କଥା ମୁଁ ଆଦୌ ବିଶ୍ୱାସ କରେ ନାହିଁ । ଭବିଷ୍ୟତରେ ଯେ ମୁଁ ପୁଣି ଆଉ ନୂଆ କିଛି ଜନ୍ମ ନେବି



Digitized by srujanika@gmail.com

ସେ ବିଶ୍ୱାସ ମଧ୍ୟ ମୋର ନାହିଁ । ତେଣୁ ମୋ ଜାଣିବାରେ ମୁଁ ଆଦୌ କୌଣସି ପାପ କରି ନାହିଁ । ମୁଁ ଶିଶୁ ଥିବା ବେଳେ କି କି ଅନୁଚିତ, ପାପ କାମ ସବୁ କରିଥିଲି ସେ ସବୁ ମୋର ଏବେ କିଛି ହେଲେ ମନେ ନାହିଁ । ମାଛି ମାରିବା, ମାଛ ଧରିବା, କଙ୍କି ଧରିବା , ବହି ଚିରିବା, ସିଲଟ ଭାଙ୍ଗିବା କି ଏମିତି ଆଉ କିଛି ପାପ କରିଥିବି ତାହା ମୋର ଏ ବୟସରେ ଆଦୌ ମନେ ନାହିଁ ।

ମୁଁ ତୁମ ଆଗରେ ମୋ ଜୀବନର ସବୁ ପୃଷ୍ଠା ଖୋଲି ଦେଇଛି । ଏଥର ତୁମେ କୁହ ଜୀବନ ! ମୁଁ କ'ଣ କିଛି ପାପ କରିଛି ଯେଉଁଥି ପାଇଁ ମୋ ଜୀବନ ଯାଉନାହିଁ, କେବଳ ଛଟପଟ କରି ମୋ ଗାଆଁ ଭୂଇଁରେ ମୋତେ ହିନସ୍ତା କରୁଛି ? ଯଦି ମୁଁ କିଛି ପାପ କରି ନାହିଁ ତେବେ କାହିଁକି କିଛି ରୋଗ ନଥାଇବି ମୋ ଆଖିରୁ ନିଦ , ପେଟରୁ ଭୋକ ଆଉ ମନରୁ ଶାନ୍ତି ହଜି ଯାଇଛି ? ମୋ ଚାରି ପାଖର ଲୋକମାନେ କାହିଁକି ମୋ ବିଷୟରେ ଏମିତି ଅଜବ କଥା କହୁଛନ୍ତି ?

ବେଳେ ବେଳେ ମୋର କ'ଣ ମନେହୁଏ ଜାଣ ଜୀବନ ? ଲୋକମାନଙ୍କ ଅଭିଯୋଗ ହୁଏତ ନିରାଧାର ନୁହଁ, କିଛି ନା କିଛି ଆଧାର ଅଛି ତାଙ୍କ କଥାର । ମୁଁ ଯେତେ ମନା କଲେ ବି ଏଇଟା ସତଯେ ମୋ ମନରେ ତୁମ ପ୍ରତି ଭଲ ପାଇବା ଆଜିବି ଅଛି । ସେଇ ଭଲ ପାଇବା କ'ଣ ଏତେ ବଡ଼ ପାପ ? ହଁ , ମୁଁ ମାନୁଛି ଆମ ଭଲ ପାଇବା କଥା ଏ ଯାଏ କାହା ଆଗରେ ପ୍ରକାଶ କରି ନଥିଲି, ଆଜି ତୁମକୁ କେବଳ ଲେଖିଲି । ଏବେ ଭାବୁଛି ହୁଏତ ଆମ ଭଲ ପାଇବା କଥାଟା ବାହାଘର ପରେ ମୋ ସ୍ୱାମୀ ଉନ୍ନକ୍ତଙ୍କ ଆଗରେ ପ୍ରକାଶ କରିଦେବାଟା ଉଚିତ ହୋଇଥାନ୍ତା । କିନ୍ତୁ ଆମର ଏ ଭଲ ପାଇବା ଯାହା ଆମେ କେହି କାହା ଆଗରେ ଆଜି ପର୍ଯ୍ୟନ୍ତ ପ୍ରକାଶ କରି ନଥିଲେ,ଏପର୍ଯ୍ୟନ୍ତ ଯାହା ତୁମେ ମୋତେ ମୁହଁଖୋଲି କହିନା,ମୁଁ ସେମିତି ଗୋଟେ କଥା ତାଙ୍କୁ କେମତି ବା କହିଥାନ୍ତି ? ମୁଁ ନିଜେ ଯେଉଁ ବିଷୟରେ ନିଶ୍ଚିତ ନୁହଁ ତାଙ୍କୁ ସେକଥା କେମିତି କହି ପାରିଥାନ୍ତି ତୁମେ କୁହ ଜୀବନ ? ତୁମେ କ'ଣ ମୋର ଏ ଚିଠି ପାଇବା ପୂର୍ବରୁ ନିଶ୍ଚିତ ଥିଲ ମୋ ଭଲ ପାଇବା ବିଷୟରେ ? ନା, ଆଦୌ ନିଶ୍ଚିତ ନ ଥିଲ; ମୁଁ ଏକଥା ଜୋର୍ ଦେଇ କହିବି । ତୁମେ ମୋ ଭଲ ପାଇବା ବିଷୟରେ ନିଶ୍ଚିତ ଥିଲେ ମୋ ଠିକଣାରେ ପ୍ରେମପତ୍ର ପଠେଇଥାନ୍ତ । ବିଭିନ୍ନ ପତ୍ର ପତ୍ରିକା ଓ ଗଳ୍ପ ବହିରେ ଛଦ୍ମନାମରେ ଏମିତି ପ୍ରେମଗଳ୍ପ ଲେଖିବା କ'ଣ ଦରକାର ଥିଲା ?

ଏଇଟା ମୋ ମନର ପାପ କଥା ନୁହଁ, ମୋ ମନର ଏକାନ୍ତ ବ୍ୟକ୍ତିଗତ ଗୋପନ



Digitized by srujanika@gmail.com

କଥା । ପ୍ରତ୍ୟେକ ନାରୀ ବା ପୁରୁଷର ଏମିତି କିଛି ଏକାନ୍ତ ବ୍ୟକ୍ତିଗତ ଗୋପନ କଥା ଅଛି ଯାହା ସିଏ କାହା ଆଗରେ କହି ପାରେନା । ଆବଶ୍ୟକ ପଡ଼ିଲେ ସ୍ତ୍ରୀ ତା'ସ୍ୱାମୀ ସମ୍ମୁଖରେ ଏବଂ ସ୍ୱାମୀ ତା'ସ୍ତ୍ରୀ ସମ୍ମୁଖରେ ନିଜ ଦେହକୁ ସଂପୂର୍ଣ୍ଣ ବିବସ୍ତ୍ର କରିଦେଇ ପାରେ; କିନ୍ତୁ କୌଣସି ପରିସ୍ଥିତିରେ ସେ ତା'ମନକୁ କାହାରି ପାଖେ ସଂପୂର୍ଣ୍ଣ ବିବସ୍ତ୍ର କରି ପାରେନା । ନିଜର ମନଟାକୁ ମନୋହରି ଦୋକାନର ପସରା ପରି ସମସ୍ତଙ୍କ ଆଗରେ ଖୋଲି ଧରିଲେ ଜଣେ ମଣିଷର ନିଜର ହୋଇ କ'ଣ ଆଉ ରହିବ ?

ମୋର ଏ ଚିଠି ପାଇବା ପରେ ତୁମର କି ପ୍ରତିକ୍ରିୟା ହେବ ମୁଁ ଜାଣେନା ଜୀବନ ! ତଥାପି ମୋ ମନରୁ ଅନେକ ଦିନର ବୋଝ ହାଲୁକା ହୋଇଗଲା ପରି ମୋତେ ଲାଗୁଚି, କାରଣ ଜଣେ ଅନ୍ତରଙ୍ଗ ମଣିଷ ଆଗରେ ମନଖୋଲି ଦୁଃଖ କହିଦେଲେ ମନଟା ହାଲୁକା ହୋଇଯାଏ । ମୁଁ ଆଉ ଥରେ କହୁଛି ମୁଁ କିଛି ପାପ କରିନଥିଲି କି ଆମ ଭଲ ପାଇବା କଥା ଯାହା ଏ ଚିଠିରେ ମୁଁ ଆଜି ଲେଖିଲି ତାହା ଆଦୌ ପାପ କଥା ନୁହଁ, ତାହା ମସୃଣ ପଦ୍ମପତ୍ରରେ ଢ଼ଳ ଢ଼ଳ ନିଷ୍ପାପ ପବିତ୍ର ଜଳ, ଯାହା ସ୍ପର୍ଶରେ ମନ, ପ୍ରାଣ ପବତ୍ର ହୁଏ ।

ଚିଠି ପଢ଼ି ସାରିବା ବେଳକୁ ମୁଁ ଝାଳରେ ବୁଡ଼ିଯାଇ ଥିଲି । ସୀମାଙ୍କ ପ୍ରତି ଦରଦରେ ମୋ ମନ ବତୁରି ଯାଇଥିଲା । ଚିଠିଟିକୁ ଚାରି ଭାଙ୍ଗ କରି ଛାତି ପକେଟ୍‌ରେ ରଖିଲି । ହଠାତ୍ ମୋତେ ଶୁଭିଲା କେହି ଜଣେ ହାତରେ ପିଟି ଚାଲିଛି ଛାତର କାଠ କବାଟକୁ । ତରବର ହୋଇ କବାଟର ହୁକ୍ ଖୋଲିଦେଲି । ମୋ ସ୍ତ୍ରୀ ଅନୁରାଧା ଚଢ଼ା ଗଳାରେ ପଚାରିଲେ-ଛାତର କବାଟ ଭିତର ପଟୁ ବନ୍ଦ୍‌କରି ତୁମେ କ'ଣ କରୁଥିଲ ? ଆମେ ତୁମକୁ ଅନେକ ସମୟ ହେଲା ଡାକି ଡାକି, କବାଟ ବାଡ଼େଇ ବାଡ଼େଇ ଥକି ଗଲୁଣୁ । ଆମେ ଭୟ ପାଇଯାଇ ଥିଲୁ ।

ମୁଁ କିଛି ସମୟ ପାଇଁ ଚୁପ୍ ରହିଲି । କ'ଣ ଉତ୍ତର ଦେବି କିଛି ସ୍ଥିର କରି ପାରିଲି ନାହିଁ । ମୋ ମୁହଁ ଲାଜରେ ଲାଲ ପଡ଼ିଗଲା ।ମୁଁ ଥତମତ ହୋଇ କହିଲି- କାଲି ରାତିରେ ଭଲ ନିଦ ହୋଇ ନଥିଲା । ଛାତ ଉପରେ ବସି ବସି ଗୋଟେ ଗଳ୍ପର ପ୍ଲଟ ଚିନ୍ତା କରୁଥିଲି, ନିଦ କେତେ ବେଳେ ଆସିଗଲା ମୁଁ ଜାଣି ପାରି ନାହିଁ ।

ସ୍ତ୍ରୀ ଅନୁରାଧା କହିଲେ- ତୁମର ଆଜି କ'ଣ ହେଉଚି କୁହତ ? ବେଡ଼ରୁମ୍‌ରେ ପଶି ଭିତରୁ କବାଟ ବନ୍ଦ୍ କରୁଥିଲ , ମୁଁ ମନାକରିବାରୁ ଛାତ ଉପର କବାଟ ବନ୍ଦ୍ କରି ଶୋଇଗଲ ? ଧନ୍ୟ ତୁମ ନିଦ ଆଉ ଧନ୍ୟ ତୁମେ ଓ ତୁମ ଗପଲେଖା । ଗପଲେଖା ଢ଼େର



Digitized by srujanika@gmail.com

ହେଲା,ଆଉନୁହଁ । ଚାକିରିରୁ ଅବସର ନେଲ ତଥାପି ଲେଖାକୁ ଛାଡୁନା ? ଏଥର ଘର କାମରେ ମନଦିଅ । ଗପ, ଉପନ୍ୟାସ ଲେଖା ଛାଡ଼ ।”

ମୁଁ କିଛି ଉତ୍ତର ନଦେଇ ଅପରାଧୀ ପରି ମୁହଁ ତଳକୁ କରି ଛାତରୁ ତଳକୁ ଓହ୍ଲାଇ ଆସିଲି । ସେ ଦିନ ସାରା ଉଦାସୀନ ରହିଲି । ରାତି ଦୁଇଟାରେ ବିଛଣାରୁ ଉଠି ନିଜ ହାତବାକ୍ସରେ ଯତ୍ନରେ ସାଉତି ରଖିଥିବା ସୀମାଙ୍କର ନାମାଙ୍କିତ ସେଇ ରୁମାଲଟିକୁ ବାହାର କରି ଅନେକ ସମୟ ଯାଏ ତାକୁ ଦେଖିଲି । ତାପରେ ହାଙ୍ଗରରେ ଝୁଲୁଥିବା ମୋ ସାର୍ଟର ଛାତି ପକେଟରେ ନେଇ ରୁମାଲଟିକୁ ରଖିଲି । ତାପର ଦିନ ସକାଳୁ ସକାଳୁ ପ୍ରସ୍ତୁତ ହୋଇ ବାହାରିଲି ମାମୁଘରକୁ । ଅନୁରାଧା ଆପତ୍ତି ଉଠାଇଲେ- ମାମୁଘରେ କିଏ ଅଛି କାହା ପାଖକୁ ତୁମେ ଯିବ ? ତୁମ ମାମୁ ମାଇଁ ଅନେକ ଦିନରୁ ମଲେଣି । ସେଠିକି ଆଉ ଯିବା ଆସିବା ନାହିଁ । ତୁମକୁ ସେଠି କିଏ ଚିହ୍ନିବ ? ତାଙ୍କ ପିଲାମାନେ ତୁମକୁ ଥରେ ଅଧେ କେବେ ଦେଖିଥିବେ କି ନାହିଁ । ସେଠିକି କ'ଣ ପାଇଁ ଯିବ ?

ମୁଁ ଚଡ଼ା ଗଳାରେ ଉତ୍ତର ଦେଲି- ମୁଁ ମୋ ମାମୁଘରକୁ ଯିବି । ସେଥିପାଇଁ କାହାକୁ କୈଫିୟତ ଦେବା କିମ୍ବା କାହାଠୁ ଅନୁମତି ନେବା ମୋର ଦରକାର ନାହିଁ । ମୋତେ ସବୁ କଥାରେ ନିୟନ୍ତ୍ରଣ କରିବା ଅଭ୍ୟାସ ଛାଡି ତୁମେ ଘର କାମରେ ମନଦିଅ । ମୁଁ ଅଜ୍ଞାନ କି ଅବୋଧ ବାଳକ ନୁହଁ । ମୁଁ କେଉଁଠିକି ଯିବି କେଉଁଠିକି ନଯିବି ସେକଥା ବିଚାର କରିବା ପାଇଁ ମୋର ଯଥେଷ୍ଟ ବିଚାର ବୁଦ୍ଧି ଅଛି ।

କାହାରି କଥା ନଶୁଣି ସେ ଦିନ ମୁଁ ବାହାରି ଗଲି ମାମୁଘର ଅଭିମୁଖେ । ମନରେ ଅନେକ ଉତ୍କଣ୍ଠା ଓ ଆଖିରେ ଆଖିଏ ଆଗ୍ରହ । ପ୍ରଥମ ପ୍ରେମ ସୀମା ଯାହାକୁ ମୋ ଜୀବନରେ ଥରଟିଏ ଆଜିକୁ ଦୀର୍ଘ ଚାଳିଶ ବର୍ଷ ତଳେ ମାତ୍ର କେଇ ସେକେଣ୍ଡ୍ ପାଇଁ ଦେଖିଥିଲି ମାମୁଘର ପିଜୁଳି ଗଛ ତଳେ, ଏବେ ସେ ପିଜୁଳି ଗଛ ନଥିବ କି ଆଦ୍ୟ ଯୌବନା ଅନନ୍ୟ ସୁନ୍ଦରୀ ସୀମା ନଥିବ । ସେ ପିଜୁଳି ଗଛ ବୁଢ଼ା ହୋଇ ମରି ଯାଇଥିବ କିମ୍ବା କଟା ହୋଇଯାଇ ତା ଉପରେ ଘର ତିଆରି ହୋଇଯାଇ ଥିବ । ସୀମା ଏବେ ବିଧବା ଓ ବୁଢ଼ୀ ହୋଇ ଯାଇଥିବେ । ତଥାପି ମୋ ଆଖିରେ ସେଇ ପ୍ରଥମ ଦେଖା ବେଳର ସୀମା ଏବେବି ଆସନ ଥାପି ବସିଛନ୍ତି । ସେ ଆସନରୁ ତାଙ୍କୁ କେହି ହଟାଇ ପରିବେ ନାହିଁ । ଦୀର୍ଘ ଚାରି ଘଣ୍ଟାର ବସ୍‌ଯାତ୍ରା ପରେ ମୁଁ ଓହ୍ଲାଇଲି ମାମୁଘର ଗାଆଁରେ । ସେ ମାଟିରେ ପାଦ ଦେବା ମାତ୍ରେ ମୋ ଦେହ ଓ ମନରେ ଅପୂର୍ବ ଶିହରଣ ଖେଳିଗଲା । ମାତ୍ର ଚାରିକଡ଼କୁ ଚାହିଁଲି, ଗାଆଁର ନକ୍ସାରେ ଅନେକ ପରିବର୍ତ୍ତନ । ଗାଆଁ ପୋଖରୀଟା



Digitized by srujanika@gmail.com

ପୋତି ହୋଇ ଯାଇଛି,ଗାଆଁ ଚାରିପଟେ ଘେରି ଠିଆହୋଇଥିବା ଆମ୍ବ,ପଣସ, ଜାମୁ,ବଗୁଲୀ, ବର,ଓସ୍ତ,ଲିମ୍ବ,ତାଳ,ଖଜୁରୀଗଛ କିଛି ନାହିଁ ।

ଗାଆଁମୁଣ୍ଡ ଶ୍ମଶାନରେ ଜଳୁଥିଲା ଗୋଟେ ଜୁଇ । କାହାକୁ ଜଣକୁ ପଚାରି ବୁଝିଲି, ଆଜି ସକାଳ ଦଶଟାରେ ଏଇ ଗାଆଁ ଝିଅ ସୀମାଙ୍କର ହଠାତ୍ ହାର୍ଟଆଟାକରେ ମୃତ୍ୟୁ ହୋଇଗଲା ଓ ତାଙ୍କରି ଜୁଇ ଜଳୁଛି ।

ସୀମାଙ୍କୁ ଶେଷଦେଖା କରିବାରୁ ମୁଁ ବଞ୍ଚିତ ହେଲି ।

ପକେଟରୁ ସୀମାଙ୍କ ନାମାଙ୍କିତ ରୁମାଲଟି ବାହାର କରି ଦେଖିଲି । ତା ଭିତରେ ମୋତେ ଦିଶିଗଲା ଚାଳିଶ ବର୍ଷ ତଳର ଆଦ୍ୟ ଯୌବନା ଅପରୂପା ସୀମାଙ୍କ ହସ ହସ ମୁହଁ ଓ ପ୍ରଥମ ଦେଖା ବେଳର ସମସ୍ତ ଦୃଶ୍ୟ । ମୁଁ ଭାବିଲି ଠିକ୍ ଅଛି ମୋ ମନ ଭିତରେ ସୀମାଙ୍କର ଯେଉଁ ଛବି ଅଛି ତାହା ସେମିତି ଅନନ୍ୟ ସୁନ୍ଦର ହୋଇ ଅମଳିନ ରହୁ । ଭଲ ହୋଇଚି ମୋର ତାଙ୍କ ସହିତ ତାଙ୍କ ମୃତ୍ୟୁ ଶଯ୍ୟାରେ ଦେଖା ନହୋଇଚି । ତାଙ୍କ ବାର୍ଦ୍ଧକ୍ୟ କବଳିତ ଓ ରୋଗଗ୍ରସ୍ତ ଛବି ମୋ ନଜରରେ ପଡ଼ିଥିଲେ ହୁଏତ ତାଙ୍କୁ ପ୍ରଥମ ଦେଖା ବେଳର ଛବି ମୋ ମନ ମନ୍ଦିରରେ ରାଜ କୁମାରୀର ରୂପଲାବଣ୍ୟ ମଣ୍ଡିତ ହୋଇ ଏତେ ଦିନ ଶୋଭ ରହିଛି ତାହା ବିକୃତ, ବିକଳାଙ୍ଗ ହୋଇ ଯାଇଥାନ୍ତା । ସୀମାଙ୍କ ବାର୍ଦ୍ଧକ୍ୟ ପୀଡ଼ିତ, ଗୋଗଗ୍ରସ୍ତ ରୁଗ୍‌ଣ ଛବିକୁ ମୁଁ ଦେଖିବା ଆଗରୁ ତାହା ଜୁଇ ନିଆଁରେ ଜଳି ପାଉଁଶ ହୋଇ ଯାଇଛି ।

ମୋ ସ୍ମୃତି ଶାମୁକାରେ ସାଇତା ସୀମାଙ୍କ ଛବିକୁ ଜୁଇ ନିଆଁଠୁ ନିରାପଦ ଦୂରତାରେ ରଖିବା ପାଇଁ ରୁମାଲଟିକୁ ଧରି ମୁଁ କ୍ଷୀପ୍ରଗତିରେ ପ୍ରାଣମୂର୍ଚ୍ଛା ଦୌଡ଼ିବାକୁ ଲାଗିଲି ଜୁଇର ବିପରୀତ ଦିଗରେ ।



ଆନଂଦ ଚଂଦ୍ର ପହି

Digitized by srujanika@gmail.com

**ଆନଂଦ ଚଂଦ୍ର ପହିଙ୍କ**

**ନାଟକ ପୁସ୍ତକ :**

ଦୁଇ ଦିଗନ୍ତ

ରେଖାଚିତ୍ର

ହଜିଯାଇଥିବା ମଣିଷ

ପ୍ରତୀକ୍ଷାରେ ପରିକ୍ଷିତ

ଆକାଶର ରଙ୍ଗ

ଡର

ଭାଙ୍ଗି ପଡୁଥିବା ଭୂମି

ଖାଲି ହାତର ଛବି

ଖାଉଟି ସୁରକ୍ଷା ନାଟକ

ସଂପର୍କର ତିନିଗାର

ଅନ୍ୟଏକ ସିଦ୍ଧାର୍ଥ

ଅନ୍ତର୍ଦାହ

ଫୁଲ୍ ଟେନସନ୍

Digitized by srujanika@gmail.com



ଆନନ୍ଦ ଚନ୍ଦ୍ର ପହିଙ୍କ ଜନ୍ମ ୧୯୪୬ ମସିହା ଅପ୍ରେଲ ମାସ ୧୧ତାରିଖ, ଗ୍ରାମ ନିହଲ ପ୍ରସାଦ, ଜିଲ୍ଲା ଢେଙ୍କାନାଳ,ବୃତ୍ତି ସରକାରୀ ସେବା,କିନ୍ତୁ ପ୍ରବୃତ୍ତି ସାହିତ୍ୟ ସାଧନା ଓ ସମାଜ ସେବା।ଶ୍ରୀ ପହି ଜଣେ ବିଶିଷ୍ଟ ଗାଳ୍ପିକ ଓ ପ୍ରତିଷ୍ଠିତ ନାଟ୍ୟକାର।ତାଙ୍କ ଗଳ୍ପ ଗୁଡ଼ିକର କାନଭାସ୍ ଗାଆଁରୁ ସହର ପର୍ଯ୍ୟନ୍ତ ପରିବ୍ୟାପ୍ତ। ମଣିଷ ଜୀବନର ସଂଘର୍ଷ, ସେମାନଙ୍କ ମନସ୍ତତ୍ୱ, ଅନ୍ତର୍ଦ୍ୱନ୍ଦ୍ୱ,ନୈରାଶ୍ୟ ଓ ହତାଶାକୁ ନେଇ ତାଙ୍କ ଗଳ୍ପର କଳେବର ପୁଷ୍ଟ।ତାଙ୍କ ସୃଷ୍ଟିରେ ସମାଜ ସଚେତନତା ଯେତିକି ତୀବ୍ର, ସମ୍ବେଦନଶୀଳତା ସେତିକି ସୂକ୍ଷ୍ମ। ତାଙ୍କ ବଳିଷ୍ଠ ଗଳ୍ପ ଗୁଡ଼ିକ ମଧ୍ୟରୁ ଅଧିକାଂଶର ନାଟ୍ୟରୂପ ଶ୍ରୀ ପହି ନିଜେ ପ୍ରଦାନ କରିଛନ୍ତି ଏବଂ ସେଗୁଡ଼ିକ ବିଭିନ୍ନ ସମୟରେ ମଞ୍ଚ, ବେତାର ଓ ଦୂରଦର୍ଶନରେ ସଫଳତାର ସହ ଅଭିନୀତ, ପ୍ରଶଂସିତ ଓ ପୁରସ୍କୃତ। ସେ ଜଣେ ସଫଳ ନାଟ୍ୟକାର ହୋଇ ଥିବାରୁ ତାଙ୍କର ସମସ୍ତ ଗଳ୍ପରେ ସୁନ୍ଦର ନାଟକୀୟତା ଓ ମନୋଜ୍ଞ ସଂଳାପର ଏକ ସୁମଧୁର ସମନ୍ୱୟ ଦେଖିବାକୁ ମିଳେ।

ଶ୍ରୀ ପହି ସର୍ବଭାରତୀୟ ବେତାର ନାଟକ ପ୍ରତିଯୋଗୀତା,୧୯୯୫-୯୬ ମସିହାରେ 'ଅନ୍ୟ ଏକ ସିଦ୍ଧାର୍ଥ' ନାଟକ ପାଇଁ ସର୍ବଶ୍ରେଷ୍ଠ ନାଟ୍ୟକାର, ୧୯୯୨-୯୩ ଓ ୧୯୯୮-୯୯ ମସିହାରେ ଯଥାକ୍ରମେ 'ଭାଙ୍ଗି ପଡୁଥିବା ଭୂମି' ଏବଂ 'ପରିତ୍ୟକ୍ତ' ନାଟକ ପାଇଁ ଦ୍ୱିତୀୟ ସର୍ବଶ୍ରେଷ୍ଠ ନାଟ୍ୟକାର ଭାବେ ପୁରସ୍କୃତ। 'ପ୍ରତୀକ୍ଷାରେ ପରିକ୍ଷିତ' ନାଟକ ପାଇଁ ସେ ୧୯୯୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ।

Digitized by srujanika@gmail.com